# ସାରଳା ମହାଭାରତରେ ସାମାଜିକ ଜୀବନ

ଲେଖକ :

**ଶ୍ରୀ ଦୀନବନ୍ଧୁ ରଥ,** ଏମ୍. ଏ., ପିଏଚ୍. ଡ଼.
ମୁଖ୍ୟ ଅଧାପକ, ଓଡ଼ିଆ ବିଭାଗ,
କୋ-ଅପରେଟିଭ କଲେଜ, ଜାମ୍‌ସେଦ୍‌ପୁର

ଗ୍ରନ୍ଥମନ୍ଦିର
କଟକ-୨ : ବ୍ରହ୍ମପୁର-୧

# SARALA MAHABHARATARE SAMAJIK JEEBAN

Written by : Dr. **Dinabandhu Rath,** Head of the Department of Oriya, Co-operative College, Jamshedpur.

Published by :
**Grantha Mandir,** Cuttack-2 & Berhampur-1

First Edition : 1974

Price : Rs. 25-00

ପ୍ରକାଶକ :
ଶ୍ରୀ ଅଭିରାମ ମହାପାତ୍ର
**ଗ୍ରନ୍ଥ ମନ୍ଦିର**
କଟକ-୨ : ବ୍ରହ୍ମପୁର-୧

ମୁଦ୍ରକ :
ଶ୍ରୀ ଜୟରାମ ମହାପାତ୍ର
**ଗ୍ରନ୍ଥି ପ୍ରକାଶିନୀ**
ସୁତାହାଟ, କଟକ-୧

ପ୍ରଥମ ମୁଦ୍ରଣ : ୧୯୭୪

ମୂଲ୍ୟ : ଟ ୨୩-୦୦
ବନ୍ଧେଇ ଅତିରିକ୍ତ ଟ ୨-୦୦

ଅତୀତରେ ଯାହାଙ୍କର ପିତୃସୁଲଭ ସ୍ନେହ-ମମତାର ମାଧୁର୍ଯ୍ୟ ପ୍ରାଣକୁ ବିମୁଗ୍ଧ ଓ ଉଦ୍‌ବେଳିତ କରୁଥିଲା, ସୁଧାସିକ୍ତ ବଚନାବଳୀ ଜୀବନ-ସଂଗ୍ରାମ ତଥା ସାହିତ୍ୟ-ସାଧନାର ଦୁର୍ଗମ କଣ୍ଟକିତ ସରଣୀରେ ଘନ ପ୍ରେରଣା ଓ ସାହସର ସଞ୍ଚାର କରୁଥିଲା;

ଉଦ୍ଦୀପନାମୟ ଉପଦେଶାମୃତ ପଥ-ନିର୍ଦ୍ଦେଶ କରିବା ସଙ୍ଗେ ସଙ୍ଗେ ଆଶାର ଜାଗରଣ କରାଉଥିଲା, ଆଶୀର୍ବାଣୀ ସତତ ଉଦ୍‌ବୁଦ୍ଧ କରୁଥିଲା;

ସେହି ଚିରସ୍ମରଣୀୟ ପରମ ଭକ୍ତିଭାଜନ ଶ୍ରଦ୍ଧାସ୍ପଦ, ଦେବୋପମ, ଅମରଧାମ-ନିବାସୀ **ଚୌଧୁରୀ ଗଙ୍ଗାଧର ଦାଶଙ୍କ** ମହାନ୍ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ।

# ସୂଚନା

"ସାରଳା ମହାଭାରତରେ ସାମାଜିକ ଜୀବନ" ଶୀର୍ଷକ ପ୍ରବନ୍ଧଟି ୧୯୭୦ ମସିହାରେ ରାଞ୍ଚି ବିଶ୍ୱବିଦ୍ୟାଳୟର ପି. ଏଚ୍‌ଡ଼ି. ପରୀକ୍ଷା ପାଇଁ ପ୍ରସ୍ତୁତ ହୋଇଥିଲା । ପାଞ୍ଚବର୍ଷ ପରେ ଏହା ଗ୍ରନ୍ଥାକାରରେ ପ୍ରକାଶ ପାଇଲା । ମୂଳ ନିବନ୍ଧରେ ମୁଁ ଦର୍ଶାଇଥିଲି ଯେ, ଚମ୍ପମାଳୀ ଉପାଖ୍ୟାନ, ଯୁବାନାଶ୍ୱ ଚରିତ, କୁଠାରାସୁର ବଧ, ଶୋଭାବତୀ ହରଣ, ସୁରେଖା ବିବାହ, ଉଷା ପରିଣୟ, ଉଲୁପୀ ବିବାହ, ଚିତ୍ରାଙ୍ଗଦା ପରିଣୟ, କାମାକ୍ଷୀ ବ୍ରତ, ମଙ୍ଗଳବାର ଓଷା, ବନଦୁର୍ଗା ଓଷା ଓ କୃତଶେଖର ଉପାଖ୍ୟାନ ପ୍ରକ୍ଷେପ । କାରଣ ପୋଥିରେ ମୁଁ ଏହା ପାଇ ପାରି ନଥିଲି । ନିବନ୍ଧ ଲେଖିବାବେଳେ ଓ ପରେ ୧୯୭୧ ମସିହାରେ ଛାପିବାକୁ ଦେବା ସମୟରେ 'ସାଂସ୍କୃତିକ ବ୍ୟାପାର ବିଭାଗ' ଦ୍ୱାରା ପ୍ରକାଶିତ ମହାଭାରତ ମୋତେ ମିଳି ନ ଥିଲା । ଏହା ଏବେ ବଜାରରେ ମିଳିଲାଣି । ତେଣୁ ପୂର୍ବରୁ ତାହା ପାଠ କରିବାର ସୁଯୋଗରୁ ବଂଚିତ ହୋଇଥିଲି । ଏବେ ସେହି ନୂତନ ପ୍ରକାଶିତ ମହାଭାରତରେ ଉପରୋକ୍ତ ବିଷୟମାନ ଥିବାର ଦେଖିଲି । ଏହି ବିଷୟମାନଙ୍କ ବ୍ୟତୀତ ଗ୍ରନ୍ଥଟିରେ ପାଣିତୋଳା, ଲବଣଗୃମଷ୍ଟି କର୍ମ, କନ୍ୟା-ଭ୍ରାତାଙ୍କ ବର-ପଦ ପ୍ରକ୍ଷାଳନ, ବରକନ୍ୟାଙ୍କ କଉଡ଼ିଖେଳ, ଶ୍ରୀକୃଷ୍ଣଙ୍କର ଗୁରୁଆଶ୍ରମରେ ବନଭୂମିରୁ କାଷ୍ଠ ଆହରଣ, ମଧୁବନ ରାଜ୍ୟର ସୁବର୍ଣ୍ଣ-କୋଠି, ନାଗାଳଙ୍କାର ବସଣି, ଦରିଦସେନ ରାଜାଙ୍କ କୃଷିକର୍ମଆଦି ବହୁ ବୃତ୍ତାନ୍ତ ନିହିତ । ଏ ସବୁ ମୁଁ ପୋଥିରେ ପାଇ ନ ଥିଲି । ମୋର ପ୍ରବନ୍ଧରେ ଗୃହୀତ ସ୍ତୁତି, ସ୍ତବ, ଦେବ-ଦେବୀ, ଦେବ-ଦେବୀଙ୍କ ପୀଠ, ଲୌହ ଦ୍ରବ୍ୟ, ସୁବର୍ଣ୍ଣ ଦ୍ରବ୍ୟ, ରୌପ୍ୟ ଦ୍ରବ୍ୟ ଆଦି ଢେର ଅଧିକେ ନୂତନ ଛାପା ସଂସ୍କରଣରେ ମିଳୁଛି । କେତେକ ସ୍ଥଳରେ ନାମଗତ ଓ ପ୍ରସଙ୍ଗଗତ ପାର୍ଥକ୍ୟ ମାନ ଦେଖାଯାଉଅଛି । ମୋ ନିବନ୍ଧର ପରବର୍ତ୍ତୀ ମୁଦ୍ରଣ ସମୟରେ 'ସାଂସ୍କୃତିକ ବ୍ୟାପାର ବିଭାଗ'ଙ୍କ ପ୍ରକାଶିତ ମହାଭାରତକୁ ବିଚାରକୁ ନେବି ବୋଲି ଆଶାକରେ ।

ଆଉ ଗୋଟିଏ କଥା କହିରଖେ । ପ୍ରକାଶକଙ୍କ ସମସ୍ତ ସତର୍କତା ସତ୍ତ୍ୱେ ଗ୍ରନ୍ଥଟିରେ ସାମାନ୍ୟ କେତୋଟି ମୁଦ୍ରଣଗତ ଦୋଷ ରହିଯାଇଛି । ସେହି ଦୋଷ ପାଇଁ ସୁଧୀ ପାଠକମଣ୍ଡଳୀ କ୍ଷମା ଦେବେ ବୋଲି ଆଶା । ଗୋଟିଏ ଗ୍ରନ୍ଥପାଗତ

ଭ୍ରମ ପ୍ରତି ଏଠାରେ ପାଠକଙ୍କ ଦୃଷ୍ଟି ଆକର୍ଷଣ କରିବା ନିତାନ୍ତ ଆବଶ୍ୟକ । ଚତୁର୍ଥ ଅଧ୍ୟାୟର ଶେଷାଂଶରେ ଛପା ହୋଇଛି—"ଓଡ଼ିଶାରେ ଧର୍ମଗତ ମତାନ୍ଧତା ଦେଖାଯାଉଥିଲା ।" (ପୃ ୨୪୪) ଶୁଦ୍ଧ ବାକ୍ୟଟି ହେବ—"ଓଡ଼ିଶାରେ ଧର୍ମଗତ ମତାନ୍ଧତା ଦେଖାଯାଉନଥିଲା ।"

ନିବନ୍ଧଟିର ପ୍ରକାଶ ପାଇଁ 'ଗ୍ରନ୍ଥ ମନ୍ଦିର'ର ବନ୍ଦ୍ୟୋପାଧ୍ୟାୟ ପରିଚାଳକ ଶ୍ରୀ ଅଭିରାମ ମହାପାତ୍ର ଯେଉଁ ଆଗ୍ରହ ଓ ଉତ୍ସାହ ଦେଖାଇଛନ୍ତି ତାହା ପ୍ରଶଂସନୀୟ । ତାଙ୍କର ଗ୍ରାହକତା ବାସ୍ତବରେ ମୋତେ ବିମୁଗ୍ଧ କରିଛି । ସେଥିପାଇଁ ସେ ମୋର ଧନ୍ୟବାଦାର୍ହ ।

ଗ୍ରନ୍ଥଟି ଓଡ଼ିଶାର ସାହିତ୍ୟପ୍ରେମୀମାନଙ୍କ ଆଦର ପାଇ ପାରିଲେ, ଉଦୀୟମାନ ଯୁବକ-ଯୁବତୀମାନଙ୍କୁ ସାରଳା-ସାହିତ୍ୟର ଉତ୍ତରୋତ୍ତର ଗବେଷଣା ଦିଗରେ ସାମାନ୍ୟ ଉଦ୍‌ବୁଦ୍ଧ କରିପାରିଲେ ଶ୍ରମ ସାର୍ଥକ ହେବ ।

ଶ୍ରୀ ଦୀନବନ୍ଧୁ ରଥ, ମୁଖ୍ୟ ଅଧ୍ୟାପକ,
ଓଡ଼ିଆ ବିଭାଗ, କୋଅପରେଟିଭ କଲେଜ,
ଜାମସେଦପୁର, ବିହାର

# ସୂଚିପତ୍ର

# ଆଦ୍ୟାଭାସ

ଶାରଳା ଦାସଙ୍କ ମହାଭାରତ ଉପରେ ଅଦ୍ୟାବଧି ପୂର୍ଣ୍ଣାଙ୍ଗ ଆଲୋଚନା ହୋଇନାହିଁ । ଏ ସମ୍ପର୍କରେ ପଣ୍ଡିତ ଗୋପୀନାଥ ନନ୍ଦଙ୍କ 'ଭାରତ ଦର୍ପଣ', ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ 'ଶାରଳା ଚରିତ', ଶ୍ରୀମତୀ ସରଳା ଦେବୀଙ୍କ 'ସାରଳା ମହାଭାରତରେ ନାରୀ' ଓ ଡକ୍ଟର ମାୟାଧର ମାନସିଂହଙ୍କର 'ମାଟିର ମହାକବି ସାରଳା ଦାସ' ପୁସ୍ତକ ମିଳେ । ଶାରଳା ଦାସଙ୍କ ସମ୍ବନ୍ଧରେ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି, ଡକ୍ଟର କରୁଣାକର କର, ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଶ୍ରୀ ଗୌରୀକୁମାର ବ୍ରହ୍ମା, ଡକ୍ଟର ବଂଶୀଧର ମହାନ୍ତି, ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର, ଅଧ୍ୟାପକ ଶ୍ରୀ ଜୟକୃଷ୍ଣ ମିଶ୍ର ଓ ବିଶିଷ୍ଟ ଔପନ୍ୟାସିକ ଶ୍ରୀ ଗୋପୀନାଥ ମହାନ୍ତି ପ୍ରମୁଖ ଯେଉଁ ଆଲୋଚନାମୂଳକ ପ୍ରବନ୍ଧମାନ ଲେଖିଅଛନ୍ତି, ତାହା ଏଠାରେ ଉଲ୍ଲେଖଯୋଗ୍ୟ । ଏତଦ୍‌ଭିନ୍ନ ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ବିନାୟକ ମିଶ୍ର, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଡକ୍ଟର କୁଞ୍ଜବିହାରୀ ଦାଶ, ଶ୍ରୀ ସୁରେନ୍ଦ୍ର ମହାନ୍ତି ପ୍ରମୁଖ ବିଶିଷ୍ଟ ଲେଖକମାନେ ଶାରଳା ମହାଭାରତର ପ୍ରାସଙ୍ଗିକ ଆଲୋଚନା କରିଅଛନ୍ତି ।

ଉକ୍ତ ଗ୍ରନ୍ଥ ଓ ପ୍ରବନ୍ଧାଦିରେ କବିଙ୍କ ଜୀବନୀ, ବିଷୟବସ୍ତୁର ମୌଳିକତା ତଥା କାଳ ଉପରେ ଅଧିକ ଆଲୋଚନା କରାଯାଇଅଛି । ପଣ୍ଡିତ ନୀଳକଣ୍ଠ ଦାସ ପ୍ରାଚୀନ ଓଡ଼ିଶାର ସଂସ୍କୃତି ବିଚାର କଲାବେଳେ ଶାରଳା ମହାଭାରତର ପ୍ରାସଙ୍ଗିକ ଉଲ୍ଲେଖ କରିଛନ୍ତି । ପଣ୍ଡିତ ଗୋପୀନାଥ ନନ୍ଦ ତଦୀୟ ଗ୍ରନ୍ଥରେ ବିଷୟ-ବୈଷମ୍ୟ, ଭାଷା-ସାହିତ୍ୟ ଓ କବି-ପରିଚୟ ବିଚାର କରିଛନ୍ତି । ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଗ୍ରନ୍ଥ ମଧ୍ୟ ମୋଟାମୋଟି ଏହି ଧାରାକୁ ଅନୁସରଣ କରିଅଛି । ପଣ୍ଡିତ ନନ୍ଦ ଓ ରଥ ସେ ଯୁଗର ସମାଜ-ଧାରା ସମ୍ବନ୍ଧରେ କେତେକ ପ୍ରାସଙ୍ଗିକ ଆଲୋଚନା କରିଥିବାର ପରିଦୃଷ୍ଟ ହୁଏ । କିନ୍ତୁ ତାହା ସାମାଜିକ ଜୀବନର ପୂର୍ଣ୍ଣାଙ୍ଗ ଚିତ୍ର ନୁହେଁ । ଶ୍ରୀମତୀ ସରଳା ଦେବୀ କେବଳ ନାରୀ-ଚରିତ୍ର ଉପରେ ଆଲୋକପାତ କରିଯାଇଅଛନ୍ତି; ତାଙ୍କ ଲେଖାରେ ସେ କାଳର ସମାଜରେ ନାରୀଜାତିର ସ୍ଥାନ କଣ ଥିଲା, ତାହା ପ୍ରଦର୍ଶିତ ହୋଇନାହିଁ । ଡକ୍ଟର ବଂଶୀଧର ମହାନ୍ତି ତଦୀୟ ଗବେଷଣାମୂଳକ ପ୍ରବନ୍ଧରେ କେବଳ ଶାରଳା ମହାଭାରତରେ ନିହିତ

ନାଥଧର୍ମ-ସମ୍ବନ୍ଧୀୟ ତତ୍ତ୍ୱର ଆଲୋଚନା କରିଅଛନ୍ତି । ଧର୍ମ ସାମାଜିକ ଜୀବନର ଗୋଟିଏ ଦିଗ ମାତ୍ର । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଓ ପଣ୍ଡିତ ବିନାୟକ ମିଶ୍ର ଓଡ଼ିଆ ସାହିତ୍ୟର ଇତିହାସ ଲେଖିବାବେଳେ ଶାରଳାଙ୍କ ଯୁଗର ସମାଜ ସମ୍ବନ୍ଧରେ ପ୍ରାସଙ୍ଗିକ ତଥା ସଂକ୍ଷିପ୍ତ ବିବୃତ କରିଛନ୍ତି । ଡକ୍ଟର ମାୟାଧର ମାନସିଂହ ଓ ଶ୍ରୀ ସୁରେନ୍ଦ୍ର ମହାନ୍ତି ସେ କାଳର ସମାଜ ସମ୍ପର୍କରେ ସ୍ୱ-ସ୍ୱ ଗ୍ରନ୍ଥରେ କେତେକ ଆଲୋଚନା କରିଥିଲେହେଁ, ସେ ସମସ୍ତ ଆଲୋଚନା ପର୍ଯ୍ୟାପ୍ତ ତଥା ବିଧିବଦ୍ଧ ନୁହେଁ । ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଶାରଳା ଦାସଙ୍କ କାଳ ତଥା ତଦୀୟ ମହାଭାରତରେ ନିହିତ ଐତିହାସିକ ତଥ୍ୟ ସମ୍ବନ୍ଧରେ ବିଶେଷ ବିବୃତ କରି ଅଛନ୍ତି । ଶ୍ରୀ ଗୋପୀନାଥ ମହାନ୍ତି ସେହି କାଳ-ବିବୃତ ଉପରେ ଦୃଷ୍ଟି ଦେଇଛନ୍ତି । କିନ୍ତୁ ଶାରଳା ଦାସଙ୍କ ମହାଭାରତକୁ ଧରି ପଞ୍ଚଦଶ ଶତାବ୍ଦୀର ଉତ୍କଳୀୟ ସାମାଜିକ ଜୀବନର ବିଧିବଦ୍ଧ ପୂର୍ଣ୍ଣାଙ୍ଗ ଆଲୋଚନା କରିନାହାନ୍ତି କହିଲେ ଚଳେ ।

ତେଣୁ ଶାରଳା ମହାଭାରତକୁ ଭିତ୍ତିକରି ତତ୍କାଳୀନ ସମାଜଧାରାର ବିଧିସଙ୍ଗତ ପର୍ଯ୍ୟାପ୍ତ ଆଲୋଚନା ଏପର୍ଯ୍ୟନ୍ତ ହୋଇନାହିଁ ବୋଲି କୁହାଯାଇ-ପାରେ । ସୁତରାଂ ଏହି ନିବନ୍ଧରେ ଶାରଳା ଦାସଙ୍କ ମହାଭାରତରେ ଉତ୍କଳର ସାମାଜିକ ଜୀବନ କିପରି ପ୍ରକାଶ ପାଇଅଛି, ତାହାର ଏକ ବିସ୍ତୃତ ଆଲୋଚନା କରିବା ନିମିତ୍ତ ପ୍ରୟାସ ହୋଇଅଛି । ଏହା ପୂର୍ବରୁ ଯେଉଁ ଆଲୋଚକଗଣ ପ୍ରସଙ୍ଗକ୍ରମେ ସେ କାଳର ସାମାଜିକ ଜୀବନର ସୂଚନା ଦେଇଅଛନ୍ତି, ସେମାନେ ଏହି ନିବନ୍ଧର ପଥପ୍ରଦର୍ଶକ ।

ସାମାଜିକ ଜୀବନ ଅତି ବିସ୍ତୃତ । ଏହାର ଆଲୋଚନା କରିବାକୁ ଗଲାବେଳେ ବହୁ ଦିଗ ପ୍ରତି ଆଲୋଚକର ଦୃଷ୍ଟି ଆକୃଷ୍ଟ ହୁଏ । ସବୁ ବିଷୟର ସୁବିସ୍ତୃତ ଆଲୋଚନା କରିବାପାଇଁ ଦୀର୍ଘକାଳ ଆବଶ୍ୟକ । ସମୟ ତଥା ନିବନ୍ଧର କଳେବର ପ୍ରତି ସଚେତନ ରହି ଏଠାରେ କେବଳ କେତେଗୋଟି ଦିଗର ବିବୃତ କରାଯାଇଅଛି । ସେଗୁଡ଼ିକ ହେଲା—ବିବାହ, ନାରୀର ସ୍ଥାନ, ଶିକ୍ଷା, ଧର୍ମ, କୃଷି, ଶିଳ୍ପ, ବାଣିଜ୍ୟ, ସ୍ଥାପତ୍ୟ, ପର୍ବ-ପର୍ବାଣି, କ୍ରୀଡ଼ା-ବିନୋଦ, ପ୍ରସାଧନ ଓ ରାଜ୍ୟଶାସନ । ଶିଳ୍ପ, ବାଣିଜ୍ୟ ଓ ସ୍ଥାପତ୍ୟ ସମ୍ବନ୍ଧରେ କବି-ଲେଖାରେ ପର୍ଯ୍ୟାପ୍ତ ବିବରଣର ଅଭାବ ପରିଦୃଷ୍ଟ ହୁଏ । ତେଣୁ ପ୍ରତ୍ୟେକକୁ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ବିଭାଗରେ ରଖି ବିବୃତ କରିବାର ଆବଶ୍ୟକତା ଅନୁଭୂତ

ହୋଇନାହିଁ । ସୁତରାଂ ସେହି ଉପନୋଟିଯାକ ବିଷୟକୁ ଏକତ୍ର ଏକ ଅଧ୍ୟାୟରେ ସନ୍ନିବେଶ କରାଯାଇଅଛି । ସେହି କାରଣରୁ ପର୍ବ-ପର୍ବାଣି, କ୍ରୀଡ଼ା-ବିନୋଦ, ପ୍ରସାଧନ ଓ ରାଜ୍ୟଶାସନକୁ ମଧ୍ୟ ଗୋଟିଏ ଅଧ୍ୟାୟରେ ରଖାଯାଇଛି । ତୀର୍ଥସ୍ଥାନ, ପରିଚ୍ଛଦ, ଖାଦ୍ୟ ଓ ଦେବ-ଦେବୀ ସାମାଜିକ ବର୍ଣ୍ଣନାର ଅନ୍ୟତମ ଦିଗ । ସେସବୁ ଏଠାରେ ସ୍ୱତନ୍ତ୍ର ଭାବରେ ଆଲୋଚିତ ହୋଇନାହିଁ । କାରଣ ଧର୍ମ ବିଷୟ ବିଚାର କଲାବେଳେ ତୀର୍ଥକ୍ଷେତ୍ର ତଥା ଦେବଦେବୀଙ୍କ ବିଷୟ ଉଣା ଅଧିକେ କହିବାକୁ ପଡ଼ିଛି । ପର୍ବ-ପର୍ବାଣି ପ୍ରସଙ୍ଗରେ ଦେବ-ଦେବୀଙ୍କ କଥା ଉଲ୍ଲେଖ ମଧ୍ୟ କରିବାକୁ ହୋଇଛି । ଶିଳ୍ପକଥା କହିବାବେଳେ ପରିଚ୍ଛଦ ଓ ଭୂଷଣାଦିର ପ୍ରସଙ୍ଗ ଆସିଯାଇଅଛି । କୃଷି ପ୍ରସଙ୍ଗରେ ଅଳ୍ପ-ବହୁତ ଖାଦ୍ୟର ବିଷୟ ଦେବାକୁ ପଡ଼ିଅଛି ।

ଶାରଳା ଦାସଙ୍କ ଯୁଗ ସମ୍ବନ୍ଧରେ ଆଲୋଚନା କଲାବେଳେ ପ୍ରଧାନ ପ୍ରତିବନ୍ଧକ ହେଉଛି—ଶାରଳା ମହାଭାରତର ଶୁଦ୍ଧ ସଂସ୍କରଣର ଅଭାବ । ତେଣୁ ଏହି ନିବନ୍ଧରେ 'ରାଧାରମଣ ପୁସ୍ତକାଳୟ' ପ୍ରକାଶିତ ଗ୍ରନ୍ଥକୁ ବ୍ୟବହାର କରା-ଯାଇଅଛି । ଏତଦ୍‌ଭିନ୍ନ ପୁରୀର କମ୍ପାନୀଙ୍କ ପ୍ରକାଶିତ ଗ୍ରନ୍ଥକୁ ମଧ୍ୟ ଆବଶ୍ୟକ ସ୍ଥଳରେ ବିଚାରକୁ ନିଆଯାଇଛି । ଛପା ହୋଇଥିବା ଗ୍ରନ୍ଥମାନଙ୍କରେ ପ୍ରଭୂତ ପ୍ରକ୍ଷେପ ପରିଦୃଷ୍ଟ ହୁଏ । ସେଗୁଡ଼ିକ ପ୍ରଧାନତଃ ହେଉଛି—ବମ୍ବମାଳୀ ଉପାଖ୍ୟାନ, ଯୁବନାଶ୍ୱ ଚରିତ, କୁଠାରାସୁର ବଧ, ଶୋଭାବତୀ ପରିଣୟ, ସୁରେଖା ବିବାହ, ଉଷା ପରିଣୟ, ଉଲୂପୀ ବିବାହ, ସରଳା ବିବାହ, ଚିତ୍ରାଙ୍ଗଦା ପରିଣୟ, କାମାକ୍ଷୀ ବ୍ରତ, ମଙ୍ଗଳବାର ଓଷା, ବନଦୁର୍ଗା ଓଷା ଓ କୁନ୍ତଶେଖର ରାଜାଙ୍କ ଉପାଖ୍ୟାନ । ଏତଦ୍‌ଭିନ୍ନ ମୁଦ୍ରିତ ଗ୍ରନ୍ଥର ବହୁ ସ୍ଥିତି ଓ ପଂକ୍ତି ପୋଥିରେ ମିଳେ ନାହିଁ । ଆଲୋଚନାର ପ୍ରାମାଣିକତା ପାଇଁ ପୋଥି ସହିତ ଛପା ଗ୍ରନ୍ଥର ବିଷୟ ଓ ବର୍ଣ୍ଣନା-ମାନଙ୍କୁ ମିଳାଇ ଦେଖାଯାଇଅଛି । ପ୍ରବନ୍ଧର କଳେବରପ୍ରତି ଦୃଷ୍ଟି ରଖି ସବୁବେ ପୋଥିରୁ ସୂଚନା ବା ଉଦ୍ଧୃତାଂଶ ଦିଆଯାଇନାହିଁ, କେବଳ କେତେକ ପ୍ରଧାନ ପ୍ରଧାନ ସ୍ଥଳରେ ପୋଥିଗତ ପାଠର ସୂଚନା ପ୍ରଦାନ କରାଯାଇଅଛି । ପାଦ-ଟୀକାରେ ପ୍ରକ୍ଷେପ ଅଂଶର ସୂଚନା ଆବଶ୍ୟକ ସ୍ଥଳରେ ରହିଅଛି । ଉପସଂହାର କଲାବେଳେ ପ୍ରକ୍ଷେପ ଅଂଶଗୁଡ଼ିକୁ ବିଚାରକୁ ନିଆଯାଇଛି ।

ଶାରଳାଙ୍କ ବର୍ଣ୍ଣନା ସହିତ ତୁଳନା କରିବାପାଇଁ ସମସାମୟିକ ଗ୍ରନ୍ଥ ରୁଦ୍ରସୁଧାନିଧି, ରାମବିଭା, ଷୋଡ଼ଶ ଶତାବ୍ଦୀର ଆଦ୍ୟ ଓ ମଧ୍ୟଭାଗରେ ରଚିତ

ଜଗମୋହନ ରାମାୟଣ, ଭାଗବତ (ଜଗନ୍ନାଥ ଦାସ), କଳ୍ପଲତା ତଥା ପରିମଳା ପ୍ରଭୃତିକୁ ନିବନ୍ଧରେ ସ୍ଥାନ ଦିଆଯାଇଅଛି । ପରମ୍ପରାର ନିର୍ଦ୍ଦେଶ ନିମିତ୍ତ ହରିବଂଶ, ଲାବଣ୍ୟବତୀ ଓ କାଞ୍ଚୀକାବେରୀ ପ୍ରଭୃତି ଲେଖାରୁ ଦୃଷ୍ଟାନ୍ତମାନ ଗୃହୀତ ହୋଇଛି । ଶିଳା-ଶିଳ୍ପ ତଥା ଶିଳାଲେଖମାନଙ୍କର ସାହାଯ୍ୟ ମଧ୍ୟ ନିଆଯାଇଅଛି ।

ଏହି ନିବନ୍ଧ ପ୍ରସ୍ତୁତ କରିବା ଦିଗରେ ରାଞ୍ଚି କଲେଜର ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ଡକ୍ଟର କୃଷ୍ଣଚରଣ ସାହୁଙ୍କର ସାହାଯ୍ୟ ଓ ସହାନୁଭୂତି ସବୁଠାରୁ ଅଧିକ । ସେ ମହାଶୟ ତାଙ୍କ ପାଖରେ ଥିବା ମୂଳତାଳି ଓ ପଞ୍ଚପଲ୍ଲୀ ପୋଥି ଯୋଗାଇଦେଇଥିଲେ । ତେଣୁ ତାଙ୍କ ନିକଟରେ ମୁଁ ବହୁଭାବରେ ଋଣୀ ।

ନିବନ୍ଧର ପ୍ରସ୍ତୁତି ପଥରେ ଯେଉଁମାନେ ମୋତେ ବହୁ ମୂଲ୍ୟବାନ ପରାମର୍ଶ ଦେଇ ଅନୁଗୃହୀତ କରିଅଛନ୍ତି, ସେମାନେ ହେଲେ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ, ଡକ୍ଟର କୁଞ୍ଜବିହାରୀ ଦାଶ, ଡକ୍ଟର ବଂଶୀଧର ମହାନ୍ତି, ଡକ୍ଟର ନଟବର ସାମନ୍ତରାୟ, ଅଧ୍ୟାପକ ଶ୍ରୀ ମହେଶ୍ୱର ମିଶ୍ର, ଅଧ୍ୟାପକ ଶ୍ରୀ ଗୌରୀକୁମାର ବ୍ରହ୍ମା, ଅଧ୍ୟାପକ ଶ୍ରୀ ଜାନକୀବଲ୍ଲଭ ମହାନ୍ତି ଓ ଗବେଷକ ଶ୍ରୀ ସଦାଶିବ ରଥ ।

ପ୍ରବନ୍ଧ ପାଇଁ ମୁଖ୍ୟତଃ ଜାମସେଦପୁର କୋ-ଅପରେଟିଭ କଲେଜର ପୁସ୍ତକାଳୟ, ଘାଟଶୀଳା ମେମୋରିଆଲ୍ ଲାଇବ୍ରେରୀ, ସ୍ଥାନୀୟ ଉତ୍କଳ-ଆସୋସିଏସନ୍‌ର ଗୋପବନ୍ଧୁ ପୁସ୍ତକାଳୟ, ରେଭେନ୍‌ସା କଲେଜର କନିକା ଲାଇବ୍ରେରୀ, କଲିକତାର ଜାତୀୟ ପୁସ୍ତକାଳୟର ସାହାଯ୍ୟ ଗ୍ରହଣ କରିବାକୁ ପଡ଼ିଅଛି । ସେ ସମସ୍ତ ଅନୁଷ୍ଠାନର ପରିଚାଳକମାନେ ତେଣୁ ମୋର ଧନ୍ୟବାଦାର୍ହ ।

**ଡକ୍ଟର ଦୀନବନ୍ଧୁ ରଥ**
ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ
ଜାମସେଦପୁର କୋ-ଅପରେଟିଭ କଲେଜ

# ପୃଷ୍ଠଭୂମି

ଶାରଳା ଦାସ ତାଙ୍କର ସମସାମୟିକ ସମାଜକୁ ମହାଭାରତରେ ରୂପ ଦେବା ସ୍ୱାଭାବିକ । ତେଣୁ ସର୍ବପ୍ରଥମେ କବିଙ୍କର ଆବିର୍ଭାବ କାଳ ତଥା ତାଙ୍କ ମହାଭାରତର ରଚନା ସମୟ ନିରୂପଣ କରିବା ଆବଶ୍ୟକ ।

ଶାରଳା ଦାସଙ୍କ ଆବିର୍ଭାବ କାଳ ସମ୍ବନ୍ଧରେ ବିଭିନ୍ନ ମତ ପ୍ରକାଶ ପାଏ । ଡକ୍ଟର ସୁମିତ୍ରକୁମାର ଚଟର୍ଜି ତାହାଙ୍କୁ ୧୪ଶ ଶତାବ୍ଦୀର କବିଭାବରେ ଗ୍ରହଣ କରନ୍ତି । (୧) ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତରେ ଶାରଳାଦାସ ୧୪ଶ ଶତାବ୍ଦୀର ପ୍ରଥମ ଭାଗର କବି । (୨)

ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି ଦର୍ଶାଇଛନ୍ତି ଯେ, ଶାରଳା ନବମ ଶତାବ୍ଦୀର ପରବର୍ତ୍ତୀ କବି ନୁହନ୍ତି । (୩)

ପଣ୍ଡିତ କୃପାସିନ୍ଧୁ ମିଶ୍ର (୪), ପଣ୍ଡିତ ନୀଳକଣ୍ଠ ଦାସ, (୫) ପଣ୍ଡିତ ମୃତ୍ୟୁଞ୍ଜୟ ରଥ (୬) ଓ ପଣ୍ଡିତ ଗୋପୀନାଥ ନନ୍ଦ (୭) ପ୍ରମୁଖ ଆଲୋଚକମାନେ ଶାରଳାଦାସ ସୂର୍ଯ୍ୟବଂଶର ପ୍ରତିଷ୍ଠାତା ଗଜପତି କପିଳେନ୍ଦ୍ର ଦେବଙ୍କ କାଳରେ ଆବିର୍ଭୂତ ହୋଇଥିଲେ ବୋଲି ପ୍ରଦର୍ଶନ କରିଅଛନ୍ତି ।

ପଣ୍ଡିତ ବିନାୟକ ମିଶ୍ର (୮), ଡକ୍ଟର ହରେକୃଷ୍ଣ ମହତାବ (୯), ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ (୧୦), ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ (୧୧), ଡକ୍ଟର ବଂଶୀଧର ମହାନ୍ତି (୧୨) ଓ ଡକ୍ଟର କୃଷ୍ଣଚରଣ ସାହୁ (୧୩) ପ୍ରମୁଖ ଆଲୋଚକଗଣ କବିଙ୍କୁ ସୂର୍ଯ୍ୟବଂଶର ପ୍ରତିଷ୍ଠାତା ଗଜପତି କପିଳେନ୍ଦ୍ର ଦେବଙ୍କର ସମସାମୟିକ ବୋଲି ପ୍ରତିପାଦନ କରିଯାଇଅଛନ୍ତି । ଇତିହାସରୁ ଉପଲବ୍ଧ ହୁଏ ଯେ, କପିଳେନ୍ଦ୍ର ୧୪୩୪ ବା ୧୪୩୫ଠାରୁ ୧୪୬୭ ବା ୧୪୭୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।(୧୪) ତେଣୁ ଆଲୋଚକମାନେ ଶାରଳା ଦାସଙ୍କୁ ପଞ୍ଚଦଶ ଶତାବ୍ଦୀର କବିରୂପେ ଗ୍ରହଣ କରିଛନ୍ତି ।

ଆଭ୍ୟନ୍ତରୀଣ ପ୍ରମାଣ ବଳରେ ଶାରଳାଙ୍କର କାଳ ନିର୍ଣ୍ଣୟ କରିବାପାଇଁ ଗବେଷକମାନେ ପ୍ରୟାସ କରିଥିବାର ଦେଖାଯାଏ । କବି ସ୍ୱୀୟ ମହାଭାରତର ପ୍ରାରମ୍ଭରେ ଲେଖିଛନ୍ତି—"ପ୍ରଣମିତେ ଖଟଇ ଶ୍ରୀ କପିଳେଶ୍ୱର ମହାରାଜା"

(୧୪କ) । ଏହି ଉକ୍ତିରେ ଥିବା 'କପିଳେଶ୍ୱର' ପଦଟି ହିଁ ବିଭିନ୍ନ ମତବାଦର ମୂଳ । ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତରେ 'କପିଳେଶ୍ୱର' ପଦରେ ୧୪ଶ ଶତକର ଜନୈକ ରାଜା 'କପିଳ ନରସିଂହ'ଙ୍କୁ କବି ଲକ୍ଷ୍ୟ କରିଛନ୍ତି । ତାଙ୍କର ଏହି ମତ ସପକ୍ଷରେ ଯୁକ୍ତି ହେଲା— କପିଳ ନରସିଂହଙ୍କ ଅଭିଷେକ କାଳ ଓ ଦୁର୍ଯ୍ୟୋଧନଙ୍କ ଅଭିଷେକ କାଳ ସମାନ ଅଟେ । (୧୫) କିନ୍ତୁ ଶାରଳାଙ୍କ ଲେଖାରେ ବହୁ ତିଥି, ନକ୍ଷତ୍ର ଓ କରଣର ବର୍ଣ୍ଣନା ନିହିତ । ସେଥିରୁ କେବଳ ଦୁର୍ଯ୍ୟୋଧନଙ୍କ ଅଭିଷେକ କାଳକୁ ଗ୍ରହଣ କରିବାର ଯଥାର୍ଥତା ନାହିଁ । ଅନ୍ୟାନ୍ୟ ତିଥି ନକ୍ଷତ୍ରକୁ ପରୀକ୍ଷା ନ କରି ଦୁର୍ଯ୍ୟୋଧନଙ୍କର ଅଭିଷେକ କାଳ ଭିତ୍ତିରେ ଶାରଳା ଦାସଙ୍କର ସମୟ ନିର୍ଣ୍ଣୟ କରିବା ଭ୍ରମାତ୍ମକ ହେବ ।

ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଶାରଳା ମହାଭାରତର ଭାଷା ବିଚାର କରି କାଳ-ନିର୍ଣ୍ଣୟ କରିଛନ୍ତି । ତାଙ୍କ ମତରେ ଭକ୍ତକବି ବଳରାମ ଦାସଙ୍କ 'ଦାଣ୍ଡି ରାମାୟଣ' ଓ 'ଶାରଳା ମହାଭାରତ' ମଧ୍ୟରେ କାଳ ବ୍ୟବଧାନ ପ୍ରାୟ ଶହେ ବର୍ଷ । ଭାଷାକୁ ବିଚାର କରି ସେ ଏହି ମତ ପୋଷଣ କରନ୍ତି । (୧୬) ଭାଷାକୁ ଭିତ୍ତି କରି କବିଙ୍କର କାଳ-ନିର୍ଣ୍ଣୟ ସଠିକ ରୂପରେ ହୋଇପାରିବ ନାହିଁ । 'କେଶବ କୋଇଲି'ର ଭାଷା ଏତେ ମାର୍ଜିତ ଯେ, ତାହାକୁ ଭାଷାଦୃଷ୍ଟିରୁ ଭାଗବତଲେଖାର ପରେ ସ୍ଥାନ ଦିଆଯାଇପାରିବ । କିନ୍ତୁ ତାହା ଭାଗବତ ପୂର୍ବର ଲେଖା । ଓଡ଼ିଆ ଭାଷାର ବୈଜ୍ଞାନିକ ଆଲୋଚନା ନ ହେବା ପର୍ଯ୍ୟନ୍ତ ଭାଷାଦୃଷ୍ଟିରୁ କାଳନିର୍ଣ୍ଣୟ କରିବା ଯୁକ୍ତିଯୁକ୍ତ ହେବ ନାହିଁ ।

ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତିଙ୍କ ମତ ଆଦୌ ଗ୍ରହଣୀୟ ନୁହେଁ । ତାଙ୍କ ମତରେ କବି-ବର୍ଣ୍ଣିତ କପିଳେଶ୍ୱର 'ମାଧବ-ମାହାତ୍ମ୍ୟ' ଗ୍ରନ୍ଥ-ବର୍ଣ୍ଣିତ କପିଳ ସିଂହ । ନବମ ବା ଦଶମ ଶତକରେ କପିଳ ସିଂହ ନାମରେ ଜଣେ ରାଜା ଥିଲେ ବୋଲି ସେ ଅନୁମାନ କରନ୍ତି । (୧୭) ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଲେଖିଛନ୍ତି ଯେ, କପିଳ ନରସିଂହ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମ ଭାଗରେ ରାଜତ୍ୱ କରୁଥିଲେ । (୧୮ କ) ନବମ ବା ଦଶମ ଶତାବ୍ଦୀରେ ଏହି ନାମରେ କେହି ରାଜା ଉତ୍କଳ-ସିଂହାସନରେ ବସିଥିବାର ଜଣାଯାଏ ନାହିଁ । କବି ଯଦି ସେହି କାଳର ହୋଇଥାନ୍ତେ, ତେବେ ସେ ତତ୍କାଳୀନ କେଶରୀବଂଶୀୟ ରାଜାମାନଙ୍କ ମଧ୍ୟରୁ କାହାର ନାମ ଗ୍ରହଣ କରିଥାନ୍ତେ । ତାହା ନ କରି ଜଣେ ଅଜଣା ଅଶୁଣା ରାଜାଙ୍କ ନାମ ନେବା ଆଦୌ ସମ୍ଭବପର ନୁହେଁ । ଅବଶ୍ୟ ସେ

'ଯଯାତି'ଙ୍କ ନାମ ନେଇଅଛନ୍ତି । (୧୮ଖ) କିନ୍ତୁ ଏହି ନାମଟି ସଂସ୍କୃତ ମହାଭାରତରୁ ଗୃହୀତ । (୧୯) ପୁନଶ୍ଚ ଶାରଳା ମହାଭାରତର ଭାଷା କଦାପି ନବମ ବା ଦଶମ ଶତାବ୍ଦୀର ଭାଷା ନୁହେଁ ।

ରଘୁନାଥପୁର ତାମ୍ରଶାସନ (୨୦), କୃଷ୍ଣା ଜିଲ୍ଲାର ଅଭିଲେଖ (୨୧), ପୁରୀ ମନ୍ଦିରସ୍ଥ ଶିଳାଲିପି (୨୨) ଓ ନୃସିଂହନାଥ ମନ୍ଦିରର ଶିଳାଲେଖ (୨୩) ଆଦିରେ 'କପିଳେଶ୍ୱର' (କପିଳେସ୍ୱର) ନାମ ଥିବାବେଳେ କବି-ବର୍ଣ୍ଣିତ 'କପିଳେଶ୍ୱର'ଙ୍କୁ 'କପିଳ ନରସିଂହ' ବା 'କପିଳ ସିଂହ' ବୋଲି ଗ୍ରହଣ କରିବା ସମ୍ପୂର୍ଣ୍ଣ ଅଯୌକ୍ତିକ ।

ଐତିହାସିକ କେଦାରନାଥ ମହାପାତ୍ର କହନ୍ତି ଯେ, କୌଣସି ଏକ ମୁଦ୍ରିତ ଶାରଳା ମହାଭାରତରେ 'ଦୁର୍ଯ୍ୟୋଧନ ରାଜାର ଅଣତିରିଶ ଅଙ୍କ ଶ୍ରାହୀ' ପଦର ଉଲ୍ଲେଖ ଦେଖାଯାଏ । ଏହା କପିଳେଶ୍ୱରଙ୍କ ଅଙ୍କ ଶ୍ରାହୀ ରୂପରେ ଗ୍ରହଣ କଲେ ସମୟ ହେବ—୧୪୫୭ ରୁ ୧୪୫୮ ଖ୍ରୀଷ୍ଟାବ୍ଦ । କପିଳେନ୍ଦ୍ର ଦେବଙ୍କ ରାଜତ୍ୱର ଏହା ସ୍ମରଣୀୟ କାଳ । କାରଣ ଏହି ବର୍ଷ ପୂର୍ବରୁ ସେ ଦାକ୍ଷିଣାତ୍ୟ ଉପରେ ସାର୍ବଭୌମ କ୍ଷମତା ବିସ୍ତାର କରିଥିଲେ । ଉକ୍ତ ବର୍ଷରେ ସେ ଜାଗେଶ୍ୱରପୁର, ବେଲମାପୁର ଓ କପିଳେଶ୍ୱର ନାମରେ ଶାସନମାନ ମଧ୍ୟ ପ୍ରତିଷ୍ଠା କରିଥିଲେ । (୨୪)

ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ କପିଳେନ୍ଦ୍ର ତଥା ପୁରୁଷୋତ୍ତମ ଦେବଙ୍କ କାଳର ଐତିହାସିକ ଘଟଣା, ପୁରୁଷ ଓ ସ୍ଥାନ ସହିତ ଶାରଳା ମହାଭାରତର ବର୍ଣ୍ଣନାକୁ ମିଳାଇ ପ୍ରମାଣ କରିଛନ୍ତି ଯେ ଶାରଳା ଦାସ କପିଳେନ୍ଦ୍ର ଓ ପୁରୁଷୋତ୍ତମ ଦେବଙ୍କ ସମକାଳୀନ । (୨୫) ଡକ୍ଟର କୃଷ୍ଣଚରଣ ସାହୁ ମଧ୍ୟ ଏହି ମତର ପୋଷକତା କରନ୍ତି । (୨୬) ଉଭୟ ଆଲୋଚକଙ୍କ ମତ ଯଥାର୍ଥ ମନେହୁଏ । କାରଣ କବି ଚଉରତାର ସହିତ କପିଳେନ୍ଦ୍ର ତଥା ପୁରୁଷୋତ୍ତମଙ୍କ କାଳର ବହୁ କଥା ଉଲ୍ଲେଖ କରିଅଛନ୍ତି । ଏଠାରେ ତାହାର କେତେକ ଦୃଷ୍ଟାନ୍ତ ଦିଆଯାଇପାରେ ।

କପିଳେନ୍ଦ୍ରଦେବ ତଦୀୟ ରାଜତ୍ୱର ୪୧ ଅଙ୍କ ଅର୍ଥାତ୍ ୧୪୬୭ ଖ୍ରୀଷ୍ଟାବ୍ଦରେ ଜଗନ୍ନାଥଦେବଙ୍କୁ ବହୁ ଅଳଙ୍କାର ସମର୍ପଣ କରିଥିଲେ । (୨୭) କବି ତଦୀୟ ମହାଭାରତର ପ୍ରାରମ୍ଭରେ ଲେଖିଛନ୍ତି—"ପ୍ରଣମିତେ ଖଟଇ ଶ୍ରୀ କପିଳେଶ୍ୱର ମହାରାଜା ।" (୨୮) ଏହି ବର୍ଣ୍ଣନାରେ ସେ କପିଳେନ୍ଦ୍ରଦେବଙ୍କର

ଜଗନ୍ନାଥଙ୍କୁ ରତ୍ନାଳଙ୍କାର ଦାନ କରିବା ବିଷୟକୁ ଲକ୍ଷ୍ୟ କରିଛନ୍ତି ବୋଲି ଅନୁମାନ କରାଯାଇପାରେ ।

ଶାରଳା ଦାସଙ୍କ ବର୍ଣ୍ଣନାରେ ଥିବା ଯୁଧିଷ୍ଠିରଙ୍କ ଅଭିଷେକ ବୃତ୍ତାନ୍ତ ସହିତ ପୁରୁଷୋତ୍ତମଦେବଙ୍କ ଅଭିଷେକ କଥା ତୁଳନା କଲେ ଉଭୟ ବିଷୟର ସାଦୃଶ୍ୟ ଦେଖାଯାଇପାରେ । ଯୁଧିଷ୍ଠିର ପ୍ରଥମେ ଗୋମତୀ ନଦୀ ତୀରରେ ଅଭିଷିକ୍ତ ହେଲେ । (୨୯) ଇତିହାସରୁ ଜଣାଯାଏ, କୃଷ୍ଣା ନଦୀ ତୀରରେ କପିଳେନ୍ଦ୍ର-ଦେବଙ୍କର ମହାପ୍ରୟାଣ ହେଲା ଏବଂ ସେହି ନଦୀ ତୀରସ୍ଥ ଶିବିରରେ ପୁରୁଷୋତ୍ତମ ଦେବଙ୍କର ପ୍ରଥମ ଅଭିଷେକ ହୋଇଥିଲା । (୩୦) ମହାଭାରତ ସମରର ଅବସାନ ପରେ ଯୁଧିଷ୍ଠିରଙ୍କର ଅଭିଷେକ ପୁନଶ୍ଚ ତାଙ୍କର ରାଜଧାନୀରେ କରାଯାଇଥିଲା । (୩୧) ତଦ୍ରୂପ ପୁରୁଷୋତ୍ତମଙ୍କର ଅଭିଷେକ ରାଜଧାନୀରେ ରାଜକୀୟ ବିଧି ସହ ଅନୁଷ୍ଠିତ ହୋଇଥିଲା । (୩୨) ମନେହୁଏ, କବି ପୁରୁଷୋତ୍ତମ ଦେବଙ୍କର ଅଭିଷେକ ବୃତ୍ତାନ୍ତକୁ ଯୁଧିଷ୍ଠିରଙ୍କର ଅଭିଷେକ ବର୍ଣ୍ଣନା ଛଳରେ ପ୍ରକାଶ କରିଛନ୍ତି ।

ପୁରୁଷୋତ୍ତମଦେବଙ୍କର କାଞ୍ଚି ଅଭିଯାନର ପ୍ରଭାବ ମଧ୍ୟ କବି-ଲେଖନୀରେ ପ୍ରକାରାନ୍ତରରେ ରୂପ ଲାଭ କରିଅଛି । କାଞ୍ଚିର ରଜା ଗଣେଶଙ୍କର ଭକ୍ତ ଥିଲେ; କିନ୍ତୁ ଗଣେଶ ତାଙ୍କ ପ୍ରତି ବରଦାୟକ ହୋଇ ନ ଥିଲେ । ସେ ଗଣେଶଙ୍କର ପୂଜା କଲେହେଁ ଶେଷରେ ପୁରୁଷୋତ୍ତମଦେବଙ୍କ ଦ୍ୱାରା କାଞ୍ଚି ନଗର ଧ୍ୱଂସ ହେଲା ଏବଂ ଗଣେଶ ଉତ୍କଳକୁ ଆନୀତ ହେଲେ । (୩୩) ଇତିହାସ କହେ ଯେ, ପୁରୁଷୋତ୍ତମଦେବଙ୍କ ଆକ୍ରମଣ ଫଳରେ କାଞ୍ଚିର ମନ୍ଦିରମାନ ଧ୍ୱଂସ ହୋଇଯାଇ-ଥିଲା, ପୁଷ୍କରିଣୀମାନ ଜଳଶୂନ୍ୟ ହୋଇଥିଲା, ଉର୍ବର ଭୂମି ମରୁସ୍ଥଳୀରେ ପରିଣତ ହୋଇଥିଲା ଏବଂ ଗ୍ରାମମାନ ଜନଶୂନ୍ୟ ହୋଇଯାଇଥିଲା । (୩୪) ଶାରଳା ଦାସ କାଶୀପତି ରାଜା ବୃତ୍ତାନ୍ତରେ ଏତାଦୃଶ ଚିତ୍ର ଅଙ୍କନ କରିଅଛନ୍ତି । କାଶୀପତି ରାଜା ଗଣେଶଙ୍କୁ ମନ୍ଦିରରେ ସ୍ଥାପନ କରି ଆରାଧନା କଲେ । ଗଣେଶଙ୍କୁ ଧ୍ୟାନ କରି ସେ ଘୋର ତପସ୍ୟାରେ ନିମଗ୍ନ ହେଲେ; କିନ୍ତୁ ଗଣେଶ ତାଙ୍କୁ ଦୟା କଲେନାହିଁ; ବରଂ ଶେଷରେ କାଶୀପୁରକୁ ଧ୍ୱସ୍ତବିଧ୍ୱସ୍ତ କରିଦେଲେ—

"ସହସ୍ରେ ଯୋଦ୍ଧାଙ୍କୁ ଯେବେ ଭକ୍ଷ କରିଥିଲା
ଗଣନାଥ କୋପାନଳେ ଭସ୍ମ ହୋଇଗଲା !

ଶେଷ ସୈନ୍ୟ ଯାହା ଥିଲେ ପଳାଇଲେ ଡରେ
ରାଜ୍ୟରେ ଉଲ୍‌କାପାତ କଲେ ଲମ୍ପ୍ରାଦରେ ।
ଅଦଭୂତେ ସେ ରାଜ୍ୟରେ ଉପୁଜେ ଅରିଷ୍ଟି
ଗ୍ରାମ ତେଜି ପଳାଇଲେ ଲୋକେ ହୋଇ କଷ୍ଟି ।
ଅକଣ୍ଟକ ରାଜ୍ୟ ନଷ୍ଟ କରିଲେ କୌତୁକେ
ପୂତ୍ରପନ୍ନୀ ଘେନି ତହୁଁ ଚଳାଇଲେ ଥୋକେ ।" (୩୫)

ପୁରୁଷୋତ୍ତମ ଦେବଙ୍କ ସହିତ କାଞ୍ଚିରାଜାଙ୍କର ଯେଉଁ ଯୁଦ୍ଧ ହୋଇଥିଲା, ତାହାର ପ୍ରଭାବ ଅନ୍ୟତ୍ର ଦେଖାଯାଇପାରେ । ଇତିହାସରେ ଅଛି ଯେ, କାଞ୍ଚିରାଜା ଶାଲ୍ୱ ନରସିଂହ ବନ୍ଦୀ ହୋଇଥିଲେ ଏବଂ ହାତଯୋଡ଼ି କ୍ଷମା ପ୍ରାର୍ଥନା କରିଥିଲେ । (୩୬) ଅଶ୍ୱମେଧ ପର୍ବରେ ଅଛି ଯେ କାଞ୍ଚନଗରର ରାଜା ମହୀକେଶରୀ ଓ ଅର୍ଜୁନଙ୍କ ମଧ୍ୟରେ ଯୁଦ୍ଧ ହେଲା । କାଞ୍ଚିରାଜା ପରାଭୂତ ହେଲେ । ମନ୍ତ୍ରୀମାନେ ନିବେଦନ କରିବାରୁ ଅର୍ଜୁନ ତାଙ୍କର ଶିରଚ୍ଛେଦ କଲେ ନାହିଁ । ତାଙ୍କର ହାତ ବନ୍ଧାଗଲା ଏବଂ ସେ ସେହିପରି ଅବସ୍ଥାରେ ଅଶ୍ୱମେଧଯଜ୍ଞରେ ଯୋଗଦେବାପାଇଁ ଯାତ୍ରା କଲେ । (୩୭) 'ମହୀକେଶରୀ' ଓ 'ନରସିଂହ' ନାମ ମଧ୍ୟରେ ସୌସାଦୃଶ୍ୟ ବି ରହିଅଛି ।

ଇତିହାସରୁ ଜଣାଯାଏ ଯେ, ବିରୂପାକ୍ଷ ଦ୍ୱିତୀୟ ୧୪୬୫ ଠାରୁ ୧୪୮୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବିଜୟନଗରର ରାଜା ଥିଲେ । (୩୮) ସେ କପିଳେନ୍ଦ୍ର ତଥା ପୁରୁଷୋତ୍ତମଙ୍କର ସମସାମୟିକ ରାଜା । ଶାରଳା ଦାସ ତାହାଙ୍କ ନାମ ନେଇଛନ୍ତି । କବି କହନ୍ତି—ଗଗନପୁରର ରାଜା ବିରୂପାକ୍ଷଙ୍କ ସହିତ ଅଶ୍ୱମେଧଯଜ୍ଞ କାଳରେ ଅର୍ଜୁନଙ୍କର ଯୁଦ୍ଧ ହୋଇଥିଲା । (୩୯)

ଫକିର ଚମ୍ପତିଙ୍କ ଚକଡ଼ାରେ ପୁରୁଷୋତ୍ତମଙ୍କର ନଅଟିଗୋଟି ରାଣୀ ଥିଲେ ବୋଲି କୁହାଯାଇଛି । ସେଥିରେ ନବମ ରାଣୀଙ୍କର ନାମ କୃଷ୍ଣା ଦେବୀ । (୪୦) ଶାରଳା-ବର୍ଣ୍ଣିତ ରାଜା ଯଯାତିଙ୍କର ରାଣୀସଂଖ୍ୟା ମଧ୍ୟ ନଅ; ନବମ ରାଣୀଙ୍କର ନାମ ମଧ୍ୟ କୃଷ୍ଣା ଅଟେ । (୪୧) ଚକଡ଼ା ଅନୁସାରେ ରାଣୀମାନଙ୍କର ନାମ ହେଲା—ପାଟ ମହାଦେଈ, ଶ୍ରୀୟା ଦେବୀ, ପଦ୍ମଦେବୀ, ବେଦନା ଦେଈ, ମୋହନା ଦେବୀ, ଶ୍ରୀ ଇଳା ଦେବୀ, ହୀରା ଦେଈ, ସତ୍ୟଭାମା ଦେଈ ଓ କୃଷ୍ଣା ଦେବୀ । (୪୨) ପୁରୁଷୋତ୍ତମଦେବ କାଞ୍ଚି ରାଜକନ୍ୟା ପଦ୍ମାବତୀଙ୍କୁ ବିବାହ କରିଥିବା ଇତିହାସ-ପ୍ରସିଦ୍ଧ । ଚକଡ଼ାରୁ ଜଣାଯାଏ ଯେ, ପୁରୁଷୋତ୍ତମ ସ୍ୱୀୟ ରାଣୀମାନଙ୍କ ନାମରେ

ଗ୍ରାମମାନ ବସାଇଥିଲେ । ପଦ୍ମାଦେବୀଙ୍କ ନାମାନୁସାରେ 'ପଦ୍ମପୁର' ଗ୍ରାମ ସ୍ଥାପନା କରାଯାଇଥିଲା । (୪୩) ଶାରଳାଙ୍କ ବର୍ଣ୍ଣନାରେ ଏହି ନାମଟି ଦେଖାଯାଏ । ଦୁର୍ଯ୍ୟୋଧନଙ୍କର ଦୂତଗଣ ଅଜ୍ଞାତବାସରେ ଥିବା ପାଣ୍ଡବମାନଙ୍କର ଅନ୍ୱେଷଣ ପାଇଁ ଯେଉଁ ସ୍ଥାନମାନଙ୍କୁ ଯାଇଥିଲେ, ତନ୍ମଧ୍ୟରୁ ଗୋଟିଏ ସ୍ଥାନ ହେଉଛି ପଦ୍ମପୁର । (୪୪)

ରସ୍ଙ୍କିନଙ୍କ ଟୀକରୁ ଜଣାଯାଏ ଯେ, ପୁରୁଷୋତ୍ତମଦେବଙ୍କ କାଳରେ ଗଙ୍ଗାରେ ମହାବାରୁଣୀ ଯୋଗ ପଡ଼ିଥିଲା । ପୁରୁଷୋତ୍ତମ ଗଙ୍ଗାରେ ସ୍ନାନ କରିବା ଉଦ୍ଦେଶ୍ୟରେ ଯାତ୍ରା କରିଥିଲେ । (୪୫) କବିଙ୍କ ବର୍ଣ୍ଣନାରେ ମହାବାରୁଣୀ ଯୋଗର କଥା କହିତ :

"ଆଜ ଚଇତ୍ର କୃଷ୍ଣପକ୍ଷ ତ୍ରୟୋଦଶୀ
ମହାବାରୁଣୀ ଯୋଗ ଗଙ୍ଗାରେ ପଡ଼ୁଛି ।" (୪୬)

ଶାରଳା ଦାସଙ୍କ ଗ୍ରନ୍ଥର ଆରମ୍ଭରେ ପୁରୁଷୋତ୍ତମ ଦେବଙ୍କ ରାଜ୍ୟଲାଭର ସୂଚନା ମିଳେ । ଯଯାତି ଉପାଖ୍ୟାନରେ କବି କହନ୍ତି ଯେ, ଯଯାତିଙ୍କର ଓଡ଼ିଶୀ ଭାର୍ଯ୍ୟାର ସନ୍ତାନ ଓଡ୍ର ରାଷ୍ଟ୍ରମଣ୍ଡଳ ଲଭି କଲେ । (୪୭) ଇତିହାସରୁ ଜଣାଯାଏ ଯେ, ପୁରୁଷୋତ୍ତମଦେବ କପିଳେନ୍ଦ୍ରଦେବଙ୍କ ଉପପତ୍ନୀର ପୁତ୍ର ଥିଲେ । (୪୮) 'କାଞ୍ଚୀକାବେରୀ' ପୁସ୍ତକରେ ପୁରୁଷୋତ୍ତମ କପିଳେନ୍ଦ୍ରଦେବଙ୍କର 'କୁଳଶୀଳ ପୁତ୍ର'; ଅର୍ଥାତ୍ ରାଜକନ୍ୟାଙ୍କ ଗର୍ଭଜାତ ପୁତ୍ର ନୁହନ୍ତି ବୋଲି ମଧ୍ୟ କଥିତ ହୋଇଅଛି :

"ଆମ୍ଭେ ସିନା ରାଜାଙ୍କର କୁଳଶୀଳ ପୁତ୍ର
ସେ ଯେବେ ରାଜା ହୋଇବ ବୁଡ଼ାଇବ ଗୋତ୍ର ।" (୪୯)

ଶାରଳା ଦାସ ମହାଭାରତ-ଲେଖା କେବେ ଆରମ୍ଭ କରିଥିଲେ ତାହା ସଠିକ ଭାବରେ ନିର୍ଣ୍ଣୟ କରିବା କଠିନ । ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ମତରେ କବି ୧୪୬୫ ଖ୍ରୀଷ୍ଟାବ୍ଦ ବେଳକୁ ଲେଖା ଆରମ୍ଭ କରିସାରିଥିଲେ । (୫୦) ଡକ୍ଟର ବଂଶୀଧର ମହାନ୍ତିଙ୍କ ମତ ଯେ, ଶାରଳା ଦାସ କପିଳେନ୍ଦ୍ରଙ୍କ ରାଜତ୍ୱର ଶେଷକାଳରେ ମହାଭାରତ ଲେଖିଥିଲେ । (୫୧) ଡକ୍ଟର କୃଷ୍ଣଚରଣ ସାହୁ କହନ୍ତି—ନିଶ୍ଚିତଭାବରେ ଶାରଳାଙ୍କ ମହାଭାରତ ୧୪୬୬ ଖ୍ରୀଷ୍ଟାବ୍ଦଠାରୁ ୧୪୭୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ରଚିତ ହୋଇଥିଲା । (୫୨)

ପୁରୁଷୋତ୍ତମଦେବଙ୍କ ଅଭିଷେକର ଅବ୍ୟବହିତ କାଳ ପରେ କବି ଲେଖା ଆରମ୍ଭ କରିଥିଲେ ବୋଲି ଅନୁମିତ ହେଉଅଛି । କାରଣ ମହାଭାରତର ଆରମ୍ଭରେ

ପୁରୁଷୋତ୍ତମଦେବଙ୍କର ରାଜ୍ୟଲାଭର ସୂଚନା ଅଛି । (୫୩) ଅଧିକନ୍ତୁ ୧୪୬୭ ଖ୍ରୀଷ୍ଟାବ୍ଦରେ ଜଗନ୍ନାଥଙ୍କୁ କପିଳେନ୍ଦ୍ରଙ୍କର ରତ୍ନାଳଙ୍କାର ଦାନ ଘଟଣାର ସୂଚନା 'ପ୍ରଣମିତେ ଖଟଇ ଶ୍ରୀ କପିଳେଶ୍ୱର ମହାରାଜା' ଉକ୍ତିରେ ନିହିତ । ପୁରୁଷୋତ୍ତମ-ଦେବଙ୍କ ରାଜ୍ୟଲାଭର କାଳ ୧୪୬୭ ଖ୍ରୀଷ୍ଟାବ୍ଦ । (୫୪) କାହାରି କାହାରି ମତରେ ଏହା ୧୪୭୦ ଖ୍ରୀଷ୍ଟାବ୍ଦ । (୫୪ଅ) ସୁତରାଂ ଅନୁମିତ ହୁଏ ଯେ ଶାରଳା ଦାସ ତାଙ୍କର ମହାଭାରତ ୧୪୬୭ ଖ୍ରୀଷ୍ଟାବ୍ଦଠାରୁ ୧୪୭୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଆରମ୍ଭ କରିଥିଲେ ।

କବି ତାଙ୍କର ରଚନା କାଞ୍ଚି-ଅଭିଯାନ ପରେ ଶେଷ କରିଥିଲେ ବୋଲି ଅନୁମାନ କରାଯାଇପାରେ; କାରଣ ମହାକାବ୍ୟଟିର ଶେଷାଂଶରେ ଅଶ୍ୱମେଧ ପର୍ବରେ ଅର୍ଜୁନ-ମହାକେଶରୀ ଯୁଦ୍ଧ ବିଷୟ ନିହିତ । (୫୫) ଏହା କାଞ୍ଚିଯୁଦ୍ଧ ଓ କାଞ୍ଚି ରାଜାଙ୍କର ଶୋଚନୀୟ ପରାଜୟର କାହାଣୀ ଅଟେ । କାଞ୍ଚି ଅଭିଯାନ ପ୍ରଥମ ଥର ୧୪୭୪ ଖ୍ରୀଷ୍ଟାବ୍ଦରେ ଏବଂ ଦ୍ୱିତୀୟ ଥର ୧୪୭୫ ଖ୍ରୀଷ୍ଟାବ୍ଦରେ ସଂଘଟିତ ହୋଇଥିଲା । (୫୬) ତେଣୁ ମନେହୁଏ ଯେ, ଶାରଳା ଦାସ ୧୪୭୫ ଖ୍ରୀଷ୍ଟାବ୍ଦର ଅବ୍ୟବହିତ କାଳ ପରେ ତାଙ୍କର ଲେଖା ସଂପୂର୍ଣ୍ଣ କରିଥିଲେ ।

ସାମାଜିକ ଜୀବନ ସହିତ ରାଜନୈତିକ ଅବସ୍ଥା ସମ୍ବନ୍ଧାନ୍ୱିତ । ସାମାଜିକ ଜୀବନର ସ୍ଥିରତା ତଥା ବିକାଶ ପାଇଁ ରାଜନୈତିକ ପରିସ୍ଥିତି ପୃଷ୍ଠଭୂମି ସୃଷ୍ଟି କରିଥାଏ । ତେଣୁ ଏଠାରେ ଭାରତ ତଥା ଉତ୍କଳର ତତ୍କାଳୀନ ରାଜନୈତିକ ପରିସ୍ଥିତିର ସିଂହାବଲୋକନ ଆବଶ୍ୟକ ।

ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ଭାରତରୁ ତୁର୍କୀ ସାମ୍ରାଜ୍ୟ ଲୋପ ପାଏ । ଭାରତବର୍ଷ ପୁଣି ଥରେ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହୁଏ । ଏହିପରି ଅବସ୍ଥା ପ୍ରାୟ ଦୁଇଶହ ପଚିଶ ବର୍ଷ ରହିବାପରେ ୧୬ଶ ଶତାବ୍ଦୀର ମଧ୍ୟଭାଗରେ ମୋଗଲମାନେ ପୁଣି ଏକ ସ୍ଥିର ଓ ସ୍ଥାୟୀ ସାମ୍ରାଜ୍ୟ ଗଠନ କରନ୍ତି । ଏହି ଦୁଇଶହ ପଚିଶ ବର୍ଷକାଳ ମଧ୍ୟରେ ଦିଲ୍ଲୀର ସୁଲତାନୀ ନାମତଃ ତୁର୍କୀ ସାମ୍ରାଜ୍ୟର ପ୍ରତୀକଭାବରେତିଷ୍ଠି ରହିଥିଲା । ତୈମୁରଲଙ୍ଗଙ୍କ ଆକ୍ରମଣ ୧୪ଶ ଶତାବ୍ଦୀର ଶେଷ ବେଳକୁ ତାହାକୁ କେବଳ ଏକ ଛାୟାରେ ପରିଣତ କରିଦେଲା । ଏହି ଧ୍ୱଂସଲୀଳା ମଧ୍ୟରୁ ମୁଖ୍ୟତଃ ଛ'ଗୋଟି ପ୍ରଭାବଶାଳୀ ରାଜ୍ୟ ସୃଷ୍ଟି ହୋଇଥିଲା । ସେମାନଙ୍କ ମଧ୍ୟରୁ ଦାକ୍ଷିଣାତ୍ୟର ବାହାମନୀ ରାଜ୍ୟ, ପଶ୍ଚିମର ଗୁଜୁରାଟ ଓ ପୂର୍ବର ବଙ୍ଗ ଦେଶ ମୁସଲମାନମାନଙ୍କଦ୍ୱାରା ଶାସିତ ହେଉଥିଲା । ଏମାନଙ୍କର ପ୍ରତିଦ୍ୱନ୍ଦ୍ୱୀ

ଥିଲେ—ହିନ୍ଦୁରାଜ୍ୟ ଦାକ୍ଷିଣାତ୍ୟର ବିଜୟନଗର, ରାଜପୁତାନାର ମେୱାର, ପୂର୍ବୋପକୂଳର ଓଡ଼ିଶା । ଏମାନଙ୍କ ବ୍ୟତୀତ ମୁସଲମାନଶାସିତ ରାଜ୍ୟ ଦିଲ୍ଲୀ, ଜୌନପୁର ଓ ମାଳବ ସାମୟିକ ଭାବରେ ଭାରତୀୟ ରାଜନୀତିରେ ପ୍ରଭାବ ପକାଉଥିଲେ । ଏହି ସ୍ୱାଧୀନ ରାଜ୍ୟମାନଙ୍କ ମଧ୍ୟରେ କ୍ରମାଗତ ଶତ୍ରୁତା ଓ ଯୁଦ୍ଧ ଲାଗିରହିଥିଲା । ସାଧାରଣତଃ ଧର୍ମକୁ ମୂଳକରି କଳହ ଜାତ ହେଉଥିଲା । ପଶ୍ଚିମରେ ମେୱାର, ଗୁଜୁରାଟ ଓ ମାଳବ ମଧ୍ୟରେ ସର୍ବଦା ଯୁଦ୍ଧବିଗ୍ରହ ଲାଗିରହିଥିଲା । ଦକ୍ଷିଣରେ ବିଜୟନଗର ଓ ବାହାମନୀ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଦେଖାଦେଇଥିଲା । ଓଡ଼ିଶା ରାଜ୍ୟ ଦକ୍ଷିଣର ବିଜୟନଗର ଓ ବାହାମନୀ ତଥା ପୂର୍ବର ବଙ୍ଗଳା ଦେଶ ସହିତ ବିବାଦରେ ଲିପ୍ତ ଥିଲା । ଏହାଫଳରେ ପ୍ରତ୍ୟେକ ରାଷ୍ଟ୍ରର ଶକ୍ତି କ୍ରମଶଃ ହ୍ରାସ ହୋଇଆସୁଥିଲା । ତେଣେ ଦିଲ୍ଲୀର ସୁଲତାନଙ୍କ ରାଜ୍ୟରେ ଆଭ୍ୟନ୍ତରୀଣ ବିବାଦ ଦେଖାଦେଇଥିଲା । ଲୋଦି ରାଜାମାନେ ସର୍ବଦା ଉତ୍ତର-ପଶ୍ଚିମରେ ଥିବା ରାଜ୍ୟମାନଙ୍କ ସହ ଯୁଦ୍ଧରତ ରହୁଥିଲେ । ଫଳତଃ ମୋଗଲ-ଆକ୍ରମଣପାଇଁ ପଥ ପ୍ରସ୍ତୁତ ହେବାକୁ ଲାଗିଥିଲା । (୫୭)

ସ୍ଥୂଳତଃ ସେ କାଳରେ ଭାରତବର୍ଷରେ ରାଜନୈତିକ ଅସ୍ଥିରତା ସୃଷ୍ଟି ହୋଇଥିଲା । ଦେଶରେ କେନ୍ଦ୍ରୀୟ ଶକ୍ତିର ଅଭାବ ଅନୁଭୂତ ହେଉଥିଲା । ସାରା ଉତ୍ତର-ଭାରତ ମୁସଲମାନ ଶାସନର ଅଧୀନରେ ଥିଲା । ମୁସଲମାନ ଧର୍ମ ଓ ସଂସ୍କୃତିର ପ୍ରଭାବ ହିନ୍ଦୁମାନଙ୍କ ଉପରେ ଏବଂ ହିନ୍ଦୁଧର୍ମ ତଥା ସଂସ୍କୃତିର ପ୍ରଭାବ ମୁସଲମାନମାନଙ୍କ ଉପରେ ପଡ଼ିଥିଲା । (୫୮)

ଦିଲ୍ଲୀରେ ସେତେବେଳେ ସୟଦ ଓ ଲୋଦିବଂଶର ସୁଲତାନମାନେ ରାଜତ୍ୱ କରୁଥିଲେ । ମହମ୍ମଦ ଶାହ ୧୪୩୫ଠାରୁ ୧୪୫୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ (୫୯), ଆଲମ ଶାହ ୧୪୪୫ଠାରୁ ୧୪୫୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ (୬୦), ବାହାଲୋଲ ଲୋଦି ୧୪୫୧ ଠାରୁ ୧୪୮୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ (୬୧) ଏବଂ ସିକନ୍ଦର ଲୋଦି ୧୪୮୯ ଠାରୁ ୧୫୧୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ (୬୨) ଦିଲ୍ଲୀର ସୁଲତାନ ହୋଇଥିଲେ । ମହମ୍ମଦ ଶାହ ଦୁର୍ବଳ ଶାସକ ଥିଲେ । (୬୩) ତାଙ୍କର ପୁତ୍ର ଆଲମ ଶାହ ମଧ୍ୟ ଦୁର୍ବଳ ବ୍ୟକ୍ତି ଥିଲେ । ସେ ବିପ୍ଳବୀ ଅମୀରମାନଙ୍କୁ ଦମନ କରିପାରିଲେ ନାହିଁ । ତାଙ୍କ ସମୟରେ ବାହାଲୋଲ ଲୋଦି ଦିଲ୍ଲୀ ସିଂହାସନ ଅଧିକାର କରିଥିଲେ । (୬୪) ବାହାଲୋଲ ଲୋଦି ବହୁ ରାଜ୍ୟଜୟ କରି ନିଜ ରାଜ୍ୟର ସୀମା ବୃଦ୍ଧି କରିପାରିଥିଲେ । (୬୫) ସିକନ୍ଦର ଲୋଦି ବିହାର ପ୍ରଭୃତି ଜୟ କରି ନିଜ ରାଜ୍ୟର ସୀମା ବଙ୍ଗଳାର ପଶ୍ଚିମ ପ୍ରାନ୍ତ ପର୍ଯ୍ୟନ୍ତ ବୃଦ୍ଧି କରିଥିଲେ । (୬୬)

ମୁସଲମାନ ଶାସକଗଣ ହିନ୍ଦୁମାନଙ୍କ ପ୍ରତି ଉତ୍ତମ ବ୍ୟବହାର କରୁ ନ ଥିଲେ ବୋଲି ଉପଲବ୍ଧ ହୁଏ । ସେମାନଙ୍କ ରାଜତ୍ୱକାଳରେ ହିନ୍ଦୁ ସମାଜ ଦୁର୍ବଳ ଓ ମ୍ରିୟମାଣ ହୋଇପଡ଼ିଥିଲା । ହିନ୍ଦୁ ଜାତି ପାଇଁ ଏହି ଯୁଗ ସଙ୍କଟ ଓ ଅଶାନ୍ତିର ସମୟ ଥିଲା । ସେମାନେ ପରାଧୀନ ହୋଇ ବାସ କରୁଥିଲେ । କେତେକ ଉଦାରମନା ସୁଲତାନଙ୍କୁ ଛାଡ଼ିଦେଲେ ଅଧିକାଂଶ ସୁଲତାନ ହିନ୍ଦୁମାନଙ୍କ ଉପରେ ଅତ୍ୟାଚାର ହିଁ କରିଯାଇଛନ୍ତି ।

ବାହାଲୋଲ ଲୋଦି ହିନ୍ଦୁମାନଙ୍କ ପ୍ରତି ଭଲ ବ୍ୟବହାର ପ୍ରଦର୍ଶନ କରୁଥିଲେ । ସେ ରାଜା କୀର୍ତ୍ତିସିଂହ ଓ ମାନସିଂହଙ୍କ ସହିତ ବନ୍ଧୁତ୍ୱ ରଖିଥିଲେ । ନିଜେ ମଧ୍ୟ ହିନ୍ଦୁ ରମଣୀ ବିବାହ କରିଥିଲେ । (୬୭) କିନ୍ତୁ ତାଙ୍କର ପୁତ୍ର ସିକନ୍ଦର ଧୋଲପୁର ଓ ଅବନ୍ତୀଗଡ଼ ପ୍ରଭୃତି ସ୍ଥାନ ଜୟ କରି ସେଠାକାର ହିନ୍ଦୁ ମନ୍ଦିରମାନଙ୍କୁ ଧୂଳିସାତ୍ କରି ଦେଇଥିଲେ । (୬୮) ସୁଲତାନମାନଙ୍କର ନୀତି ଥିଲା—ହିନ୍ଦୁ ମନ୍ଦିର ଓ ଦେବମୂର୍ତ୍ତିର ଧ୍ୱଂସସାଧନ । ଫିରୋଜ ତୋଗଲକ ଓ ସିକନ୍ଦର ଲୋଦି ପବିତ୍ର ନଦୀମାନଙ୍କରେ ଥିବା ଘାଟରେ ହିନ୍ଦୁମାନଙ୍କର ସ୍ନାନ କରିବା ମଧ୍ୟ ନିଷେଧ କରୁଥିଲେ । ହିନ୍ଦୁମାନଙ୍କ ଉପରେ ଜିଜିୟା ନାମକ କର ଧାର୍ଯ୍ୟ କରାଯାଇଥିଲା । ମୁସଲମାନ ଧର୍ମ ଗ୍ରହଣ କଲେ ଲୋକେ ଏହି କରରୁ ଅବ୍ୟାହତି ଲାଭ କରୁଥିଲେ । (୬୯) ସେମାନଙ୍କ ରାଜତ୍ୱକାଳରେ ନୂତନ ଗୃହ ନିର୍ମାଣ, ପୁରାତନ ଗୃହର ପୁନର୍ଗଠନ, ଅଶ୍ୱାରୋହଣ, ଖଡ଼୍ଗାଦି ଧାରଣ ଓ ମୃତ ବ୍ୟକ୍ତିପାଇଁ ଉଚ୍ଚସ୍ୱରରେ କ୍ରନ୍ଦନ ହିନ୍ଦୁମାନଙ୍କ ପକ୍ଷରେ ମନା ଥିଲା । (୭୦)

ସୁଲତାନଙ୍କ ଅମଳରେ ହିନ୍ଦୁମାନଙ୍କର ଆର୍ଥିକ ଅବସ୍ଥା ଅତୀବ ଶୋଚନୀୟ ହୋଇପଡ଼ିଥିଲା । ଉଚ୍ଚ ପରିବାରର ହିନ୍ଦୁମାନେ ଏପରି ଅସହାୟ ଓ ଦରିଦ୍ରାବସ୍ଥା ପ୍ରାପ୍ତ ହୋଇଥିଲେ ଯେ, ସେମାନଙ୍କ ପରିବାରର ମହିଳାମାନଙ୍କୁ ମୁସଲମାନମାନଙ୍କ ଗୃହରେ ଦାସୀତ୍ୱ ଅବଲମ୍ବନ କରିବାକୁ ପଡ଼ୁଥିଲା । ହିନ୍ଦୁମାନଙ୍କ ଘରେ ସୁନା-ରୁପାର ନାମ ସୁଦ୍ଧା ନ ଥିଲା । ସେମାନେ ଆର୍ଥିକ ଦୁର୍ଗତିର ଶିକାର ହୋଇ ମୁଣ୍ଡ ଉଠାଇ ଠିଆହୋଇ ପାରୁନଥିଲେ । (୭୧)

ଭାରତର ଅଧିକାଂଶ ଅଞ୍ଚଳ ମୁସଲମାନମାନଙ୍କ ଶାସନାଧୀନରେ ରହିଥିବାବେଳେ ଉତ୍କଳ ସ୍ୱାଧୀନ ହିନ୍ଦୁରାଜ୍ୟ ରୂପରେ ସସମ୍ମାନେ ମୁଣ୍ଡ ଟେକି ରହିଥିଲା । ଏହି କାଳରେ ପ୍ରବଳପରାକ୍ରାନ୍ତ ସୂର୍ଯ୍ୟବଂଶୀୟ ଗଜପତି ସମ୍ରାଟ୍‌ମାନେ ଉତ୍କଳଖଣ୍ଡରେ ରାଜତ୍ୱ କରୁଥିଲେ । କପିଳେନ୍ଦ୍ରଦେବ ସୂର୍ଯ୍ୟବଂଶର ପ୍ରତିଷ୍ଠାତା

ଥିଲେ ଏବଂ ୧୪୩୫ ଠାରୁ ୧୪୬୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । (୭୨) କେହି କେହି ସେ ୧୪୭୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ବୋଲି ମଧ୍ୟ ମତ ଦେଇଛନ୍ତି । (୭୩) ସେ ଯାହା ହେଉ ନା କାହିଁକି, କପିଳେନ୍ଦ୍ରଦେବ ବୀର ଥିଲେ । ତାଙ୍କର ପ୍ରତାପରେ ଦକ୍ଷିଣ-ଭାରତ ଉପରେ ପ୍ରକମ୍ପିତ ହେଉଥିଲା । ସେ ବଙ୍ଗ ଓ ମାଳବର ସୁଲତାନମାନଙ୍କୁ ପରାସ୍ତ କରିଥିଲେ । (୭୪) ଦକ୍ଷିଣର ଉଦୟଗିରି, ଚନ୍ଦ୍ରଗିରି, ନେଲୋର ଓ କୋଣ୍ଡାପିଲି ତାଙ୍କର ହସ୍ତଗତ ହୋଇଥିଲା । (୭୫) ସେ ବିଜୟନଗର ଓ ବାହାମନୀର ଶାସକଙ୍କୁ ମଧ୍ୟ ପରାଭୂତ କରିଥିଲେ । (୭୬) କପିଳେନ୍ଦ୍ରଦେବ ବାହାମନୀର ରାଜଧାନୀ ଜୟ କରି 'କଳବର୍ଗେଶ୍ୱର' ଉପାଧି ଧାରଣ କରିଥିବାର ଜଣାଯାଏ । (୭୭) ତାଙ୍କର ସାମ୍ରାଜ୍ୟ ଗଙ୍ଗା ନଦୀର ନିମ୍ନ ଅବବାହିକାଠାରୁ କାବେରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । (୭୮) ଷ୍ଟର୍ଲିଂଙ୍କ ମତରେ କପିଳେନ୍ଦ୍ରଦେବଙ୍କ ସାମ୍ରାଜ୍ୟ ସେତୁବନ୍ଧ ରାମେଶ୍ୱର ପର୍ଯ୍ୟନ୍ତ ବ୍ୟାପିଥିଲା । (୭୯)

କପିଳେନ୍ଦ୍ରଦେବଙ୍କ ମୃତ୍ୟୁପରେ ତାଙ୍କର ପୁତ୍ର ପୁରୁଷୋତ୍ତମଦେବ ସିଂହାସନ ଆରୋହଣ କରନ୍ତି । ସେ ୧୪୯୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିବାର ଜଣାଯାଏ । (୮୦) ଏହାଙ୍କ ସମୟର ପ୍ରଧାନ ଘଟଣା ହେଉଛି—କାଞ୍ଚି-ଯୁଦ୍ଧ । ପୁରୁଷୋତ୍ତମଦେବ ୧୪୭୦ ଖ୍ରୀଷ୍ଟାବ୍ଦରେ (୮୧) କାଞ୍ଚି ରାଜା ଶାଲ୍ୱ ନରସିଂହଙ୍କୁ ପରାସ୍ତ କରି ଉଦୟଗିରି ରାଜ୍ୟ ଦଖଲ କରିଥିଲେ । ସେ କାଞ୍ଚି ରାଜକନ୍ୟା ରୂପାମ୍ବିକା ବା ପଦ୍ମାବତୀଙ୍କୁ ବିବାହ କରିଥିବାର ଜଣାଯାଏ । (୮୨) ସେ ପୁନଶ୍ଚ ୧୪୮୯ ଖ୍ରୀଷ୍ଟାବ୍ଦରେ ଶାଲ୍ୱ ନରସିଂହଙ୍କୁ ପରାସ୍ତ କରି କାଞ୍ଚି ବିଜେତା ନାମ ଧାରଣ କରିଥିଲେ । (୮୩) ପୁରୁଷୋତ୍ତମଦେବ ଗୋଦାବରୀ ଓ କୃଷ୍ଣା ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳରୁ ବାହାମନି ରାଜ୍ୟର ପ୍ରଭାବ ଦୂର କରି 'କୋଣ୍ଡବିଡ଼ୁ' ଦୁର୍ଗ ଅଧିକାର କରିଥିଲେ । (୮୪)

କପିଳେନ୍ଦ୍ରଦେବ ଓ ପୁରୁଷୋତ୍ତମଦେବ ଉଭୟେ ସୁଶାସକ ଥିଲେ । ଯୁଦ୍ଧବିଗ୍ରହ ଲାଗିଥିଲେ ମଧ୍ୟ ସେମାନେ ଶାସନକାର୍ଯ୍ୟରେ ଅବହେଳା କରି ନଥିଲେ । ସେମାନଙ୍କ କାଳରେ ରାଜକାର୍ଯ୍ୟ ୩୬ ଗୋଟି ବିଭାଗରେ ବିଭକ୍ତ ଥିଲା । ପ୍ରତ୍ୟେକ ବିଭାଗରେ ଜଣେ ଜଣେ ମନ୍ତ୍ରୀ ରହି କାର୍ଯ୍ୟ ଚଳାଉ-ଥିଲେ । ଗଜପତିମାନଙ୍କ ରାଜତ୍ୱ କାଳରେ ୧୬ ଜଣ ମନ୍ତ୍ରୀ ଓ ୭୨ ଜଣ ସହକାରୀ ମନ୍ତ୍ରୀ ଥିବାର ଜଣାଯାଏ । ସମଗ୍ର ରାଜ୍ୟ ମୁଖ୍ୟତଃ ଗଡ଼ଜାତ

ଓ ଗଜପତିଙ୍କ ଖାସ୍ ଦଖଲ ଅଞ୍ଚଳରେ ବିଭକ୍ତ ଥିଲା । ଶାନ୍ତି ଓ ଶୃଙ୍ଖଳା ସହ ରାଜ୍ୟ ଶାସନ କରିବା, ବୈଦେଶିକ ଆକ୍ରମଣରୁ ଦେଶକୁ ରକ୍ଷା କରିବା, ଯୁଦ୍ଧ-ବେଳେ ସୈନ୍ୟ ଯୋଗାଇବା ଗଡ଼ଜାତ ରାଜାମାନଙ୍କର କର୍ତ୍ତବ୍ୟ ଥିଲା । ଗଜପତିଙ୍କ ନିଜ ରାଜ୍ୟ ୩୧ ଗୋଟି ଭାଗରେ ବିଭକ୍ତ କରାଯାଇଥିଲା । ପ୍ରତ୍ୟେକ ଭାଗରେ ଜଣେ ଜଣେ ଶାସନକର୍ତ୍ତା ଥିଲେ । ପ୍ରତ୍ୟେକ ଭାଗ ବା ଦଣ୍ଡପାଟ କେତେକ ଖଣ୍ଡ ବା ବିଶିରେ ବିଭକ୍ତ ଥିଲା । ପ୍ରତ୍ୟେକ ଖଣ୍ଡରେ ଜଣେ ଜଣେ ଖଣ୍ଡାଧିପତି ଥିଲେ । ସେମାନେ ଶାସନକାର୍ଯ୍ୟ ସହିତ ରାଜସ୍ୱ ଆଦାୟ ଓ ଶାନ୍ତି-ରକ୍ଷା କରୁଥିଲେ । (୮୫) ସ୍ଥୂଳତଃ ସେ କାଳରେ ଏକ ସୁଶୃଙ୍ଖଳ ଶାସନ-ପଦ୍ଧତି ପ୍ରତିଷ୍ଠିତ ଥିଲା । ଗଙ୍ଗବଂଶର ରାଜତ୍ୱକାଳରେ ଯେଉଁ ଶାସନ-ପଦ୍ଧତି ପ୍ରଚଳିତ ଥିଲା, କପିଳେନ୍ଦ୍ରଦେବ ତାହାର ପରିବର୍ତ୍ତନ କରି ନ ଥିଲେ । ଗଜପତି-ସାମ୍ରାଜ୍ୟର ଦକ୍ଷିଣ ଅଂଶ (କାବେରୀ ନଦୀ ପର୍ଯ୍ୟନ୍ତ ଅଞ୍ଚଳ), ଉତ୍ତର ତଥା ପଶ୍ଚିମ ଅଂଶ ରାଜ୍ୟପାଳମାନଙ୍କ ଦ୍ୱାରା ଶାସିତ ହେଉଥିବାର ଅନୁମାନ କରାଯାଏ । କପିଳେନ୍ଦ୍ରଦେବ ନିଜେ 'ବାରାଣସୀ କଟକ'ରେ ଅବସ୍ଥାନ କରୁଥିଲେ । (୮୬)

କପିଳେନ୍ଦ୍ର ତଥା ପୁରୁଷୋତ୍ତମ ଉଭୟେ ପ୍ରଜାପାଳକ ଓ ଦେବତା-ବ୍ରାହ୍ମଣଙ୍କର ଭକ୍ତ ଥିଲେ । କପିଳେନ୍ଦ୍ରଦେବଙ୍କ ଭୁବନେଶ୍ୱର ଅଭିଲେଖରେ ଅଛି—"ସମସ୍ତେ ସମ୍ରାଟ୍‌ଙ୍କର ଭଲପାଇଁ କାମ କରିବେ । ସେମାନେ ମନ୍ଦ ବାଟରେ ଯିବେ ନାହିଁ । ଯଦି କେହି ସମ୍ରାଟ୍‌ଙ୍କର ବିରୁଦ୍ଧାଚରଣ କରନ୍ତି, ତେବେ ସେମାନଙ୍କୁ ରାଜ୍ୟରୁ ବାହାର କରି ଦିଆଯିବ ଏବଂ ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ ହେବ ।" ସେ ଏହି ଆଦେଶ ସାମ୍ରାଜ୍ୟର ସମସ୍ତ ନୃପତିମାନଙ୍କ ପାଇଁ ପ୍ରଦାନ କରିଥିଲେ । (୮୭) ପୁରୀ ମନ୍ଦିରସ୍ଥ 'ଜୟ ବିଜୟ ଦ୍ୱାର'ରେ ଥିବା ଅଭିଲେଖରୁ ଜଣାଯାଏ ଯେ, ସେ ଲୁଣ ଓ କଉଡ଼ି ଉପରୁ କର ଉଠାଇ ଦେଇଥିଲେ । (୮୮) ତାଙ୍କର ଅନ୍ୟ ଏକ ଶିଳାଲେଖରେ ଅଛି ଯେ ସେ ସମସ୍ତ ସାମନ୍ତ, ପଦାତିକ ଓ ଅଶ୍ୱାରୋହୀଙ୍କ ପାଇଁ ଧନ ଦାନ କରିଥିଲେ । (୮୯) କପିଳେନ୍ଦ୍ରଦେବ ଜଗନ୍ନାଥ ମହାପ୍ରଭୁଙ୍କର ପରମଭକ୍ତ ଥିଲେ । ତାଙ୍କର ପୁରୀ ମନ୍ଦିରସ୍ଥ ଏକ ଲେଖାରେ ଅଛି—"ହେ ଜଗନ୍ନାଥ ! ମୋର ସମସ୍ତ ଭିତର ଓ ବାହାର ତୁମେ ଜାଣ । ମୋର ଯାହା ରତ୍ନ ପଦାର୍ଥ ଅଛି, ଅନ୍ୟ ଧନ ଅଛି, ସେ ସବୁ ତୁମର । ମୁଁ ଏସମସ୍ତ ତୁମକୁ ଓ ବ୍ରାହ୍ମଣମାନଙ୍କୁ ଦେବି । ଏ ରାଜ୍ୟର ରାଜା କିଏ ହେବ, ତାହାର ବ୍ୟବସ୍ଥା କର ।" (୯୦) ସେ ରାଜତ୍ୱର ୪୧ ଅଙ୍କରେ

(୧୪୭୬ ଖ୍ରୀଷ୍ଟାବ୍ଦ) ବହୁ ରତ୍ନାଳଙ୍କାର ଦାନ କରିଥିବାର ଉପଲବ୍‌ଧ ହୁଏ । (୯୧) ରାଜତ୍ୱର ୧୯ ଅଙ୍କରେ ବିଜୟନଗର ରାଜ୍ୟକୁ ପରାଭୂତ କରି ସେ ଜଗନ୍ନାଥଙ୍କୁ 'ପୁଣ୍ଡରୀକ ଗୋପ ଶାଢ଼ୀ' ପ୍ରଦାନ କରିଥିଲେ । (୯୨) କପିଳେନ୍ଦ୍ରଦେବ ଦାମୋଦରପୁର, ତୁଳସୀପୁର ଓ କପିଳେଶ୍ୱର ଶାସନ ପ୍ରତିଷ୍ଠା କରିଥିଲେ । (୯୩) ।

ପୁରୁଷୋତ୍ତମଦେବ ବ୍ରାହ୍ମଣମାନଙ୍କୁ ଚୌକିଦାରୀ ଟିକସ ଛାଡ଼ି ଦେଇଥିଲେ । (୯୪) ସେ ଜଗନ୍ନାଥଙ୍କ ପାଇଁ ଧାନ, କଉଡ଼ି ଓ ଗ୍ରାମ (୯୫) ତଥା ବହୁ ରତ୍ନାଳଙ୍କାର ଦାନ କରିଥିଲେ । (୯୬) ସେ ମଧ୍ୟ ବ୍ରାହ୍ମଣମାନଙ୍କ ଉଦ୍ଦେଶ୍ୟରେ ଶାସନମାନ ଦାନ କରୁଥିଲେ । ବାଲେଶ୍ୱରରୁ ପ୍ରାପ୍ତ ଏକ ଶିଳାଲେଖରୁ ଉପଲବ୍‌ଧ ହୁଏ ଯେ, ପୁରୁଷୋତ୍ତମଦେବ ତାଙ୍କ ରାଜତ୍ୱର ୫ମ ଅଙ୍କରେ ପୋତେଶ୍ୱର ଭଟ୍ଟ ନାମକ ବ୍ରାହ୍ମଣଙ୍କୁ ପୁରୁଷୋତ୍ତମପୁର ଶାସନ ଦାନ କରିଥିଲେ । (୯୭) ସେ ଗୋଟିଏ ଶିଳାଲେଖରେ ରାଜ୍ୟର ସମସ୍ତ ସାମନ୍ତ ରାଜାମାନଙ୍କୁ ବ୍ରାହ୍ମଣମାନଙ୍କ ପ୍ରତି ଉଦାର ହେବା ପାଇଁ ନିର୍ଦ୍ଦେଶ ଦେଇଥିଲେ । (୯୮) ଚଯ୍ନିଙ୍କ ଚକଡ଼ାରୁ ଜଣାଯାଏ ଯେ, ସେ ନିଜର ରାଣୀମାନଙ୍କ ନାମରେ ନଅଗୋଟି ଶାସନ ପ୍ରତିଷ୍ଠା କରିଥିଲେ । (୯୯) ସିଂହାଚଳମ୍‌ର ଗୋଟିଏ ଶିଳାଲେଖରୁ ମିଳେ ଯେ, ସେ କାଳରେ ରାଜକୀୟ ବିଚାରାଳୟ ଥିଲା ଏବଂ ଦୋଷ ଦେଖି ଦଣ୍ଡ ଦିଆଯାଉଥିଲା । (୧୦୦)

କପିଳେନ୍ଦ୍ର ଓ ପୁରୁଷୋତ୍ତମ ଉଭୟେ ବିଦ୍ୟୋତ୍ସାହୀ ରାଜା ଥିଲେ । କପିଳେନ୍ଦ୍ରଦେବ ନିଜେ 'ପର୍ଶୁରାମ ବିଜୟ' ନାମକ ନାଟକ ରଚନା କରିଥିଲେ । (୧୦୧) ତାଙ୍କ କାଳରେ ବହୁ ପଣ୍ଡିତ ଉତ୍କଳକୁ ଅଳଙ୍କୃତ କରିଥିବାର ଜଣାଯାଏ । (୧୦୨) ପୁରୁଷୋତ୍ତମଦେବ ମଧ୍ୟ 'ବିଷ୍ଣୁଭକ୍ତି କଳ୍ପଦ୍ରୁମ' ଓ 'ନାମ ମାଳିକା' ଆଦି ଗ୍ରନ୍ଥ ରଚନା କରିଥିଲେ । (୧୦୩) ତାଙ୍କର ସଭା-ପଣ୍ଡିତ ଥିଲେ ରାୟ ଦିବାକର ମିଶ୍ର । ସେ 'ଅଭିନବ ଗୀତ ଗୋବିନ୍ଦ', 'ଅଭିନବ ବେଣୀସଂହାର', 'ଭକ୍ତାମୃତ ମହାକାବ୍ୟ', 'ଧ୍ରୁବଚରିତ', 'ରସମଞ୍ଜରୀ', 'ପାରିଜାତହରଣ ନାଟକ' ଓ 'ହରିଚରିତ ଚମ୍ପୂ' ରଚନା କରିଥିବାର ଜଣାଯାଏ । (୧୦୪)

ଶାରଳା ଦାସଙ୍କ ଯୁଗରେ ଉତ୍କଳ ମୁସଲମାନମାନଙ୍କ ଆକ୍ରମଣରୁ ପୂରାପୂରି ଭାବରେ ମୁକ୍ତ ଥିଲା । ଐତିହାସିକ ଏ. କେ. ମଜୁମ୍‌ଦାର ଲେଖିଛନ୍ତି ଯେ, କପିଳେନ୍ଦ୍ରଦେବଙ୍କ ଶାସନ କାଳରେ ଯୌନପୁରର ମୁସଲମାନ ଶାସନକର୍ତ୍ତା

ମହମ୍ମଦ ଶାହ ଓଡ଼ିଶା ଆକ୍ରମଣ କରି ମନ୍ଦିରମାନ ଧ୍ୱଂସ କରିଥିଲେ ଓ ଧନରତ୍ନ ଲୁଣ୍ଠନ କରିନେଇଥିଲେ । ଏହି ଘଟଣାର ପରେ ପରେ ହୁସେନ ଶାହ ଓଡ଼ିଶା ଆକ୍ରମଣ କରିଥିଲେ ଏବଂ ରାଜା ଉପହାର ଦେଇ ଶାନ୍ତିଭିକ୍ଷା କରିଥିଲେ । (୧୦୫) କିନ୍ତୁ ଏହା ସତ୍ୟ ନୁହେଁ । ଗଙ୍ଗବଂଶର ଶେଷ ରାଜା ଭାନୁଦେବ ମାଳବର ହୋସେନ ଘୋରିଙ୍କୁ କିଛି ହାତୀ ଦେଇ ସ୍ୱାଧୀନତା କିଣିଥିବା କଥା ଜଣାଯାଏ । (୧୦୬) କପିଳେନ୍ଦ୍ର ଦେବଙ୍କ ସମୟରେ କୌଣସି ମୁସଲମାନ ନବାବଙ୍କ ଦ୍ୱାରା ଓଡ଼ିଶା ଲୁଣ୍ଠିତ ହେବା ବା ରାଜା ପରାଭୂତ ହେବା କଥା ଅନ୍ୟାନ୍ୟ ଐତିହାସିକମାନେ କହନ୍ତି ନାହିଁ; ବରଂ ମାଳବର ନବାବ କପିଳେନ୍ଦ୍ରଙ୍କ ଦ୍ୱାରା ପରାଭୂତ ହେବା ବିଷୟ ଇତିହାସରେ ଲିପିବଦ୍ଧ ହୋଇଅଛି । (୧୦୬ କ) ଷ୍ଟର୍ଲିଂ ଲେଖିଛନ୍ତି ଯେ, କପିଳେନ୍ଦ୍ରଙ୍କ ରାଜତ୍ୱ କାଳରେ ଦୁଇ ଥର ଦୁର୍ଭିକ୍ଷ ପଡ଼ିଥିଲା । ଏହା ମଧ୍ୟ ସତ୍ୟ ନୁହେଁ; ବରଂ ତାଙ୍କ ସମୟରେ ଉତ୍କଳରେ ଦୁର୍ଭିକ୍ଷ ଅଜ୍ଞାତ ଥିଲା । (୧୦୭)

ସ୍ଥୂଳତଃ, ଶାରଳା ଦାସଙ୍କ ଯୁଗର ରାଜନୈତିକ ପରିସ୍ଥିତି ସାମାଜିକ ଜୀବନର ବିକାଶ ପକ୍ଷରେ ସଂପୂର୍ଣ୍ଣଭାବେ ଅନୁକୂଳ ଥିଲା । ଉତ୍କଳୀୟ ସମାଜ ଓ ଜନ-ଜୀବନ ଉତ୍ତର ଭାରତର ହିନ୍ଦୁ ସମାଜ ଭଳି ମୁସଲମାନ ଶାସନଜନିତ ସଙ୍କଟ ଓ ଅଶାନ୍ତିର ସମ୍ମୁଖୀନ ହୋଇ ନଥିଲା । ସମଗ୍ର ଓଡ଼ିଶା ଦେଶ କପିଳେନ୍ଦ୍ର ଓ ପୁରୁଷୋତ୍ତମଙ୍କ ଭଳି ବୀର, ସୁଶାସକ, ଦେବଭକ୍ତ, ବ୍ରାହ୍ମଣଭକ୍ତ, ବିଦ୍ୟୋତ୍ସାହୀ ତଥା ପ୍ରଜାନୁରାଗୀ ଗଜପତିଙ୍କ ଶାସନାଧୀନ ହୋଇ ଶାନ୍ତି, ସୁଖ ଓ ଐଶ୍ୱର୍ଯ୍ୟ ଉପଭୋଗ କରୁଥିଲା । ଶାରଳା ଦାସଙ୍କ ମହାଭାରତରେ ଏହିପରି ଏକ ଉନ୍ନତ ସମାଜର କାବ୍ୟିକ ପ୍ରକାଶ ପରିଦୃଷ୍ଟ ହୁଏ । ବିବାହ, ନାରୀର ସ୍ଥାନ, ଧର୍ମ, କୃଷି, ଶିକ୍ଷା, ଶିଳ୍ପ, ସ୍ଥାପତ୍ୟ, ବାଣିଜ୍ୟ, ପର୍ବ-ପର୍ବାଣି, କ୍ରୀଡ଼ା-କୌତୁକ, ପ୍ରସାଧନ ଓ ରାଜ୍ୟଶାସନ ଆଦି ଦିଗଗୁଡ଼ିକ ଆଲୋଚନା କଲେ ପଞ୍ଚଦଶ ଶତାବ୍ଦୀର ଉତ୍କଳୀୟ ସମାଜ କିପରି ଉନ୍ନତ ଅବସ୍ଥାରେ ଥିଲା ତାହା ପରିଜ୍ଞାତ ହେବ ।

# ପାଦଟୀକା

୧। H. C. I. P—Vol. VI—P. 520.

୨। ସାରଳା ସ୍ମରଣିକା—ପ୍ର. ପ୍ର. ସ.—ପୃ ୧୦ ।

୩। ଝଙ୍କାର—୮ମ ଭାଗ, ୨ୟ ସଂଖ୍ୟା, ୧୯୫୬—ପୃ ୨୪୯—୨୫୮ ।

ଝଙ୍କାର—୮ମ ଭାଗ, ୪ର୍ଥ ସଂଖ୍ୟା, ୧୯୫୬—ପୃ ୩୮୮—୪୦୧ ।

୪। ଓ. ଇ.—କୃପାସିନ୍ଧୁ ମିଶ୍ର—ପୃ ୧୦୭ ।

୫। O. H. R. J.—Vol. VIII, No. 1, April, 1959—P. 35

୬। ଶା. ଚ.—ମୃତ୍ୟୁଞ୍ଜୟ ରଥ—ପୃ ୯ ।

୭। ଶ୍ରୀ. ଭା. ଦ.—ଗୋପୀନାଥ ନନ୍ଦ—ପୃ ୩୨୯ ।

୮। ଓ. ସା. ଇ.—ବିନାୟକ ମିଶ୍ର—ପୃ ୪୪ ।

୯। ଓ. ଇ.—ହରେକୃଷ୍ଣ ମହତାବ—୧ମ ଭାଗ—ପୃ ୨୫୪ ।

୧୦। ଓ. ସା. ଇ.—ସୂର୍ଯ୍ୟନାରାୟଣ ଦାଶ—୧ମ ଭାଗ—ପୃ ୨୪୬—୨୪୭ ।

୧୧। ସାରଳା ସ୍ମରଣିକା—ପ୍ର. ପ୍ର. ସ.—ପୃ ୨୩ ।

୧୨। ଝଙ୍କାର—୮ମ ବର୍ଷ, ୮ମ ସଂଖ୍ୟା, ୧୯୫୬—ପୃ ୮୧୮ ।

୧୩। J. H. R.—R. U., Vol. XI, No. 1, August, 1968—P. 55

୧୪। H. C. I. P—Vol. VI,—P. 365—367.

୧୪କ। ମୂ. ପୋଥି—ଅଦ୍ୟ ୧୨—ପୃ ୩କ ।

୧୫। ସାରଳା ସ୍ମରଣିକା—ପ୍ର. ପ୍ର. ସ.—ପୃ ୯—୧୦ ।    ୧୬। ଏଜନ୍ ।

୧୭। ଝଙ୍କାର—୮ମ ଭାଗ, ୨ୟ ସଂଖ୍ୟା, ୧୯୫୬—ପୃ ୨୪୯—୨୫୮ ।

୮ମ ଭାଗ, ୪ର୍ଥ ସଂଖ୍ୟା, ୧୯୫୬—ପୃ ୩୮୮—୪୦୧ ।

୧୮କ। ସାରଳା ସ୍ମରଣିକା—ପ୍ର. ପ୍ର. ସ.—ପୃ ୧୦ ।

୧୮ଖ। ସା. ମ.—ଆଦ୍ୟ—ପୃ ୪ ।    ୧୯। ସ. ମ.—ଆଦ୍ୟ—୯୪ ଅଧ୍ୟାୟ ।

୨୦। ଓ. ସା. ଇ—ହରେକୃଷ୍ଣ ମହତାବ—୧ମ ଭାଗ—ପୃ ୨୪୫ ।

୨୧। ପ୍ରା. ଓ. ଅ.—ଡ. କୁଞ୍ଜବିହାରୀ ତ୍ରିପାଠୀ—ପୃ ୧ ।

୨୨। The Evolution of Oriya Language and Script—
Dr K. B. Tripathy—P. 265, 272, 274, 278

୨୩। Ibid—P. 251, 255, 258-59, 261-262, 266-267, 269-270, 273.

୨୪। ଶ୍ରୀ ଶାରଳା ଦେବୀ ଓ ଶାରଳା ଦାସ—କେ. ନା. ମ.—ପ୍ରଜାତନ୍ତ୍ର (୧୨ । ୨ । ୭୦)

୨୫ । ସାରଳା ସ୍ମରଣିକା—ପ୍ର. ପ୍ର. ସ.—ପୃ ୨୫—୩୧ ।
୨୬ । J. H. R.—R. U., Vol. XI, No. 1, August, 1968—P. 52—55.
୨୭ । E. O. L. S.—Dr. K. B. Tripathy—P. 274—277 ।
୨୮ । ମୂ. ପୋଥି—ଆଦ୍ୟ ୧ମ—ପୃ ୩କ । ୨୯ । ସା. ମ.—ବିରାଟ—ପୃ ୧୬୦ ।
୩୦ । ଉ. ଇ.—କୃପାସିନ୍ଧୁ ମିଶ୍ର—ପୃ ୧୩୦ । ୩୧ । ସା. ମ.—ଶାନ୍ତି—ପୃ ୪-୮ ।
୩୨ । ଉ. ଇ.—କୃପାସିନ୍ଧୁ ମିଶ୍ର-ପୃ ୧୩୩ । ୩୩ । ଏକନ—ପୃ ୧୩୬ ।
୩୪ । ଓ. ଇ.—ହରେକୃଷ୍ଣ ମହତାବ—୧ମ ଭାଗ—ପୃ ୨୬୨ ।
୩୫ । ସା. ମ.—ବନ—ପୃ ୩୩ ।
୩୬ । ଓ. ଇ.—ହରେକୃଷ୍ଣ ମହତାବ—୧ମ ଭାଗ—ପୃ ୨୫୮ ।
୩୭ । ସା. ମ.—ଅଶ୍ୱ—ପୃ ୨୭ ।
୩୮ । H. C. I. P.—Vol. VI.—P. 297—302.
୩୯ । ସା. ମ.—ଅଶ୍ୱ—ପୃ ୨୭ ।
୪୦ । ଓ. ସା. ଇ.—ସୂର୍ଯ୍ୟନାରାୟଣ ଦାଶ—୧ମ ଭାଗ—ପୃ ୩୬୧ ।
୪୧ । ସା. ମ.—ଆଦ୍ୟ—ପୃ ୩-୪ ।
ପୋଥିରେ ନାମଟି 'କୃଷ୍ଣର୍ନାଥ' ।
ମୂ. ପୋ—ଆଦ୍ୟ ୧ମ—ପୃ ୭କ ।
୪୨ । ଓ. ସା. ଇ.—ସୂର୍ଯ୍ୟନାରାୟଣ ଦାଶ—୧ମ ଭାଗ—ପୃ ୩୬୧ ।
୪୩ । ଏକନ ।
୪୪ । ସା. ମ—ବିରାଟ—ପୃ ୮୬ । (ପଦ୍ମପୁର ଲକ୍ଷ୍ମୀପ୍ରିୟ ସରସ୍ୱତୀ ସୌଧ ।)
୪୫ । ଓ. ସା. ଇ.—ସୂର୍ଯ୍ୟନାରାୟଣ ଦାଶ—୧ମ ଭାଗ—ପୃ ୩୬୧—୩୬୨ ।
୪୬ । ସା. ମ—ମଧ୍ୟ—ପୃ ୨୦ ୪୭ । ସା. ମ—ଆଦ୍ୟ—ପୃ ୫ । (ପୁ.ପ୍ର.କଂ)
୪୮ । ଉ. ଇ—କୃପାସିନ୍ଧୁ ମିଶ୍ର—ପୃ ୧୩୩ ।
୪୯ । କା. କା—ପୁରୁଷୋତ୍ତମ ଦାସ—ପୃ ୪ ।
୫୦ । ଶା. ଚ—ମୃତ୍ୟୁଞ୍ଜୟ ରଥ—ପୃ ୩—୧୨ ।
୫୧ । ଝଙ୍କାର—୮ମ ବର୍ଷ, ୮ମ ସଂଖ୍ୟା, ୧୯୫୬—ପୃ ୮୧୮ ।
୫୨ । J. H. R.—R. U., Vol. XI, No. 1, Aug, 1968—P. 55-56
୫୩ । ସା. ମ.—ଆଦ୍ୟ—ପୃ ୫ । (ପୁ. ପ୍ର. କଂ)
୫୪ । ଓ. ଇ.—ହରେକୃଷ୍ଣ ମହତାବ—୧ମ ଭାଗ—ପୃ ୨୫୬ ।
୫୪ଅ । H. C. I. P.—Vol. VI—P. 367, 299, 325 (20a)
୫୫ । ସା.ମ.—ଅଶ୍ୱ—ପୃ ୨୬—୨୭ ।

୫୬ । ଉ. ଇ.—କୃପାସିନ୍ଧୁ ମିଶ୍ର—ପୃ ୧୩୫ । ଗା. ଉ.—ଜଗବନ୍ଧୁ ସିଂହ—ପୃ ୩୨୩ ।
୫୭ । H. C. I. P.—Vol. VI, Preface—P. XXIII—XXIV.
୫୮ । Ibid—P. XXIX
୫୯ । Ibid—P. 134
୬୦ । Ibid—P. 135
୬୧ । Ibid—P. 139
୬୨ । Ibid—P. 142.
୬୩ । The Sultanate of Delhi—A. L. Srivastava —P. 237—238
୬୪ । H. C. I. P.—Vol. VI—P. 135—136.
୬୫ । Ibid—P. 141, The Sultanate of Delhi— A. L. Srivastava—P. 243
୬୬ । The Sultanate of Delhi—A. L. Srivastava— P. 248—249.
୬୭ । Socitey and Government in Medieval India— A. B. Pandey—P. 49
୬୮ । Ibid.
୬୯ । The Sultanate of Delhi—A. L. Srivastava— P. 313—314
୭୦ । H. C. I. P.—Vol. VI—P. 619.
୭୧ । ଭାରତୀୟ ସଂସ୍କୃତି ଓଡ଼ିଶା ଉତ୍କଳ ଇତିହାସ—ସତ୍ୟକେତୁ ବିଦ୍ୟାଳଙ୍କାର— ପୃ ୪୬୯ ।
୭୨ । H. C. I. P.—Vol. VI.—P. 367
୭୩ । Ibid—P. 299, 325 (20a)
୭୪ । ଉ. ଇ.—କୃପାସିନ୍ଧୁ ମିଶ୍ର—ପୃ ୧ ୨—୧୩୦ ।
୭୫ । ଓ. ଇ.—ହରେକୃଷ୍ଣ ମହତାବ—୧ମ ଭାଗ—ପୃ ୨୪୯ ।
୭୬ । ଏକନ୍ ।
୭୭ । ଏକନ୍—ପୃ ୨୪୭ ।
୭୮ । H. C. I. P—Vol. VI—P. 367
୭୯ । History of Orissa—N. K. Sahoo—Vol. II—P. 242
୮୦ । H. C. I. P.—Vol. VI—P. 368
ଓ. ଇ.—ହରେକୃଷ୍ଣ ମହତାବ—୧ମ ଭାଗ—ପୃ ୨୫୭ ।
୮୧ । ପଣ୍ଡିତ କୃପାସିନ୍ଧୁ ମିଶ୍ର କାଞ୍ଚି-ଯୁଦ୍ଧ ୧୪୭୫ ଖ୍ରୀଷ୍ଟାବ୍ଦରେ ହୋଇଥିଲା ବୋଲି ଲେଖିଛନ୍ତି (ଉ. ଇ.— ପୃ ୧୩୫) । ଡକ୍ଟର ହରେକୃଷ୍ଣ ମହତାବଙ୍କ ଲେଖାରେ ତାହା ୧୪୭୦ ଖ୍ରୀଷ୍ଟାବ୍ଦ (ଓ. ଇ.—ପୃ ୨୭୦-୨୭୧) ।

୮୨ । ଓ. ଇ.—ହରେକୃଷ୍ଣ ମହତାବ—୧ମ ଭାଗ—ପୃ ୨୬୦-୨୭୧ ।
୮୩ । ଏଜନ୍—ପୃ ୨୬୧ ।    ୮୪ । ଏଜନ୍—ପୃ ୨୬୦ ।
୮୫ । ଉ ଇ.—କୃପାସିନ୍ଧୁ ମିଶ୍ର—ପୃ ୧୬୫-୧୬୮ ।
୮୬ । ଓ. ଇ.—ହରେକୃଷ୍ଣ ମହତାବ—୧ମ ଭାଗ—ପୃ ୨୫୫ ।
୮୭ । E. O. L. L.—Dr. K B. Tripathy—P. 251—253
୮୮ । Ibid—P. 253—254    ୮୯ । Ibid—P. 272
୯୦ । Ibid—P. 265-266    ୯୧ । Ibid—P. 274-277
୯୨ । Ibid—P. 257-258
୯୩ । ଶ୍ରୀ ଶାରଳା ଦେବୀ ଓ ଶାରଳା ଦାସ—କେ. ନା. ମ.—ପ୍ରଜାତନ୍ତ୍ର (୧୨।୭।୭୦)
୯୪ । E. O L. S.—Dr. K. B. Tripathy—P. 284
୯୫ । Ibid—P. 278-279    ୯୬ । Ibid—P. 279-281
୯୭ । Ibid—P 284—285    ୯୮ । Ibid—P. 292—293
୯୯ । ଓ ସା. ଇ.—ସୂର୍ଯ୍ୟନାରାୟଣ ଦାସ—୧ମ ଭାଗ—ପୃ ୩୭୧ ।
୧୦୦ । E O. L. S.—Dr. K B. Tripathy—P. 290
୧୦୧ । O. H. R. J.—Vol. VI, No. 6, January, 1958—P. 306
୧୦୨ । ଓ. ଇ.—ହରେକୃଷ୍ଣ ମହତାବ—୧ମ ଭାଗ—ପୃ ୨୫୪—୨୫୫ ।
୧୦୩ । ଏଜନ୍—ପୃ ୨୬୩ ।
୧୦୪ । O. H. R. J.—Vol. VI . No. 4, January, 1958—P. 306
ଓ ଇ.—ହରେକୃଷ୍ଣ ମହତାବ—୧ମ ଭାଗ—ପୃ ୨୬୫ ।
୧୦୫ । H. C. I. P.—Vol. VI—P. 366
୧୦୬ । A History of Orissa—N K. Sahoo—Vol. I—P. 242
୧୦୭ । Ibid

# ପ୍ରଥମ ଅଧ୍ୟାୟ

## ବିବାହ

ବିବାହ ମାନବଜୀବନରେ ବହୁ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଲାଭ କରେ । ସାମାଜିକ ଅନୁଷ୍ଠାନମାନଙ୍କ ମଧ୍ୟରେ ଏହାର ସ୍ଥାନ ଗୁରୁତ୍ୱପୂର୍ଣ୍ଣ ଓ ସର୍ବୋଚ୍ଚ । ନରନାରୀଙ୍କ ମଧ୍ୟରେ ଯେତେଗୁଡ଼ିଏ ସମ୍ବନ୍ଧ ନିହିତ, ତନ୍ମଧ୍ୟରେ ଯୌନ-ସମ୍ବନ୍ଧ ଏକ ଆବଶ୍ୟକୀୟ ମୌଳିକ ସମ୍ବନ୍ଧ (୧) ଏବଂ ବିବାହ ହେଉଛି ତାହାକୁ ନିୟନ୍ତ୍ରିତ କରିବା ନିମିତ୍ତ ସମାଜ-ସ୍ୱୀକୃତ ପନ୍ଥା ବା ସାଧନ । (୨) କିନ୍ତୁ ପ୍ରେମ-ପ୍ରବଣତା ତଥା ଯୌନ-ପ୍ରବୃତ୍ତି ଜୀବନର ଏକ ଦ୍ରୁତ ପରିବର୍ତ୍ତନଶୀଳ ବିଭାବ । (୩) ସୁତରାଂ ବିବାହକୁ ଯୌନ ସମ୍ବନ୍ଧର ବହିର୍ଭୂତ ସମାଜ-ସମ୍ମତ ନର-ନାରୀଙ୍କର ମିଳନ ଓ ପାରିବାରିକ ଜୀବନର ପୃଷ୍ଠଭୂମି ରୂପରେ ଗ୍ରହଣ କରିଯାଇପାରେ । (୪) ଏହାକୁ ପ୍ରାଣୀବିଜ୍ଞାନ ଉପରେ ପ୍ରତିଷ୍ଠିତ ଏକ ସାଂସ୍କୃତିକ ସୌଧ ଆଖ୍ୟା ପ୍ରଦାନ କରାଯାଏ । (୫) ସ୍ୱାମୀ ଓ ସ୍ତ୍ରୀ ଭାବରେ ପରିଚିତ ହୋଇ, ପରସ୍ପର ମଧ୍ୟରେ ନିକଟ ସମ୍ପର୍କ ରକ୍ଷାକରି, ସନ୍ତାନ ସୃଷ୍ଟି ତଥା ସନ୍ତାନ-ପାଳନ ଭଳି ମୌଳିକ ଉଦ୍ଦେଶ୍ୟ ପୂରଣର ଲକ୍ଷ୍ୟ ସହ ପାରିବାରିକ ଜୀବନରେ ପ୍ରବେଶ କରିବା ନିମିତ୍ତ ବିବାହ ଏକ ଅନୁଷ୍ଠାନ । (୬) ବିବାହ ଏକ ପବିତ୍ର ଅନୁଷ୍ଠାନ ଏବଂ ପବିତ୍ରତା ଏହାର ବିଶେଷ ପ୍ରକୃତି । (୭) ଏହା ସନ୍ତାନ-ସନ୍ତତିମାନଙ୍କର ବଂଶ-ପରମ୍ପରା ନିରୂପଣ କରେ, ସାଂସ୍କୃତିକ ଧାରାକୁ ପ୍ରବହମାନ କରେ ଏବଂ ବ୍ୟକ୍ତିତ୍ୱର ବିକାଶପଥରେ ପ୍ରେରଣା ଦାନ କରେ । (୮) ବିବାହ ଏକ ସାମାଜିକ ତଥା ପାରିବାରିକ କର୍ତ୍ତବ୍ୟ ଏବଂ ଏଥିରେ ସ୍ୱାର୍ଥର ସ୍ଥାନ ନାହିଁ । ସ୍ଥାୟିତ୍ୱ ବିବାହର ଏକ ପ୍ରଧାନ ଲକ୍ଷଣ । ଥରେ ଏହି ବନ୍ଧନରେ ଆବଦ୍ଧ ହେଲେ ମୃତ୍ୟୁ ପର୍ଯ୍ୟନ୍ତ ତାହା ପରିବର୍ତ୍ତନରହିତ ଓ ସ୍ଥିର ହୋଇ ରହେ । (୧୦)

ଭାରତୀୟ ସମାଜରେ ଯୁଗେ ଯୁଗେ ବିବାହ ବା ପାଣିଗ୍ରହଣ ସଂସ୍କାରର ଉପଯୋଗିତା ସ୍ୱୀକୃତ ହୋଇଆସିଅଛି । 'ତୈତ୍ତିରୀୟ ବ୍ରାହ୍ମଣ'ରେ ଅପତ୍ନୀକ ପୁରୁଷକୁ ଯଜ୍ଞକର୍ମର ଅନୁପଯୁକ୍ତ ବୋଲି (ଅଯଜ୍ଞୀୟୋ ବା ଏଷ ଯୋଽପତ୍ନୀକ)

କୁହାଯାଇଅଛି । (୧୧) ମାର୍କଣ୍ଡେୟ ପୁରାଣରେ ମଧ୍ୟ ଅପତ୍ନୀକ ବ୍ୟକ୍ତିକୁ ଯଜ୍ଞାନୁଷ୍ଠାନ ନିଷେଧ କରାଯାଇଅଛି । (୧୨) ମହାଭାରତରେ ବର୍ଣ୍ଣିତ ହୋଇଅଛି ଯେ, ପିତୃଗଣ ଜରତ୍କାରୁ ଋଷିଙ୍କୁ ବିବାହ କରି ସନ୍ତାନ-ଲାଭ ଦିଗରେ ଯତ୍ନବାନ ହେବା ପାଇଁ ଉପଦେଶ ପ୍ରଦାନ କରିଥିଲେ । (୧୩) ଦକ୍ଷଙ୍କ ମତରେ ବିଦ୍ୟାଲାଭ ଶେଷ ହେବା ପର୍ଯ୍ୟନ୍ତ ଗୁରୁଗୃହରେ ବାସ କରିବ ଏବଂ ତାହାପରେ ଗୃହସ୍ଥ-ଜୀବନ ଯାପନ କରିବା ଉଚିତ । (୧୪) 'ଭାଗବତ'ରେ କଥିତ ହୋଇଅଛି—ଗୃହସ୍ଥ ପତ୍ନୀଯୁକ୍ତ ହୋଇ ଗାର୍ହସ୍ଥ୍ୟ ତଥା ବ୍ରହ୍ମଚର୍ଯ୍ୟାଦି ଆଶ୍ରମ-ଧର୍ମ ପାଳନ କଲେ ଜଳଯାନ ସାହାଯ୍ୟରେ ସମୁଦ୍ର ଅତିକ୍ରମ୍ୟ ହେଲା ଭଳି ବିପଦ-ସାଗରରୁ ଉତ୍ତୀର୍ଣ୍ଣ ହୁଏ । (୧୫) 'ବିଷ୍ଣୁ ପୁରାଣ'ରେ ମୁନି ରାଜାଙ୍କୁ ବିଦ୍ୟାଲାଭ ପରେ ଭାର୍ଯ୍ୟା ଗ୍ରହଣ କରିବା ନିମିତ୍ତ ଉପଦେଶ ଦେବାର ଚିତ୍ର ନିହିତ । (୧୬) 'ମନୁ ସ୍ମୃତି'ରେ ଆୟୁର ପ୍ରଥମ ଚତୁର୍ଥାଂଶ ଗୁରୁଗୃହରେ ଓ ଦ୍ୱିତୀୟ ଚତୁର୍ଥାଂଶ ଗୃହସ୍ଥାଶ୍ରମରେ ଅତିବାହିତ କରିବା ଉଚିତ ବୋଲି ଉକ୍ତ । (୧୭) 'ନାରଦ ପୁରାଣ'ରେ ଅଛି—ଗୁରୁକୁଳରୁ ପ୍ରତ୍ୟାବୃତ୍ତ ସ୍ନାତକ ଯଦି ଧର୍ମାନୁଷ୍ଠାନର ଫଳ ଲାଭ କରିବାକୁ କାମନା କରେ, ତେବେ ତାହା ପକ୍ଷରେ ଗୃହସ୍ଥାଶ୍ରମ ବିହିତ । (୧୮)

ତେଣୁ, ସର୍ବବିଧ ସାମାଜିକ ଅନୁଷ୍ଠାନ ମଧ୍ୟରେ ବିବାହ ଏକ କେନ୍ଦ୍ରୀୟ ବିଭାବ । (୧୯) କୌଣସି ଜାତି ଗୋଟିଏ ନିୟମିତ ବୈବାହିକ ଜୀବନ ବ୍ୟତିରେକ ତିଷ୍ଠି ପାରେ ନାହିଁ । (୨୦)

ଯେଉଁ ବିବାହ-ଅନୁଷ୍ଠାନ ସମାଜରେ ଏତେ ଆବଶ୍ୟକୀୟ ଓ ମହତ୍ତ୍ୱପୂର୍ଣ୍ଣ, ତାହାର ଚିତ୍ର ଶାରଳା ଦାସଙ୍କ ମହାଭାରତରେ କିପରି ପ୍ରକାଶ ପାଇଅଛି, ତାହା ବିଚାରଯୋଗ୍ୟ । ଶାରଳାଙ୍କ ମହାଭାରତ ବିବାହ-ଦୃଶ୍ୟର ବହୁ ମୁଦ୍ରାଙ୍କ ବହନ କରେ । ତହିଁରୁ ପଞ୍ଚଦଶ ଶତାବ୍ଦୀରେ ଉତ୍କଳୀୟ ସମାଜରେ ବିବାହର ବିଧି-ବିଧାନ କିପରି ଥିଲା, ତାହାର ପ୍ରଭୂତ ପରିଚୟ ମିଳେ । ନିମ୍ନ ଆଲୋଚନାରୁ ଏହି ଉକ୍ତିର ସତ୍ୟତା ପ୍ରତିପାଦିତ ହେବ ।

## ୧. ପାତ୍ର-ପାତ୍ରୀ ନିର୍ବାଚନ ଓ ନିର୍ବନ୍ଧ :

ପୁତ୍ର ବା କନ୍ୟାର ବିବାହ ନିମିତ୍ତ ପାତ୍ରୀ ବା ପାତ୍ର ନିର୍ବାଚନ କରାଯାଏ, ବିବାହ ପ୍ରସ୍ତାବିତ ହୁଏ ଏବଂ ଶେଷରେ ନିର୍ବନ୍ଧରେ ପ୍ରସ୍ତାବର ଚୂଡ଼ାନ୍ତ ହୁଏ । ପାତ୍ର ବା ପାତ୍ରୀ ସ୍ଥିର କଲାବେଳେ ଉଭୟଙ୍କର ବୟସ, ରୂପ ଓ ଗୁଣର ବିଚାର

କରାଯାଏ ଏବଂ ଜାତକ ମିଳାଇ ଦେଖାଯାଏ । ଶାରଳା ଦାସଙ୍କ ମହାଭାରତରେ ଏହି ସମସ୍ତ ଚଳଣିର ଚିତ୍ର ନିମ୍ନରୂପରେ ମିଳେ ।

(କ) **ବୟସ-ବିଚାର :**

ପାତ୍ର-ପାତ୍ରୀଙ୍କ ବୟସରେ ସମାନତା ରହିବା ଉଚିତ । ସାଧାରଣତଃ, ପତି-ପତ୍ନୀଙ୍କ ବୟସ ମଧ୍ୟରେ ଅଳ୍ପ ତାରତମ୍ୟ ରହେ । ଜଣେ ଅଳ୍ପବୟସ୍କା ନାରୀ ଧନ, ସୌଭାଗ୍ୟ ବା ସାମାଜିକ ପ୍ରତିଷ୍ଠା ଲୋଭରେ ଅଧିକ ବୟସର ବ୍ୟକ୍ତିଙ୍କୁ ବିବାହ କଲେ ଅବାଞ୍ଛନୀୟ ପରିସ୍ଥିତି, ଅଶାନ୍ତି ଓ କଳହ ସୃଷ୍ଟି ହୁଏ । ତେଣୁ ବୟସର ସାଦୃଶ୍ୟ-ରକ୍ଷା ପାତ୍ର-ପାତ୍ରୀଙ୍କ ନିର୍ବାଚନ କ୍ଷେତ୍ରରେ ପ୍ରଧାନ କଥା । (୨୧

'ସଂସ୍କୃତ ମହାଭାରତ' ତଥା 'ସ୍ମୃତି'ରେ ଯୌବନ-ପ୍ରବେଶ ପୂର୍ବରୁ ଅର୍ଥାତ୍ ବାଲ୍ୟାବସ୍ଥାରେ ବିବାହ କରଣୀୟ ବୋଲି କଥିତ । ତିରିଶ ବର୍ଷର ପୁରୁଷ ସହିତ ସାତ ବର୍ଷର କନ୍ୟାର ବିବାହ ମହାଭାରତୀୟ ଆଦର୍ଶ । (୨୨) କିନ୍ତୁ 'ସଂସ୍କୃତ ମହାଭାରତ'-ବର୍ଣ୍ଣିତ ରାଜ-କନ୍ୟାଗଣ କେହି ବାଲ୍ୟାବସ୍ଥାରେ ବିବାହ କରିନାହାନ୍ତି; ସମସ୍ତେ ଯୌବନରେ ପରିଣୀତା । (୨୩) ମନୁ ତିରିଶ ବର୍ଷର ଯୁବକ ସହ ବାର ବର୍ଷର କନ୍ୟା ଅଥବା ଚବିଶ ବର୍ଷର ପୁରୁଷ ସହ ଆଠ ବର୍ଷ କନ୍ୟାର ପରିଣୟ ବିଧେୟ ବୋଲି ମତ ପ୍ରଦାନ କରିଅଛନ୍ତି । (୨୪) ପରାଶର ଆଠ ବର୍ଷର ବାଳିକାକୁ 'ଗୌରୀ', ନବମ ବର୍ଷର ବାଳିକାକୁ 'ରୋହିଣୀ' ଓ ତଦୂର୍ଦ୍ଧ୍ୱ ବୟସର କୁମାରୀକୁ 'ରଜସ୍ୱଳା' ଆଖ୍ୟା ପ୍ରଦାନ କରିଥିବାର ପରିଦୃଷ୍ଟ ହୁଏ । ତାଙ୍କ ମତରେ ଦ୍ୱାଦଶ ବର୍ଷ ହେବା-ମାତ୍ରେ କନ୍ୟାକୁ ବିବାହ ନ ଦେଲେ, ତାହାର ମାସିକ ରଜ ପିତୃଗଣ ପାନ କରନ୍ତି । (୨୫)

ଶାରଳା ଦାସଙ୍କ ଯୁଗରେ ଯୌବନ-ପ୍ରବେଶ ପୂର୍ବରୁ ବିବାହ କରିବା ଆଦର୍ଶ ନୀତିରୂପରେ ଗୃହୀତ ହୋଇଥିଲା । ଗାନ୍ଧାରରାଜ ତେଣୁ ବ୍ୟାସଙ୍କୁ କହିଥିଲେ ଯେ, କନ୍ୟା ପିତାଙ୍କ ଘରେ ରଜୋବତୀ ହେଲେ ତାହାର ଶୋଣିତ ପିତୃଗଣ ପାନ କରନ୍ତି । (୨୬) ସୂର୍ଯ୍ୟ ସ୍ୱକନ୍ୟା ତପତୀର ପରିଣୟ ହୋଇ ନପାରିବାର ଦେଖି ଚିନ୍ତିତ ହୋଇ କହିଥିଲେ, "ଦୁହିତା ପିତାଙ୍କ ଗୃହରେ ରଜସ୍ୱଳା ହେଲେ ପିତୃଗଣ ନର୍କରେ ପତିତ ହୁଅନ୍ତି ।" (୨୭)

ପଞ୍ଚଦଶ ଶତାବ୍ଦୀରେ ଉତ୍କଳୀୟ ରାଜପରିବାର ମଧ୍ୟରେ କେତେକ ସ୍ଥଳରେ ବାଲ୍ୟ-ବିବାହର ରୀତି ପ୍ରଚଳିତ ଥିବାର ଜଣାଯାଏ । ଶାରଳା-ବର୍ଣ୍ଣିତ ଦ୍ରୌପଦୀ-ବିବାହ ଓ ଉତ୍ତରା-ପରିଣୟ ତାହାର ଦୃଷ୍ଟାନ୍ତ । ଯୌବନ-ପ୍ରବେଶ ପୂର୍ବରୁ ଦ୍ରୌପଦୀ ପାଣ୍ଡବମାନଙ୍କୁ ବିବାହ କରିଥିଲେ । ବିବାହ ପରେ ପାଣ୍ଡବଙ୍କ ଗୃହରେ ଅବସ୍ଥାନ କରୁଥିବା କାଳରେ ସେ ରଜୋବତୀ ହେଲେ ବୋଲି କବି ପ୍ରଦର୍ଶନ କରିଅଛନ୍ତି । (୨୮) ଉତ୍ତରା କନ୍ୟା ମଧ୍ୟ ବାଲ୍ୟାବସ୍ଥାରେ ବିବାହ କରିଥିବାର ଜଣାଯାଏ; କାରଣ କବି କହନ୍ତି ଯେ, ସେ ବିବାହ ପରେ ପିତୃଗୃହରେ ରଜୋବତୀ ହୋଇଥିଲେ ଏବଂ ଦୂତ ସେହି ସମ୍ବାଦ ହସ୍ତିନାରେ ପ୍ରଦାନ କରିଥିଲେ । (୨୯)

ବ୍ରାହ୍ମଣ ସମାଜରେ ବାଲ୍ୟବିବାହ ପ୍ରଚଳିତ ଥିଲା । ଶଶିକର ବିପ୍ରର ପତ୍ନୀ ବାଳବିଧବା ଥିବା କଥାରୁ ଏହା ସ୍ପଷ୍ଟ । (୩୦) ମଧୁଶ୍ରବଣ ବିପ୍ରର ପତ୍ନୀ ଯୌବନ-ପ୍ରବେଶ ପୂର୍ବରୁ ପରିଣୀତ କରିଥିବାର ଅନୁମିତ ହୁଏ । କବିଙ୍କ ବର୍ଣ୍ଣନାରେ ଅଛି ଯେ, ସେ ବିବାହ ପରେ ପତି-ଗୃହରେ ରଜୋବତୀ ହୋଇଥିଲେ ।

"ମଧୁଶ୍ରବଣ ବୋଲିଣ ଏକଇ ବ୍ରାହ୍ମଣ
କୁରଙ୍ଗିମା ବୋଲି ତା ଭାରିଯା ନାମ ।
ଜ୍ୟେଷ୍ଠ ମାସ କୃଷ୍ଣପକ୍ଷ ଅଷ୍ଟମୀର ଦିନ
ପ୍ରଥମ ରଜୋବତୀ ସେ ହେଲା ପ୍ରିୟେ ଜାଣ ।" (୩୧)

ଓଡ଼ିଶାରେ ବାଲ୍ୟ-ବିବାହର ପରମ୍ପରା କେତେକ ସ୍ଥଳରେ ଥିବାର ଉପଲବ୍ଧ ହୁଏ । 'ଦାଣ୍ଡି ରାମାୟଣ'ରେ ଅଛି ଯେ ସତ୍ରୁ ପଣ୍ଡାର ସ୍ତ୍ରୀ ପତି-ଗୃହରେ ଥିବାବେଳେ ଯୁବତୀ ହେଲେ । (୩୨) ରେବତୀ ବାଲ୍ୟକାଳରେ ବିବାହ କରିଥିଲେ ବୋଲି 'ହରିବଂଶ'ରୁ ସୂଚିତ ହୁଏ । (୩୩) ଏଠାରେ ଯୁବତୀ-ବିବାହର ନିନ୍ଦା ମଧ୍ୟ କରାଯାଇଅଛି । (୩୪) ଉତ୍କଳରେ ଏବେ ବି କିମ୍ବଦନ୍ତୀ ରହିଅଛି— "ବର ତିରିଶା କନିଆ ଦଶା ।"

ପ୍ରାଚୀନ ଭାରତରେ ରାଜବଂଶରେ ଯୁବତୀ-ବିବାହ ବହୁଳ ଭାବରେ ପ୍ରଚଳିତ ଥିବାର ଜଣାଯାଏ । ପୁରାଣମାନଙ୍କରେ ତାହାର ଦୃଷ୍ଟାନ୍ତ ପ୍ରଭୂତ । ରାମାୟଣରେ ଅଛି ଯେ, ସୀତାଙ୍କୁ ଯୁବତୀ ହେବାର ଦେଖି ତାଙ୍କର ପିତା ଜନକ ଚିନ୍ତିତ ହୋଇପଡ଼ିଥିଲେ । (୩୫) ତହିଁରୁ ପରିଜ୍ଞାତ ହୁଏ ଯେ, ସୀତା ଦେଖା

ଯୌବନ ଲଭ କଲ ପରେ ବିବାହ କରିଥିଲେ । ବାଣାସୁର-କନ୍ୟା ଉଷା ଅନିରୁଦ୍ଧଙ୍କ ସହ ଗୋପନରେ ଅଙ୍ଗ-ସଙ୍ଗ କଲ ପରେ ପରିଣୀତା ହୋଇଥିଲେ ବୋଲି 'ବିଷ୍ଣୁ ପୁରାଣ'ରେ କୁହାଯାଇଛି । ସେଥିରୁ ସ୍ପଷ୍ଟ ଯେ ଉଷା ଯୁବତୀ ଅବସ୍ଥାରେ ବିବାହ କରିଥିଲେ । (୩୬)

ଶାରଳା ଦାସଙ୍କ ଯୁଗରେ ବାଲ୍ୟ-ବିବାହ ଆଦର୍ଶ ଥିଲେ ହେଁ, ବାସ୍ତବ କ୍ଷେତ୍ରରେ ରାଜପରିବାରରେ ଯୁବତୀ-ବିବାହ ଅଧିକ ଭାବରେ ପ୍ରଚଳିତ ଥିଲ । କବି-ଲେଖାରେ ଏହାର ପର୍ଯ୍ୟାପ୍ତ ଦୃଷ୍ଟାନ୍ତ ମିଳେ । ଶାରଳା-ବର୍ଣ୍ଣିତ ଗଙ୍ଗା ଦେବୀ ଯୁବତୀ ହେବା ପରେ ବିବାହ କରିଥିଲେ । ତାଙ୍କର ପିତା ନିର୍ଘାତ ରାଜାଙ୍କ "ଯୁବାରୂପ ହୋଇଲୁ କାହାକୁ ମୁଁ ଦେବି" ଉକ୍ତିରୁ ଏହା ସ୍ପଷ୍ଟ । (୩୭) ଗାନ୍ଧାରୀ ମଧ୍ୟ ଯୌବନରେ ପତି-ବରଣ କରିଥିଲେ । ଗାନ୍ଧାରସେନ ଗାନ୍ଧାରୀଙ୍କୁ ଯୌବନ ଲଭ କରିବା ଦେଖି ଚିନ୍ତିତ ହୋଇ ବ୍ୟାସଦେବଙ୍କୁ ତାହା ଜଣାଇବା ବର୍ଣ୍ଣନାରୁ ଏହା ପ୍ରତିପାଦିତ ହୁଏ । (୩୮) ଦୁଃଶୀଳା କନ୍ୟାର ବିବାହ-ଚିତ୍ରରେ ମଧୁଶଯ୍ୟାର ଆଲେଖ୍ୟ ଥିବାରୁ ଅନୁମିତ ହୁଏ ଯେ, ସେ ମଧ୍ୟ ଯୌବନ କାଳରେ ପରିଣୀତା ହୋଇଥିଲେ । (୩୯) "ବିମାନୁ ଓହ୍ଲାଇ କରି ଭାଳଇ ଯୁବତୀ" ଉକ୍ତିରୁ ସୂଚିତ ହୁଏ ଯେ, ହାରିବତୀ କନ୍ୟା ଯୁବତୀ ଅବସ୍ଥାରେ ଅର୍ଜ୍ଜୁନଙ୍କୁ ବିବାହ କରିଥିଲେ । (୪୦) ସୁଭଦ୍ରା (୪୧), ମାଳେନ୍ଦ୍ରୀ (୪୨), ଚନ୍ଦ୍ରାବତୀ (୪୩) ଓ ଉଷା (୪୪) ନିଜ ନିଜର ନିର୍ବାଚିତ ପତିମାନଙ୍କ ସହ ଅଙ୍ଗଭୋଗ କଲ ପରେ ବିବାହ-ବନ୍ଧନରେ ଆବଦ୍ଧ ହୋଇଥିବାରୁ ଜଣାଯାଉଅଛି ଯେ, ସେମାନେ ସମସ୍ତେ ଯୌବନରେ ବିବାହିତା । (୪୫) ହରି ସାହୁଙ୍କ କନ୍ୟା ସୁହାଣୀ ପଞ୍ଚଦଶ ବର୍ଷ ହେବା ପରେ ବିବାହ କଲେ । (୪୬) ସରଳା କନ୍ୟା ଯୁବତୀ ହେବା ପରେ ତାହାଙ୍କୁ ଚିତ୍ରସେନ ହରଣ କରିନେଇଥିଲେ । (୪୭) ତ୍ରିପୁରମୋହିନୀଙ୍କ ପିତା ତାହାଙ୍କୁ ସ୍ୱତନ୍ତ୍ର ମେଢ଼ରେ ରଖିଥିବା ବର୍ଣ୍ଣନାରୁ ଅନୁମିତ ହୁଏ ଯେ, ସେ ମଧ୍ୟ ଯୌବନରେ ପରିଣୀତା ହୋଇଥିଲେ । (୪୮)

ଶାରଳା ଦାସଙ୍କ ପରବର୍ତ୍ତୀ ସାହିତ୍ୟରେ ଯୁବତୀ-ବିବାହର ପ୍ରତିପତ୍ତି ପରିଦୃଷ୍ଟ ହୁଏ । 'ରାମବିଭା' କାବ୍ୟରେ ବିବାହ-ଦୃଶ୍ୟ ସହିତ ରାମ-ସୀତାଙ୍କର ମଧୁଶଯ୍ୟା ଓ ବିଳାସ ବର୍ଣ୍ଣିତ ହୋଇଅଛି । (୪୯) ସେଥିରୁ ସ୍ପଷ୍ଟ ଯେ, ସୀତା ଦେବୀ ପରିଣୟ ବେଳକୁ ଯୁବତୀ ଥିଲେ । 'ଦାଣ୍ଡି ରାମାୟଣ'ରେ ଶାନ୍ତାଙ୍କର ବିବାହ ପାଇଁ ଦଶରଥଙ୍କର ଚିନ୍ତାକୁଳ ହେବା ବର୍ଣ୍ଣନା ପାଠ କଲେ ଅନୁମିତ ହୁଏ

ଯେ, ଶାନ୍ତା ମଧ୍ୟ ବିବାହ ପୂର୍ବରୁ ରଜୋବତୀ ହୋଇଥିଲେ । (୫୦) 'ଭାଗବତ'ରୁ ଜଣାଯାଉଛି ଯେ, ଦେବକୀ ଯୌବନରେ ପରିଣୀତା ହୋଇଥିଲେ । (୫୧)

## (ଖ) ଯୋଗ୍ୟତା ନିରୂପଣ :

ପାତ୍ର ବା ପାତ୍ରୀ ନିର୍ବାଚନ କଲାବେଳେ ସେମାନଙ୍କର ଜାତି, ବର୍ଣ୍ଣ, କୁଳ, ଗୋତ୍ର, ରୂପ ଓ ଗୁଣ ବିଚାର କରାଯାଇ ଯୋଗ୍ୟତା ନିରୂପଣ କରାଯାଏ । ବର୍ଣ୍ଣ, ଜାତି ଓ କୁଳ ସଦୃଶ ନ ହେଲେ ସଂସ୍କାର ଭିନ୍ନ ଭିନ୍ନ ହୋଇଯାଏ ଏବଂ ତାହା ଫଳରେ ବୈବାହିକ ଜୀବନ ସୁଖକର ହୁଏ ନାହିଁ । ତେଣୁ ଜାତି ତଥା ଜାତୀୟତାର ସାଦୃଶ୍ୟ ବିଚାର ବିବାହକ୍ଷେତ୍ରରେ ଆବଶ୍ୟକୀୟ ବିଷୟ । (୫୨) ବିବାହ ପ୍ରସ୍ତାବ ବେଳେ ପାତ୍ର-ପାତ୍ରୀଙ୍କର ରୂପ ଲୋକେ ବିଚାର କରନ୍ତି । କିନ୍ତୁ ଦୈହିକ ସୌନ୍ଦର୍ଯ୍ୟ ବୈବାହିକ ଜୀବନରେ ଚିରସାଥୀ ହୋଇ ରହିବା ନିମିତ୍ତ ଯଥେଷ୍ଟ ଭିତ୍ତିଭୂମି ଯୋଗାଇ ପାରିବ ବୋଲି ବିଶ୍ୱାସ କରିବା ଭ୍ରମାତ୍ମକ । (୫୩) ସୁତରାଂ ଯୁବକ-ଯୁବତୀଙ୍କର ଗୁଣ ହିଁ ପ୍ରଧାନ ବିଚାର୍ଯ୍ୟ ବିଷୟ । ଜଣେ ଗୁଣବାନ ପୁରୁଷ ବା ଗୁଣବତୀ ଯୁବତୀ, ଜଣେ ଗୁଣହୀନ ପୁରୁଷ ବା ସ୍ତ୍ରୀଠାରୁ ଅଧିକ ଯୋଗ୍ୟ ବୋଲି ବିବେଚିତ ହେବା ନିଶ୍ଚିତ କଥା । (୫୪)

ପ୍ରାଚୀନ ଭାରତରେ ଜାତି, ବର୍ଣ୍ଣ, କୁଳ, ରୂପ ଓ ଗୁଣ ଆଦିର ପରୀକ୍ଷା-ନିରୀକ୍ଷା କରାଯାଇ ବର-କନ୍ୟା ସର୍ବଥା ନିରୂପିତ ହେଉଥିଲେ । ମନୁ କହନ୍ତି—ଦ୍ୱିଜାତିମାନଙ୍କ ପକ୍ଷରେ (ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ) ନିଜ ନିଜ ବର୍ଣ୍ଣ ମଧ୍ୟରୁ କନ୍ୟା ଗ୍ରହଣ କରିବା ସର୍ବଥା ବିଧେୟ । (୫୫) ଆବଶ୍ୟକ ସ୍ଥଳରେ ବ୍ରାହ୍ମଣ କ୍ଷତ୍ରିୟା; ବୈଶ୍ୟା, ଶୂଦ୍ରା; କ୍ଷତ୍ରିୟ ବୈଶ୍ୟା ଓ ଶୂଦ୍ରା; ବୈଶ୍ୟ ଶୂଦ୍ର-କନ୍ୟା ଗ୍ରହଣ କରିପାରେ । (୫୬) ବ୍ରାହ୍ମଣ ତଥା କ୍ଷତ୍ରିୟଙ୍କ ପକ୍ଷରେ ଶୂଦ୍ର-କନ୍ୟାର ପାଣିଗ୍ରହଣ ନିନ୍ଦନୀୟ ବୋଲି ମନୁ ଦର୍ଶାଇଛନ୍ତି । (୫୭)

ମନୁଙ୍କ ମତରେ ମାତାର ସପ୍ତମ ପୁରୁଷ ମଧ୍ୟସ୍ଥ ଓ ପିତାର ସଗୋତ୍ର କନ୍ୟା ବିବାହ କରିବା ଅନୁଚିତ । (୫୮) ଶୁକ୍ରନୀତି (୫୯), ଯାଜ୍ଞବଲ୍କ୍ୟ ସ୍ମୃତି (୬୦) ଓ ସଂସ୍କୃତ ମହାଭାରତରେ (୬୧) ସମାନ ଗୋତ୍ର ଓ ସମାନ ପ୍ରବରବିଶିଷ୍ଟ ବର-କନ୍ୟାଙ୍କର ବିବାହ ନିଷେଧ କରାଯାଇଅଛି । 'ଶୁକ୍ରନୀତି'ରେ କୁହାଯାଇଅଛି ଯେ, କନ୍ୟାଦାନ କାଳରେ କୁଳ ଓ ବିଦ୍ୟା ଦେଖିଲା ପରେ ରୂପ ଓ ଶୀଳ ବିଷୟ ବିଚାର କରିବ । (୬୨) ମନୁ କହନ୍ତି—ଉତ୍ତମ କୁଳର

ସ୍ୱଜାଷ୍ଟୟୁ ପାତ୍ର ମିଳିଗଲେ କନ୍ୟା ବିବାହ-ଯୋଗ୍ୟା ନୋହିଥିଲେ ମଧ୍ୟ ତାହାର ବିବାହ ସମ୍ପନ୍ନ କରିଦେବ । (୬୩) ବ୍ୟାସଙ୍କ ମତରେ ଉତ୍ତମ କୁଳର ରୂପବତୀ କନ୍ୟା ଗ୍ରହଣୀୟ । (୬୪) ସେ ଗୁଣ ଓ ରୂପକୁ କୁଳଠାରୁ ପ୍ରାଧାନ୍ୟ ଦେଇ କହିଛନ୍ତି, ନୀଚ କୁଳର ରୂପ-ଗୁଣ-ସମ୍ପନ୍ନା କନ୍ୟା-ରତ୍ନ ବିବାହ ଯୋଗ୍ୟା । (୬୫)

ପ୍ରାଚୀନ ଯୁଗରେ ବ୍ରାହ୍ମଣର କ୍ଷତ୍ରିୟ-କନ୍ୟା ସହ ବିବାହ ଚଳଣିରେ ରହିଥିଲା । ଚ୍ୟବନ-ସୁକନ୍ୟା (୬୬), ଋଷ୍ୟଶୃଙ୍ଗ-ଶାନ୍ତା (୬୭) ଓ କର୍ଦ୍ଦମ-ଦେବହୂତି (୬୮) ଏତାଦୃଶ ଦମ୍ପତିର ପ୍ରାଚୀନ ଦୃଷ୍ଟାନ୍ତ ।

ଶାରଳା ଦାସଙ୍କ ଯୁଗରେ ସବର୍ଣ୍ଣ ବିବାହ ଉପରେ ପ୍ରାଧାନ୍ୟ ଥିଲା । ସବର୍ଣ୍ଣ ବିବାହ ସେ କାଳର ଆଦର୍ଶ ଥିବାରୁ ଯମଦେବତା ହରି ସାହୁଙ୍କୁ ନିଜ ଜାତିରୁ କନ୍ୟା ଗ୍ରହଣ କରିବା ନିମିତ୍ତ ଉପଦେଶ ପ୍ରଦାନ କରିଥିଲେ । (୬୯) କବି କୌଣସି ମୌଳିକ ବର୍ଣ୍ଣନାରେ ଅସବର୍ଣ୍ଣ ବିବାହ ପ୍ରଦର୍ଶନ କରିନାହାନ୍ତି । ବେଦଶ୍ରବା ପଣ୍ଡା (୭୦), ଶକ୍ତିକର ବିପ୍ର (୭୧), କାଶୀପତି ରାଜା (୭୨), କୌଶିକ ବ୍ରାହ୍ମଣ (୭୩) ଓ ହରି ସାହୁ ବୈଶ୍ୟ (୭୪) ଆଦିଙ୍କ ବର୍ଣ୍ଣନାରେ ସବର୍ଣ୍ଣ ବିବାହର ସୂଚନା ମିଳୁଛି ।

ସେ ଯୁଗକୁ କ୍ଷତ୍ରିୟ-କନ୍ୟା ସହ ବ୍ରାହ୍ମଣର ବିବାହ ଅପ୍ରଚଳିତ ହୋଇ ଯାଇଥିଲା । 'ଲିଖବିନ୍ଧା' ଉପାଖ୍ୟାନରେ ଏହାର ପ୍ରମାଣ ମିଳେ । ବ୍ରାହ୍ମଣ-ବେଶୀ ଅର୍ଜ୍ଜୁନ ଲିଖ ବିନ୍ଧି ଦ୍ରୌପଦୀଙ୍କୁ ପାଇବା ନିମିତ୍ତ ଅଧିକାରୀ ହୋଇଥିଲେ ହେଁ ଦୁର୍ଯ୍ୟୋଧନ ବ୍ରାହ୍ମଣ-ସହ କ୍ଷତ୍ରିୟ-କନ୍ୟା ପାଞ୍ଚାଳୀଙ୍କର ପରିଣୟ ସଂପାଦନ ଅନ୍ୟାୟ ଓ ନୂତନ କଥା ହେବ ବୋଲି ମତ ବ୍ୟକ୍ତ କରିଥିଲେ :

"ଅନ୍ୟାୟ କହୁଛି ତୁମ୍ଭେ ନ କର ବିଗ୍ରହ
ବିଦ୍ୟାବଳେ ବିନ୍ଧିଲା ସେ ଲିଖ ଦ୍ୱିଜବର ।
କ୍ଷତ୍ରିୟ-କନ୍ୟାକୁ ବିଭା ହୋଇବ କେମନ୍ତେ
କାଳ-କାଳକୁ ଏ କଥା ରହିବ ଜଗତେ ।" (୭୫)

କିନ୍ତୁ କ୍ଷତ୍ରିୟର ବୈଶ୍ୟା ବିବାହ ପଞ୍ଚଦଶ ଶତାବ୍ଦୀର ଉତ୍କଳରେ ପ୍ରଚଳିତ ଥିଲା । ଯୁଧିଷ୍ଠିର-ସୁହାଣୀ ବିବାହ ଏହାର ଉଦାହରଣ । (୭୬) ଯୁଧିଷ୍ଠିର କ୍ଷତ୍ରିୟ ହେଲେ ହେଁ, ବୈଶ୍ୟ ହରି ସାହୁଙ୍କ କନ୍ୟାକୁ ବିବାହ କରିଥିଲେ । ଏହି ବିବାହ ପ୍ରସ୍ତାବିତ ହେବାବେଳେ ଉତ୍ତମ ଜାତି ମିଳିଲା ବୋଲି ସେ ସନ୍ତୋଷ ପ୍ରକାଶ କରିଥିବାର ଦେଖାଯାଏ । (୭୭)

ବ୍ରାହ୍ମଣର ଚଣ୍ଡାଳ ବା ଶୂଦ୍ରକନ୍ୟା ସହ ବିବାହ ସେ ଯୁଗରେ ନିନ୍ଦନୀୟ ଥିଲି । ଉଦ୍ଦାଳକ ମୁନିଙ୍କ ସହିତ ଶାନ୍ତିକ ଚଣ୍ଡାଳର କନ୍ୟା ଶ୍ରିୟୀର ପରିଣୟ ବୃତ୍ତାନ୍ତରୁ ଏହା ସ୍ପଷ୍ଟ । ଶାନ୍ତିକ ବଳାତ୍କାର ଏହି ବିବାହ କରାଇଥିଲେ । (୭୮) ଏତାଦୃଶ ବିବାହ ଚଳଣିରେ ଥିଲେ ଶାନ୍ତିକଙ୍କୁ ବଳ ପ୍ରୟୋଗ କରିବାକୁ ପଡ଼ି ନଥାନ୍ତା । ଏହି ଦଂପତି-ଜାତ ସନ୍ତାନଗଣଙ୍କୁ ଦୁର୍ବୃତ୍ତ, ମଦ୍ୟପ, ଦୁଷ୍ଟ ଓ ବ୍ରହ୍ମ-ହତ୍ୟାକାରୀ ବୋଲି ନିଦର୍ଶନ କରି କବି ବ୍ରାହ୍ମଣ-ଚଣ୍ଡାଳ ସମ୍ବନ୍ଧ ପ୍ରତି ଘୃଣା ଓ ଅନାଦର ଭାବ ପ୍ରକଟ କରିଅଛନ୍ତି । (୭୯)

'ଭାଗବତ'ରେ ଅଜାମିଳ ବ୍ରାହ୍ମଣର କାମୀ ନାମକ ଶୂଦ୍ରା ସହ ବୈବାହିକ ସମ୍ବନ୍ଧ ସ୍ଥାପନ (୮୦) 'ହରିବଂଶ'ରେ ବ୍ରାହ୍ମଣ-କନ୍ୟା କୁନ୍ତଳାର ଚଣ୍ଡାଳ ସହ ମିଳନର (୮୧) ନିନ୍ଦା କରାଯାଇଛି । 'ନାମ-ରତ୍ନ ଗୀତା'ରେ ଅମ୍ବିକା ନାମକ ଚଣ୍ଡାଳର ରୂପବତୀ କନ୍ୟା ସହ ବିବାହ କରିବା ନିମିତ୍ତ ବ୍ରହ୍ମାଙ୍କର ପୁତ୍ରମାନେ ଜାତି-ଚ୍ୟୁତ ହେବା ଭୟରେ ଅସମ୍ମତ ହୋଇଥିଲେ ବୋଲି ବର୍ଣ୍ଣିତ ହୋଇଅଛି । (୮୨)

ପାତ୍ରୀ ନିର୍ବାଚନ କଲାବେଳେ କନ୍ୟାର କୁଳ ଅପେକ୍ଷା ରୂପକୁ ପ୍ରାଧାନ୍ୟ ଦିଆଯାଉଥିଲି । କୁଳ ନୀଚ ହେଲେ ମଧ୍ୟ ଅନେକ ସ୍ଥଳରେ ଲୋକେ ସୌନ୍ଦର୍ଯ୍ୟ ବିଚାର କରି କନ୍ୟା ପରିଗ୍ରହ କରୁଥିଲେ । ଭାଗ୍ୟବାନ ଓ ମଳୟସେନ ରାଜାଙ୍କ ବୃତ୍ତାନ୍ତରୁ ଏହା ପ୍ରତିପାଦିତ ହୁଏ । କାମକଳା ନାମ୍ନୀ କନ୍ୟା ଜାରଜ ସନ୍ତାନ ଥିଲି । ସେ ପୁଣି ବନଭୂମିରେ ଶୃଗାଳଙ୍କ ଦ୍ୱାରା ଲାଳିତା-ପାଳିତା ହୋଇଥିଲି । ତଥାପି ଭାଗ୍ୟବାନ ନାମକ ରାଜା କେବଳ ତାହାର ରୂପରେ ଆକୃଷ୍ଟ ହୋଇ ତାହାକୁ ବିବାହ କରିଥିଲେ । (୮୩) ତଦ୍ରୂପ ବାମଦେବ ବିପ୍ରଙ୍କର ବିଧବା ଭାର୍ଯ୍ୟାଠାରୁ ଜାତ ଜାରଜ କନ୍ୟା ରୂପବଳରେ ମଳୟସେନ ରାଜାଙ୍କର ପତ୍ନୀ ହୋଇପାରିଥିଲେ । (୮୪) ଅର୍ଜ୍ଜୁନ ସୁଭଦ୍ରାଙ୍କର ରୂପରେ ମୋହିତ ହୋଇ ତାଙ୍କୁ ବିବାହ କରିଥିଲେ ବୋଲି ଭାଗବତରେ କୁହାଯାଇଛି । (୮୫)

କନ୍ୟାର ଲକ୍ଷଣ ଉପରେ ଲୋକେ ମଧ୍ୟ ଗୁରୁତ୍ୱ ଦେଉଥିଲେ । ସୁହାଣୀ କନ୍ୟାର ସୁଲକ୍ଷଣ ଯୁଧିଷ୍ଠିରଙ୍କୁ ଆକୃଷ୍ଟ କରିଥିଲି । (୮୬) ଭାଗ୍ୟବାନ ରାଜା କାମକଳାର କେବଳ ରୂପ-ବିଭା ଦେଖି ମୁଗ୍ଧ ହୋଇ ନଥିଲେ; ଅଧିକନ୍ତୁ ତାହାଠାରେ ଉତ୍ତମ ଲକ୍ଷଣ ଦେଖିପାରିଥିଲେ । (୮୭) 'ଭାଗବତ'ରେ ରୂପ,

କୁଳ ଓ ଲକ୍ଷଣ ଦେଖି ବିବାହ କାର୍ଯ୍ୟରେ ପ୍ରବୃତ୍ତ ହେବା ନିମିତ୍ତ ନିର୍ଦ୍ଦେଶ ଦିଆଯାଇଛି । (୮୮)

କନ୍ୟାର ଚରିତ୍ର ଓ ଗୁଣ ପ୍ରତି ସମାଜର ସତର୍କ ଦୃଷ୍ଟି ରହିଥିଲା । ମନ୍ଦ-ଗୁଣଯୁକ୍ତ କନ୍ୟାକୁ ଲୋକେ ପସନ୍ଦ କରୁ ନଥିଲେ । କନ୍ୟା-ପିତା ଏଥିପାଇଁ ନିନ୍ଦିତ ହେଉଥିଲେ । ଦୁର୍ଯ୍ୟୋଧନ-କନ୍ୟା ଚନ୍ଦ୍ରାବତୀ ବିବାହ ପୂର୍ବରୁ ଶ୍ରୀକୃଷ୍ଣ-ପୁତ୍ର ଶାମ୍ବଙ୍କ ଦ୍ୱାରା ଦୂଷିତା ହେବାରୁ ରାଜାମାନେ ଦୁର୍ଯ୍ୟୋଧନଙ୍କୁ ନିନ୍ଦା କରିବା ବର୍ଣ୍ଣନାରୁ ଏହା ସ୍ପଷ୍ଟ । (୮୯) ସେହିପରି ବିବାହ କରିବା ପୂର୍ବରୁ ସୁଭଦ୍ରାଙ୍କର ଅର୍ଜ୍ଜୁନ ସହ ହୋଇଥିବା ଗୁପ୍ତ ମିଳନକୁ କଳଙ୍କ ବୋଲି ବିବେଚନା କରାଯାଇ-ଥିଲା । (୯୦) କୌଣସି କୌଣସି ସ୍ଥଳରେ କନ୍ୟା ଦୂଷିତା ହୋଇଯିବା ଭୟରେ ରାଜାମାନେ ସ୍ୱତନ୍ତ୍ର ମେଢ଼ ନିର୍ମାଣ କରାଇ ପ୍ରଭୂତ କଟକଣା ମଧ୍ୟରେ ଯୁବତୀ କନ୍ୟାକୁ ରଖାଉଥିଲେ । ମେରୁଶୃଙ୍ଗ ରାଜାଙ୍କ କନ୍ୟା ତ୍ରିପୁରମୋହିନୀଙ୍କୁ ଯୁବତୀ ହେବା ପରେ ଏକ ସ୍ୱତନ୍ତ୍ର ମେଢ଼ରେ ରଖାଇଥିଲେ । (୯୧) କନ୍ୟା ମନ୍ଦ ଗୁଣ କଲେ କୁଳକୁ ଦୂଷଣୀୟ ହୁଏ ବୋଲି ଭକ୍ତକବି ଜଗନ୍ନାଥ ଦାଶ ତାଙ୍କ 'ଭାଗବତ'ରେ ଉଲ୍ଲେଖ କରିଅଛନ୍ତି । (୯୨)

ସେ ଯୁଗରେ ମାତୁଳ-କନ୍ୟାକୁ ବିବାହ କରିବା ଉତ୍କଳରେ ପ୍ରଚଳିତ ନଥିଲା । ମୂଳ ମହାଭାରତରେ ଶିଶୁପାଳ ସ୍ୱୀୟ ମାତୁଳ-କନ୍ୟା ଭଦ୍ରାଙ୍କୁ (୯୩), ସହଦେବ ମାତୁଳ ମଦ୍ରରାଜାଙ୍କ କନ୍ୟା ବିଜୟାଙ୍କୁ (୯୪) ବିବାହ କରିଥିଲେ ବୋଲି କୁହାଯାଇଅଛି । 'ବ୍ରହ୍ମ ପୁରାଣ'ରେ ପ୍ରଦ୍ୟୁମ୍ନ ନିଜର ମାତୁଳ-କନ୍ୟା ସହ ପରିଣୟ କରିବାର ଚରିତ୍ର ନିହିତ । (୯୫) ଉତ୍କଳରେ ଏହି ରୀତି ନଥିଲା ବୋଲି କବି ଉପରୋକ୍ତ ମହାଭାରତୀୟ ଦୃଷ୍ଟାନ୍ତମାନ ପରିହାର କରିଛନ୍ତି ।

ସ୍ମୃତିଶାସ୍ତ୍ରରେ ବରପୂର୍ବା କନ୍ୟାର ପାଣିଗ୍ରହଣ ନିଷେଧ କରାଯାଇଅଛି । (୯୬) ଓଡ଼ିଶାରେ ସେ କାଳରେ ମଧ୍ୟ ବରପୂର୍ବା କନ୍ୟାକୁ କେହି ବିବାହ କରୁ ନଥିଲେ । ଅମ୍ବା କନ୍ୟାର ପରିଣୟ ପ୍ରସଙ୍ଗରୁ ଏହା ସ୍ପଷ୍ଟ । ପ୍ରଥମେ ଭୀଷ୍ମ ତାହାଙ୍କୁ ବିବାହ କରିବେ ବୋଲି ସ୍ଥିର ହୋଇଥିଲା । ଭୀଷ୍ମ ଦାର ଗ୍ରହଣ କରିବେ ନାହିଁ ବୋଲି ସହସା ପ୍ରତିଜ୍ଞା କଲେ । (୯୭) ଫଳରେ ଅମ୍ବା ବରପୂର୍ବା କନ୍ୟା ହେଲେ । ସେହି କାରଣରୁ ବୀରଭଦ୍ର ତାହାଙ୍କୁ ଗ୍ରହଣ କଲେ ନାହିଁ । (୯୮)

ପାତ୍ର ନିର୍ବାଚନ କଲାବେଳେ ମଧ୍ୟ କୁଳ ବା ବଂଶର ବିଶେଷ ପ୍ରାଧାନ୍ୟ ପାଉଥିଲା । ଚନ୍ଦ୍ରାବତୀଙ୍କ ପରିଣୟ ପ୍ରସଙ୍ଗରୁ ଏହାର ପରିଚୟ ମିଳେ ।

ଦୁର୍ଯ୍ୟୋଧନ ଚନ୍ଦ୍ରାବତୀଙ୍କର ପରିଣୟ ପାଇଁ ସ୍ୱୟଂବର ସଭା ଆହ୍ୱାନ କରିଥିଲେ । ନାରଦ ପରାମର୍ଶ ଦେଇଥିଲେ ଯେ, ଶ୍ରୀକୃଷ୍ଣଙ୍କର ପୁତ୍ରମାନଙ୍କ ମଧ୍ୟରୁ ଜଣକ ସହିତ ଚନ୍ଦ୍ରାବତୀଙ୍କର ବିବାହ ସଂପନ୍ନ କରାଯାଇପାରେ । ସେହି ପ୍ରସ୍ତାବର ଉତ୍ତରରେ ଦୁର୍ଯ୍ୟୋଧନ ନିଜେ ଉଚ୍ଚ କୁଳର, ଶ୍ରୀକୃଷ୍ଣ ନୀଚ କୁଳର ବୋଲି ଦର୍ଶାଇଥିଲେ ଏବଂ କୁଳାଭିମାନର ବଶବର୍ତ୍ତୀ ହୋଇ ନାରଦଙ୍କ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲେ :

"ମୁଁ ଅଟଇ ନିଷ୍କଳଙ୍କ କୁଳ ସୋମଗୋତ୍ରୀ
ବିଶେଷେ କଳଙ୍କୀ ରାମକୃଷ୍ଣ ଯେ ଅଟନ୍ତି ।
ସଚରାଚର ପୃଥ୍ୱୀର ଅଟେ ମୁଁ ଧାରଣ
ଗୋପାଳେ ଦୁହିତା ଦେଲେ ଲଜ୍ଜା ହେବ ଜାଣ ।"(୯୯)

ଦ୍ରୌପଦୀଙ୍କ ବିବାହକାଳରେ ଯୁଧିଷ୍ଠିର ଦ୍ରୁପଦ ରାଜାଙ୍କୁ ଜାତି-କୁଳ ଦେଖି କନ୍ୟା ନ ଦେଲେ ପରିଣାମ ମନ୍ଦ ହୁଏ ବୋଲି ବୁଝାଇଥିଲେ :

"ଅମହତ ଅପଣ୍ଡିତ ଅକୁଳୀନ ଜାତି
ଅବରୂରେ ଦେଲେ ତହିଁ ଉପୁଜଇ ଶାସ୍ତି । (୧୦୦)

କୁଳ ସହ ପାତ୍ରର ରୂପ ମଧ୍ୟ ବିଚାର୍ଯ୍ୟ ବିଷୟ ଥିଲା । ସୁଭଦ୍ରା (୧୦୧), ଚନ୍ଦ୍ରାବତୀ (୧୦୨), ମାଳେନ୍ଦ୍ରୀ (୧୦୩) ଓ ହାରାବତୀ (୧୦୪) ରୂପରେ ମୁଗ୍ଧ ହୋଇ ପତି ନିର୍ବାଚନ କରିଥିଲେ । ମଧୁକିଶୋର ନୃପତି ଶିଖଣ୍ଡୀଙ୍କର ରୂପ ଦେଖି ତାହାଙ୍କ ହସ୍ତରେ କନ୍ୟା ସମର୍ପଣ କରିଥିଲେ । (୧୦୫) ନାରଦ ଚନ୍ଦ୍ରାବତୀଙ୍କ ବିବାହ ଉଦ୍ଦେଶ୍ୟରେ ଶ୍ରୀକୃଷ୍ଣଙ୍କ ପୁତ୍ରମାନଙ୍କ ପ୍ରସ୍ତାବ ଦେବାବେଳେ ସେମାନଙ୍କର ରୂପ ଉପରେ ହିଁ ଲକ୍ଷ୍ୟ ରଖିଥିଲେ । (୧୦୬) 'ପରିମଳା' କାବ୍ୟରେ ପାତ୍ରର ରୂପ କିପରି ନାରୀମାନଙ୍କ ମଧ୍ୟରେ ଆଦର ପାଏ, ତାହା ନାୟିକାର ବିବାହ-ଦୃଶ୍ୟରେ ଚର୍ଚ୍ଚିତ ହୋଇଅଛି । (୧୦୭)

ପାତ୍ରର ଗୁଣ ଓ ଚରିତ୍ର ମଧ୍ୟ ବିଚାର କରାଯାଉଥିଲା । ଜୟଦ୍ରଥ ଧାର୍ମିକ, ବିବେକୀ ଓ ବୀର ଥିଲେ । ତେଣୁ ଦୁର୍ଯ୍ୟୋଧନ ତାଙ୍କ ହସ୍ତରେ ଦୁଃଶୀଳା କନ୍ୟାଙ୍କୁ ସମର୍ପଣ କରିବେ ବୋଲି ସ୍ଥିର କରିଥିଲେ । (୧୦୮) ମଧୁକିଶୋର ରାଜା ଶିଖଣ୍ଡୀଙ୍କର ବୀରତ୍ୱକୁ ବିଚାରକୁ ନେଇଥିଲେ । (୧୦୯) 'ପରିମିଳା' କାବ୍ୟରେ ପୁରୁଷର ରୂପ ଉପରେ ପ୍ରାଧାନ୍ୟ ନ ଦେଇ ଗୁଣ ଉପରେ ପ୍ରାଧାନ୍ୟ ଦେବା ଉଚିତ ବୋଲି କୁହାଯାଇଅଛି । (୧୧୦) 'ହରିବଂଶ'ରେ ଉଗ୍ରସେନ ରାଜାଙ୍କ ରାଣୀ

ତାହାଙ୍କୁ ଜାତି, କୁଳ ଓ ରୂପ ସହିତ ଗୁଣର ବିଚାର କରି କନ୍ୟା ପାଇଁ ପାତ୍ର ମନୋନୟନ କରିବା ନିମିତ୍ତ ପରାମର୍ଶ ଦେବା କଥା ରହିଛି । (୧୧୧)

(ଗ) **ଉଆଁସୀ କନ୍ୟା :**

ଶାରଳା ଦାସଙ୍କ ଯୁଗରେ ଅମାବାସ୍ୟା-ଜାତ କନ୍ୟା ପାଇଁ ଯଥାଯୋଗ୍ୟ ପାତ୍ରଟିଏ ନିରୂପଣ କରିବା କଷ୍ଟକର ଥିଲା । କାରଣ ଏଭଳି କନ୍ୟାର ପାଣି-ଗ୍ରହଣ କଲେ ପୁରୁଷର ମୃତ୍ୟୁ ହୁଏ ବୋଲି ଲୋକବିଶ୍ୱାସ ରହିଥିଲା । ଗାନ୍ଧାରୀଙ୍କ ବିବାହ ପ୍ରସଙ୍ଗରୁ ଏହା ଅବଧାରିତ ହୁଏ । ଗାନ୍ଧାରସେନ ରାଜାଙ୍କ କନ୍ୟା ଅମାବାସ୍ୟା ତିଥିରେ ଜନ୍ମଗ୍ରହଣ କରିଥିଲେ :

"ଜ୍ୟେଷ୍ଠ ମାସ କୃଷ୍ଣପକ୍ଷ ଅମାବାସ୍ୟା ରାତି
କୃତ୍ତିକା ନକ୍ଷତ୍ରେ ସେହୁ ହୋଇଲା ଉତପତ୍ତି ।" (୧୧୨)

ଗାନ୍ଧାରସେନ କନ୍ୟା ପାଇଁ ଯେତେ ରାଜାଙ୍କୁ ବରଣ କଲେ, ସମସ୍ତେ ମୃତ୍ୟୁ-ମୁଖରେ ପଡ଼ିଲେ । ଉଡ଼ଙ୍ଗସେନ, ବିରୂପାକ୍ଷ ପ୍ରଭୃତି ରାଜାଗଣ ବରଣମାଳା ପରିଧାନ କରିବା ସଙ୍ଗେ ସଙ୍ଗେ ପ୍ରାଣତ୍ୟାଗ କଲେ । କେହି ଗାନ୍ଧାରୀଙ୍କୁ ବିବାହ କରିବାକୁ ସମ୍ମତ ହେଲେ ନାହିଁ । (୧୧୩)

ଅଚ୍ୟୁତାନନ୍ଦ ଦାସଙ୍କ 'ହରିବଂଶ'ରେ ଏତାଦୃଶ ଚିତ୍ର ଦେଖାଯାଏ । ଯାଜପୁର-ନିବାସୀ ଶ୍ରୀକଣ୍ଠ ଦତ୍ତଙ୍କ କନ୍ୟା କୁନ୍ତଳା ଅମାବାସ୍ୟାରେ ଜାତ ହୋଇ-ଥିବାରୁ ତାକୁ କେହି ବିବାହ କରି ନ ଥିଲେ । ତାକୁ ବିବାହ କରିବା ପାଇଁ ଆସୁଥିବା ଯୁବକମାନେ ମୃତ୍ୟୁ-ମୁଖରେ ପତିତ ହେଉଥିଲେ । (୧୧୪)

(ଘ) **କାତକ-ଦେଖା :**

ଭାରତବର୍ଷରେ ପ୍ରାଚୀନ କାଳରେ ବର-କନ୍ୟାଙ୍କର କୋଷ୍ଠୀ-ଗଣନା କରା ଯାଉ ନ ଥିଲା ବୋଲି ଅନୁମିତ ହୁଏ । 'ରାମାୟଣ'ରେ ରାମ-ସୀତାଙ୍କ ବିବାହ (୧୧୫), 'ସଂସ୍କୃତ ମହାଭାରତ'ରେ ପାଣ୍ଡବ-ଦ୍ରୌପଦୀଙ୍କ ପରିଣୟ (୧୧୬) ଦୃଶ୍ୟରେ କୋଷ୍ଠୀ-ଦେଖା ବିଷୟ ନାହିଁ । 'ନାରଦ ପୁରାଣ'ରେ ବର-କନ୍ୟାଙ୍କର ଜନ୍ମ କୁଣ୍ଡଳୀ ମିଳାଇ ଫଳାଫଳ ବିଚାର କରାଯାଇଅଛି । (୧୧୭) ସମ୍ଭବତଃ ପୌରାଣିକ ଯୁଗରେ କୋଷ୍ଠୀ-ଗଣନା ମହାଭାରତୀୟ ପରମ୍ପରାରେ ପ୍ରବେଶ କରିଥିଲା ।

ବିର୍ମାରେ ବିବାହ-ବିଚ୍ଛେଦ କଲାବେଳେ ଜାତକ-ଦେଖା ସ୍ଥାନ ପାଉଥିବାର ଜଣାଯାଏ । (୧୧୮)

ପଞ୍ଚଦଶ ଶତାବ୍ଦୀର ଉତ୍କଳୀୟ ସମାଜରେ କୋଷ୍ଠୀ-ଗଣନା କରିବା ରୀତି କେତେକ ସ୍ଥଳରେ ପ୍ରଚଳିତ ଥିଲା । ଶାରଳା ଦାସ ବର୍ଣ୍ଣନା କରିଅଛନ୍ତି ଯେ, ବ୍ୟାସଦେବ ଗାନ୍ଧାରୀ ଓ ଧୃତରାଷ୍ଟ୍ରଙ୍କର ଜାତକ ଦେଖି ମେଳକ କରିଥିଲେ । ଉଭୟଙ୍କର ଜାତକ ମିଳିବାରୁ ବିବାହ ସଂପନ୍ନ କରାଯାଇଥିଲା । (୧୧୯)

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଶାରଳା ଦାସଙ୍କର ଏହି ମେଳକ-ବିଚାରରେ ଜ୍ୟୋତିଷ-ସମ୍ମତ କେତେକ ସଠିକତା ନିହିତ । କବି କହନ୍ତି ଯେ, ଗାନ୍ଧାରୀ (୧୨୦) ଓ ଧୃତରାଷ୍ଟ୍ର (୧୨୧) କୃତ୍ତିକା ନାମକ ନକ୍ଷତ୍ରରେ ଜନ୍ମ ହୋଇ-ଥିବାରୁ ଅସୁରୁଣୀ ଓ ଅସୁର ହେଲେ । ଜ୍ୟୋତିଷ-ମତରେ ମଘା, ଚିତ୍ରା, ବିଶାଖା, ଜ୍ୟେଷ୍ଠା, ଧନିଷ୍ଠା, ଶତଭିଷା, ମୂଳା, ଅଶ୍ଳେଷା ଏବଂ କୃତ୍ତିକା ନକ୍ଷତ୍ରରେ ଜାତ ନରନାରୀଙ୍କର ଅସୁର 'ଗଣ' ହୁଏ । (୧୨୨) ଉଭୟଙ୍କର ରାଶି-ନକ୍ଷତ୍ର ବୃଷ-କୃତ୍ତିକା ହୋଇଥିବାରୁ ମିଳନ ଶୁଭଙ୍କର ହେବ ବୋଲି ବ୍ୟାସଦେବ ନିର୍ଣ୍ଣୟ କରିଥିଲେ । (୧୨୩) ବର-କନ୍ୟାଙ୍କର ରାଶି-ନକ୍ଷତ୍ର ସମାନ ହେଲେ ଅଧିକ ଶୁଭ ଫଳ ମିଳେ ବୋଲି ଜ୍ୟୋତିଷଶାସ୍ତ୍ରର ମତ । (୧୨୪)

'ଦାଣ୍ଡି-ରାମାୟଣ'ରେ ରାମ-ସୀତାଙ୍କ ରାଶି-ନକ୍ଷତ୍ରାଦିର ମେଳକ ବିଚାର ହେବାର ଚିତ୍ର ନିହିତ । (୧୨୫) 'ରାମବିଭା' କାବ୍ୟରେ ଜାତକ-ବିଚାରର ସୂଚନା ମିଳେ । (୧୨୬)

ଜାତକରେ କୌଣସି ଗ୍ରହ ଜନିତ ଦୋଷ ପରିଦୃଷ୍ଟ ହେଲେ, ରିଷ୍ଟ ଖଣ୍ଡନ ନିମିତ୍ତ ପ୍ରାୟଶ୍ଚିତ୍ତ କରିବା ମହାଭାରତୀୟ ପରମ୍ପରା । 'କର୍ମକାଣ୍ଡ'ରେ ଅଛି ଯେ, ପ୍ରଥମ ଓ ଦ୍ୱିତୀୟ ପକ୍ଷ ସ୍ତ୍ରୀ ମରିଗଲେ ପୁରୁଷ ତୃତୀୟ ଥର ଶାହାଡ଼ା ବୃକ୍ଷକୁ ବିବାହ କରି ପୁନର୍ବାର ଦାର ଗ୍ରହଣ କରିପାରେ । (୧୨୭) ଏହା ରିଷ୍ଟ-ଖଣ୍ଡନ ପାଇଁ ଏକପ୍ରକାର ବୃକ୍ଷପୂଜା କହିଲେ ଚଳେ । ଉତ୍ତର-ଭାରତରେ ଲୋକେ ଏପରି ବୃକ୍ଷପୂଜାରେ ବିଶ୍ୱାସ ସ୍ଥାପନ କରନ୍ତି । ବରଗଛକୁ ଫାଲ୍‌ଗୁନ ଏକାଦଶୀରେ ପୂଜା କଲେ ସନ୍ତାନ ଲାଭ ହୁଏ ଏବଂ ଗୋ-ସଂପଦ ତଥା ଶସ୍ୟବୃଦ୍ଧି ହୁଏ ବୋଲି ଲୋକେ ବିଶ୍ୱାସ କରନ୍ତି । (୧୨୮)

ଉତ୍କଳୀୟ ସମାଜରେ ରିଷ୍ଟଖଣ୍ଡନ ତଥା ଅଭୀଷ୍ଟସିଦ୍ଧି ପାଇଁ ଏହିଭଳି ବୃକ୍ଷପୂଜାର ଚଳଣି ସେ ଯୁଗରେ ବିଦ୍ୟମାନ ଥିବାର ପରିଲକ୍ଷିତ ହୁଏ । ଗାନ୍ଧାରୀଙ୍କ

ପ୍ରସଙ୍ଗରେ ଶାରଳା ଦାସ ଏହି ଚଳଣିର ସୂଚନା ପ୍ରଦାନ କରିଅଛନ୍ତି । ଗାନ୍ଧାରୀ ଅମାବାସ୍ୟାରେ ଜାତ ହୋଇଥିବାରୁ ତାଙ୍କୁ ଚନ୍ଦ୍ରକ୍ଷୟ-ଦୋଷ ଲାଗିଲା । ଏହି ଦୋଷର ଖଣ୍ଡନ କରିବା ନିମିତ୍ତ ବ୍ୟାସଦେବ ଶାହାଡ଼ା ଗଛକୁ ପୂଜା କରିବା କର୍ତ୍ତବ୍ୟ ବୋଲି ଗାନ୍ଧାରସେନଙ୍କୁ ପରାମର୍ଶ ଦେଇଥିଲେ ଏବଂ ଶାହାଡ଼ାର ମହିମା ବୁଝାଇଥିଲେ । ତଦନୁଯାୟୀ ଗାନ୍ଧାରୀ ପ୍ରଥମେ ଶାହାଡ଼ା ଗଛକୁ ବିବାହ କରି ପରେ ଧୃତରାଷ୍ଟ୍ରଙ୍କୁ ବିବାହ କରିଥିଲେ । (୧୨୯)

ଏବେ ମଧ୍ୟ ପୁତ୍ର କନ୍ୟା ନ ହେଲେ ବର-ଅଶ୍ୱତ୍ଥର ବିବାହ ଦେବା ଛଳରେ ବୃକ୍ଷ-ପୂଜା କରିଥାନ୍ତି ।

(ଙ) ପ୍ରସ୍ତାବ :

ପିତାମାତା ବା ଅଭିଭାବକଙ୍କଦ୍ୱାରା ବର-କନ୍ୟାଙ୍କର ବିବାହ ପ୍ରସ୍ତାବିତ ହେବା ମହାଭାରତୀୟ ପରମ୍ପରା । ସାଧାରଣତଃ ବରପକ୍ଷରୁ ପ୍ରସ୍ତାବ ଆଗତ ହେବା ପ୍ରାଚୀନ କାଳରେ ପରିଦୃଷ୍ଟ ହେଉଥିଲା । ସଂସ୍କୃତ ମହାଭାରତରେ ଅଛି ଯେ, ଭୀଷ୍ମ ଗାନ୍ଧାରୀଙ୍କ ସହ ଧୃତରାଷ୍ଟ୍ରଙ୍କର ବିବାହ ପ୍ରସ୍ତାବ ଦୂତମାନଙ୍କ ମାଧ୍ୟମରେ ଗାନ୍ଧାରରାଜଙ୍କ ସମୀପକୁ ପ୍ରେରଣ କରିଥିଲେ । (୧୩୦) 'ସ୍କନ୍ଦପୁରାଣ'ରେ ଶିବଙ୍କ ସହ ପାର୍ବତୀଙ୍କ ବିବାହର ପ୍ରସ୍ତାବ ଶିବଙ୍କ ପକ୍ଷରୁ ସପ୍ତର୍ଷିଗଣ ହିମବାନଙ୍କ ନିକଟରେ ଉପସ୍ଥାପନ କରିଥିଲେ ବୋଲି ବର୍ଣ୍ଣିତ । (୧୩୧)

କୌଣସି କୌଣସି ସ୍ଥଳରେ କନ୍ୟା-ପିତା ବର-ପିତାଙ୍କ ନିକଟକୁ ବିବାହର ପ୍ରସ୍ତାବ ପ୍ରେରଣ କରିବା ପ୍ରାଚୀନ ଯୁଗରେ ଦେଖାଯାଉଥିଲା । ରାଜର୍ଷି ଜନକ ଶ୍ରୀରାମଙ୍କ ସହିତ ସୀତାଙ୍କର ପରିଣୟ ପ୍ରସ୍ତାବ ଦୂତମାନଙ୍କ ମାଧ୍ୟମରେ ଦଶରଥଙ୍କ ସମୀପରେ ଉତ୍ଥାପନ କରିଥିଲେ ବୋଲି 'ରାମାୟଣ'ରେ ବର୍ଣ୍ଣିତ ହୋଇଅଛି । (୧୩୨)

କେତେକ ସ୍ଥଳରେ କନ୍ୟା-ପିତା ସ୍ୱୟଂ ବରକୁ କନ୍ୟା ଗ୍ରହଣ କରିବା ନିମିତ୍ତ ଅନୁରୋଧ ଜ୍ଞାପନ କରିବା ମଧ୍ୟ ଦେଖାଯାଏ । 'ଭାଗବତ'ରେ ଅଛି ଯେ ମନୁ ରାଜା ସୁକନ୍ୟା ଦେବହୂତିଙ୍କୁ ବିବାହ କରିବା ନିମିତ୍ତ କର୍ଦ୍ଦମ ଋଷିଙ୍କୁ ଅନୁରୋଧ କରିଥିଲେ । (୧୩୩)

ନିଜେ ପାଣ୍ଡ କନ୍ୟା-ପିତାଙ୍କ ସମୀପରେ ଉପସ୍ଥିତ ହୋଇ କନ୍ୟା ପ୍ରାର୍ଥନା କରିବା କୌଣସି କୌଣସି ସ୍ଥଳରେ ସେ କାଳରେ ଦେଖାଯାଉଥିଲା । ଋଚୀକ (୧୩୪) ଓ ଅଗସ୍ତି (୧୩୫) ନିଜେ କନ୍ୟା-ପିତାଙ୍କ ନିକଟରେ କନ୍ୟା ପ୍ରାର୍ଥନା କରିବା ବିଷୟ ମହାଭାରତରେ ବର୍ଣ୍ଣିତ ।

ଶାରଳା ଦାସଙ୍କ ଯୁଗରେ ପିତାମାତାଙ୍କ କର୍ତ୍ତୃକ ବିବାହ ପ୍ରସ୍ତାବିତ ହେବା ସାଧାରଣ ରୀତି ଥିଲା ଓ ବରପକ୍ଷରୁ ପ୍ରସ୍ତାବ ଆସିଥିବା ହେଉଥିଲା । ବ୍ୟାସଦେବ ଗାନ୍ଧାରସେନଙ୍କ ନିକଟରେ ଗାନ୍ଧାରୀ ଓ ଧୃତରାଷ୍ଟ୍ରଙ୍କ ବିବାହ ପ୍ରସ୍ତାବ ଦେଇଥିଲେ । (୧୩୬) କର୍ଣ୍ଣ ଜୟଦ୍ରଥଙ୍କ ପକ୍ଷରୁ ଦୁଃଶୀଳା କନ୍ୟାର ପରିଣୟ ପ୍ରସ୍ତାବ ଦୁର୍ଯ୍ୟୋଧନଙ୍କ ସମୀପରେ ଉତ୍ଥାପନ କରିଥିଲେ । (୧୩୭) କୁନ୍ତୀ ଓ ପଣ୍ଡୁଙ୍କ ବିବାହ ପ୍ରସଙ୍ଗ ପରାଶର କୋନ୍ତଭୋଜ ରାଜାଙ୍କ ଆଗରେ ଉପସ୍ଥାପନ କରିଥିଲେ । (୧୩୮) ଶିବ ସ୍ୱପ୍ନରେ କାର୍ତ୍ତିକକୁମାରଙ୍କ ସହିତ ମହେନ୍ଦ୍ରୀ କନ୍ୟାର ପରିଣୟ ବିଷୟ ବରୁଣ-ପତ୍ନୀଙ୍କୁ କହିଥିଲେ । (୧୩୯)

କନ୍ୟା-ପିତା ବର-ପିତାଙ୍କୁ ବିବାହ ପ୍ରସ୍ତାବ ଦେବାର ଦୃଷ୍ଟାନ୍ତ ମଧ୍ୟ ଶାରଳା ଦାସଙ୍କ ମହାଭାରତରେ ମିଳେ । ବରୁଣ ରାଜା ନିଜେ ଦ୍ୱାରକାକୁ ଯାତ୍ରା କରି ଆନନ୍ଦାନନ୍ଦଙ୍କ ସହ ମହେନ୍ଦ୍ରୀଙ୍କର ବିବାହ ପ୍ରସ୍ତାବ ବଳରାମଙ୍କୁ ଦେଇଥିଲେ । (୧୪୦) 'ରାମବିଭା' କାବ୍ୟରେ ଅଛି ଯେ, ରାମଚନ୍ଦ୍ରଙ୍କ ସହ ସୀତାଙ୍କର ବିବାହ ପ୍ରସ୍ତାବ ଜନକ ଦଶରଥଙ୍କ ସମୀପକୁ ପ୍ରେରଣ କରିଥିଲେ । (୧୪୧) ରାମଚନ୍ଦ୍ର ପିତାମାତା ବିବାହ-ବିଧି ସଂପନ୍ନ କରିବେ ବୋଲି ଜନକଙ୍କୁ ଜଣାଇଥିଲେ । (୧୪୨)

କେତେକ ସ୍ଥଳରେ କନ୍ୟା-ପିତା ନିଜେ ବର ସମୀପରେ ସ୍ୱକନ୍ୟାର ବିବାହ ପ୍ରଶ୍ନ ଉତ୍ଥାପନ କରିବା ସେ କାଳରେ ବି ଦେଖାଯାଉଥିଲା । କନ୍ୟା-ପିତା ହରି ସାହୁ ସୁହାଣୀକୁ ବିବାହ କରିବା ନିମିତ୍ତ ଯୁଧିଷ୍ଠିରଙ୍କୁ ଅନୁରୋଧ ଜଣାଇଥିଲେ । (୧୪୩) ଲୋକ-ପ୍ରସିଦ୍ଧ 'ସାକ୍ଷୀ ଗୋପୀନାଥ' ଉପାଖ୍ୟାନରେ ଅଛି ଯେ, ବିଦ୍ୟାନଗରର (ବିଜୟନଗର) ବୃଦ୍ଧ ବ୍ରାହ୍ମଣ ବୃନ୍ଦାବନର ଗୋପାଳ ମନ୍ଦିରରେ ଯୁବକ ବ୍ରାହ୍ମଣଙ୍କୁ କନ୍ୟା ଦାନ କରିବେ ବୋଲି ନିଜେ ପ୍ରସ୍ତାବ ଦେଇଥିଲେ । (୧୪୪)

ବର ନିଜେ କନ୍ୟା-ପିତାଙ୍କ ନିକଟରେ ଉପସ୍ଥିତ ହୋଇ କନ୍ୟା-ପ୍ରାର୍ଥନା କରିବା ଦୃଶ୍ୟ କବି-ଲେଖନୀରେ ଚିତ୍ରିତ । ଭାଗ୍ୟବାନ ରାଜା (୧୪୫) ଓ ମଳୟ-

ସେନ ରାଜା (୧୪୬) କନ୍ୟାର ପାଳକ-ପିତା ଜମ୍ବୁକ ନିକଟରେ କନ୍ୟା-ଭିକ୍ଷା କରିଥିଲେ । ମୁଦ୍ରିତ 'ଶାରଳା ମହାଭାରତ'ରେ ଅଛି ଯେ, ଚନ୍ଦ୍ରଧ୍ୱଜ ଚନ୍ଦ୍ରମାଳୀଙ୍କୁ ବିବାହ କରିବା ପାଇଁ ଅଭିଳାଷ ପୋଷଣ କରିବାରୁ ତାହାଙ୍କୁ ସଖୀ ପିତାଙ୍କ ସମୀପରେ କନ୍ୟା-ଭିକ୍ଷା କର୍ତ୍ତବ୍ୟ ବୋଲି ଜଣାଇଥିଲେ । (୧୪୭) 'ଦାଣ୍ଡି ରାମାୟଣ'ରେ ଅଛି ଯେ, ଋଷ୍ୟଶୃଙ୍ଗ ନିଜେ ଶାନ୍ତା କନ୍ୟାଙ୍କୁ ବିବାହ କରିବେ ବୋଲି ଦଶରଥ ଓ ଲୋମପାଦଙ୍କ ସମକ୍ଷରେ ପ୍ରସ୍ତାବ ଦେଇଥିଲେ । (୧୪୮) ଅର୍ଜୁନ ଦାସଙ୍କ 'କଳ୍ପଲତା' କାବ୍ୟରେ ନାୟକ ନିଜେ କନ୍ୟା-ପିତାଙ୍କ ନିକଟରେ ବିବାହ ପ୍ରସ୍ତାବ ଉପସ୍ଥାପନ କରିବା କଥା ଅଛି । (୧୪୯) ପୁରୁଷୋତ୍ତମ ଦେବ କାଞ୍ଚି-ରାଜାଙ୍କ ସମୀପକୁ କନ୍ୟା ଦେବା ନିମିତ୍ତ ପ୍ରସ୍ତାବ କରି ଦୂତ ପ୍ରେରଣ କରିଥିବାର ଜଣାଯାଏ । (୧୫୦).

## (ଚ) ପ୍ରାକ୍-ବିବାହ ପ୍ରେମ :

ପାଶ୍ଚାତ୍ୟ-ଜଗତରେ ଯେତେଗୁଡ଼ିଏ ସ୍ତର ମଧ୍ୟଦେଇ ଯୁବକ-ଯୁବତୀ ପାରିବାରିକ ଜୀବନରେ ପ୍ରବେଶ କରନ୍ତି, ତନ୍ମଧ୍ୟରେ ପ୍ରାକ୍-ବିବାହ ପ୍ରେମ (courtship) ଅନ୍ୟତମ । (୧୫୧)

ସାଧାରଣତଃ ଏହା ଗୋଟିଏ ଯୁବକକୁ କେନ୍ଦ୍ର କରେ । ଏହାର ଉଦ୍ଦେଶ୍ୟ ହେଉଛି—ଯୁବକ ଓ ଯୁବତୀ ପରସ୍ପରକୁ ଜାଣିବା ଏବଂ ବିବାହ କରଣୀୟ କି ନୁହେଁ ତାହା ନିଶ୍ଚିତ କରିବା । (୧୫୨)

ମଧ୍ୟଯୁଗୀନ ମହାଭାରତୀୟ ପରମ୍ପରାରେ କୌଣସି କୌଣସି ସ୍ଥଳରେ ପ୍ରାକ୍-ବିବାହ ପ୍ରେମର ଦୃଷ୍ଟାନ୍ତ ମିଳେ । 'ବ୍ରହ୍ମ ପୁରାଣ'ରେ ବର୍ଣ୍ଣନା କରାଯାଇଅଛି ଯେ, ଉଷା ଓ ଅନିରୁଦ୍ଧ ଅନ୍ତଃପୁରରେ ଗୁପ୍ତ-ବିହାର କଲା ପରେ ବିବାହ କରିଥିଲେ । (୧୫୩) ଶାମ୍ବ ମଧ୍ୟ ଦୁର୍ଯ୍ୟୋଧନଙ୍କ କନ୍ୟା ଲକ୍ଷଣାଙ୍କ ସହ ବିହାର କଲା ପରେ ତାହାଙ୍କ ସହିତ ପରିଣୟସୂତ୍ରରେ ଆବଦ୍ଧ ହୋଇଥିଲେ । (୧୫୪)

ଭାରତୀୟ ସମାଜରେ ପ୍ରାକ୍-ବିବାହ ପ୍ରେମକୁ ଗାନ୍ଧର୍ବ ରୀତିରେ ସ୍ୱୀକୃତି ପ୍ରଦାନ କରାଯାଇଥିବାର ପରିଲକ୍ଷିତ ହୁଏ । ଏହି ରୀତି ଅନୁଯାୟୀ ଯୁବକ-ଯୁବତୀ ପ୍ରେମ କଲା ପରେ ବିବାହ-ବନ୍ଧନରେ ଆବଦ୍ଧ ହୋଇପାରୁଥିଲେ । (୧୫୫) ଗାନ୍ଧର୍ବ-ବିବାହ କ୍ଷତ୍ରିୟଙ୍କ ପକ୍ଷରେ ଉପଯୋଗୀ ବୋଲି ବିବେଚିତ ହେଉଥିଲା । (୧୫୬) ରାଜା ଦୁଷ୍ମନ୍ତ କଣ୍ୱ ମୁନିଙ୍କ କନ୍ୟା ଶକୁନ୍ତଳାଙ୍କ ସହ ପ୍ରେମ କଲା ପରେ

ଗାନ୍ଧର୍ବ ରୀତିରେ ତାହାଙ୍କୁ ବିବାହ କରିଥିଲେ । (୧୫୭) କାଳିଦାସ 'ଅଭିଜ୍ଞାନ ଶାକୁନ୍ତଳମ୍' ନାଟକରେ ଦୁଷ୍ମନ୍ତଙ୍କ ପ୍ରେମ ତଥା ଗାନ୍ଧର୍ବ-ବିବାହର ଆଲେଖ୍ୟ ପ୍ରଦାନ କରିଅଛନ୍ତି । (୧୫୮) ଦେବଯାନୀ ମଧ୍ୟ ଯଯାତିଙ୍କୁ ପ୍ରେମ କଲା ପରେ ପରିଣୟ କରିଥିଲେ । (୧୫୯) କିନ୍ତୁ ଏହି ସମସ୍ତ ପ୍ରାକ୍-ବିବାହ ପ୍ରେମରେ ନାୟକ-ନାୟିକାଙ୍କର ଅଙ୍ଗ-ସଙ୍ଗର କଥା ନାହିଁ । ଯେଉଁ ସ୍ଥଳରେ ବିବାହ ପୂର୍ବରୁ ନାୟକ-ନାୟିକାଙ୍କର ଅଙ୍ଗ-ଭୋଗର କଥା ଅଛି, ସେଠାରେ ତାହାର ନିନ୍ଦା କରାଯାଇଅଛି । ପୁରାଣରେ ଅନିରୁଦ୍ଧ-ଉଷା ଏବଂ ଶାମ୍ବ-ଲକ୍ଷଣାଙ୍କ ଅଙ୍ଗ-ସଙ୍ଗ ନିନ୍ଦିତ ହୋଇଥିବାର ଦେଖାଯାଏ । (୧୬୦)

ଶାରଳା ଦାସଙ୍କ କାଳରେ କୌଣସି କୌଣସି ସ୍ଥଳରେ ପ୍ରାକ୍-ବିବାହ ପ୍ରେମର ଦୃଷ୍ଟାନ୍ତ ମଧ୍ୟ ଦେଖାଯାଉଥିଲା । କିନ୍ତୁ ବିବାହ ପୂର୍ବରୁ ଗୋପନରେ ଅଙ୍ଗଭୋଗ କରିବା ସମାଜରେ ନିନ୍ଦନୀୟ ବିବେଚିତ ହେଉଥିଲା । କାଳିନ୍ଦୀ-ଭୀମ (୧୬୧), ହିଡ଼ିମ୍ବା-ଭୀମ (୧୬୨) ଓ ହାରାବତୀ-ଅର୍ଜୁନଙ୍କ (୧୬୩) ପରିଣୟମୂଳରେ ପ୍ରାକ୍-ବିବାହ ପ୍ରେମ ନିହିତ । ଏହି ସ୍ଥଳମାନଙ୍କରେ ଅଙ୍ଗଭୋଗର କଥା ନାହିଁ । ତେଣୁ କବି ତାହାର ନିନ୍ଦା କରିନାହାନ୍ତି । କିନ୍ତୁ ଚନ୍ଦ୍ରାବତୀ-ଶାମ୍ବ (୧୬୪), ଅନିରୁଦ୍ଧ-ଉଷା (୧୬୫) ଓ ଅର୍ଜୁନ-ସୁଭଦ୍ରାଙ୍କ (୧୬୬) ପ୍ରାକ୍-ବିବାହ ପ୍ରେମରେ ଅଙ୍ଗ-ସଙ୍ଗର ବୃତ୍ତାନ୍ତ ଥିବାରୁ କବି ତାହାର ନିନ୍ଦା କରିଅଛନ୍ତି ଏବଂ ପ୍ରତ୍ୟେକ ସ୍ଥଳରେ କନ୍ୟା ଦୂଷିତା ହେବା କଥା ଉଲ୍ଲେଖ କରିଛନ୍ତି । (୧୬୬ଅ)

ମଧ୍ୟଯୁଗୀନ ଉତ୍କଳରେ ପ୍ରେମ ଓ ବିବାହର ଦୃଷ୍ଟାନ୍ତ ଅନ୍ୟନ୍ୟ ବି ମିଳେ । ବିଶ୍ୱନାଥ କବିରାଜଙ୍କ 'ଚନ୍ଦ୍ରକଳା ନାଟିକା'ରେ ନାୟକ ଦଶରଥ ନାୟିକା ଚନ୍ଦ୍ରକଳାଙ୍କୁ ପ୍ରେମ ପରେ ବିବାହ କରିଥିବା ବୃତ୍ତାନ୍ତ ନିହିତ । (୧୬୭) ପୁରୁଷୋତ୍ତମ ଦେବ କାଞ୍ଚି-ରାଜଜେମାଙ୍କୁ ପ୍ରଥମେ ପ୍ରେମ କରି ପରେ ପରିଣୟ କରିଥିବାର ବର୍ଣ୍ଣନା ମିଳେ । (୧୬୮)

## (ଛ) ନିର୍ବନ୍ଧ :

ପାଶ୍ଚାତ୍ୟ-ଜଗତରେ ବିବାହ ପୂର୍ବରୁ ନିର୍ବନ୍ଧ ଭଳି ଏକ ଅନୁଷ୍ଠାନ (Engagement of Betrothal) କରାଯାଏ । (୧୬୯) ଭାରତୀୟ ସମାଜରେ ବାଗ୍‌ଦାନ କରିବା ବିଧି ପ୍ରଚଳିତ ଅଛି । (୧୭୦) ବାଗ୍‌ଦାନ କାଳରେ କନ୍ୟା-ପିତା ସତ୍ୟ କରନ୍ତି ଯେ, ସେ କନ୍ୟା ଦାନ କରିବେ । ବର-ପିତା ସ୍ୱୀକାର କରନ୍ତି ଯେ, ସେ କନ୍ୟାକୁ ବଧୂରୂପରେ ଗ୍ରହଣ କରିବେ । (୧୭୧) ଉତ୍ତର

ଭାରତରେ ଏହା ପରେ ଶୁଭଦିନ ନିରୂପଣ କରି ବିବାହ କର୍ମ ଅନୁଷ୍ଠାନ କରିବା ରୀତି ପ୍ରଚଳିତ ଅଛି । (୧୭୨) ଉତ୍କଳରେ ଅନୁସୃତ 'ବିଦାଗ୍ନି କର୍ମକାଣ୍ଡ'ରେ ବାଗ୍‌ଦାନ କର୍ମ ବିବାହ ଦିବସରେ ବେଦୀ ଉପରେ ଅନୁଷ୍ଠାନ କରିବା ବିଷୟ ରହିଛି । (୧୭୩) ଦାକ୍ଷିଣାତ୍ୟରେ ବାଗ୍‌ଦାନ ବିବାହ ନିଶ୍ଚିତ କରିବା ଅନୁଷ୍ଠାନ ରୂପରେ ପ୍ରଚଳିତ ଥିବାର ଜଣାଯାଏ । (୧୭୪)

ଉତ୍କଳରେ ବେଦୀ ଉପରେ ବାଗ୍‌ଦାନ କର୍ମ ହେବା ପୂର୍ବରୁ ନିର୍ବନ୍ଧ ବା ସତ୍ୟ କରିବା ରୀତି ପ୍ରଚଳିତ ଥିଲା । ଗଙ୍ଗା ଦେବୀଙ୍କ ପରିଣୟ ସମ୍ପାଦିତ ହେବା ପୂର୍ବରୁ ତାଙ୍କର ପିତା ନିର୍ଘାତ ରଜା (୧୭୫), ମାଳେନ୍ଦ୍ରୀଙ୍କ ବିବାହ ପୂର୍ବରୁ ବରୁଣ (୧୭୬) ଓ ସୁହାଣୀର ପାଣି-ଗ୍ରହଣ କର୍ମ ପୂର୍ବରୁ ବୈଶ୍ୟ ହରି ସାହୁ (୧୭୭) କନ୍ୟା ଦାନ କରିବେ ବୋଲି ସତ୍ୟ କରିଥିଲେ । ସତ୍ୟ ବା ନିର୍ବନ୍ଧ କରି ଲୋକେ ତାହା ଭଗ୍ନ କରୁ ନ ଥିଲେ । ସତ୍ୟଭଙ୍ଗ କଲେ ପାପ ହୁଏ ବୋଲି ଲୋକ-ବିଶ୍ୱାସ ଥିଲା । ନିର୍ଘାତ ରଜାଙ୍କ ଉକ୍ତିରୁ ଏହା ସ୍ପଷ୍ଟ । (୧୭୮)

'ଦାଣ୍ଡି ରାମାୟଣ'ରେ ଜନକ ଋଷି କନ୍ୟା ସଂପ୍ରଦାନ କରିବେ ବୋଲି ସତ୍ୟବଦ୍ଧ ହେବା ଏବଂ ଦଶରଥ ସ୍ୱୀକାରୋକ୍ତି ପ୍ରକାଶ କରିବା ବର୍ଣ୍ଣନା ଦେଖାଯାଏ । (୧୭୯) ଆଧୁନିକ କାଳରେ ବିବାହ ପୂର୍ବରୁ ବରପକ୍ଷ ଓ କନ୍ୟାପକ୍ଷ ଏକତ୍ର ହୋଇ 'ମହାପ୍ରସାଦ ନିର୍ବନ୍ଧ' କରିବା ରୀତି ଉତ୍କଳରେ ପ୍ରଚଳିତ ଅଛି । (୧୭୯ ଅ)

ଉତ୍କଳରେ ଏହି ନିର୍ବନ୍ଧ କାର୍ଯ୍ୟଟି ଉତ୍ତର-ଭାରତରେ ବର୍ତ୍ତମାନ ପ୍ରଚଳିତ 'ସଗୁଣ' ବା 'ସିଦ୍ଧାନ୍ତ' ଅନୁଷ୍ଠାନ ସହ ସମାନ । ବରପକ୍ଷ ଓ କନ୍ୟାପକ୍ଷ ଏକତ୍ର ମିଳିତ ହୋଇ ବିବାହ ସ୍ଥିର କରିବାକୁ 'ସଗୁଣ' ବା 'ସିଦ୍ଧାନ୍ତ' କୁହାଯାଏ । ଏହାପରେ କନ୍ୟାପକ୍ଷର ଲୋକେ ବରର ଗୃହକୁ ଗମନ କରି ବରର ପୂଜା କରନ୍ତି ଏବଂ ବରକୁ ବସ୍ତ୍ର-ଭୂଷଣାଦି ଦାନ କରନ୍ତି । ଏହି ଅନୁଷ୍ଠାନର ନାମ 'ତିଳକ' । ବିବାହ ଦିବସର କିଛି ଦିନ ପୂର୍ବରୁ ଏହା ପାଳିତ ହୁଏ । ଏହି ତିଳକ ପ୍ରଥା ଓଡ଼ିଶାରେ ଥିବାର ପ୍ରମାଣ ଶାରଳା ଦାସଙ୍କ ମହାଭାରତରୁ ମିଳେ ନାହିଁ । ଉତ୍କଳୀୟ ସମାଜରେ ଏବେ ବି ଏହି ପ୍ରଥା ନାହିଁ ।

## ୨ । ଆୟୋଜନ ଓ ମଙ୍ଗଳନ :

ବରପକ୍ଷ ତଥା କନ୍ୟାପକ୍ଷ ନିର୍ବନ୍ଧ ପରେ ବିବାହୋତ୍ସବର ଆୟୋଜନରେ ଲାଗିପଡ଼ନ୍ତି । ଶୁଭଲଗ୍ନ ନିରୂପଣ, ବନ୍ଧୁ-ନିମନ୍ତ୍ରଣ, ମଣ୍ଡପ ଓ ବେଦୀ

ସ୍ଥାପନ ଆଦି କାର୍ଯ୍ୟ ବିବାହ-ଦିବସ ପୂର୍ବରୁ ସମାପିତ ହୁଏ । ଶାରଳା ଦାସଙ୍କ ମହାଭାରତରେ ଏ ସବୁର ଚିତ୍ର ମିଳେ ।

## (କ) ଲଗ୍ନ ନିରୂପଣ :

ଶୁଭ ଲଗ୍ନ ସ୍ଥିର କରି ମଙ୍ଗଳ ମୁହୂର୍ତ୍ତରେ ପରିଣୟ କାର୍ଯ୍ୟ ସମ୍ପାଦନ କରିବା ମହାଭାରତୀୟ ପରମ୍ପରା । ବରଣ, କନ୍ୟା-ଦାନ, ପାଣିଗ୍ରହଣ, ଶଚୀ-ପୂଜା ଓ ଅଭିଷେକାଦି କର୍ମ ଶୁଭ ଲଗ୍ନ ଓ ଶୁଭ ତିଥିରେ ସମ୍ପାଦନ କଲେ ପୁଣ୍ୟ ହୁଏ । (୧୮୦) କନ୍ୟା-ପିତା ବିଦ୍ୱାନ୍ ବ୍ରାହ୍ମଣଙ୍କ ସମୀପକୁ ଗମନ କରି ଲଗ୍ନ ବିଷୟରେ ପ୍ରଶ୍ନ କରିବା ବିଧି ପୂର୍ବେ ଥିଲା । (୧୮୧) ମୂଳ ମହାଭାରତରେ ବର୍ଣ୍ଣିତ ଅଛି ଯେ, ବ୍ୟାସଦେବ ପୁଷ୍ୟା ନାମକ ନକ୍ଷତ୍ରରେ ଦ୍ରୌପଦୀଙ୍କର ପାଣିଗ୍ରହଣ କରିବା ପାଇଁ ଯୁଧିଷ୍ଠିରଙ୍କୁ ଉପଦେଶ ଦେଇଥିଲେ । (୧୮୨) ସାଧାରଣତଃ ବିବାହ କାର୍ଯ୍ୟ ସୂର୍ଯ୍ୟଙ୍କର ଉତ୍ତରାୟଣ ବେଳରେ ଶୁକ୍ଳ ପକ୍ଷରେ କରାଯିବା ବିଧି ଥିଲା । (୧୮୩)

ଉତ୍କଳୀୟ ସମାଜରେ ଲୋକେ ଜ୍ୟୋତିଷଙ୍କ ପାଖକୁ ଯାଇ ଶୁଭଲଗ୍ନ ନିରୂପଣ କରୁଥିଲେ । ବୈଶ୍ୟ ହରି ସାହୁ ଉଦ୍ଧାଳକ ନାମକ ଗଣକଙ୍କ ସମୀପରେ ଉପସ୍ଥିତ ହୋଇ ସୁହାଣୀ କନ୍ୟାର ବିବାହ-ଲଗ୍ନ ସମ୍ପର୍କରେ ପ୍ରଶ୍ନ କରିବା ବର୍ଣ୍ଣନାରୁ ଏହା ସ୍ପଷ୍ଟ । (୧୮୪) ଦ୍ରୌପଦୀଙ୍କ ବିବାହ-ବର୍ଣ୍ଣନା ପ୍ରସଙ୍ଗରେ ମାସ, ପକ୍ଷ, ତିଥି, ବାର, ଘଡ଼ି, ନକ୍ଷତ୍ର ଓ ବେଳା ବିପ୍ରମାନଙ୍କ ଦ୍ୱାରା ନିର୍ଣ୍ଣିତ ହେବା ବର୍ଣ୍ଣନା କବିଙ୍କ ଲେଖାରେ ମିଳେ । (୧୮୫) ସୁଭଦ୍ରା (୧୮୬), ମାଳେନ୍ଦ୍ରୀ (୧୮୭), ଉତ୍ତରା (୧୮୮), ଚିତ୍ରାଙ୍ଗଦା (୧୮୯) ପ୍ରଭୃତି କନ୍ୟାମାନଙ୍କର ବିବାହ-ଆଲେଖ୍ୟରେ ଲଗ୍ନ, ବାର, ନକ୍ଷତ୍ର, ଯୋଗ ଓ କରଣାଦିର ବିସ୍ତୃତ ବିବୃତ ।

'ରାମବିଭା' କାବ୍ୟରେ ରାମ-ସୀତାଙ୍କ ପରିଣୟ ପୂର୍ବରୁ ଶୁଭ ଲଗ୍ନ ନିରୂପିତ ହେବାର ଚିତ୍ର ମିଳେ । (୧୯୦) 'ଭାଗବତ'ରେ କାଳନ୍ଦୀ କନ୍ୟାର ବିବାହ ସୂର୍ଯ୍ୟଙ୍କର ଉତ୍ତରାୟଣ ବେଳେ ଶୁଭ ଲଗ୍ନରେ ଅନୁଷ୍ଠିତ ହେବା ବୃତ୍ତାନ୍ତ ବର୍ଣ୍ଣିତ । (୧୯୧)

## (ଖ) ବେଦୀ ସ୍ଥାପନ

ପ୍ରାଚୀନ କାଳରୁ ବିବାହ ଉଦ୍ଦେଶ୍ୟରେ ମଣ୍ଡପ ଓ ବେଦୀ ପ୍ରତିଷ୍ଠା କରିବା ରୀତି ସମାଜରେ ପ୍ରଚଳିତ ହୋଇଆସୁଅଛି । ବିବାହ-ମଣ୍ଡପ ଗୃହର ବାମ ଭାଗରେ

ସ୍ଥାପିତ ହେବା ବିଧି । ତାହା ଷୋହଳ ହାତରୁ ନ୍ୟୂନ ଓ ଦଶ ହାତରୁ ଅଧିକ ଦୀର୍ଘ-ପ୍ରସ୍ଥବିଶିଷ୍ଟ ହୁଏ । (୧୯୨) ମଣ୍ଡପ ପୂର୍ବୋତ୍ତର ଦିଗକୁ ନିମ୍ନନିମ୍ନ କରି ଗଠନ କରାଯାଏ । ରମ୍ଭା ବୃକ୍ଷ ଓ ଶୁକାଦି ପକ୍ଷୀମାନଙ୍କ ଚିତ୍ରରେ ତାହା ସୁଶୋଭିତ ହୁଏ । (୧୯୩) ମଣ୍ଡପର ସ୍ତମ୍ଭମାନଙ୍କରେ ଦୂବ୍ଧା, ଶମୀପତ୍ର, ବକୁଳ-ପତ୍ର ଓ ଆମ୍ରପତ୍ରମାନ ବାନ୍ଧିଦିଆଯାଏ । (୧୯୪)

ମଣ୍ଡପର ମଧ୍ୟଭାଗରେ ଚୃରି ହାତ ଦୀର୍ଘ-ପ୍ରସ୍ଥ ଏବଂ ଏକ ହାତ ଉଚ୍ଚତା-ବିଶିଷ୍ଟ ଏକ ବେଦୀ ନିର୍ମାଣ କରାଯିବା ମଧ୍ୟ ବିଧି । ବେଦୀର ଚୃରି କୋଣରେ ସ୍ତମ୍ଭ ଓ ସ୍ତମ୍ଭୋପରି ଚନ୍ଦ୍ରାତପ ଶୋଭା ପାଏ । ତାହାର ଚୃରିପାଖରେ ସୋପାନମାନ ରଖାଯାଇଥାଏ । (୧୯୫) ତାହା ମଧ୍ୟ ନାନାବିଧ ମାଙ୍ଗଳିକ ଚିତ୍ର ଓ କଳଶରେ ସୁଶୋଭିତ ହେବାର କଥା । (୧୯୬)

ଶାରଳା ଦାସଙ୍କ ଯୁଗରେ ମଣ୍ଡପ ଓ ବେଦୀର ପ୍ରତିଷ୍ଠା କରାଯାଉଥିଲା । ତାଙ୍କ ମହାଭାରତରେ ମଣ୍ଡପ ତଥା ବେଦୀ ସ୍ଥାପନର ଚିତ୍ର ମିଳେ । ଚିତ୍ରାଙ୍ଗଦା-ପରିଣୟ ବର୍ଣ୍ଣନାରେ କବି ମେଢ଼ ଓ ମଣ୍ଡପର ସାଜସଜ୍ଜା ତଥା ସୁବର୍ଣ୍ଣ କଳଶ ସ୍ଥାପନର ଉଲ୍ଲେଖ କରିଛନ୍ତି । (୧୯୭) ଉତ୍ତରା-ବିବାହ ଦୃଶ୍ୟରେ ଅଛି ଯେ, ବିରାଟ ରାଜା ପାଞ୍ଚକୋଶବ୍ୟାପୀ ଏକ ସୁଶୋଭିତ ମଣ୍ଡପ ଗଠନ କରିଥିଲେ । (୧୯୮) ହରି ସାହୁ ସୁହାଣୀ କନ୍ୟାର ବିବାହ ପାଇଁ ନଦୀତୀରରେ ସ୍ଫଟିକ-ସ୍ତମ୍ଭ ଓ ରୌପ୍ୟ-ରୁଅଯୁକ୍ତ ମଣ୍ଡପ ତଥା କନକ-ବେଦୀ ପ୍ରତିଷ୍ଠା କରିଥିଲେ । (୧୯୯) ରାମବିଭା (୨୦୦), କଳ୍ପଲତା (୨୦୧), ଦାଣ୍ଡି ରାମାୟଣ (୨୦୨) ଓ ରୁକ୍ମଣୀ-ବିଭା (୨୦୩) କାବ୍ୟରେ ସୁଶୋଭିତ ମଣ୍ଡପ ଓ ବେଦୀ ପ୍ରତିଷ୍ଠା ହେବାର ଚିତ୍ର ରହିଅଛି ।

## (ଗ) ବନ୍ଧୁ ନିମନ୍ତ୍ରଣ :

ବିବାହ ଗୋଟିଏ ସାମାଜିକ ଅନୁଷ୍ଠାନ । ତେଣୁ ପୁତ୍ର ବା କନ୍ୟାର ପରିଣୟ କାଳରେ ବନ୍ଧୁ-ବାନ୍ଧବ, ସଖା-ସୋଦର ଓ ବ୍ରାହ୍ମଣଗଣଙ୍କୁ ନିମନ୍ତ୍ରଣ କରିବା ମହାଭାରତୀୟ ଚଳଣିରେ ସ୍ଥାନ ଲଭ କରିଅଛି । ସଂସ୍କୃତ ମହାଭାରତରେ ଅଭିମନ୍ୟୁ-ଉତ୍ତରାଙ୍କ ବିବାହ କାଳରେ ବନ୍ଧୁ-ବାନ୍ଧବ ଓ ସଖା-ସୋଦରଗଣ ନିମନ୍ତ୍ରିତ ହେବା କଥା ନିଶ୍ଚିତ । (୨୦୪) ନିମନ୍ତ୍ରିତ ବନ୍ଧୁମାନେ ଶୂନ୍ୟହସ୍ତରେ ନ ଆସି କିଛି ଉପହାର ନେଇ ଆସିବାର ଦେଖାଯାଏ ।

ଉତ୍ତରାଙ୍କ ବିବାହ କାଳରେ ଶ୍ରୀକୃଷ୍ଣ ବହୁ ଧନରତ୍ନ ଯୌତୁକ ଆଗମନ କରିଥିଲେ ବୋଲି ମୂଳ ମହାଭାରତରେ ପ୍ରଦର୍ଶିତ ହୋଇଅଛି । (୨୦୫)

ଉତ୍କଳୀୟ ସମାଜରେ ସେ କାଳରେ ବନ୍ଧୁ-ନିମନ୍ତ୍ରଣ ଓ ବନ୍ଧୁ-ବେଭାରର ପ୍ରଚଳନ ଥିଲା । ଦ୍ରୌପଦୀଙ୍କ ବିବାହ କାଳରେ ରାଜା ଦ୍ରୁପଦ ବନ୍ଧୁବାନ୍ଧବଙ୍କ ସହିତ ସାମନ୍ତ ନୃପତିମାନଙ୍କୁ ନିମନ୍ତ୍ରଣ କରି ଆଣିଥିଲେ । (୨୦୬) ବହୁ ମୁନିଋଷି ମଧ୍ୟ ପାଞ୍ଚାଳୀଙ୍କ ବିବାହୋତ୍ସବରେ ଯୋଗଦେଇଥିଲେ । (୨୦୭) ଉତ୍ତରାଙ୍କ ବିବାହ ସମୟରେ ଯୁଧିଷ୍ଠିରଙ୍କ ପକ୍ଷ ଓ ବିରାଟ ରାଜାଙ୍କ ଅକ୍ଷତ ସହ ବାମଦେବ ନିମନ୍ତ୍ରଣ କାର୍ଯ୍ୟରେ ବହିର୍ଗତ ହୋଇଥିଲେ । (୨୦୮) ସୁଭଦ୍ରା ଓ ଅର୍ଜ୍ଜୁନଙ୍କ ପରିଣୟ କାଳରେ ଯୁଧିଷ୍ଠିର ଦୁର୍ଯ୍ୟୋଧନଙ୍କୁ ନିମନ୍ତ୍ରଣ କରିବା ନିମିତ୍ତ ବିଦୁରଙ୍କୁ ପ୍ରେରଣ କରିଥିଲେ । (୨୦୯) ହରି ସାହୁ ନିଜର କନ୍ୟା ସୁହାଣୀର ବିବାହ ଉତ୍ସବକୁ ବନ୍ଧୁବାନ୍ଧବମାନଙ୍କୁ ନିମନ୍ତ୍ରଣ କରି ଆଣିଥିଲେ । (୨୧୦) ଉତ୍ତରାଙ୍କ ବିବାହକୁ ଆଗମନ କରିଥିବା ରାଜନ୍ୟବୃନ୍ଦ ବିରାଟ ନୃପତିଙ୍କୁ ବହୁ ଧନରତ୍ନ ପ୍ରଦାନ କରିଥିଲେ । (୨୧୧)

'ରାମବିଭା' କାବ୍ୟରେ ଅଛି ଯେ, ରାମଙ୍କ ବିବାହ ଉଦ୍ଦେଶ୍ୟରେ ଦଶରଥ ବହୁ ସୈନ୍ୟ-ସାମନ୍ତ, ବଶିଷ୍ଠ ଓ କୌଶିକ ପ୍ରଭୃତି ଋଷିମାନଙ୍କୁ ସଙ୍ଗରେ ନେଇ ମିଥିଳାକୁ ଯାତ୍ରା କରିଥିଲେ । (୨୧୨) 'ରୁକ୍ମିଣୀବିଭା' କାବ୍ୟରେ ଶ୍ରୀକୃଷ୍ଣଙ୍କର ବିବାହୋତ୍ସବରେ ବହୁ ମୁନିଋଷି, ରାଜା, ନନ୍ଦ-ଯଶୋଦା ଓ ସମସ୍ତ ଗୋପପୁରବାସୀ ଉପସ୍ଥିତ ହୋଇଥିଲେ ବୋଲି ବର୍ଣ୍ଣନା କରାଯାଇଅଛି । (୨୧୩)

## (ଘ) ମଙ୍ଗଳନ :

ବିବାହୋତ୍ସବର ପୂର୍ବ ଦିବସକୁ ମଙ୍ଗଳକୃତ୍ୟ ବା ମଙ୍ଗଳନ କୁହାଯାଏ । ସେ ଦିନ ମଣ୍ଡପରେ ହୋମ ନିମିତ୍ତ ଯଜ୍ଞ-ବେଦୀ ସ୍ଥାପିତ ହୁଏ । ମଙ୍ଗଳନ ଦିନ ଗଣେଶଙ୍କର ପ୍ରତୀକକୁ (୨୧୩ ଅ) ନିର୍ଦ୍ଦିଷ୍ଟ ନିୟମ ସହିତ ବିବାହ ମଣ୍ଡପରେ ସ୍ଥାପନ କରି ପୂଜାର୍ଚ୍ଚନା କରାଯାଏ । ଦିବସର ପ୍ରଥମାର୍ଦ୍ଧରେ କନ୍ୟାର ପିତା-ମାତା ନୂତନ ବସ୍ତ୍ର ପରିଧାନ କରି ଆସନରେ ଉପବିଷ୍ଟ ହୁଅନ୍ତି । ସେମାନେ ଆଚମନ-ପ୍ରାଣାୟାମ ପରେ ବୈବାହିକ କର୍ମାନୁଷ୍ଠାନ କରିବେ ବୋଲି ସଂକଳ୍ପ କରନ୍ତି । (୨୧୪) ପ୍ରାଚୀନ କାଳରେ ମଙ୍ଗଳନ ବିଧି ଥିଲା । ରାମାୟଣରୁ ଉପଲବ୍ଧ ହୁଏ ଯେ, ରାମ ଓ ସୀତା ମଙ୍ଗଳ-ବିଧି ସମ୍ପାଦନ କରି ବେଦୀ

ସମୀପକୁ ଆଗମନ କରିଥିଲେ । (୨୧୫) 'ସଂସ୍କୃତ ମହାଭାରତ'ରେ ଦ୍ରୌପଦୀ-ବିବାହ ପ୍ରସଙ୍ଗରେ ମଙ୍ଗଳବିଧିର ଉଲ୍ଲେଖ ପରିଦୃଷ୍ଟ ହୁଏ । (୨୧୬) 'ସ୍କନ୍ଦ ପୁରାଣ'ରେ ପାର୍ବତୀଙ୍କ ବିବାହ ଦୃଶ୍ୟରେ ମଙ୍ଗଳାଚରଣର ବର୍ଣ୍ଣନା ମିଳେ । (୨୧୭)

ଶାରଳା ଦାସଙ୍କ କାଳରେ ଉତ୍କଳୀୟ ସମାଜରେ ମଙ୍ଗଳକୃତ୍ୟ ବହୁ ଆଡ଼ମ୍ବରସହକାରେ ପାଳିତ ହେଉଥିଲା । କବି-ଲେଖନୀରେ ମଙ୍ଗଳନ-ବିଧିର ପୁଷ୍କଳ ପ୍ରକାଶ ପରିଦୃଷ୍ଟ ହୁଏ । ବର ଓ କନ୍ୟା ଉଭୟଙ୍କ ଗୃହରେ ମଙ୍ଗଳ କାମନା କରି ନାନା ବିଧି-ବିଧାନ ଅନୁଷ୍ଠିତ ହେଉଥିଲା । ଦ୍ରୌପଦୀଙ୍କ ବିବାହ କାଳରେ ମଙ୍ଗଳନ ଦିନ ବରପକ୍ଷୀୟ ଲୋକେ କୁଙ୍କୁମ-କର୍ପୂର ବୋଳି ହୋଇ ହାସ-ପରିହାସ ମଧ୍ୟରେ ସ୍ନାନ କରିଥିଲେ । କନ୍ୟା-ଗୃହରେ ନାରୀମାନେ ମଙ୍ଗଳ ଗୀତ ଗାନ ସହ ବର-କନ୍ୟାଙ୍କ ଶରୀରରେ ସୁଗନ୍ଧି ଲେପନ କରିଥିଲେ । ସେମାନଙ୍କର ବେଶ-ବିନ୍ୟାସ ମଧ୍ୟ କରାଯାଇଥିଲା । (୨୧୮) ରାଜା ଦ୍ରୁପଦ ବିବାହର ପ୍ରଥମ ଆୟୋଜନରେ ଗଣେଶ, ବ୍ରହ୍ମା ତଥା ଅନ୍ୟାନ୍ୟ ଦେବତା-ମାନଙ୍କୁ ପୂଜା କରିଥିଲେ । (୨୧୯) ଉତ୍ତରା-ବିବାହ ଦୃଶ୍ୟରେ ମଧ୍ୟ ମଙ୍ଗଳନର ବର୍ଣ୍ଣନା ମିଳେ । (୨୨୦) ଦୁଃଶୀଳା କନ୍ୟାର ବିବାହ ପ୍ରସଙ୍ଗରେ କବି ମଙ୍ଗଳ ଉତ୍ସବର ଉଲ୍ଲେଖ କରିଅଛନ୍ତି । (୨୨୧) ରାମବିଭା (୨୨୨), କଳସା ଚଉତିଶା (୨୨୩), ଦାଣ୍ଡି ରାମାୟଣ (୨୨୪), ରୁକ୍ମଣୀବିଭା (୨୨୫) ଓ ଲାବଣ୍ୟବତୀ (୨୨୬) କାବ୍ୟରେ ମଙ୍ଗଳନ-ବିଧିର ବର୍ଣ୍ଣନା ମିଳେ ।

ସେ କାଳରେ ମଙ୍ଗଳନ ଦିନ ଭୋଜିଭାତ ମଧ୍ୟ ହେଉଥିଲା । କବି ବର୍ଣ୍ଣନା କରିଅଛନ୍ତି ଯେ, ମଙ୍ଗଳନ-ବିଧି ପାଳିତ ହେବା ପୂର୍ବରୁ ଦ୍ରୁପଦ ରାଜା ମୁନିଋଷି, ଆଗନ୍ତୁକ ରାଜନ୍ୟବୃନ୍ଦ ଓ ବନ୍ଧୁବାନ୍ଧବଙ୍କୁ ଭୋଜି ଦେଇଥିଲେ । (୨୨୭) ଉତ୍ତରା-ପରିଣୟ ଶିରରେ ମଙ୍ଗଳନ ପୂର୍ବରୁ ଏବଂବିଧ ଭୋଜନଚର୍ଚ୍ଚାର ଚିହ୍ନ ରହିଛି । (୨୨୮)

## ୩. ବିବାହୋତ୍ସବ ଓ କର୍ମ-କର୍ମାଣି :

ଜ୍ୟୋତିଷଶାସ୍ତ୍ର-ସମ୍ମତ ଏକ ଶୁଭ ଦିବସରେ ବିବାହ କାର୍ଯ୍ୟସମ୍ପନ୍ନ କରାଯାଏ । ସେ ଦିନ ବ୍ରହ୍ମମୁହୂର୍ତ୍ତରୁ ବିବାହ-ଭୋଜି ଶେଷ ହେବା ପର୍ଯ୍ୟନ୍ତ ନାନା ଉତ୍ସବ ଓ କର୍ମ ଲାଗିରହେ । ଶାରଳା ଦାସଙ୍କ ମହାଭାରତରେ କର୍ମ-କର୍ମାଣିର

ସୁବିସ୍ତୃତ ବିବରଣ ମିଳେ; କିନ୍ତୁ ସେଥିରେ କର୍ମସମୂହର ଯଥାବିହିତ କ୍ରମ ଦେଖାଯାଏ ନାହିଁ । କେବଳ ତହିଁରେ ବୈବାହିକ କର୍ମର ଏକ ସ୍ଥୂଳରୂପ ନିହିତ । କବି ନିଜେ ବ୍ରାହ୍ମଣ ନଥିଲେ ବା କର୍ମକାଣ୍ଡ ବିଷୟରେ ଅଭିଜ୍ଞ ନଥିଲେ । ପୁନଶ୍ଚ କାବ୍ୟ କର୍ମକାଣ୍ଡ-ବିଷୟକ ରଚନା ନୁହେଁ । ତେଣୁ ବୈବାହିକ ବିଧି-ବିଧାନର କ୍ରମିକ ଓ ସୁସ୍ପଷ୍ଟ ବର୍ଣ୍ଣନା ତାଙ୍କ ମହାଭାରତରେ ନ ମିଳିବା ସ୍ୱାଭାବିକ । ଶାରଳା ଦାସ ମାତ୍ର କେତେଗୋଟି କର୍ମର ଉଲ୍ଲେଖ କରିଅଛନ୍ତି । ନିମ୍ନ ଆଲୋଚନାରୁ ତାହାର ପରିଚୟ ମିଳେ ।

## (କ) ବୈବାହିକ ବା ବାଡ଼ୁଅ ସ୍ନାନ :

ପାଣିଗ୍ରହଣ ବିବସର ଆଦ୍ୟ ଅନୁଷ୍ଠାନ ହେଉଛି—ବର ଓ କନ୍ୟାଙ୍କର ବୈବାହିକ ବା ବାଡ଼ୁଅ ସ୍ନାନ । ସେ ଦିନ ପ୍ରାତଃକାଳରେ ପୁତ୍ର ତଥା କନ୍ୟା ସ୍ୱ ସ୍ୱ ଗୃହରେ ସୁବାସିତ ଜଳରେ ମନ୍ତ୍ରୋଚ୍ଚାରଣ ସହ ସ୍ନାନ କରିବା ମହାଭାରତୀୟ ବିଧି । (୨୨୯) ସଂସ୍କୃତ ମହାଭାରତରେ ପାଣ୍ଡବମାନେ ବିବାହ ପୂର୍ବରୁ ସ୍ନାନ କରିଥିଲେ ବୋଲି କୁହାଯାଇଅଛି । (୨୩୦)

ଦ୍ରୌପଦୀଙ୍କ ବିବାହ ବର୍ଣ୍ଣନାରୁ ଜଣାଯାଏ ଯେ, ଶାରଳା ଦାସଙ୍କ କାଳରେ ବୈବାହିକ ସ୍ନାନର ରୀତି ଥିଲା । ପାଣ୍ଡବ ଓ ଦ୍ରୌପଦୀ ତୀର୍ଥଜଳରେ ସ୍ନାନ କରିଥିଲେ ବୋଲି କବି ବର୍ଣ୍ଣନା କରିଅଛନ୍ତି । (୨୩୧) ବିମବିଭା (୨୩୨), କଳସା ଚଉତିଶା (୨୩୩), କଳ୍ପଲତା (୨୩୪) ଓ ଦାଣ୍ଡି ରାମାୟଣ (୨୩୫) ରେ ବୈବାହିକ ସ୍ନାନର ବର୍ଣ୍ଣନା ମିଳେ ।

ଏହି ସ୍ନାନକୁ ଓଡ଼ିଶାରେ 'କୋଇଲିବୁଡ଼' ଆଖ୍ୟା ଦିଆଯାଏ । (୨୩୬) ରାତ୍ରି ଶେଷରେ ଯେତେବେଳେ କୋଇଲି ପ୍ରଥମ କୁହୁଧ୍ୱନି କରେ, ସେତେବେଳେ ଏହି ସ୍ନାନ କରାଯାଏ ବୋଲି ଏହାର ଏପରି ନାମକରଣ କରାଯାଇଅଛି । ଏହାର ନାମ ବି 'ବାଡ଼ୁଅପାଣି' । କାରଣ ଏହି ସ୍ନାନ କୁମାର ବା କୁମାରୀ ଜୀବନର ଶେଷ ସ୍ନାନ । ଏହାପରେ ସେମାନେ କୁମାରତ୍ୱ ବା କୁମାରୀତ୍ୱ ବର୍ଜନ କରି ପତି ବା ପତ୍ନୀରେ ପରିଣତ ହୁଅନ୍ତି । ବାଡ଼ୁଅପାଣି ଭଳି ପବିତ୍ର ଜଳରେ ସ୍ନାନ କଲା ପରେ ବର-କନ୍ୟାଙ୍କର ସ୍ୱାସ୍ଥ୍ୟୋନ୍ନତି ଘଟେ ବୋଲି ଲୋକେ ବିଶ୍ୱାସ କରନ୍ତି । ଓଡ଼ିଶାରେ ଅଦ୍ୟାବଧି ବାଡ଼ୁଅ ସ୍ନାନ ପ୍ରଚଳିତ ଅଛି ।

ଉତ୍ତର-ଭାରତର ବିହାର ଅଞ୍ଚଳରେ ବର ଯେଉଁ ଜଳରେ ସ୍ନାନ କରେ ତାହାକୁ ଗୋଟିଏ ପାତ୍ରରେ ସଞ୍ଚୟ କରନ୍ତି । ବରଯାତ୍ରାବେଳେ ସେହି ଜଳକୁ ଗୋଟିଏ ପାତ୍ରରେ କନ୍ୟାର ଘରକୁ ନିଅନ୍ତି । ସେହି ଜଳରେ କନ୍ୟା କନ୍ୟାଦାନ କର୍ମ ହେବା ପୂର୍ବରୁ ସ୍ନାନ କରେ ।

(ଖ) **ବରଯାତ୍ରା :**

କନ୍ୟା-ପିତାଙ୍କ ଗୃହରେ ବିବାହ କାର୍ଯ୍ୟ ସଂପନ୍ନ ହେବା ମହାଭାରତୀୟ ପରମ୍ପରା । ପୁରାଣମାନଙ୍କରୁ ଉପଲବ୍‌ଧ ହୁଏ ଯେ, ଦ୍ରୌପଦୀ (୨୩୭), ଉତ୍ତରା (୨୩୮), ପାର୍ବତୀ (୨୩୯) ଓ ସୀତା (୨୪୦) ନିଜ ନିଜର ପିତୃ-ଗୃହରେ ପରିଣୀତା ହୋଇଥିଲେ । ତେଣୁ ବିବାହ ଦିବସରେ ବର ଶ୍ୱଶୁରାଳୟକୁ ଯାତ୍ରା କରିବା ଚିରାଚରିତ ବିଧି । 'ସ୍କନ୍ଦ ପୁରାଣ'ରେ ଶିବ ଦେବତା ଓ ଋଷିମାନଙ୍କ ଗହଣରେ ପାର୍ବତୀଙ୍କର ପାଣିଗ୍ରହଣ ନିମିତ୍ତ ହିମବାନଙ୍କ ଗୃହକୁ ଗମନ କରିବାର ଦୃଶ୍ୟ ନିହିତ । (୨୪୧) ବରଯାତ୍ରା ପୂର୍ବରୁ ଶ୍ରାଦ୍ଧ ଓ ଦେବତା-ପୂଜା ବିଧେୟ । ସ୍କନ୍ଦ ପୁରାଣରେ ଶିବ ବରଯାତ୍ରାରେ ବାହାରିବା ପୂର୍ବରୁ ନାନ୍ଦିମୁଖୀ ଶ୍ରାଦ୍ଧ, ଦେବ-ପୂଜା ଓ ନବଗ୍ରହ-ପୂଜା ସମାପନ କରିଥିଲେ ବୋଲି ବର୍ଣ୍ଣିତ । (୨୪୨) ଯାତ୍ରା କରିବା ପୂର୍ବରୁ ବର ଶୁଭ୍ର ବସ୍ତ୍ରରେ ସଜ୍ଜିତ ହେବା, ମାଳା ପରିଧାନ କରିବା ଓ ବ୍ରାହ୍ମଣମାନଙ୍କୁ ଭୋଜନ ଦାନ କରିବା ସାମାଜିକ ରୀତି । ନାନା କୌତୁକ, ବିନୋଦ ସହ ମିତ୍ର ଓ ବନ୍ଧୁଗଣଙ୍କ ଗହଣରେ ବର ଯାତ୍ରା କରିବା ଭାରତୀୟ ପରମ୍ପରା । (୨୪୩)

ଶାରଳା ଦାସଙ୍କ ଯୁଗରେ କନ୍ୟା-ପିତାଙ୍କ ଗୃହରେ ବିବାହ କରାଯାଉଥିଲା ଏବଂ ବର ସେଥିପାଇଁ ଶ୍ୱଶୁରାଳୟକୁ ଯାତ୍ରା କରୁଥିଲେ । ବଳରାମଙ୍କ ପୁତ୍ର ଆନନ୍ଦାନନ୍ଦ ମାଳେନ୍ଦ୍ରୀ କନ୍ୟାର ପାଣିଗ୍ରହଣ ନିମିତ୍ତ ବରବେଶ ହୋଇ, ବିମାନରେ ବସି ପ୍ରଦ୍ୟୁମ୍ନ ଓ ପୁରୋହିତଙ୍କ ଗହଣରେ ବରୁଣାଳୟକୁ ଗମନ କରିଥିବା ବର୍ଣ୍ଣନାରୁ ଏହା ସ୍ପଷ୍ଟ । ସେ ଯାତ୍ରା କଲାବେଳେ ନାନାଦି ବାଦ୍ୟ ମଧ୍ୟ ବାଜୁଥିଲା ।

"ଶୁଣି ପ୍ରଦ୍ୟୁମ୍ନ ମନରେ ହୋଇଣ ହରଷ
ଆନନ୍ଦାନନ୍ଦକୁ ତହୁଁ କଲେ ବରବେଶ ।
ବାଜଇ ଶଙ୍ଖ ମହୁରୀ ଝମକ ନିଶାଣ
ଭେରୀ ମର୍ଦ୍ଦଳ ଶବଦ ଉଠେ ଘନ ଘନ ।" (୨୪୪)

ବିର ଯାତ୍ରାରେ ବନ୍ଧୁବାନ୍ଧବ ମଧ୍ୟ ଯୋଗ ଦେଉଥିଲେ । ବିରର ସଂପର୍କୀୟା ନାରୀମାନେ ମଧ୍ୟ ଗମନ କରୁଥିଲେ । ରାଜପୁରୁଷଙ୍କ ବିର-ଯାତ୍ରାରେ ସୈନ୍ୟ-ସାମନ୍ତ ଯାତ୍ରା କରିବା ବିଧି ଥିଲା । ଅଭିମନ୍ୟୁଙ୍କ ବିବାହ ପ୍ରସଙ୍ଗରୁ ଏହା ପ୍ରତିପାଦିତ ହୁଏ । ଅଭିମନ୍ୟୁଙ୍କ ସଙ୍ଗରେ ବଳରାମ, ଶ୍ରୀକୃଷ୍ଣ, ଉଗ୍ରସେନ, ଶୂରସେନ ଓ ଗୋପାଳସେନ ପ୍ରଭୃତି ନରପତି ତଥା ସେନାଗଣ ଯାତ୍ରା କରିଥିଲେ । ସୁଭଦ୍ରା, ଶ୍ରୀକୃଷ୍ଣଙ୍କର ବତିଶ ସହସ୍ର କନ୍ୟା ଓ ଅଷ୍ଟପାଟବଂଶୀଗଣ ବିର-ଯାତ୍ରାରେ ଯୋଗ ଦେଇଥିଲେ । (୨୪୫)

ବିର ଯାତ୍ରା ପୂର୍ବରୁ ଦେବଦେବୀ ପୂଜାର ବିଧାନ ମଧ୍ୟ ଥିଲା । ଶ୍ରୀକୃଷ୍ଣଙ୍କର ବିର ଯାତ୍ରା ପ୍ରସଙ୍ଗରୁ ଏହା ଅବଧାରିତ ହୁଏ । ଶ୍ରୀକୃଷ୍ଣଙ୍କ ବିର ଯାତ୍ରା ସମୟରେ ଶିବ, ବିଷ୍ଣୁ ଓ ଦେବୀଙ୍କର ଅର୍ଚ୍ଚନା କରାଯାଇଥିଲା । (୨୪୬)

ଉତ୍କଳରେ ବିର-ଯାତ୍ରା ବିଧି ପ୍ରଚଳିତ ଥିବା କଥା ପ୍ରସ୍ତରଗାତ୍ରରୁ ଉପଲବ୍ଧ ହୁଏ । ଭୁବନେଶ୍ୱରର ଶତ୍ରୁଘ୍ନନାଥ ମନ୍ଦିରଗାତ୍ରରେ ଶିବଙ୍କ ବିର-ଯାତ୍ରାର ଦୃଶ୍ୟ ଅଙ୍କିତ ହୋଇଅଛି । (୨୪୭) 'ସାହିତ୍ୟ ଦର୍ପଣ'ରେ ପ୍ରସଙ୍ଗ-କ୍ରମରେ ବିର-ଯାତ୍ରାର କେତେକ ବିଧାନ ଉକ୍ତ ଅଛି । (୨୪୮) ରାମବିଭା (୨୪୯) ଓ ଦାଣ୍ଡି ରାମାୟଣରେ (୨୫୦) ଏହାର ଚିତ୍ର ପରିଦୃଷ୍ଟ ହୁଏ ।

## (ଗ) ଦଶଦିଗପାଳାଦିଙ୍କ ପୂଜା :

କନ୍ୟାପିତା ବିବାହ ଦିନ ବୈଶ୍ୱଦେବ କଲା ପରେ ବେଦୀ ଉପରେ କଳଶ ସ୍ଥାପନ କରି ଦଶଦିଗପାଳ, ବରୁଣ, ନବଗ୍ରହ, ଗଣେଶ, ଆଦିତ୍ୟ, ଗ୍ରାମ-ଦେବତା ଆଦିଙ୍କୁ ଅର୍ଚ୍ଚନା କରିବା ମହାଭାରତୀୟ ବିଧି । (୨୫୧) କଳଶ ଏଠାରେ ସମସ୍ତ ଦେବତାଙ୍କର ପ୍ରତୀକ ବୋଲି ଗୃହୀତ ହୁଏ । (୨୫୧କ)

ଶାରଳା ଦାସଙ୍କ କାଳରେ ଉକ୍ତ ବିଧି ପାଳିତ ହେଉଥିବାର ଜଣାଯାଏ । ଦ୍ରୌପଦୀଙ୍କ ବିବାହ ଦୃଶ୍ୟରେ କବି ଗ୍ରହପୂଜା, ଗ୍ରାମଦେବତାପୂଜା କଥା ଉଲ୍ଲେଖ କରିଥିବାର ଦେଖାଯାଏ । (୨୫୧ଖ) ଦ୍ରୁପଦ ରାଜା ଇନ୍ଦ୍ରାଦି ଦଶଦିଗ-ପାଳ, ଗଣେଶ, ବ୍ରହ୍ମା ଆଦିଙ୍କୁ ପୂଜା କରିଥିବା ବିଷୟ ଶାରଳା ଦାସ ବର୍ଣ୍ଣନା କରିଅଛନ୍ତି । (୨୫୧ଗ) ଉତ୍ତରା-ପରିଣୟ ପ୍ରସଙ୍ଗରେ ଦଶଦିଗପାଳ, ଗଣପତି ଓ ନବଗ୍ରହପୂଜାର ଉଲ୍ଲେଖ ରହିଛି । (୨୫୨).

'ଦାଣ୍ଡି ରାମାୟଣ'ରେ ବରୁଣ, ଦଶଦିଗପାଳ ଓ ନବଗ୍ରହ ପୂଜାର ବର୍ଣ୍ଣନା ଦେଖାଯାଏ । (୨୫୩) 'ପରିମଳା' କାବ୍ୟରେ କଳଶ ସ୍ଥାପନର କଥା ରହିଅଛି । (୨୫୪)

## (ଘ) ସ୍ୱୀକରଣ ବିଧି

କନ୍ୟାପିତା ବରପିତାଙ୍କ ଘରକୁ ଯାଇ ବିବାହ-ସ୍ୱୀକରଣ ବିଧି ପାଳନ କରିବା ଏକ ମହାଭାରତୀୟ ବିଧାନ । ଏହି ବିଧି ବିବାହ ଦିବସର ଏକ ଦିନ ପୂର୍ବରୁ ପାଳିତ ହେବା ଉଚିତ ବୋଲି କୁହାଯାଏ । ଉତ୍ତର-ଭାରତରେ ଏହି ବିଧିର ନାମ 'ତିଳକ' । ତାହା ବିବାହର ବହୁ ଦିନ ପୂର୍ବରୁ ପାଳିତ ହେବାର ଦେଖାଯାଏ । (୨୫୫) ଏହି ବିଧି ଅନୁସାରେ କନ୍ୟା ପିତା ଓ ବର ପିତା ବିବାହ-କର୍ମ କରିବେ ବୋଲି ପରସ୍ପରକୁ ସ୍ୱୀକୃତି ପ୍ରଦାନ କରନ୍ତି । (୨୫୬)

ଶାରଳା ଦାସଙ୍କ ଯୁଗରେ ଏତାଦୃଶ ସ୍ୱୀକରଣ ବିଧି ପାଳିତ ହେଉଥିବାର ଜଣାଯାଏ । ଦ୍ରୌପଦୀ-ବିବାହ ଦୃଶ୍ୟରୁ ଏହା ପ୍ରତିପାଦିତ ହୁଏ । ଦ୍ରୁପଦ ରାଜା ବିବାହ ଦିବସ ପୂର୍ବରୁ କୁଳାଳଶାଳକୁ ଗମନ କରି ଯୁଧିଷ୍ଠିରଙ୍କର ପୂଜା କରିଥିଲେ । (୨୫୭) ସେ କାଳରେ ବିବାହ ଦିବସରେ ବେଦୀ ଉପରେ ସ୍ୱୀକାର ବିଧି ଅନୁଷ୍ଠିତ ହେଉଥିବାର ଅନୁମିତ ହୁଏ । କବି ଦ୍ରୌପଦୀ-ବିବାହ (୨୫୮), ଭାନୁମତୀ-ବିବାହ (୨୫୯), ସୁଭଦ୍ରାପରିଣୟ (୨୬୦) ଓ ସୁହାଣୀ ବିବାହ (୨୬୧) ଦୃଶ୍ୟରେ ବେଦୀ ଉପରେ ଅନୁଷ୍ଠିତ ହେଉଥିବା କର୍ମମାନଙ୍କ ମଧ୍ୟରେ ସ୍ୱୀକାର-ବିଧିର ଉଲ୍ଲେଖ କରିଅଛନ୍ତି ।

## (ଙ) ବରଣ :

କର୍ମକାଣ୍ଡରେ ବାଟବରଣ, ପ୍ରଥମ ବରଣର ବିଧାନ ଦେଖାଯାଏ । ବିବାହ ଦିନ ଯେତେବେଳେ ବର କନ୍ୟାର ଗୃହକୁ ଆସେ, ସେତେବେଳେ କନ୍ୟାପିତା କିଛି ଦୂରକୁ ଯାଇ ତାହାଙ୍କୁ ବାଟରୁ ବରଣ କରିନେବାକୁ 'ବାଟବରଣ' କୁହାଯାଏ । (୨୬୨) ପ୍ରଥମ ବରଣଟି ବରୁଣାଦି ପୂଜା ପରେ କରାଯାଏ । ବର ଆସି ପାଦ ଧୋଇ (୨୬୩) ଆସନରେ ଉପବିଷ୍ଟ ହେଲାପରେ ପ୍ରଥମ ବରଣ କର୍ମ ହେବାର ବିଧି । (୨୬୪) ପୂର୍ବ ଜାମାତୃବରଣ (୨୬୫) ପରେ କନ୍ୟାଦାନ ପୂର୍ବରୁ ବରର ଦ୍ୱିତୀୟ ବରଣ କର୍ମ ହୁଏ । (୨୬୬) ବରଣରେ ବରକୁ ଆସନ, ଗନ୍ଧ, ପୁଷ୍ପ, ବସ୍ତ୍ର, ମାଲ୍ୟ, ଉପବୀତ, ମୁଦ୍ରିକା, କୁଣ୍ଡଳ, ତାମ୍ବୁଳ ଓ ଅକ୍ଷତ ଆଦି ଉପଚାର ଅର୍ପଣ କରିବା ବିଧି । (୨୬୭)

ଶାରଳା ଦାସଙ୍କ ବର୍ଣ୍ଣନାରେ ବାଟବରଣ, ପ୍ରଥମ ବରଣ ଓ ଦ୍ୱିତୀୟ ବରଣର ପୃଥକ୍ ପୃଥକ୍ ବର୍ଣ୍ଣନା ନାହିଁ । କିନ୍ତୁ ବରକୁ ବେଦୀ ଉପରେ ବରଣ କରିବା ରୀତି ସେ ଯୁଗରେ ଥିଲି ବୋଲି କବିଙ୍କ ବର୍ଣ୍ଣନାରୁ ଜଣାଯାଏ । ସେ ବହୁ ବିବାହ ଦୃଶ୍ୟରେ ବରଣର ସୂଚନା ଦେଇଅଛନ୍ତି । ଭାନୁମତୀ ବିବାହ (୨୬୭କ), ଉତ୍ତରା-ପରିଣୟ (୨୬୭ଖ) ଓ ସୁହାଣୀ-ବିବାହ (୨୬୭ ଗ) ଦୃଶ୍ୟରେ ବରଣର ଉଲ୍ଲେଖ ମିଳେ । ରାମବିଭା (୨୬୮କ), କଳ୍ପଲତା (୨୬୮ଖ), ଦାଣ୍ଡି ରାମାୟଣ (୨୬୯) ଓ ପରିମଳା (୨୭୦) କାବ୍ୟରେ ବରଣର ଚିତ୍ର ରହିଛି ।

## (ଚ) ବାଗ୍‌ଦାନ କର୍ମ :

ପ୍ରଥମ ବରଣ କର୍ମ ଶେଷ ହେଲା ପରେ କନ୍ୟାପିତା ଓ ବରପିତା ବାଗ୍‌ଦାନ କର୍ମ ଅନୁଷ୍ଠାନ କରିବା ଏକ କର୍ମକାଣ୍ଡୋକ୍ତ ବିଧି । ମହାବାକ୍ୟ ପାଠ କରି (୨୭୧ କ) ବରପିତା ଓ କନ୍ୟାପିତା ବାଗ୍‌ଦାନ କର୍ମ କରିଥାନ୍ତି । (୨୭୧ ଖ)

ଶାରଳା ଦାସଙ୍କ ମହାଭାରତରେ ବାଗ୍‌ଦାନ କର୍ମର ନାମୋଲ୍ଲେଖ ନାହିଁ; କିନ୍ତୁ ବିବାହ-ବର୍ଣ୍ଣନାରେ ମହାବାକ୍ୟ ପଠନର ଉଲ୍ଲେଖ ବହୁ ସ୍ଥଳରେ ରହିଅଛି । ସେଥିରୁ ଅବଧାରିତ ହୁଏ ଯେ, ସେ କାଳରେ କର୍ମକାଣ୍ଡୋକ୍ତ ବାଗ୍‌ଦାନ କର୍ମ ମହାବାକ୍ୟ ପାଠ ସହ ଅନୁଷ୍ଠାନ କରାଯାଉଥିଲା । ଭୀମ-ହିଡ଼ମ୍ବିକା (୨୭୨), ଦ୍ରୌପଦୀ-ପାଣ୍ଡବ (୨୭୩), ଉତ୍ତରା-ଅଭିମନ୍ୟୁ (୨୭୪), ସୁଭଦ୍ରା-ଅର୍ଜ୍ଜୁନ (୨୭୫) ଆଦିଙ୍କ ବିବାହ ଦୃଶ୍ୟରେ ମହାବାକ୍ୟ ପାଠର ଉଲ୍ଲେଖ ଦେଖାଯାଏ । ବଳରାମ ଦାସଙ୍କ 'ଦାଣ୍ଡି ରାମାୟଣ'ରେ ରାମ-ସୀତାଙ୍କର ବିବାହ ପ୍ରସଙ୍ଗରେ ମହାବାକ୍ୟ ଉଚ୍ଚାରଣ କଥା ରହିଅଛି । (୨୭୬)

## (ଛ) ଗନ୍ଧାଧିବାସ ଓ କୌତୁକସୂତ୍ର :

ବିବାହ କାଳରେ ବର-କନ୍ୟାଙ୍କୁ ମନ୍ତ୍ରପାଠ ସହ କର୍ପୂର-ଚନ୍ଦନାଦି ସୁଗନ୍ଧ ଦ୍ରବ୍ୟରେ ଲେପନ କରିବା ଏକ ବିଧି । ଏହାର ନାମ ଅଧିବାସ କର୍ମ । 'ବହ୍ନିଃଶାଲାରୋପଣ' ବିଧି ପୂର୍ବରୁ କନ୍ୟାର ଅଧିବାସ କର୍ମ କରାଯାଏ । (୨୭୭) 'ବହ୍ନିଃଶାଲାରୋପଣ' ପରେ ବରର ମଣିବନ୍ଧରେ ଓ କନ୍ୟାର ଦକ୍ଷିଣ ବାହୁରେ ହରିଦ୍ରା ଲେପନ ମଧ୍ୟ କରାଯିବା ବିଧି । (୨୭୮) ଏହା ପରେ କନ୍ୟା ହସ୍ତରେ କୌତୁକସୂତ୍ର ବନ୍ଧନ କରାଯାଏ । (୨୭୯) ତାହାପରେ ବରର ଅଧିବାସ ଓ କୌତୁକସୂତ୍ର ବନ୍ଧନ କର୍ମ ବିଧେୟ । (୨୮୦) ସାତପ୍ରସ୍ଥ ସୂତାକୁ ତିନି ଭାଙ୍ଗ କରି, ହଳଦୀ ବା କୁଙ୍କୁମରେ ରଙ୍ଗାଇ, ମନ୍ତ୍ରୋଚ୍ଚାରଣ ସହ ସାତଗୋଟି ଗଣ୍ଠି

ଦେଇ କୌତୁକସୂତ୍ର ପ୍ରସ୍ତୁତ କରାଯାଏ । ପ୍ରତି ଗଣ୍ଠିରେ ପାଚୋଟି କରି ଦୂବ ଓ ଗୋଟିଏ କରି ବରକୋଳିପତ୍ର ବାନ୍ଧିଦିଆଯାଏ । (୨୮୧)

ଶାରଳା ଦାସଙ୍କ ମହାଭାରତରେ ଏହି ବିଧିମାନଙ୍କର ଉଲ୍ଲେଖ ରହିଅଛି । କବି କହନ୍ତି ଯେ, ସରସ୍ୱତୀଙ୍କ ବିବାହ ସମୟରେ ବ୍ରହ୍ମା ବିଷ୍ଣୁଙ୍କ ବକ୍ଷଦେଶରେ ଚନ୍ଦନ, ଅଗୁରୁ ଓ କସ୍ତୁରୀ ଲେପନ କରିଥିଲେ । (୨୮୨) ସୁହାଣୀ କନ୍ୟାର ଶରୀରରେ ପରିଣୟ କାଳରେ ନାନା ସୁଗନ୍ଧି ଦ୍ରବ୍ୟ ବିଲେପନ କରାଯାଇଥିଲା । (୨୮୩) ଦ୍ରୌପଦୀଙ୍କ ହସ୍ତରେ ଓ ପାଣ୍ଡବଙ୍କ ମଣିବନ୍ଧରେ ଦୂବ-ବରକୋଳିପତ୍ର-ଯୁକ୍ତ କୌତୁକସୂତ୍ର ବେଦଧ୍ୱନି ମଧ୍ୟରେ ବନ୍ଧାଯାଇଥିଲା । (୨୮୪କ) ଉତ୍ତରା ଓ ଅଭିମନ୍ୟୁ ଅପରଜିତା ସୂତା ଧାରଣ କରିଥିଲେ । (୨୮୪ ଖ )

'ରାମବିଭା' କାବ୍ୟରେ ରାମ-ସୀତା ପରିଣୟ କାଳରେ ଚତୁଃସମ (ଚନ୍ଦନ, ଅଗୁରୁ, କସ୍ତୁରୀ ଓ କୁଙ୍କୁମ) ଲଗାଇବା କଥା କୁହାଯାଇଅଛି । (୨୮୫) 'ଦାଣ୍ଡି ରାମାୟଣ'ରେ ରାମଙ୍କ ଦେହରେ ହରିଦ୍ରା-ଚନ୍ଦନ ଲେପନ କରାଯିବା ବୃତ୍ତାନ୍ତ ନିହିତ । (୨୮୬) 'ହରିବଂଶ'ରେ (୨୮୭ କ) ଓ 'ରୁକ୍ମଣୀବିଭା'ରେ ଅପରଜିତା ସୂତା ଧାରଣ କରିବାର ବର୍ଣ୍ଣନା ମିଳେ । (୨୮୭ ଖ)

## (ଜ) **ବହ୍ନିଃଶାଳାରୋପଣ** :

'କର୍ମକାଣ୍ଡ'ରେ ବେଦୀର ପୂର୍ବଭାଗରେ ଗୋଟିଏ ଗର୍ତ୍ତ ଖୋଳି,ତାହାକୁ ଗୋମୟ-ଜଳରେ ଲିପି ଗର୍ତ୍ତର ଦକ୍ଷିଣରେ ଗଣପତିଙ୍କୁ ପ୍ରଥମେ ପୂଜା କରିବା ପାଇଁ କୁହାଯାଇଛି। ଗର୍ତ୍ତର ପୂର୍ବରେ ଅନନ୍ତାଦି ଅଷ୍ଟକୁଳନାଗଙ୍କର ପୂଜା କରି ନୈବେଦ୍ୟ ଓ ଗୁବାକକୁ ସେହି ଗର୍ତ୍ତରେ ପକାଇବା ପାଇଁ ନିର୍ଦ୍ଦେଶ ରହିଛି । ଏହି ବିଧିର ନାମ ବହ୍ନିଃଶାଳାରୋପଣ । (୨୮୮)

ଶାରଳା ଦାସଙ୍କ ବର୍ଣ୍ଣନାରେ ଏହି ବିଧିର ବିସ୍ତୃତ ବର୍ଣ୍ଣନା ନାହିଁ । କିନ୍ତୁ ଦ୍ରୌପଦୀ-ବିବାହ ଦୃଶ୍ୟରେ ଏହାର ସୂଚନା ନିହିତ । ତେଣୁ ପ୍ରତିପାଦିତ ହୁଏ ଯେ, ବହ୍ନିଃଶାଳାରୋପଣ ବିଧି ସେତେବେଳେ ବି ଅନୁଷ୍ଠିତ ହେଉଥିଲା । ଦ୍ରୁପଦ ରଜା ଅଷ୍ଟକୁଳନାଗଙ୍କୁ ଆବାହନ କରିବା କଥା କବି ବର୍ଣ୍ଣନା କରିଅଛନ୍ତି :

"ବ୍ରହ୍ମା ବରଣ ଆବରି କୁଳ-ପୁରୋହିତ
ପାତାଳର ଅଷ୍ଟକୁଳ ନାଗ ଦଇବତ ।
ଶଙ୍ଖ ପଦ୍ମ ମହାପଦ୍ମ ଅନନ୍ତ ତକ୍ଷକ
କର୍କୋଟକ ବାସୁକି ଯେ ଆବରି କୁଳିକ ।" (୨୮୯)

## (ଙ) ମଧୁପର୍କ ଓ ଷଡ଼ାର୍ଘ୍ୟ କର୍ମ :

ଷଡ଼ାର୍ଘ୍ୟ କର୍ମ ଓ ମଧୁପର୍କ ଅର୍ପଣ ଏକ କର୍ମକାଣ୍ଡୋକ୍ତ ବିଧାନ । କନ୍ୟା-ପିତା ବରକୁ ଆସନରେ ବସାଇ ଆସନ, ପାଦ୍ୟ, ପଦ-ଆସନ, ଆଚମନୀୟ, ଅର୍ଘ୍ୟ ଓ ମଧୁପର୍କ ପ୍ରଦାନ କରିବା ନିମିତ୍ତ କର୍ମକାଣ୍ଡରେ ନିର୍ଦ୍ଦେଶ ଦିଆଯାଇ-ଅଛି । ଏହାର ନାମ ହିଁ ଷଡ଼ାର୍ଘ୍ୟ କର୍ମ । (୨୯୦) 'ପାରସ୍କର ଗୃହ୍ୟସୂତ୍ର'ରେ ମଧୁ-ପର୍କର ବିଧାନ ନିହିତ । (୨୯୧) ଦଧି, ଘୃତ ଓ ମଧୁକୁ ଏକତ୍ର ଗୋଟିଏ କାଂସ୍ୟ ପାତ୍ରରେ ରଖି ତାହାକୁ ଅନ୍ୟ ଏକ କାଂସ୍ୟ ପାତ୍ରରେ ଆବୃତ୍ତ କଲେ ମଧୁପର୍କ ପ୍ରସ୍ତୁତ ହୁଏ । (୨୯୨) ସମାଜରେ ଏହା ଏକ ଦୁର୍ଲଭ ସମ୍ମାନ ବୋଲି ବିବେଚିତ ହୋଇଥାଏ । (୨୯୩)

ଶାରଳା ଦାସଙ୍କ ମହାଭାରତରେ ଷଡ଼ାର୍ଘ୍ୟ କର୍ମର ନାମୋଲ୍ଲେଖ ନଥିଲେ ହେଁ, ମଧୁପର୍କର ଉଲ୍ଲେଖ ରହିଛି । ସେଥିରୁ ପ୍ରତିପାଦିତ ହୁଏ ଯେ, ସେକାଳରେ କର୍ମକାଣ୍ଡୋକ୍ତ ଷଡ଼ାର୍ଘ୍ୟ କର୍ମ ଅନୁଷ୍ଠିତ ହେଉଥିଲି ଏବଂ ବରପିତା ମଧୁପର୍କ ପ୍ରଦାନ କରି ଜାମାତାଙ୍କୁ ଦୁର୍ଲ୍ଲଭ ସମ୍ମାନ ପ୍ରଦର୍ଶନ କରୁଥିଲେ । ସରସ୍ୱତୀ ଓ ବିଷ୍ଣୁଙ୍କ ବିବାହ ପ୍ରସଙ୍ଗରେ ମଧୁପର୍କର ଉଲ୍ଲେଖ ଦେଖାଯାଏ । ବ୍ୟାସଦେବ ମଧୁପର୍କ ଆୟୋଜନ କରି ରଖିବା ନିମିତ୍ତ ନିର୍ଦ୍ଦେଶ ପ୍ରଦାନ କରିଥିଲେ ବୋଲି କବି କହନ୍ତି । (୨୯୪) 'ଦାଣ୍ଡି ରାମାୟଣ'ରେ ମଧୁପର୍କ ପ୍ରଦାନର ବର୍ଣ୍ଣନା ମିଳେ । (୨୯୫)

## (ଚ) କନ୍ୟାଦାନ ଓ ହସ୍ତଗ୍ରନ୍ଥି :

ବିବାହରେ କନ୍ୟାଦାନ ମୁଖ୍ୟ କର୍ମ । ପିତା, ପିତାମହ, ଭ୍ରାତା ବା ସ୍ୱଜାତୀୟ କୌଣସି ବ୍ୟକ୍ତି କନ୍ୟାଦାନର ଅଧିକାରୀ ବୋଲି ବିବେଚିତ ହୁଅନ୍ତି । (୨୯୬) କୁନ୍ତୀ ଦେବୀ ତେଣୁ ସୂର୍ଯ୍ୟଦେବତାଙ୍କୁ କହିଥିଲେ—ମୋର ପିତାମାତା ତଥା ଅନ୍ୟାନ୍ୟ ଗୁରୁଜନମାନେ ମୋର ଏହି ଶରୀରକୁ ଦାନ କରିବାର ଯଥାର୍ଥ ଅଧିକାରୀ । (୨୯୭) ବ୍ୟାସଦେବ କହିଛନ୍ତି—ଯେଉଁଠାରେ କନ୍ୟା ପିତାମାତାଙ୍କ ଦ୍ୱାରା ପ୍ରଦତ୍ତ ହୁଏ ନାହିଁ, ସେଠାରେ ବୈବାହିକ ମନ୍ତ୍ର-ପ୍ରୟୋଗ ବୃଥା । (୨୯୮)

ଉତ୍କଳୀୟ ସମାଜରେ ପିତା କନ୍ୟାଦାନର ଅଧିକାରୀ ବୋଲି ବିବେଚିତ ହେଉଥିଲେ । ଶାରଳା ମହାଭାରତରେ ସର୍ବତ୍ର ପିତା କନ୍ୟାଦାନ କରିବା କଥା ରହିଅଛି । ନିର୍ଯାତ ଗଙ୍ଗାଙ୍କୁ (୨୯୯), ପଦ୍ମନାଭ ରାଜା ଅମ୍ବିକାଙ୍କୁ (୩୦୦),

ଧୃତରାଷ୍ଟ୍ର ଦୁଃଶୀଳାଙ୍କୁ (୩୦୧), ଅଭିମନ୍ୟୁ ଭାନୁମତୀଙ୍କୁ (୩୦୨), ଦ୍ରୁପଦ ଦ୍ରୌପଦୀଙ୍କୁ (୩୦୩), ନନ୍ଦ ରାଜା ସୁଭଦ୍ରାଙ୍କୁ (୩୦୪), ବିରାଟ ରାଜା ଉତ୍ତରାଙ୍କୁ (୩୦୫ କ), ହରି ସାହୁ ସୁହାଣୀଙ୍କୁ (୩୦୫ ଖ) ସଂପ୍ରଦାନ କରିଥିଲେ ବୋଲି କବି ପ୍ରଦର୍ଶନ କରିଅଛନ୍ତି । ପିତା କନ୍ୟାଦାନର ଯଥାର୍ଥ ଅଧିକାରୀ ବୋଲି ଅଚ୍ୟୁତାନନ୍ଦ ଦାସ ତାଙ୍କ 'ହରିବଂଶ' ମହାକାବ୍ୟରେ ଦର୍ଶାଇଅଛନ୍ତି । (୩୦୬)

କନ୍ୟାଦାନ ମହାନ୍ ପୁଣ୍ୟ କର୍ମ ରୂପରେ ଭାରତୀୟ ସମାଜରେ ଗୃହୀତ ହୁଏ । 'ନାରଦ ପୁରାଣ'ରେ ଅଛି, କନ୍ୟାଦାନକାରୀ ବ୍ରହ୍ମଲୋକକୁ ଗମନ କରେ । (୩୦୭) 'ଯମ ସଂହିତା' କହେ—କନ୍ୟାଦାନକାରୀ ସ୍ୱର୍ଗଲୋକ ପ୍ରାପ୍ତ ହୁଏ । (୩୦୮) ପିତା ବ୍ରହ୍ମଲୋକପ୍ରାପ୍ତି, ପିତୃଗଣଙ୍କର ମୋକ୍ଷ ଓ ନାରାୟଣଙ୍କର ପ୍ରୀତି ଲାଭ ପାଇଁ କନ୍ୟା-ଦାନ କରନ୍ତି । (୩୦୯)

ଉତ୍କଳୀୟ ସମାଜରେ ସେ କାଳରେ ମଧ୍ୟ କନ୍ୟା ଦାନ ପୁଣ୍ୟକର୍ମ ରୂପରେ ବିବେଚିତ ହେଉଥିଲା । ସାରସା ଶୃଗାଳର ଉପାଖ୍ୟାନରୁ ଏହା ସ୍ପଷ୍ଟ । ସାରସା ନାମକ ଶୃଗାଳ ବାମଦେବ ବିପ୍ରର ବିଧବା ସ୍ତ୍ରୀଠାରୁ ଜାତ ଜାରଜ କନ୍ୟାକୁ ଲାଳନପାଳନ କରି ଯଥାକାଳରେ ତାହାକୁ ମଳୟସେନ ରାଜାଙ୍କ ହସ୍ତରେ ପ୍ରଦାନ କଲା । ସେହି ପୁଣ୍ୟ କର୍ମବଳରେ ସେ ପରଜନ୍ମରେ ସଗର ରାଜା ରୂପରେ ଜାତ ହେଲା । (୩୧୦) କନ୍ୟାଦାନ ପୁଣ୍ୟ କର୍ମ ବୋଲି 'ହରିବଂଶ'ରେ ମଧ୍ୟ ପ୍ରଦର୍ଶିତ ହୋଇଅଛି । (୩୧୧)

କନ୍ୟାଦାନ କର୍ମରେ ପିତା ପ୍ରଥମେ ଏହି କର୍ମାନୁଷ୍ଠାନ ପାଇଁ ବ୍ରାହ୍ମଣ-ମାନଙ୍କର ଅନୁମତି ପ୍ରାର୍ଥନା କରନ୍ତି । ତାହାପରେ ଶଙ୍ଖରେ ଥିବା ଗୁବାକ, ଅକ୍ଷତ, ଗନ୍ଧ ଓ ପୁଷ୍ପଯୁକ୍ତ ଜଳ ବରକୁ ଦେଇ ତାହାଙ୍କର ହସ୍ତ ଉପରେ କନ୍ୟାର ହସ୍ତ ରଖନ୍ତି । ସେହି କାଳରେ ମହାବାକ୍ୟ ତଥା ଉଭୟ ପକ୍ଷର ଗୋତ୍ର, ପ୍ରବର ଏବଂ ପିତୃ-ପିତାମହ-ପ୍ରପିତାମହଙ୍କ ନାମ ଉଚ୍ଚାରଣ କରାଯାଏ । (୩୧୨) ଏହା ପରେ ପୁରୋହିତ ବର-କନ୍ୟାଙ୍କର ଦକ୍ଷିଣ ହସ୍ତକୁ କୁଶରଜ୍ଜୁରେ ବନ୍ଧନ କରନ୍ତି । ଈଶ୍ୱରଙ୍କ ସୃଷ୍ଟି ସତ୍ତ୍ୱ, ରଜ ଓ ତମ ଏହି ତ୍ରିଗୁଣର ପ୍ରତୀକ ରୂପରେ କୁଶ ଗୃହୀତ ହୁଏ । (୩୧୩) ହସ୍ତଗ୍ରନ୍ଥି ପରେ କନ୍ୟାପିତା ବରକୁ ଦକ୍ଷିଣା ପ୍ରଦାନ କରିବା ବିଧି ।(୩୧୪)'ପାରସ୍କର ଗୃହ୍ୟସୂତ୍ର'ରେ କନ୍ୟାଦାନର ବିଧାନ ରହିଅଛି ।(୩୧୫)

ଶାରଳା ଦାସଙ୍କ ଯୁଗରେ ଏହି ସମସ୍ତ ବିଧି-ବିଧାନ ସହ କନ୍ୟାଦାନ କରାଯାଉଥିବାର ଜଣାଯାଏ । ନନ୍ଦ ରାଜା ସୁଭଦ୍ରାଙ୍କୁ ସଂପ୍ରଦାନ କଲାବେଳେ ବର

ତଥା କନ୍ୟାର ଗୋତ୍ର ଓ ପିତୃ-ପିତାମହାଦିଙ୍କ ନାମ ଉଚ୍ଚାରଣ କରାଯାଇ ବେଦ-ଧ୍ୱନି ମଧ୍ୟରେ ହସ୍ତଗ୍ରନ୍ଥି ପକାଯାଇଥିଲା । ପୁରୋହିତ କୁଶରେ ବରକନ୍ୟାଙ୍କର ହସ୍ତ-ବନ୍ଧନ କରିଥିଲେ । (୩୧୬ ହରି ସାହୁ କୁଶ-ପାଣି ଧରି କନ୍ୟାଦାନ କରିଥିଲେ । ମନ୍ତ୍ରୋଚ୍ଚାରଣ ତଥା ଦେଶକାଳ ବାକ୍ୟ ଉଚ୍ଚାରଣ ସହ ସୁହାଣୀ ଓ ଯୁଧିଷ୍ଠିରଙ୍କର ହସ୍ତବନ୍ଧନ କରାଯାଇଥିଲା । (୩୧୭) ଦ୍ରୌପଦୀ ଓ ପାଣ୍ଡବଙ୍କର ହସ୍ତଗ୍ରନ୍ଥି କୁଶରେ ପୁରୋହିତମାନଙ୍କଦ୍ୱାରା ମନ୍ତ୍ର ତଥା ଗୋତ୍ରାଦି ଉଚ୍ଚାରଣ ସହ ପ୍ରସ୍ତୁତ କରାଯାଇଥିଲା । (୩୧୭ କ, ବିରାଟ ରାଜା ଉତ୍ତରାଙ୍କୁ ଅଭିମନ୍ୟୁଙ୍କ ହସ୍ତରେ ସମର୍ପଣ କଲାବେଳେ ଏତାଦୃଶ ରୀତି ଅନୁସୃତ ହୋଇଥିଲା :

"ବେଦାଧ୍ୟୟନ କରନ୍ତି ସର୍ବ ପୁରୋହିତେ
ମଙ୍ଗଳ ଗାୟନ କଲେ ଯେତେ ଚଣ୍ଡୀପୁରେ ।

× × ×

ଯେ ବିଧିରେ ଦେଶ-କାଳ-ବାକ୍ୟ ସେ ଉଚ୍ଚାରି
ସତ୍ୟ ସତ୍ୟ ସତ୍ୟ ବୋଲି ତିନିବାର କରି ।
ଚନ୍ଦ୍ର ଦେବତାଙ୍କ ଗୋତ୍ର ଅଟେ ଫାଲଗୁନି
ମହାବାକ୍ୟ ଉଚ୍ଚାରନ୍ତେ ତହିଁ ବେଳ ତିନି ।
ଇଦଂ ପିତୃ ପିତାମହ ତିନୋଟି ପୁରୁଷ
ବିଚିତ୍ରବୀର୍ଯ୍ୟ ସେ ପାଣ୍ଡୁ ପାର୍ଥ ନାମ ଘୋଷ ।
ବିରଳ ଗୋତ୍ର ଅଟଇ ମତ୍ସ୍ୟ ନୃପବର
ଦେଶ-କାଳ-ବାକ୍ୟ ଉଚ୍ଚାରିଲେ ମୁନିବର ।
ଇଦଂ ପିତୃ ପିତାମହ ଯେ ପ୍ରପିତାମହ
ବିରାଟ ତିନିପୁରୁଷ ନାମ ତୋର କହ ।

× × ×

ମଙ୍ଗଳ ବାକ୍ୟରେ କୁଶ ଦେଲ ପୁରୋହିତେ
ବରର ହସ୍ତ ଉପରେ କନ୍ୟା କରପଦେ ।" (୩୧୮)

'ହାଣ୍ଡି ରାମାୟଣ'ରେ ସୀତାଙ୍କ ବିବାହ ଦୃଶ୍ୟରେ କୁଳ-ଗୋତ୍ରର ନାମୋଚ୍ଚାରଣ, ଦେଶ-କାଳବାକ୍ୟ ପାଠ, ମନ୍ତ୍ରୋଚ୍ଚାରଣ, କୁଶ-ଗ୍ରନ୍ଥି ଓ କନ୍ୟା ପିତାଙ୍କର ଶଙ୍ଖରେ ଜଳଦାନ କରିବା ବର୍ଣ୍ଣନା ମିଳେ । (୩୧୯)

'କର୍ମକାଣ୍ଡ'ରେ ବରକନ୍ୟାଙ୍କର ସମ୍ମୁଖୀକରଣ ହେବା ପ୍ରସଙ୍ଗରେ କନ୍ୟା ପିତାଙ୍କ କୋଳରେ ବସିବା ବିଧି ରହିଛି । (୩୨୦କ) କନ୍ୟା ସମର୍ପଣ ବିଧିରେ ମଧ୍ୟ କନ୍ୟାକୁ ପିତୃ-କୋଳରେ ଦେବାର ବ୍ୟବସ୍ଥା ଅଛି । (୩୨୦ ଖ) ଶାରଳା ଦାସଙ୍କ ଯୁଗରେ କନ୍ୟାଦାନବେଳେ କନ୍ୟା ଓ ବର ନିଜ ନିଜର ପିତା ବା ଅଭିଭାବକଙ୍କ କୋଡ଼ରେ ଉପବେଶନ କରିବାର ବିଧି ଥିବାର ଜଣାଯାଏ । କବି ସବଂକ ବିବାହ-ବର୍ଣ୍ଣନାରେ ଏହି ଚିତ୍ର ପରିବେଷଣ କରିଅଛନ୍ତି । ସୁହାଣୀ କନ୍ୟା ପିତା ହରି ସାହୁଙ୍କ କୋଳରେ (୩୨୦ ଗ), ଯୁଧିଷ୍ଠିର ବ୍ୟାସଦେବଙ୍କ କୋଳରେ (୩୨୧ କ), ଉତ୍ତରା ବିରାଟଙ୍କ କୋଳରେ ଓ ଅଭିମନ୍ୟୁ ଅର୍ଜୁନଙ୍କ କୋଳରେ ବିବାହ କାଳରେ ଉପବେଶନ କରିଥିଲେ (୩୨୧ ଖ) । 'ଦାଣ୍ଡି ରାମାୟଣ'ରେ ବର୍ଣ୍ଣିତ ଅଛି ଯେ, ବିବାହ କାଳରେ ଶ୍ରୀରାମ ଦଶରଥଙ୍କର ଓ ସୀତା ଜନକ ଋଷିଙ୍କର କୋଡ଼ରେ ଉପବିଷ୍ଟ ହୋଇଥିଲେ । (୩୨୨)

କନ୍ୟାକୁ ନାନାବିଧ ଅଳଙ୍କାର ତଥା ବସ୍ତ୍ରରେ ସୁଭୂଷିତା କରି ସମ୍ପ୍ରଦାନ କରିବା ଏକ ମହାଭାରତୀୟ ପରମ୍ପରା । 'ମନୁ ସ୍ମୃତି'ରେ ସାଳଙ୍କାର କନ୍ୟାଦାନ କର୍ତ୍ତବ୍ୟ ବୋଲି କଥିତ । (୩୨୩) ସୀତା ଦେବୀ (୩୨୪), ଦ୍ରୌପଦୀ (୩୨୫) ଆଦି ମହାଭାରତୀୟ ନାରୀମାନେ ବହୁ ଆଭରଣ ସହ ପ୍ରଦତ୍ତ ହୋଇଥିବାର ପରିଦୃଷ୍ଟ ହୁଏ । କନ୍ୟାଦାନ କଲାବେଳେ ପିତା କହିଥାନ୍ତି—ମୁଁ ସ୍ୱର୍ଣ୍ଣାଳଙ୍କାରଯୁକ୍ତା କନ୍ୟାଦାନ କରୁଅଛି । (୩୨୬)

ଉତ୍କଳରେ ମଧ୍ୟ ସେ ଯୁଗରେ ସାଳଙ୍କାର କନ୍ୟା ପ୍ରଦାନ କରାଯିବାର ରୀତି ପ୍ରବର୍ତ୍ତମାନ ଥିଲା; ମହେନ୍ଦ୍ରୀ ଉପାଖ୍ୟାନରୁ ଏହା ପ୍ରମାଣିତ ହୁଏ । ମହେନ୍ଦ୍ରୀଙ୍କୁ ଲାଭ କରିବା ପାଇଁ ବଳରାମଙ୍କ ପୁତ୍ର ଆନନ୍ଦାନନ୍ଦ ଓ କାର୍ତ୍ତିକଙ୍କ ମଧ୍ୟରେ ପ୍ରବଳ ପ୍ରତିଦ୍ୱନ୍ଦ୍ୱିତା ଦେଖାଦେଲା । ସେତେବେଳେ ବ୍ରହ୍ମା ମଧ୍ୟସ୍ଥ ହୋଇ କହିଥିଲେ— "କନ୍ୟାକୁ ଅଳଙ୍କାରରେ ସୁଭୂଷିତା କରି ବେଦୀରେ ବସାଇବା । କନ୍ୟା ଯାହାକୁ ବରଣମାଳା ଦେବ ତାହାର ବିବାହ ସେହି ପୁରୁଷ ସହ ହେବ ।" (୩୨୭) 'ରାମ-ବିଭା' କାବ୍ୟରେ ସୀତା ବିବାହ ପୂର୍ବରୁ ଅଳଙ୍କୃତା ହେବାର ଚିତ୍ର ନିହିତ (୩୨୮) ବିପ୍ର ଦାସଙ୍କ 'କଳଶା ଚଉତିଶା'ରେ ପାଟଖଣ୍ଡ ବସ୍ତ୍ରଭୂଷଣରେ ସୁମଣ୍ଡିତା ହୋଇ ବେଦୀକୁ ଗମନ କରିବା କଥା ବର୍ଣ୍ଣିତ । (୩୨୯)

## (୨) ଯୌତୁକ ପ୍ରଦାନ :

କନ୍ୟାଦାନ କର୍ମ ପରେ କନ୍ୟାପିତା ଜାମାତାଙ୍କୁ ଦେଶାଚାର ଅନୁସାରେ ଯୌତୁକ ପ୍ରଦାନ କରିବା ପାରମ୍ପରିକ ବିଧି । (୩୩୦) ଦ୍ରୁପଦ ଦ୍ରୌପଦୀ (୩୩୧), ଜନକ ସୀତା (୩୩୨), ମନୁ ଦେବହୂତି (୩୩୩) ଓ ବିଦର୍ଭ-ରାଜା ଇନ୍ଦୁମତୀଙ୍କର (୩୩୪) ବିବାହ କାଳରେ ବହୁ ଧନରତ୍ନ ପ୍ରଦାନ କରିଥିବାର ବର୍ଣ୍ଣନା ପୁରାଣମାନଙ୍କରେ ମିଳେ ।

ଶାରଳା ଦାସଙ୍କ ଯୁଗରେ ଏହି ଯୌତୁକ-ଦାନ ପ୍ରଥା ପ୍ରଚଳିତ ଥିଲା । ଦ୍ରୌପଦୀଙ୍କ ପରିଣୟ କାଳରେ ପୁରୋହିତ କନ୍ୟାଦାନ କର୍ମ ଶେଷ ହେବା ପରେ ଦ୍ରୁପଦଙ୍କୁ ଯୌତୁକ ଦେବା ନିମିତ୍ତ ନିବେଦନ କରିଥିଲେ । ଦ୍ରୁପଦ ସଂକଳ୍ପ କରି ବହୁ ଧେନୁ, ସେନା, ଭୂମି, ସଖୀ, ଅଳଙ୍କୃତା ନାରୀ ଓ ସୁବର୍ଣ୍ଣ ପାତ୍ର ପ୍ରଦାନ କରିଥିଲେ । (୩୩୫) ସୁଭଦ୍ରା (୩୩୬), ଭାନୁମତୀ (୩୩୭), ଦୁଃଶୀଳା (୩୩୭କ), ମଧୁମତୀ (୩୩୭ଖ), ଉତ୍ତରା (୩୩୭ଗ), କୁନ୍ତୀ (୩୩୭ଘ) ଆଦି କନ୍ୟାମାନଙ୍କର ପରିଣୟ ଦୃଶ୍ୟରେ ଯୌତୁକଦାନର ଆଲେଖ୍ୟ ନିହିତ । ସେ କାଳରେ ଏହି ପ୍ରଥା ଉତ୍କଟତା ଲାଭ କରିଥିଲା । ଦରିଦ୍ର ବା ନିଃସ୍ୱ କନ୍ୟାପିତା ମଧ୍ୟ ଏଥିରୁ ମୁକ୍ତି ପାଉ ନ ଥିଲେ । ବନବାସୀ ଜମ୍ବୁକ ଭାଗ୍ୟବାନ ରାଜାଙ୍କୁ ଯୌତୁକ ପ୍ରଦାନ କରିବା ତଥ୍ୟରୁ ଏହା ସ୍ପଷ୍ଟ ।

"ବିଭା ହୋଇ ଯଉତୁକ ଦେବାବେଳେ ପୁଣି
ବିପ୍ର ବୋଇଲେ କି ଦକ୍ଷିଣା ଦେବ ଦିଅ ଆଣି ।
ଜମ୍ବୁକା ବୋଲଇ ରାଜା ଶୁଣ ମୋ ବଚନ
ଏ ତୋର ରାଜ୍ୟ ପଞ୍ଚାଶ ସହସ୍ର ଯୋଜନ ।
ଯାବତ ଉଠିଆ ପୃଥ୍ୱୀ ତୋର କୋଠ ଧନ
ପଡ଼ିଆ ବୃତ୍ତି ଯେତେକ ମୋର କୋଠ ଜାଣ ।
ତାହା ତୋତେ ମୁହିଁ ଦେଲି ସତ୍ୟ-ବାକ୍ୟ କରି
ଉଠିଆ କରିଣ ଭୋଗ କର ଦଣ୍ଡଧାରୀ ।" (୩୩୮)

'ରାମବିଭା' (୩୩୯), 'କଳ୍ପଲତା' (୩୪୦), 'ଦାଣ୍ଡି ରାମାୟଣ' (୩୪୧), 'ଭାଗବତ' (୩୪୨) ଓ 'ପରିମଳା' (୩୪୩) କାବ୍ୟରେ ଯୌତୁକର ବର୍ଣ୍ଣନା ଦେଖାଯାଏ । ଗୋପୀନାଥ ଦାସଙ୍କ 'ମହାଭାରତ ସାର ସଂଗ୍ରହ'ରେ ମଧ୍ୟ ଯୌତୁକ ପ୍ରଦାନ କରିବାର ତଥ୍ୟ ମିଳେ । (୩୪୪)

## (ଠ) ଦଶ-ଦୋଷ କ୍ଷମା :

ବରପିତାଙ୍କ ନିକଟରେ କନ୍ୟାର ଦଶ ଦୋଷ-କ୍ଷମା କରିବା ନିମିତ୍ତ କନ୍ୟାପିତା ନିବେଦନ କରିବା ଏକ କର୍ମକାଣ୍ଡୋକ୍ତ ବିଧି । ପାଣିପାଦାର୍ଘ୍ୟ କର୍ମ ପରେ (୩୪୪ଅ) କନ୍ୟାପିତା ବରପିତାଙ୍କୁ ପାଞ୍ଚଗୋଟି ହରିଡ଼କୀ ସମର୍ପଣ କରନ୍ତି ଏବଂ କନ୍ୟାର ଦଶବିଧ ଦୋଷକୁ କ୍ଷମା କରିବା ପାଇଁ ଅନୁରୋଧ ଜଣାନ୍ତି । (୩୪୫) କନ୍ୟାର ଦଶ ପ୍ରକାର ଦୋଷ ହେଉଛି—ଲଜ୍ଜାହୀନତା, ଗୃହେରଣୀପଣ, ଡାହାଣୀ ପଣ, ବ୍ୟଭିଚାରିଣୀତ୍ୱ, କଟୁ ଭାଷଣ, ହିଂସା, ଦୁଷ୍କର୍ମ, ମିଥ୍ୟାଭାଷଣ, ଅସନ୍ତୋଷ, ବାରମ୍ବାର ଗୃହରୁ ପଳାୟନ । (୩୪୬) ଏହି ବିଧି ବ୍ରାହ୍ମଣ ସମାଜରେ ପ୍ରଚଳିତ ଦେଖାଯାଏ ନାହିଁ । ଅନ୍ୟ ଜାତିମାନଙ୍କରେ ଏହାର ପ୍ରଚଳନ ଦେଖାଯାଏ । (୩୪୭)

ଶାରଳାଙ୍କ କାଳରେ ଏହି ବିଧିର ପ୍ରଚଳନ ରାଜବଂଶରେ ଥିଲା । କନ୍ୟା-ପିତା ବରପିତାଙ୍କ ପାଖରେ କ୍ଷମାଭିକ୍ଷା ନ କରି ବର ପାଖରେ କନ୍ୟାର ଦଶ ଦୋଷ ପାଇଁ କ୍ଷମାଭିକ୍ଷା କରୁଥିଲେ । ରାଜା ଦ୍ରୁପଦ (୩୪୮), ନନ୍ଦ ରାଜା (୩୪୯) ଓ ଦୁର୍ଯ୍ୟୋଧନ (୩୫୦) ନିଜ ନିଜର ଜାମାତାମାନଙ୍କ ପାଖରେ କ୍ଷମା ପ୍ରାର୍ଥନା କରିଥିଲେ ବୋଲି କବି କହିଛନ୍ତି । ଜମ୍ବୁକାକୁ ମଧ୍ୟ ଭାଗ୍ୟବାନଙ୍କ ନିକଟରେ କ୍ଷମା ଭିକ୍ଷା କରିବାକୁ ପଡ଼ିଥିଲା :

"ହସ୍ତ ଧରି କନ୍ୟାକୁ ସେ ସମର୍ପିଣ ଦେଲା
ଏହା ଦଶ-ଦୋଷ କ୍ଷମା କରିବ ବୋଇଲା ।" (୩୫୧)

## (ଡ) ବନ୍ଦାପନା :

'କର୍ମକାଣ୍ଡ'ରେ ତିନିଥର ବେଦୀ ଉପରେ ବନ୍ଦାପନା କରିବା କଥା କୁହା-ଯାଇଅଛି । ବିବାହର ପ୍ରାରମ୍ଭରେ କନିଷ୍ଠ ବେଦୀ ଉପରେ କନ୍ୟା-ମାତା ସଧବା ନାରୀମାନଙ୍କ ସହ ଜାମାତାଙ୍କ ବନ୍ଦାପନା କରିବା ବିଧି । (୩୫୨) ହସ୍ତଗ୍ରନ୍ଥି ଉନ୍ମୋଚନ କଲାପରେ ପୁନଶ୍ଚ ବନ୍ଦାପନା ହେବା ନିୟମ । (୩୫୩) ବୈବାହିକ କର୍ମ ଶେଷରେ ନାରୀମାନେ ବର-ବଧୂଙ୍କୁ ବେଦୀ ଉପରେ ବନ୍ଦାପନା କରି ଗୃହାଭ୍ୟନ୍ତରକୁ ଘେନଯାନ୍ତି । (୩୫୪) 'ସ୍କନ୍ଦ ପୁରାଣ'ରେ ପୁରନାରୀଗଣ ଗୃହାଙ୍ଗ-ନରେ ଶିବ-ପାର୍ବତୀଙ୍କୁ ବନ୍ଦାପନା କରିଥିବା ବୃତ୍ତାନ୍ତ ବର୍ଣ୍ଣିତ । (୩୫୫)

ଶାରଳା ଦାସଙ୍କ ଯୁଗରେ ବରକନ୍ୟାଙ୍କୁ ବେଦୀ ଉପରେ ବନ୍ଦାପନା କରି ଗୃହ ମଧ୍ୟକୁ ନେବା ରୀତି ଥିଲା । ସୁଭଦ୍ରା-ପରିଣୟ (୩୫୬) ଓ ଦ୍ରୌପଦୀ-ବିବାହ

(୩୫୭)ସ୍ଥଳରେ ନାରୀମାନେ ବର-ବଧୂଙ୍କୁ ବନ୍ଦାପନା କରି ଗୃହାଭ୍ୟନ୍ତରକୁ ନେବା ଦୃଶ୍ୟ ନାହିଁ । 'ଦାଣ୍ଡି ରାମାୟଣ' (୩୫୮), ଜଗନ୍ନାଥ ଦାସଙ୍କ 'ମହାଭାରତ' (୩୫୯), 'ପରିମଳା' (୩୬୦) ଓ 'ରୁକ୍ମିଣୀବିଭା'. (୩୬୧) କାବ୍ୟରେ ବେଦୀ ଉପରେ ନାରୀମାନେ ବରକନ୍ୟାଙ୍କୁ ବନ୍ଦାପନା କରିବା ବିଷୟ ରହିଛି ।

ଗୃହ ମଧ୍ୟରେ ବନ୍ଦାପନା କରାଯାଉଥିଲା । ଦ୍ରୌପଦୀ-ବିବାହ (୩୬୨), ଚନ୍ଦ୍ରାବତୀ-ପରିଣୟ (୩୬୩) ଓ ଭାନୁମତୀ-ବିବାହ (୩୬୪) ଦୃଶ୍ୟରେ ଏତାଦୃଶ ବନ୍ଦାପନାର ଦୃଷ୍ଟାନ୍ତ ମିଳେ । 'ଦାଣ୍ଡି ରାମାୟଣ'ରେ ରାମ-ସୀତାଙ୍କର ବନ୍ଦାପନା ଗୃହ ମଧ୍ୟରେ ହେବା କଥା କୁହାଯାଇଅଛି । (୩୬୫)

କବି-ଲେଖମାନେ କନିଷ୍ଠ ବେଦୀ ଉପରର ବନ୍ଦାପନା ଏବଂ ହସ୍ତଗ୍ରନ୍ଥି ଉନ୍ମୋଚନ ବେଳର ବନ୍ଦାପନା କଥା ନାହିଁ ।

## (ଢ) ହୋମ ଓ ଲାଜାହୋମ :

ବ୍ରହ୍ମାଙ୍କୁ ବରଣ କରି ମନ୍ତ୍ରୋଚ୍ଚାରଣ ସହ ଅଗ୍ନିରେ ଘୃତାହୁତି ପ୍ରଦାନ କରିବା ପାଣି-ଗ୍ରହଣ କାଳର ପ୍ରଧାନ କର୍ମ । ବୈବାହିକ ହୋମରେ ଦେବଦେବୀ, ପିତୃଗଣ, ଯକ୍ଷ, ଗନ୍ଧର୍ବ, ରାକ୍ଷସ, ଚତୁର୍ଦ୍ଦଶ ଭୁବନ, ମୁନିଋଷି, ନାଗ, ଭୂତ ଓ ପ୍ରେତ ସମସ୍ତଙ୍କୁ ଆହୁତି ପ୍ରଦାନ କରାଯାଏ ।(୩୬୫ଅ) ମନ୍ତ୍ର ସହ ହୋମ ନ କଲେ ବିବାହ ସିଦ୍ଧ ହୁଏ ନାହିଁ । ତେଣୁ ବ୍ୟାସଦେବ କହିଛନ୍ତି—କନ୍ୟାର ବନ୍ଧୁବାନ୍ଧବ ଅନୁମତି ପ୍ରଦାନ କଲା ପରେ ମନ୍ତ୍ର ଓ ହୋମର ପ୍ରୟୋଗ ବିଧେୟ । (୩୬୬) 'ସଂସ୍କୃତ ମହାଭାରତ'ରେ ଦ୍ରୌପଦୀଙ୍କ ବିବାହ-ଛନ୍ଦରେ (୩୬୭) ଓ ରାମାୟଣର ସୀତା-ବିବାହ ଦୃଶ୍ୟରେ (୩୬୮କ) ହୋମାନୁଷ୍ଠାନର କଥା ଅଛି । 'ପାରସ୍କର ଗୃହ୍ୟସୂତ୍ର'ରେ ବୈବାହିକ ହୋମର ବିଧାନ ନାହିଁ । (୩୬୮ଖ)

ଶାରଳା ଦାସଙ୍କ ଯୁଗରେ ବିବାହ କର୍ମ ମଧ୍ୟରେ ହୋମର ଖୁବ୍ ପ୍ରାଧାନ୍ୟ ରହିଥିଲା । ଦ୍ରୌପଦୀ (୩୬୯), ହିଡ଼ିମ୍ବୀ (୩୭୦), ଦୁଃଶୀଳା (୩୭୧), ଭାନୁମତୀ (୩୭୨), ହାରାବତୀ (୩୭୩), ସୁଭଦ୍ରା (୩୭୪), ଉତ୍ତରା (୩୭୫) କନ୍ୟାର ବିବାହ-ବର୍ଣ୍ଣନାରେ ବୈବାହିକ ହୋମର ଛନ୍ଦ ନାହିଁ । ଉତ୍ତରା-ବିବାହ ସ୍ଥଳରେ ଅଗ୍ନିଙ୍କର କେଉଁ ସ୍ଥାନରେ ଆହୁତି ପଡ଼ିଲେ କି ପ୍ରକାର ଫଳ ହୁଏ, ତାହା ବିସ୍ତାରିତ ଭାବରେ ପ୍ରଦର୍ଶନ କରାଯାଇଅଛି । (୩୭୬) 'ଦାଣ୍ଡି ରାମାୟଣ'ର ସୀତା-ବିବାହ ବର୍ଣ୍ଣନାରେ (୩୭୭) ଏବଂ 'ଭାଗବତ'ର ରୁକ୍ମିଣୀ-ପରିଣୟ ଦୃଶ୍ୟରେ ହୋମାନୁଷ୍ଠାନର ଛନ୍ଦ ପରିଦୃଷ୍ଟ ହୁଏ । (୩୭୮)

ହୋମାନୁଷ୍ଠାନ ପରେ ଅଗ୍ନିଙ୍କୁ ପ୍ରଦକ୍ଷିଣ କରି ବରକନ୍ୟା ଲାଜାହୋମ କରିବା ବିଧି । (୩୭୯) କନ୍ୟା ସମ୍ମୁଖରେ ଲାଜା ବା ଖଇ ଧରି ଦଣ୍ଡାୟମାନ ହୁଏ । ବର ତାହାର ପଛରେ ସ୍ରୁବ ଧରି ଦଣ୍ଡାୟମାନ ହୋଇଥାଏ । କନ୍ୟା ଅଗ୍ନିରେ ଲାଜା ନିକ୍ଷେପ କରେ ଏବଂ ବର ଘୃତାହୁତି ଦିଏ । ଏ ସ୍ଥଳରେ କନ୍ୟା ବା ପୁରୋହିତ ମନ୍ତ୍ରୋଚାରଣ କରନ୍ତି; କିନ୍ତୁ ବର ମନ୍ତ୍ରପାଠ କରେ ନାହିଁ । (୩୮୦) 'ପାରସ୍କର ଗୃହ୍ୟସୂତ୍ର'ରେ ଲାଜାହୋମର ବିଧାନ ରହିଛି । (୩୮୧) ରାମାୟଣ ଓ ମହାଭାରତରେ ଲାଜାହୋମର ଉଲ୍ଲେଖ ଦେଖାଯାଏ ନାହିଁ । (୩୮୨) 'ରଘୁବଂଶ'ରେ ଇନ୍ଦୁମତୀଙ୍କ ବିବାହ-ଦୃଶ୍ୟରେ ଲାଜାହୋମର ବର୍ଣ୍ଣନା ମିଳେ । (୩୮୩)

ଶାରଳା ଦାସଙ୍କ ଯୁଗରେ ଲାଜାହୋମର ବିଧାନ ସବଳ ଥିଲା । ଦ୍ରୌପଦୀ-ବିବାହ (୩୮୪), ହନୁମନ୍ତି-ପରିଣୟ (୩୮୫), ସୁଭଦ୍ରା-ପରିଣୟ (୩୮୬) ଓ ଉତ୍ତରା-ବିବାହ (୩୮୭) ବର୍ଣ୍ଣନାରେ ଲାଜାହୋମର ଉଲ୍ଲେଖ ମିଳେ । 'ଦାଣ୍ଡି ରାମାୟଣ' (୩୮୮), 'ପରିମଳା' (୩୮୯କ), 'ରୁକ୍ମଣୀ ବିଭା' (୩୮୯ଖ) କାବ୍ୟରେ ଏହାର ଉଲ୍ଲେଖ ଦେଖାଯାଏ ।

## (ଣ) ପଞ୍ଚୁଗ୍ରାସୀ :

'ପଞ୍ଚ ଗ୍ରାସୀ' ଏକ କର୍ମକାଣ୍ଡୋକ୍ତ ବିଧି ନୁହେଁ । 'ପାରସ୍କର ଗୃହ୍ୟସୂତ୍ର୍ୟ'ରେ ସ୍ଥାନୀୟ ପ୍ରଥା ପାଳନୀୟ ବୋଲି ଉକ୍ତ ଅଛି । (୩୯୦) ସମ୍ଭବତଃ ଏହି ବିଧିଟି ଗୋଟିଏ ଲୋକାଚାର କର୍ମ ଅଟେ । ବର-କନ୍ୟା ବିବାହ କର୍ମ ଶେଷ ହେବା ପରେ ଗୃହକୁ ଯାଇ, ଉଭୟ ଏକ ଆସନରେ ବସି ପାଞ୍ଚଥର ମାତ୍ର ଅନ୍ନ ଭକ୍ଷଣ କରିଥାନ୍ତି । ତେଣୁ ଏହାର ନାମ 'ପଞ୍ଚୁଗ୍ରାସୀ ।'

ଶାରଳା ଦାସଙ୍କ ଯୁଗରେ ବର-କନ୍ୟା ବିବାହ ପରେ ଏକତ୍ର ବସି ଭୋଜନ କରିବା ରୀତି ପ୍ରଚଳିତ ଥିଲା । କବି ପଞ୍ଚଗ୍ରାସୀର ଉଲ୍ଲେଖ ସୁଭଦ୍ରା-ଅର୍ଜୁନ (୩୯୧), ଉତ୍ତରା-ଅଭିମନ୍ୟୁ (୩୯୨), ଦୁଃଶୀଳା-ଜୟଦ୍ରଥ (୩୯୨କ) ଆଦି ପରିଣୟ ସ୍ଥଳମାନଙ୍କରେ କରିଅଛନ୍ତି । 'କଳସା-ଚଉତିଶା' (୩୯୩), 'ରାମ ବିଭା' (୩୯୪), 'ଦାଣ୍ଡି ରାମାୟଣ' (୩୯୫) ଓ ପରିମଳା (୩୯୬) କାବ୍ୟରେ ପଞ୍ଚୁଗ୍ରାସୀର ବର୍ଣ୍ଣନା ମିଳେ ।

## (ଡ) ଘୃତ ପାରଣା :

ଅଗ୍ନିରେ ଆହୁତି ଦେଲା ପରେ ପ୍ରାଶନ-ପାତ୍ରରେ ଯେଉଁ ଘୃତ ରହିଯାଏ, ତାହାକୁ ବର ପାନ କରିବା ବିଧେୟ ବୋଲି 'କର୍ମକାଣ୍ଡ' (୩୯୭) ତଥା 'ବିବାହ କାରିକା'ରେ କଥିତ ଅଛି । (୩୯୮)

ଶାରଳା ଦାସଙ୍କ କାଳରେ ଏହି ଘୃତକୁ ବର-କନ୍ୟା ଉଭୟେ ପାନ କରୁଥିବାର ଜଣାଯାଏ । ଦ୍ରୌପଦୀ ଓ ପାଣ୍ଡବମାନେ ଏକତ୍ର ଘୃତ ପାନ କରିଥିଲେ ବୋଲି କବି ପ୍ରଦର୍ଶନ କରିଅଛନ୍ତି ।

"ଉଚ୍ଛିଷ୍ଟ ଘୃତ ଯେ ଦେଲେ ବରକନ୍ୟାଙ୍କର ହସ୍ତେ
କନ୍ୟାଭୁଜ ଧରି ଗ୍ରାସ କଲେ ପଞ୍ଚଭ୍ରାତେ ।
ହୋମ-ଘୃତ ଗ୍ରାସ ତହୁଁ ଦ୍ରୌପଦୀ କରନ୍ତି
ଆଚମନ ସାରି ପୁଣି ଆସ୍ଥାନେ ବସନ୍ତି ।" (୩୯୯)

ସୁଭଦ୍ରା-ବିବାହ (୪୦୦), ଚନ୍ଦ୍ରାବଳୀ-ପରିଣୟ (୪୦୧), ଦୁଃଶୀଳା ବିବାହ (୪୦୧କ), ଭାନୁମତୀ-ବିବାହ (୪୦୧ଖ) ବର୍ଣ୍ଣନାରେ ଘୃତପ୍ରାଶନର ଉଲ୍ଲେଖ ପରିଦୃଷ୍ଟ ହୁଏ ।

## (ଥ) କଣ୍ଟମ୍ବା ଆସନ ଓ ବରକନ୍ୟାଙ୍କର ସମ୍ମୁଖୀକରଣ :

କନ୍ୟାଦାନ ପୂର୍ବରୁ ବରକନ୍ୟାଙ୍କୁ କଣ୍ଠ ମଶିଣା ଉପରେ ( ତୃଣର ମୂଳ ଭାଗରେ ତିଆରି ଏକହସ୍ତ-ପରିମିତ ଆସନ ) ବସାଇ ପରସ୍ପରର ସମ୍ମୁଖୀନ କରାଇବା ଏକ ବିଧି । (୪୦୨) 'ଗୃହ୍ୟସୂତ୍ର କାରିକା'ରେ କଥିତ ହୋଇଅଛି ଯେ ବିଷ୍ଣୁ କଣ୍ଠ ନାମକ ରାକ୍ଷସକୁ ମାରି ତାହାକୁ ଆସନ କରି ସରସ୍ୱତୀଙ୍କୁ ପୂର୍ବେ ବିବାହ କରିଥିଲେ । ସମସ୍ତ ମଙ୍ଗଳ କାର୍ଯ୍ୟରେ କଣ୍ଠ ମଶିଣାରେ ବସି କର୍ମ କଲେ ଶୁଭ ହୁଏ ଏବଂ ବିବାହ କାଳରେ ବର-କନ୍ୟା ସେଥିରେ ବସିଲେ ଆୟୁଷ, ଧନ ତଥା ସନ୍ତାନ ଲାଭ ହୋଇଥାଏ । (୪୦୩)

ଶାରଳା ଦାସଙ୍କ ଯୁଗରେ କଣ୍ଠ ମଶିଣା ଉପରେ ବସି ବର-କନ୍ୟାଙ୍କର ସମ୍ମୁଖୀକରଣ କରାଯାଉଥିଲା ବୋଲି ଅବଧାରିତ ହୁଏ । କବି-ଲେଖନୀରେ 'କଣ୍ଠମ୍ବା ଆସନ'ର ଉଲ୍ଲେଖ ଥିବାରୁ ଏହା ସ୍ପଷ୍ଟ । ଚନ୍ଦ୍ରାବଳୀ-ଶାମ୍ବଙ୍କ ବିବାହ କାଳରେ ବ୍ୟାସଦେବ 'କଣ୍ଠମ୍ବା ଆସନ' ଆଣିବା ନିମିତ୍ତ ନିର୍ଦ୍ଦେଶ ଦେଇଥିଲେ । (୪୦୪) ଏହି ପ୍ରସଙ୍ଗରେ କବି କଣ୍ଠମ୍ବା ଆସନର ଇତିବୃତ୍ତ ମଧ୍ୟ ବର୍ଣ୍ଣନା କରି-

ଅଛନ୍ତି । (୪୦୫) ବିଷ୍ଣୁ କଟମ୍ବା ନାମକ ଅସୁରକୁ ବଧ କରି ତାହାର ଶରୀର ରୂପକ ଆସନରେ ବସି ସରସ୍ୱତୀଙ୍କର ପାଣି ଗ୍ରହଣ କରିଥିଲେ ବୋଲି କବି ବର୍ଣ୍ଣନା କରିଅଛନ୍ତି । (୪୦୬)

'କଳସା ଚଉତିଶା'ରେ କନ୍ୟାପିତା କଟମ୍ବା ଆସନ ଉପରେ ଉପବେଶନ କରିଥିଲେ ବୋଲି କୁହାଯାଇଅଛି । (୪୦୭) ସ୍ୱର୍ଗତଃ ଗୋପୀନାଥ ନନ୍ଦ ଲେଖିଛନ୍ତି ଯେ, ଶୂଦ୍ରମାନେ ଆସନ ରୂପରେ ଏକ ଛଣବଡ଼ା ବ୍ୟବହାର କରିଥାନ୍ତି । (୪୦୮)

(ଦ) **ବାଦ୍ୟ ବାଜଣା ଓ ଭୋଜି :**

ବିବାହ ସମୟରେ ନୃତ୍ୟ, ଗୀତ, ବାଦ୍ୟ, ଶଙ୍ଖନାଦ ଓ ବଂଶୀଧ୍ୱନି ଶୁଭ ବୋଲି ବିବେଚନା କରାଯାଏ । (୪୦୯) ମଙ୍ଗଳାଷ୍ଟକରେ ଝିଲ୍ଲୀ, ଡିଣ୍ଡିମ, ନାଗରା, ତାନପୁରା, ଢୋଲ ଆଦି ବିବାହ କାଳରେ ବାଜିବା କଥା ଉକ୍ତ ଅଛି । (୪୦୯କ) ବିବାହ କର୍ମାରମ୍ଭରେ ବାଦ୍ୟାଦି ଉତ୍ସବ କରଣୀୟ ବୋଲି 'କର୍ମ କାଣ୍ଡ'ର ମତ । (୪୦୯ଖ) ସଂସ୍କୃତ ମହାଭାରତରେ ଉତ୍ତରା-ଅଭିମନ୍ୟୁଙ୍କ ବିବାହ ପ୍ରସଙ୍ଗରେ ଶଙ୍ଖ, ଗୋମୁଖ ଓ ଡମ୍ବରୁ ଆଦି ବିଭିନ୍ନ ବାଦ୍ୟର ଉଲ୍ଲେଖ ପରିଦୃଷ୍ଟ ହୁଏ । (୪୧୦)

ଉତ୍କଳୀୟ ସମାଜରେ ବହୁବିଧ ବାଦ୍ୟର ବ୍ୟବହାର କରାଯାଉଥିଲା । ବାଦ୍ୟ-ବାଜଣା ସହିତ ନାରୀକଣ୍ଠର ହୁଳହୁଳି ଧ୍ୱନି, ଗଣିକାମାନଙ୍କ ନୃତ୍ୟଗୀତ ବିବାହୋତ୍ସବର ସ୍ୱାଭାବିକ ସହଚର ଥିଲେ ।

ସୁହାଣୀ କନ୍ୟାର ବିବାହ କାଳରେ ଖାରତୂରି ଠମକ ନିଷାଣ ଆଦି ବାଦ୍ୟ-ବାଜଣା ବାଜୁଥିଲା । ନାରୀଗଣ ମଙ୍ଗଳ ଗୀତ ଗାନ କରୁଥିଲେ । ସେତେବେଳେ ନାରୀକଣ୍ଠର ସୁମଧୁର ହୁଳହୁଳି ମଧ୍ୟ ଶୁଣାଯାଇଥିଲା । (୪୧୧) ଚନ୍ଦ୍ରାବତୀଙ୍କ ପରିଣୟ କାଳରେ ନିଶାଣ, ଢୋଲ, ଖରଘୋଷ, ଦାଉଣ୍ଡୀ (ବାଦ୍ୟବିଶେଷ) ବାଜୁଥିଲା ଏବଂ ସୁଲଭ କାମିନୀଗଣ (ଗଣିକା) ଗୀତ ଗାଉଥିଲେ । (୪୧୨) ଉତ୍ତରା (୪୧୩) ଓ ଦ୍ରୌପଦୀଙ୍କ ପରିଣୟ ବେଳେ ଗଣିକାମାନଙ୍କ ଦ୍ୱାରା ନୃତ୍ୟଗୀତ ପରିବେଷିତ ହେଉଥିଲା । (୪୧୪) ସୁଭଦ୍ରା-ପରିଣୟ ଦୃଶ୍ୟରେ ଶଙ୍ଖଧ୍ୱନି, ଗୀତ, ହୁଳହୁଳି ଆଦିର ଉଲ୍ଲେଖ ନିହିତ । (୪୧୫)

'ରାମବିଭା' କାବ୍ୟରେ ବିବାହ ପ୍ରସଙ୍ଗରେ ଶଙ୍ଖ-ମହୁରୀ, ଢୋଲ, ଦମାଲୁ (ବାଦ୍ୟବିଶେଷ), ଝମ୍ପକ, ନିଶାଣ ତଥା ହୁଳହୁଳିର ଉଲ୍ଲେଖ ଦେଖାଯାଏ । (୪୧୬) 'କଳ୍ପଲତା' କାବ୍ୟର ବିବାହ ଦୃଶ୍ୟରେ ବାଦ୍ୟବାଜଣା, ହୁଳହୁଳି ଧ୍ୱନି ଓ ନୃତ୍ୟର ବର୍ଣ୍ଣନା ମିଳେ । (୪୧୭)

ବିବାହ ଉତ୍ସବରେ ସମସ୍ତଙ୍କୁ ଭୋଜିରେ ଆପ୍ୟାୟିତ କରିବା ଭାରତୀୟ ସମାଜର ସୁପ୍ରାଚୀନ ରୀତି । ପାଶ୍ଚାତ୍ୟ ସମାଜରେ ବୈବାହିକ ଭୋଜି ଏକ ଅନୁଷ୍ଠାନ ଭାବରେ ପ୍ରସିଦ୍ଧି ଲାଭ କରିଅଛି । (୪୧୮) ସଂସ୍କୃତ ମହାଭାରତର ଉତ୍ତରା-ପରିଣୟ ଦୃଶ୍ୟରେ ନାନାବିଧ ଭୋଜ୍ୟ ପଦାର୍ଥର ପ୍ରସ୍ତୁତି ହେବା ବିଷୟ ନିହିତ । (୪୧୯) ରାମାୟଣରେ ଜନକ ଋଷି ସୀତା-ବିବାହ କାଳରେ ସମସ୍ତଙ୍କୁ ଭୋଜିରେ ଆପ୍ୟାୟିତ କରିଥିଲେ ବୋଲି ଉକ୍ତ । (୪୨୦) 'ସ୍କନ୍ଦ ପୁରାଣ'ରେ ହିମାଳୟ ସମସ୍ତ ଦେବତା ଓ ମୁନିଋଷିମାନଙ୍କୁ ପାର୍ବତୀଙ୍କ ବିବାହ କାଳରେ ଭୋଜନରେ ସନ୍ତୁଷ୍ଟ କରିଥିବା ବୃତ୍ତାନ୍ତ ବର୍ଣ୍ଣିତ । (୪୨୧)

ଶାରଳା ଦାସଙ୍କ ଯୁଗରେ କନ୍ୟାପିତା ବହୁ ଆଡ଼ମ୍ବରସହକାରେ ବରଯାତ୍ରୀ ତଥା ଆମନ୍ତ୍ରିତ ବ୍ୟକ୍ତିମାନଙ୍କୁ ଭୋଜିରେ ଆପ୍ୟାୟିତ କରୁଥିଲେ । ଉତ୍ତରା-ବିବାହ କାଳରେ ବିରାଟ ରାଜା ଆଗନ୍ତୁକଗଣଙ୍କୁ ଭୋଜିରେ ଆପ୍ୟାୟିତ କରିବା ବର୍ଣ୍ଣନାରୁ ଏହା ପ୍ରତିପାଦିତ ହୁଏ ।

"କନକର ପଲମରେ ରାଜାଙ୍କୁ ସେ ଦିଏ
ସୁପକ୍ୱ ଅନ୍ନ ରାଜାଙ୍କୁ ପରଷିଣ ଯାଏ ।
ପରିବେଷଣ କରନ୍ତି ସୁବେଘା ବ୍ରାହ୍ମଣ
ସୁସ୍ଥାନେ ବସି ଭୁଞ୍ଜନ୍ତି ଦେବ ନାରାୟଣ ।" (୪୨୨)

'ରାମବିଭା' କାବ୍ୟରେ ଅଛି ଯେ, ଜନକ ବରପକ୍ଷୀୟ ବ୍ୟକ୍ତି ଓ ରାଜା-ଗଣଙ୍କୁ ଷଡ଼ରସପୂର୍ଣ୍ଣ ଭୋଜନ ତଥା ଋଷିମାନଙ୍କୁ ଫଳ ପ୍ରଦାନ କରିଥିଲେ । (୪୨୩) ଗୋପୀନାଥ ଦାସଙ୍କ 'ମହାଭାରତ ସାରସଂଗ୍ରହ'ରେ ହରି ସାହୁ ବିବାହ ପରେ ବାରଲକ୍ଷ ବଣିଆଙ୍କୁ ଭୋଜି ଦେଇଥିବା କଥା ଅଛି । (୪୨୪)

## (ଧ) ଦେବୀଦର୍ଶନ :

ପୌରାଣିକ ଯୁଗରେ ବିବାହ ବେଦୀକୁ ଗମନ କରିବା ପୂର୍ବରୁ କନ୍ୟା ଦେବୀ-ଦର୍ଶନ କରିବା ପାଇଁ ଯିବାର ପ୍ରଥା ଥିଲା । ସଂସ୍କୃତ ଭାଗବତରେ ଅଛି,

ଯେ, ରୁକ୍ମଣୀ ଦେବୀ-ଦର୍ଶନ ପାଇଁ ଗମନ କରିଥିବାବେଳେ ଶ୍ରୀକୃଷ୍ଣ ତାହାଙ୍କୁ ହରଣ କରିଥିଲେ । (୪୨୫)

ଶାରଳା ଦାସଙ୍କ ଯୁଗରେ ରାଜାମାନଙ୍କ ଘରେ ଏହି ପ୍ରଥା ଥିଲା । ତ୍ରିପୁରମୋହିନୀ ଦେବୀଙ୍କ ମନ୍ଦିରକୁ ଗମନ କରିଥିଲେ ଏବଂ ସେତେବେଳେ ପ୍ରଦ୍ୟୁମ୍ନ ତାହାଙ୍କୁ ହରଣ କରି ନେଇଥିଲେ । (୪୨୬) ଉତ୍ତରା ମଧ୍ୟ ବେଦୀକୁ ଯିବା ପୂର୍ବରୁ ଦେବୀ-ଦର୍ଶନରେ ବନ୍ଦୀଗତ ହୋଇଥିଲେ । (୪୨୭)

ଭାଗବତରେ କନ୍ୟା ଦେବୀ-ଦର୍ଶନ ପାଇଁ ଯିବା ରାଜବଂଶର କୁଳାଚାର ବୋଲି କୁହାଯାଇଅଛି । (୪୨୮) ଉତ୍କଳୀୟ ସମାଜରେ ବିବାହ ପରେ ବର-କନ୍ୟା ଦେବ ବା ଦେବୀ ମନ୍ଦିରକୁ ଯିବା ଏବେବି ଚଳଣିରେ ରହିଛି ।

## (ନ) ମଧୁଶଯ୍ୟା :

ପ୍ରାଚୀନ କାଳରେ ବିବାହ ଦିବସଠାରୁ ଏକବର୍ଷ, ବାର ଦିନ, ଛ' ରାତି ଅଥବା ଅନ୍ୟୂନପକ୍ଷେ ତିନିରାତି ନବଦମ୍ପତି ଲବଣ ବା କ୍ଷାରଯୁକ୍ତ ଭୋଜନ ନ କରି, ଭୂମିରେ ଶୋଇ, ସହବାସଠାରୁ ଦୂରରେ ରହି ବ୍ରତ ପାଳନ କରୁଥିଲେ । (୪୨୯) ଏବେ ଆଉ ସମାଜରେ ସେହି ରୀତି ପ୍ରଚଳିତ ନାହିଁ । (୪୩୦)

ଶାରଳା ଦାସଙ୍କ ମହାଭାରତରୁ ପରିଜ୍ଞାତ ହୁଏ ଯେ, ବିବାହ ଦିବସର ରାତ୍ରରେ ହିଁ ମଧୁଶଯ୍ୟାର ବିଧାନ ସେ ଯୁଗରେ ଥିଲା । ଉତ୍ତରା-ବିବାହ (୪୩୧କ) ଓ ଦୁଃଶୀଳା-ବିବାହ (୪୩୧ଖ) ରାତ୍ରରେ ପରିଣୟ ଦିବସରେ ମଧୁଶଯ୍ୟା ବିଧି ପ୍ରଦର୍ଶିତ ହୋଇଅଛି ।

କଳସା ଚଉତିଶା (୪୩୧ଗ), ରାମବିଭା (୪୩୨କ), ଦାଣ୍ଡି ରାମାୟଣ (୪୩୨ଖ), ପରିମଳା (୪୩୩) କାବ୍ୟରେ ଏତାଦୃଶ ବର୍ଣ୍ଣନା ମିଳେ ।

## ୪ । ବିବାହୋତ୍ତର ବିଧି-ବିଧାନ :

ପାଣିଗ୍ରହଣ ପରେ ସାତଦିନ ପର୍ଯ୍ୟନ୍ତ ଉତ୍ସବ ଲାଗିରହେ । ଏହି ସପ୍ତାହ ମଧ୍ୟରେ ଚଉଠି ଓ ସାତମଙ୍ଗଳା ପ୍ରଧାନ ଦିବସ । ଏହି ଦିବସମାନଙ୍କରେ କେତେକ ବିଧି-ବିଧାନ ପାଳନ କରାଯାଏ । ବିବାହ ପରେ କନ୍ୟା ଶ୍ୱଶୁରାଳୟକୁ ଚାଲିଗଲେ, ସେଠାରେ ସେ ପତି ସହ ସାତମଙ୍ଗଳାଦି ପାଳନ କରେ । ବର-କନ୍ୟା ବିଦାୟୀ ନ ହୋଇଥିଲେ କନ୍ୟା ପିତୃ-ଗୃହରେ ସାତମଙ୍ଗଳାଦି ପାଳନ କରେ । ଶାରଳା ମହାଭାରତରେ ଚଉଠି ଓ ସାତମଙ୍ଗଳା ଆଦିର ଚିତ୍ର ରହିଛି ।

## (କ) କନ୍ୟା ବିଦାୟ :

ଶାରଳା ଦାସଙ୍କ ପ୍ରଦତ୍ତ ତଥ୍ୟରୁ ଜଣାଯାଏ ଯେ, ସେ କାଳରେ କେତେକ ସ୍ଥଳରେ କନ୍ୟା ବିବାହ ପରେ ଶ୍ୱଶୁରାଳୟ ଯାତ୍ରା କରୁଥିଲେ । ବରୁଣ-କନ୍ୟା ମାଳେନ୍ଦ୍ରୀ ବିବାହ ଦିବସର ପରଦିନ ପତି-ଗୃହକୁ ଯାତ୍ରା କରିଥିଲେ । (୪୩୪) କୌଣସି କୌଣସି ସ୍ଥଳରେ କନ୍ୟା ପତି ସହିତ ନିଜ ପିତାଙ୍କ ଘରେ ସାତମଙ୍ଗଳା ପର୍ଯ୍ୟନ୍ତ ରହି ଆଠମଙ୍ଗଳା ଦିନ ଶ୍ୱଶୁରାଳୟ ଯାତ୍ରା କରୁଥିଲେ । ପାଣ୍ଡବମାନେ ଆଠମଙ୍ଗଳା ଦିନ ବିରବେଶ ଉତ୍ତାରି ଦ୍ରୁପଦଙ୍କ ଗୃହ ପରିତ୍ୟାଗ କରି କୁବଳଶାଳକୁ ଚାଲିଯାଇଥିଲେ । (୪୩୫) ସୁଭଦ୍ରା ଆଠମଙ୍ଗଳା ପରେ ଶ୍ୱଶୁରାଳୟ ଯାତ୍ରା କରିଥିଲେ । (୪୩୬)

ଉତ୍କଳୀୟ ସମାଜରେ କନ୍ୟା-ବିଦାୟ ନାନା ଲୌକିକ ବିଧି-ବିଧାନ ମଧ୍ୟରେ କରାଯାଉଥିଲା । ସେ ଯୁଗରେ କନ୍ୟା-ବିଦାକା ବେଳେ ବେଶ୍ୟାମାନେ ଗୀତ ଗାଉଥିଲେ, ନାରୀଗଣ ହୁଳହୁଳି ପକାଉଥିଲେ, ନାନାବିଧ ବାଦ୍ୟ-ବାଜଣା ବାଜୁଥିଲା । ବର-କନ୍ୟା ଦାଣ୍ଡୋଳାରେ ବସି ଗମନ କରୁଥିଲେ । ଚନ୍ଦ୍ରାବତୀଙ୍କ ପତିଗୃହ-ଯାତ୍ରା ତଥ୍ୟରୁ ଏହା ଅବଧାରିତ ହୁଏ :

"ମଙ୍ଗଳ ଗୀତ ଗାବନ୍ତି ସୁଲଭ କାମିନୀ
ହୁଳହୁଳି ସଙ୍ଗେ ଶୁଭେ ଜୟ ଜୟ ବାଣୀ ।
ଅନେକ ନିଶାଣ ଢୋଲ ଘନ ଘନ ବାଜେ
ଦ୍ୱାରକାପୁରକୁ ବିଜେ କଲେ ଦେବରାଜେ ।

ବୃଷ୍ଣିବଂଶ ଯଦୁବଂଶ ହରିହର ବଂଶ
ଭୋଜ ଆଦି ସାତ ବଂଶ ହୋଇଣ ହରଷ ।

ଦାଣ୍ଡୋଳାରେ ବସାଇଲେ ବରକନ୍ୟା ନେଇ
ବରକନ୍ୟା ଯେନି ବିଜେ ତ୍ରୈଲୋକ୍ୟ ଗୋସାଇଁ ।
ବରକନ୍ୟା ଯେନି ଦେବ ଦ୍ୱାରକାକୁ ବିଜେ
ଘୋର ଘୋଷ ଦାଉଣ୍ଡୀ ଯେ ବାଜା ଆଦି ବାଜେ ।" (୪୩୭)

କନ୍ୟା-ବିଦାୟ ବେଳେ ମାତା ବରକନ୍ୟାଙ୍କର ବନ୍ଦାପନା କରିବା ବିଧି ସମାଜରେ ପ୍ରଚଳିତ ଥିଲା । ଦ୍ରୌପଦୀ (୪୩୮) ଓ ମାଳେନ୍ଦ୍ରୀଙ୍କ (୪୩୯) ବିବାହ-ଦୃଶ୍ୟରେ ମାତା ବନ୍ଦାପନା କରିବା ତଥ୍ୟ ନିହିତ । ସେତେବେଳେ ମାତା

କନ୍ୟାକୁ ନାନା ସଦୁପଦେଶ ପ୍ରଦାନ କରୁଥିଲେ । ଦ୍ରୁପଦ-ପତ୍ନୀ ଦ୍ରୌପଦୀଙ୍କୁ ଶାଶୁ-ଶ୍ୱଶୁରଙ୍କ ସେବା ସଂପର୍କରେ ଉପଦେଶ ଦେବା ବୃତ୍ତାନ୍ତ କବି-ଲେଖମାରେ ମିଳେ :

"ମାତା ଆଣି ଅର୍ଘ୍ୟ ଦେଲେ ଦ୍ରୌପଦୀର ଶିରେ
ଅନୁବ୍ରତେ ଖଟିଥିବୁ ଶାଶୁଙ୍କ ପୟରେ ।
ପ୍ରତ୍ୟକ୍ଷେ ସେ ନିରଞ୍ଜନ ଦେବ ଅବତାର
ତାଙ୍କ ପଦେ ଖଟିଥିବୁ ଦାସୀ ପରକାର ।
ଅନ୍ଧ ନୃପତିଙ୍କ ସେବା କରୁଥିବୁ ମାତ
ଗାନ୍ଧାରୀଙ୍କ ପାଦସେବା କରୁଥିବୁ ଅବିରତ ।
ଦୁହିତା ଗୋଟି କୋଟିଏ ପୁରୁଷ ଉଦ୍ଧାରେ
ଯେମନ୍ତେ ମୁଁ ନିନ୍ଦା ମାତା ନ ପାଏ ସଂସାରେ ।" (୪୪୦)

କନ୍ୟାକୁ ନାରୀମାନେ ସମବେତ କଣ୍ଠର ହୁଳହୁଳି ଧ୍ୱନି ମଧ୍ୟରେ ନେଇ ରଥରେ ବସାଇ ଦେଉଥିଲେ । ମିଳେନ୍ଦ୍ରୀର ବିଦାୟ-ଦୃଶ୍ୟରୁ ଏହା ସ୍ପଷ୍ଟ । (୪୪୧ କ) ମାତା କନ୍ୟାକୁ ବେଶଭୂଷାରେ ସଜ୍ଜିତ କରୁଥିଲେ ଏବଂ ବର-କନ୍ୟା ରଥ ବା ହାଣ୍ଡୋଳାରେ ବସି ଯାତ୍ରା କରୁଥିଲେ । (୪୪୧ ଖ) କନ୍ୟା ସଙ୍ଗରେ ତାହାର ଭ୍ରାତା ଗମନ କରିବା ରୀତି ଥିଲା । ଦ୍ରୌପଦୀଙ୍କ ସଙ୍ଗରେ ତେଣୁ ତାଙ୍କର ଭ୍ରାତା ଶିଖଣ୍ଡୀ ଓ ଧୃଷ୍ଟଦ୍ୟୁମ୍ନ ଯାତ୍ରା କରିଥିଲେ । (୪୪୨) କନ୍ୟା-ପିତା ଅଧବାଟ ପର୍ଯ୍ୟନ୍ତ ଯାଇ କନ୍ୟାକୁ ବିଦାୟ ଦେଉଥିଲେ । ଦ୍ରୁପଦ ରାଜା ଦ୍ରୌପଦୀଙ୍କ ସଙ୍ଗରେ ଗନ୍ଧର୍ବୀ ନଦୀ ପର୍ଯ୍ୟନ୍ତ ଯାଇଥିଲେ ବୋଲି କବି କହନ୍ତି । ଧୃତରାଷ୍ଟ୍ର ଦ୍ରୁପଦଙ୍କୁ କନ୍ୟାକୁ ଉପଦେଶ ଦେବା ନିମିତ୍ତ ଅନୁରୋଧ ଜଣାଇବା ଏବଂ ଦ୍ରୁପଦ "କନ୍ୟା ସବଙ୍କା ପରମା ସଖି" ବୋଲି କହି ଉପଦେଶ ପ୍ରଦାନରୁ ବିରତ ହେବା ବର୍ଣ୍ଣନାରୁ ଉପଲବ୍ଧ ହୁଏ ଯେ ପିତା ମଧ୍ୟ ମାତାଙ୍କ ପରି କନ୍ୟାକୁ ବିଦାୟ କାଳରେ ଉପଦେଶ ଦେଉଥିଲେ । (୪୪୩) କନ୍ୟା-ବିଦାୟ କାଳରେ ନାନାବିଧ ବାଦ୍ୟ-ବାଜଣା ମଧ୍ୟ ବାଜୁଥିଲା । ସୁଭଦ୍ରା-ବିବାହ ଦୃଶ୍ୟରେ ଏହାର ବର୍ଣ୍ଣନା ମିଳେ । (୪୪୩ ଅ)

'ରାମବିଭା' କାବ୍ୟରେ ରାମ-ସୀତା ହାଣ୍ଡୋଳାରେ ବସି ଯିବା, ମାତା ଉପଦେଶ ଦେବା, ବାଦ୍ୟ-ବାଜଣା ବାଜିବା, ଜନକ ଅଧବାଟକୁ ଯାଇ ବିଦାୟ ଦେବା ଆଦି ଦୃଶ୍ୟ ନିହିତ । (୪୪୪) କନ୍ୟାପିତା ଅଧବାଟକୁ ଯାଇ କନ୍ୟାକୁ

ବିଦାୟ ଦେବା କଥା ଓଡ଼ିଶାର ଗାଉଁଲି ଗୀତରେ ବି ଫୁଟିଉଠିଛି । (୪୪୫) ବର-କନ୍ୟା ବିଦାୟ ହେବା ବେଳେ ବାଦ୍ୟ-ବାଜଣା ବାଜିବା ବିଷୟ ଗୋପୀନାଥ ଦାସଙ୍କ ମହାଭାରତରେ ରହିଛି । (୪୪୬)

## (ଖ) ନବବଧୂର ସମ୍ବର୍ଦ୍ଧନା :

ଶାରଳା ଦାସଙ୍କ ଲେଖାରୁ ଅବଧାରିତ ହୁଏ ଯେ, ନବବଧୂଙ୍କୁ ପୁରନାରୀମାନେ ବନ୍ଦାପନା କରି ଗୃହକୁ ନେଉଥିଲେ । ଦ୍ରୌପଦୀ (୪୪୭), ଚନ୍ଦ୍ରାବତୀ (୪୪୮) ଓ ସୁଭଦ୍ରାଙ୍କୁ (୪୪୯) ପୁରନାରୀମାନେ ବନ୍ଦାପନା କରିଥିଲେ । 'ରାମବିଭା' କାବ୍ୟରେ ଦଶରଥଙ୍କର ରାଣୀମାନେ ସୀତାଙ୍କୁ ବନ୍ଦାପନା କରିଥିବା କଥା ଅଛି । (୪୫୦) 'ଦାଣ୍ଡି ରାମାୟଣ'ରେ ମଧ୍ୟ ତଦ୍ରୂପ ତଥ୍ୟ ମିଳେ । (୪୫୧)

ବରକନ୍ୟାଙ୍କୁ ପୁରୁଷଗଣ ମଧ୍ୟ ସମ୍ବର୍ଦ୍ଧନା କରୁଥିଲେ । ସୁଭଦ୍ରା-ପରିଣୟ ଦୃଶ୍ୟରେ ଅଛି ଯେ ଧୃତରାଷ୍ଟ୍ର ଓ ଦୁର୍ଯ୍ୟୋଧନ ପ୍ରମୁଖ ଅର୍ଜୁନ-ସୁଭଦ୍ରାଙ୍କୁ ପାଛୋଟି ନେଇଥିଲେ । (୪୫୨) ବର-କନ୍ୟାଙ୍କୁ ଧୃତରାଷ୍ଟ୍ର ଓ ଶକୁନି ପ୍ରଭୃତି ଅଭିନନ୍ଦନ ଜଣାଇଥିଲେ । (୪୫୨ ଅ) ବରକନ୍ୟାଙ୍କୁ ଦେଖି ପୁରନାରୀମାନେ ଆନନ୍ଦ ପ୍ରକାଶ କରୁଥିଲେ । ଘରେ ଘରେ ବର-ବଧୂଙ୍କର ବନ୍ଦାପନା କରାଯାଉଥିଲା । ସୁଭଦ୍ରାଙ୍କୁ ଦେଖି ହସ୍ତିନାର ନରନାରୀଗଣ ପୁଲକିତ ହୋଇଥିଲେ । (୪୫୨ଆ) ଚନ୍ଦ୍ରାବତୀଙ୍କୁ ପୁରନାରୀମାନେ ଘରେ ଘରେ ବନ୍ଦାପନା କରିଥିଲେ । (୪୫୨ ଇ) ବର-କନ୍ୟା ଆସି ପହଞ୍ଚିଲେ କିପରି ଆନନ୍ଦୋତ୍ସବ ହୁଏ ତାହାର ତଥ୍ୟ ଚନ୍ଦ୍ରାବତୀ-ବିବାହ ପ୍ରସଙ୍ଗରୁ ଜଣାଯିବ :

"ବରକନ୍ୟା ଘେନି ଦେବ ଦ୍ୱାରକାକୁ ବିଜେ
ଖାରଘୋଷ ଦାଉଣ୍ଡି ଯେ ବାଜା ଆଦି ବାଜେ ।
ମଙ୍ଗଳ ଧ୍ୱନି ଶୁଭିଲା ପୂରିଲା ଦ୍ୱାରକା
ଅର୍ଘ୍ୟ ଘେନିଣ ବାହାରି ସକଳ ନାୟିକା ।
ବରକନ୍ୟା ଯାନ୍ତେ ମିଳି ଦେଖୁଛନ୍ତି ବାଳୀ
ଆନନ୍ଦେ ନଗର ଜନେ ଦ୍ୟନ୍ତି ହୁଳହୁଳି ।
ଦେବକୀ ଦେବୀ ଯଶୋଦା ଦେବୀ ଜାମ୍ବବତୀ
ରୁକ୍ମିଣୀ ଯେ ସତ୍ୟଭାମା କୃଷ୍ଣପ୍ରିୟା ଅତି ।

ଏହାଙ୍କ ତୁଲେ ବତିଶ ସହସ୍ର ଯେ ବାମା
ଦ୍ୱାରକାରେ ଅଷ୍ଟପାଟବଂଶୀ ଅନୁପମା ।
ବିହରନ୍ତି କନ୍ୟାମାନେ ମନର ଆନନ୍ଦେ
କଉତୁକେ ନାଚନ୍ତି ଯେ ହାସ୍ୟରସ ରଙ୍ଗେ ।" (୪୫୩)

'ରାମବିଭା' କାବ୍ୟରେ ସୀତାଦେବୀ ଅଯୋଧ୍ୟା ନଗରରେ ପ୍ରବେଶ କଲାବେଳେ ବିଭିନ୍ନ ବାଦ୍ୟ ବାଜିବା, ନାରୀଗଣ ହୁଳହୁଳି ଦେବା, ନଗରର ନାରୀସମାଜ ଆନନ୍ଦ ପ୍ରକାଶ କରିବା ଆଦିର ବର୍ଣ୍ଣନା କରାଯାଇଅଛି । (୪୫୪ କ) ଜଗନ୍ନାଥ ଦାସଙ୍କ ମହାଭାରତରେ ବର୍ଣ୍ଣିତ ଅଛି ଯେ, ମାଳେନ୍ଦ୍ରୀ କନ୍ୟା ଦ୍ୱାରକାରେ ପହଞ୍ଚିଲାବେଳେ ପୁରନାରୀମାନେ ଆନନ୍ଦିତ ହେଲେ, ମଙ୍ଗଳ ଗୀତର ଧ୍ୱନି ଶୁଣାଗଲା, ନାନାଦି ବାଦ୍ୟ ବାଜିଉଠିଲା, ନାରୀମାନେ ହୁଳହୁଳି ଦେଲେ, ସେମାନେ ଅର୍ଘ୍ୟ ବନ୍ଦାଇ ବର-କନ୍ୟାଙ୍କୁ ଘରକୁ ନେଲେ । (୪୫୪ ଖ)

## (ଗ) ଚଉଠି, ସାତମଙ୍ଗଳାଦି ପାଳନ :

ବିବାହର ଚତୁର୍ଥ ଦିବସର ପ୍ରାତଃକାଳରେ ହୋମାନୁଷ୍ଠାନ କରିବା ମହାଭାରତୀୟ ବିଧି । ନବବଧୂ ଉପରେ ଥିବା ଦୁଷ୍ଟ ପ୍ରଭାବକୁ ବିନଷ୍ଟ କରିବା ଏହାର ଉଦ୍ଦେଶ୍ୟ । ଏହି ଦିବସରେ ଆଭ୍ୟୁଦୟିକ ବା ନାନ୍ଦୀମୁଖୀ ଶ୍ରାଦ୍ଧ ମଧ୍ୟ କରଣୀୟ । (୪୫୫) ରାତ୍ରରେ ବରୁଣାଦିଙ୍କ ପୂଜା ଓ ବରକନ୍ୟାଙ୍କ ଉପରେ ଅକ୍ଷତ-ଦାନ ତଥା ଆଶୀର୍ବାଦ ପ୍ରଦାନ ବିଧି । (୪୫୬କ) 'ପାରସ୍କର ଗୃହ୍ୟସୂତ୍ର'ରେ ରାତ୍ରିରେ ହୋମ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଅଛି । (୪୫୬ଖ) ସାତମଙ୍ଗଳା ଦିନ ବେଦୀ ଉପରେ ବର-କନ୍ୟାଙ୍କୁ ବସାଇ ବରୁଣ ପୂଜା, କୌତୁକ ସୂତ୍ରର ଉନ୍ମୋଚନ, ଆଶୀର୍ବାଦ ପ୍ରଦାନ ଓ ବନ୍ଦାପନା କର୍ତ୍ତବ୍ୟ । (୪୫୭) ଆଠମଙ୍ଗଳା-ପରେ ଶୁକ୍ଳପକ୍ଷ ତୃତୀୟା ତିଥିରେ ବରକନ୍ୟା ଚନ୍ଦ୍ର ବନ୍ଦାପନା କରିବା ବିଧି । (୪୫୮କ) ବିବାହର ଏକବର୍ଷ ପୂରିଗଲେ ବର କନ୍ୟାସହ ବରୁଣ ପୂଜା କରି, ନୂତନ ବସ୍ତ୍ର ପିନ୍ଧି ପୁଣ୍ୟାହବାଚନ କରିବା ବିଧେୟ । ତତ୍ପରେ ଆଚାର୍ଯ୍ୟ ବର-କନ୍ୟାଙ୍କ ଉତ୍ତରୀୟ ବସ୍ତ୍ରରେ ପଡ଼ିଥିବା ଗ୍ରନ୍ଥିକୁ ମନ୍ତ୍ରପାଠସହ ଉନ୍ମୋଚନ କରିବା କର୍ତ୍ତବ୍ୟ । (୪୫୮ଖ) ଏତଦ୍‌ଭିନ୍ନ 'କର୍ମକାଣ୍ଡ'ରେ ଅନ୍ୟ ଦିବସମାନଙ୍କରେ କୌଣସି ବିଧାନର ନିର୍ଦ୍ଦେଶ ଦେଖାଯାଏ ନାହିଁ ।

କର୍ମକାଣ୍ଡରେ କେବଳ ମୁଖ୍ୟତଃ ଚଉଠି, ସାତମଙ୍ଗଳା ଓ ଆଠମଙ୍ଗଳାର ଉଲ୍ଲେଖ ଥିଲେ ହେଁ ·ଶାରଳା ଦାସ ଦୁଇମଙ୍ଗଳା, ଚଉଠି, ପାଞ୍ଚମଙ୍ଗଳା

ସାତମଙ୍ଗଳା, ଆଠମଙ୍ଗଳା ପାଳନ କଥା ବର୍ଣ୍ଣନା କରିଛନ୍ତି । ଉତ୍ତରା-ବିବାହ ବର୍ଣ୍ଣନାରୁ ଜଣାଯାଏ ଯେ, ବିବାହର ଦ୍ୱିତୀୟ ଦିବସରେ ବରକନ୍ୟାଙ୍କର ବନ୍ଦାପନା କରାଯାଉଥିଲା । ସେ ଦିନ ଇନ୍ଦ୍ରାଣୀ ବ୍ରତ ମଧ୍ୟ ପାଳିତ ହେଉଥିଲା । (୪୫୯) ଉତ୍ତରା-ବିବାହ ଚିତ୍ରରେ ଚଉଠି ଉତ୍ସବର କଥା ଅଛି । (୪୬୦) ଦ୍ରୌପଦୀ-ବିବାହ ସ୍ଥଳରେ ଚଉଠି ଦିନ ନଗର ଉତ୍ସବ (୪୬୧) ପାଳିତ ହୋଇଥିବା କଥା ବର୍ଣ୍ଣିତ । (୪୬୨) ସୁଭଦ୍ରା-ପରିଣୟ ଦୃଶ୍ୟରେ ଅଛି ଯେ ଚଉଠି ଦିନ ନାନାବିଧ ଉତ୍ସବ ପାଳିତ ହୋଇଥିଲା । (୪୬୩) ପଞ୍ଚମ ଦିବସରେ 'କର୍ଦ୍ଦମ ଉତ୍ସବ' ହେବା କଥା କବି ଦ୍ରୌପଦୀ-ବିବାହ ଦୃଶ୍ୟରେ ଦର୍ଶାଇଅଛନ୍ତି । (୪୬୪) ଉତ୍ତରା-ବିବାହ ଚିତ୍ରରୁ ଅବଧାରିତ ହୁଏ ଯେ, ସେଦିନ ପ୍ରଭାତରେ ବରକନ୍ୟା ବନ୍ଧୁବାନ୍ଧବଙ୍କ ସହ ହଳଦୀ, ଚନ୍ଦନ, ଚୂନ, କୁଙ୍କୁମ, କର୍ପୂର ବୋଳାବୋଳି ହୋଇ ସ୍ନାନ କରୁଥିଲେ । (୪୬୫) ସପ୍ତମ ଦିବସରେ ଚନ୍ଦ୍ର ଉତ୍ସବ (୪୬୬) ହେବାର ବିଧି ଥିଲା ବୋଲି ଦ୍ରୌପଦୀ-ପରିଣୟ ଚିତ୍ରରୁ ପ୍ରତିପାଦିତ ହୁଏ । (୪୬୭) ଅଷ୍ଟମ ଦିବସରେ ଆଠମଙ୍ଗଳା ପୂଜାବିଧି କରାଯାଉଥିଲା । (୪୬୭କ)

'କଳସା ଚଉତିଶା'ରେ ଚଉଠି, ଷଷ୍ଠୀ, ସପ୍ତମୀ ଓ ଅଷ୍ଟମୀରେ ଉତ୍ସବ ପାଳିତ ହେବା କଥା ଅଛି । ଚଉଠିରେ କାଦ ଖେଳିବା (ନୌକାବିହାର) ବିଧି ଥିଲା ବୋଲି ବତ୍ସାଦାସଙ୍କ ଲେଖାରୁ ଜଣାଯାଏ । (୪୬୮) ଗୋପୀନାଥ ଦାସଙ୍କ ମହାଭାରତରେ ଦୁଇମଙ୍ଗଳା, ଚଉଠିର କାଦଖେଳ ଓ ଆଠମଙ୍ଗଳାର ଉଲ୍ଲେଖ ଦେଖାଯାଏ । (୪୬୯)

ଆଧୁନିକ ଯୁଗରେ ଚଉଠି ପାଳନ ହିଁ ମୁଖ୍ୟ ସ୍ଥାନ ଲାଭ କରେ । ବର-କନ୍ୟାଙ୍କର ବନ୍ଦାପନା ସାତମଙ୍ଗଳା ପର୍ଯ୍ୟନ୍ତ ପ୍ରତ୍ୟହ ଗୃହ ମଧ୍ୟରେ ଏବେ କରାଯାଏ । ଉତ୍ତର-ଭାରତରେ ଚଉଠିଦିନ ବେଦୀ ଉପରେ ରଖାଯାଇଥିବା ଘଟର ଜଳରେ ବରକନ୍ୟା ସ୍ନାନ କରିଥାନ୍ତି ।

## ୫ । ଦାମ୍ପତ୍ୟ-ଜୀବନ :

ଦାମ୍ପତ୍ୟ-ଜୀବନର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ସନ୍ତାନଲାଭ । ପିତା-ମାତା ସନ୍ତାନ ଉତ୍ପତ୍ତି ଭଳି ବୈବାହିକ ଉଦ୍ଦେଶ୍ୟକୁ ସଫଳ କରି ଭଗବାନଙ୍କ ସହ ସହଯୋଗ କରନ୍ତି । (୪୭୦) ପାରିବାରିକ ଜୀବନର ଆଦର୍ଶ ହେଉଛି—ସଂଯତ ଜୀବନଯାପନ । ଶୃଙ୍ଖଳିତ କାମନା, ସୁଦୃଢ଼ ଚରିତ୍ର, ଆତ୍ମବଳ ଓ ନୈତିକ ଶକ୍ତି

ଦାମ୍ପତ୍ୟ ଜୀବନର ମୂଳକଥା । (୪୭୧) ଶାରଳା ଦାସଙ୍କ ମହାଭାରତରେ ଦାମ୍ପତ୍ୟ ଜୀବନର ଏହି ମୁଖ୍ୟ ଦିଗଗୁଡ଼ିକ ରୂପ ଲାଭ କରିଅଛି ।

(କ) **ଉଦ୍ଦେଶ୍ୟ :**

ଭାରତୀୟ ସମାଜରେ ସନ୍ତାନଲାଭକୁ ବିବାହର ମୁଖ୍ୟ ଲକ୍ଷ୍ୟଭାବରେ ଗ୍ରହଣ କରାଯାଇଥିବାର ଉପଲବ୍ଧ ହୁଏ । 'ଋଗ୍ ବେଦ'ର ଋଷି ଅଗ୍ନିଙ୍କ ସମୀପରେ ପୁତ୍ର-କାମନା ପ୍ରକାଶ କରିଥିବାର ଦେଖାଯାଏ । (୪୭୨) 'ଯଜୁର୍ବେଦ'ରେ ମୁନି କହିଛନ୍ତି—ଆୟୁ, ବିଦ୍ୟା ଓ ଐଶ୍ୱର୍ଯ୍ୟ ସହ ସନ୍ତାନ-ସନ୍ତତି ବୃଦ୍ଧି ଲାଭ କରନ୍ତୁ । (୪୭୩) 'ସାମବେଦ'ରେ ମୁନି ବୀରପୁତ୍ର ଲାଭର ଅଭିଳାଷ ପୋଷଣ କରିଛନ୍ତି । (୪୭୪) 'ମହାଭାରତ' ମତରେ ପୁତ୍ରଲାଭ ପାଇଁ କେବଳ ବିବାହ କରଣୀୟ । (୪୭୫) କାଳିଦାସ 'ରଘୁବଂଶ'ରେ କହନ୍ତି ଯେ ରାଜା ଦିଲ୍ଲୀପଙ୍କ ରାଜ୍ୟରେ ଲୋକେ କେବଳ ପୁତ୍ର ପାଇଁ କନ୍ୟା-ପରିଗ୍ରହ କରୁଥିଲେ । (୪୭୬)

ଶାରଳା ଦାସଙ୍କ ଯୁଗରେ ପୁତ୍ରଲାଭ ହିଁ ବିବାହର ପ୍ରଧାନ ଲକ୍ଷ୍ୟ ଥିଲା । କବି ନରନାରୀଙ୍କଠାରେ ଯେଉଁ ପ୍ରବଳ ପୁତ୍ରାକାଙ୍କ୍ଷା ପ୍ରଦର୍ଶନ କରିଅଛନ୍ତି, ତହିଁରୁ ଏହା ପ୍ରତିପାଦିତ ହୁଏ । ସେ କାଳରେ ଲୋକେ ପୁତ୍ର-କାମନା କରି ଯଜ୍ଞାନୁଷ୍ଠାନ ଓ ତପଶ୍ଚରଣ କରୁଥିବାର ଜଣାଯାଏ । ଗାନ୍ଧାରୀ ଓ ଧୃତରାଷ୍ଟ୍ର ଉଭୟେ ପୁତ୍ରଲାଭ ନିମନ୍ତେ ପ୍ରତିକାର କରିବା ପାଇଁ ବ୍ୟାସଦେବଙ୍କୁ ଅନୁରୋଧ କରିଥିଲେ । ବ୍ୟାସଦେବ ରାଜଦମ୍ପତିଙ୍କ କାମନା ପୂରଣ ଉଦ୍ଦେଶ୍ୟରେ ଯଜ୍ଞାନୁଷ୍ଠାନ କରିଥିଲେ । (୪୭୭) ନନ୍ଦରାଜା ଅପୁତ୍ରକ ଥିବାରୁ ପୁତ୍ରପ୍ରାପ୍ତି ଉଦ୍ଦେଶ୍ୟରେ ତପସ୍ୟା କରିଥିଲେ । (୪୭୮) ପ୍ରବଳ ପୁତ୍ରାକାଙ୍କ୍ଷାର ବଶବର୍ତ୍ତୀ ହୋଇ ଅଗ୍ନିକ ଋଷି ହରିତା ନାମ୍ନୀ ମୃଗୁଣୀସହ ଶୃଙ୍ଗାରରତ ହୋଇଥିଲେ । (୪୭୯) ପୁତ୍ର ନ ଥିଲେ ଲୋକେ ପୋଷ୍ୟ ପୁତ୍ର ଗ୍ରହଣ କରୁଥିଲେ । ପୁତ୍ର ଉଦ୍ଦେଶ୍ୟରେ ଦାନ-ଧର୍ମ କରିବା, ପୁରାଣପାଠରେ ବ୍ରତୀ ହେବା ଓ ପଥ-ପାର୍ଶ୍ୱରେ ବୃକ୍ଷରୋପଣ କରିବା ବିଧି ଥିଲା । (୪୮୦) ପୁତ୍ର ନ ହେଲେ ଲୋକେ ଦ୍ୱିତୀୟ ବିବାହରେ ମନୋଯୋଗୀ ହେଉଥିଲେ । (୪୮୧)

'ରୁଦ୍ରସୁଧାନିଧି' (୪୮୨) ଓ 'ଭାଗବତ'ରେ (୪୮୩) ସନ୍ତାନ ପାଇଁ ଯଜ୍ଞାନୁଷ୍ଠାନ କରାଯିବାର ବର୍ଣ୍ଣନା ନିହିତ । ପୁତ୍ର ନ ହେଲେ ସ୍ତ୍ରୀ ପୁରୁଷ ଅନ୍ୟ ନାରୀ ଗ୍ରହଣ କରିପାରେ ବୋଲି ଭାଗବତ କହେ । (୪୮୪)

ପୁତ୍ର-ହୀନତା ଯୁଗେ ଯୁଗେ ଭାରତୀୟ ସମାଜରେ ନିନ୍ଦନୀୟ ହୋଇ ଆସିଅଛି । 'ସଂସ୍କୃତ ଭାଗବତ'ରେ କଥିତ ହୋଇଅଛି—ପୁତ୍ରହୀନା ରମଣ

ପାପିନୀ । (୪୮୫) ମନୁ କହିଛନ୍ତି—ଯେଉଁ ଭାର୍ଯ୍ୟା ପୁତ୍ର-ସନ୍ତାନ ପ୍ରସବ ନକରେ ସେ ପରିତ୍ୟାଜ୍ୟ । (୪୮୬)

ଶାରଳା ଦାସଙ୍କ ଯୁଗରେ ସନ୍ତାନହୀନତା ଏହିଭଳି ନିନ୍ଦନୀୟ ଥିଲା । ରାଜା ପୁତ୍ରହୀନ ହେଲେ ବସୁଧା ଫଳଦାୟକ ହୁଏ ନାହିଁ, ଅଗ୍ନି ଆହୁତି ଗ୍ରହଣ କରନ୍ତି ନାହିଁ, ପ୍ରଜା ଦୁଃଖଭାଗୀ ହୁଅନ୍ତି ଓ ପାତ୍ର-ମନ୍ତ୍ରୀଗଣ ଅନାଦର ଭାବ ଦେଖାନ୍ତି ବୋଲି ସେ ଯୁଗରେ ବିଶ୍ୱାସ କରାଯାଉଥିଲା । ପୁତ୍ରହୀନ ବ୍ୟକ୍ତି ଯମ-ଦ୍ୱାରରେ ଦଣ୍ଡନୀୟ ହୁଏ ଏବଂ ତାହାର ମୁଖ ଦର୍ଶନର ଯୋଗ୍ୟ ନୁହେଁ ବୋଲି ଲୋକଙ୍କର ଧାରଣା ରହିଥିଲା । (୪୮୭) ବିଷ୍ଣୁ କର ବିପ୍ରର ପୁତ୍ର ନ ଥିବାରୁ ଗ୍ରାମବାସୀଗଣ ତାହାଙ୍କୁ ଗ୍ରାମରୁ ବହିଷ୍କାର କରିଦେଇଥିଲେ । (୪୮୮) ଅଗ୍ନିକ ଋଷିଙ୍କର ପୁତ୍ର ନଥିବାରୁ ଯମ ତାହାଙ୍କୁ ପୁନର୍ବାର ସଂସାରକୁ ପ୍ରେରଣ କରିଥିଲେ । (୪୮୯) ପୁତ୍ରହୀନ ନନ୍ଦରାଜା ଯେଉଁ ସ୍ଥାନରେ ପ୍ରୟାଗ ତୀର୍ଥରେ ଉପବିଷ୍ଟ ହୋଇ ତପସ୍ୟାନିରତ ଥିଲେ, ଲୋକଙ୍କ ଦ୍ୱାରା ସେହି ସ୍ଥାନ ଶୁଦ୍ଧ କରାଯାଇଥିଲା । (୪୯୦) ଲୋକ ଅପୁତ୍ରକ ହୋଇ ମୃତ ହେଲେ ଯମଦ୍ୱାରରେ ନାନା ଶାସ୍ତି ଲାଭ କରେ ବୋଲି ସମାଜରେ ଲୋକେ ବିଶ୍ୱାସ କରୁଥିଲେ । (୪୯୧)

ବଳରାମ ଦାସ 'ଦାଣ୍ଡି ରାମାୟଣ'ରେ କହିଛନ୍ତି—ପୁତ୍ରହୀନ ବ୍ୟକ୍ତିର ଘରେ ସୁଖ ନାହିଁ । ତାହାର ଗୃହସ୍ଥାଶ୍ରମ ବୃଥା । ସେ ସ୍ୱର୍ଗରେ ସ୍ଥାନ ପାଏ ନାହିଁ । ତାହାର ମୁଖ-ଦର୍ଶନ ପାପ ଓ ସଙ୍ଗ ବର୍ଜନୀୟ । (୪୯୨)

ପୁତ୍ରର ପ୍ରଶଂସା କରି 'ସଂସ୍କୃତ ମହାଭାରତ' କହେ—ପୁତ୍ର କୁଳର ପ୍ରତିଷ୍ଠାକାରୀ । (୪୯୩) ସେ ପୁତ୍ ନାମକ ନରକରୁ ପିତାମାତାଙ୍କୁ ତ୍ରାଣ କରେ । (୪୯୪) 'ନାରଦ ପୁରାଣ'ରେ ଅଛି – ସନ୍ତାନ ଉତ୍ପାଦନ କଲେ ପ୍ରଜାପତି ସନ୍ତୁଷ୍ଟ ହୁଅନ୍ତି । (୪୯୫) 'ବ୍ରହ୍ମ ବୈବର୍ତ୍ତ' ମତରେ ସଂସାରରେ ପୁତ୍ରଠାରୁ ଅଧିକ ପ୍ରିୟ ଆଉ କେହି ନାହିଁ । (୪୯୬)

ଶାରଳା ଦାସଙ୍କ ଯୁଗରେ ପୁତ୍ରର ମହତ୍ତ୍ୱ ସମାଜରେ ସ୍ୱୀକୃତ ହୋଇଥିଲା । ଯେତେ ପାପ କଲେ ମଧ୍ୟ ପୁତ୍ରବାନ ବ୍ୟକ୍ତି ଯମଦ୍ୱାରରେ ଦଣ୍ଡିତ ହୁଏ ନାହିଁ ବୋଲି ଲୋକବିଶ୍ୱାସ ଥିଲା । (୪୯୭) ବ୍ରହ୍ମହତ୍ୟା ଭଳି ପାପରୁ ମଧ୍ୟ ପୁତ୍ର ପିତାକୁ ଉଦ୍ଧାର କରିପାରେ ବୋଲି ଲୋକେ ମନେ କରୁଥିଲେ । ପଣ୍ଡୁ ରାଜା ଅଗ୍ନିକ ଋଷିଙ୍କୁ ହତ୍ୟା କରି ବ୍ରହ୍ମହତ୍ୟା-ଦୋଷରେ ଦୋଷୀ ହେଲେ ଓ

ଯମଦ୍ୱାରରେ ଦଣ୍ଡ ପାଇଲେ । ଯୁଧିଷ୍ଠିର ରାଜସୂୟଯଜ୍ଞ ଅନୁଷ୍ଠାନ କରି ତାହାଙ୍କୁ ମୁକ୍ତ କରିଥିଲେ । (୪୯୮)

ବଳରାମ ଦାସ 'ଦାଣ୍ଡି ରାମାୟଣ'ରେ ପୁତ୍ରକୁ ଧର୍ମ-କର୍ମର ମୂଳ ଓ କୁଳବର୍ଦ୍ଧନକାରୀ ବୋଲି କହିଛନ୍ତି । (୪୯୯) ଜଗନ୍ନାଥ ଦାସ 'ଭାଗବତ'ରେ କହନ୍ତି—ପୁତ୍ର ନଥିଲେ ଇହକାଳ ତଥା ପରକାଳରେ ସୁଖ ମିଳେନାହିଁ । (୫୦୦)

(ଖ) **ଆଦର୍ଶ :**

ପାରିବାରିକ ଜୀବନର ଆଦର୍ଶ ହେଉଛି—ଧାର୍ମିକ ଓ ସଂଯତ ଜୀବନ-ଯାପନ । ଧାର୍ମିକ ମତି ଆଚରଣ ନକଲେ ପତି-ପତ୍ନୀ ବା ପିତା-ମାତା ପାରିବାରିକ ଜୀବନରେ ସାର୍ଥକତା ଲାଭ କରିପାରନ୍ତି ନାହିଁ । (୫୦୧) ଭାରତୀୟ ସମାଜରେ ସଂଯତ ଜୀବନଯାପନ ନିମିତ୍ତ ସର୍ବଥା ନିର୍ଦ୍ଦେଶ ପ୍ରଦାନ କରାଯାଇଅଛି । କେବଳ ଋତୁକାଳରେ ସ୍ତ୍ରୀ-ସହବାସ କରିବା ହିନ୍ଦୁ ସମାଜର ପରମ୍ପରାଗତ ଆଦର୍ଶ । (୫୦୨) ବିବାହିତ ପୁରୁଷ ପକ୍ଷରେ ପରଦାରାଗମନ ଯୁଗେ-ଯୁଗେ ପାପ ବୋଲି ଗୃହୀତ । ବିଷ୍ଣୁପୁରାଣ (୫୦୩), ରାମାୟଣ (୫୦୪), ମହାଭାରତ (୫୦୫), ପରାଶର ସ୍ମୃତି (୫୦୬), ମନୁ ସ୍ମୃତି (୫୦୭), ବ୍ରହ୍ମପୁରାଣ (୫୦୮), ମାର୍କଣ୍ଡେୟ ପୁରାଣ (୫୦୯) ଓ ଦକ୍ଷ ସଂହିତା (୫୧୦)ରେ ପରଦାରାଗମନର ନିନ୍ଦା କରାଯାଇଥିବାର ଦେଖାଯାଏ । ନାରୀ ପକ୍ଷରେ ମଧ୍ୟ ପରପୁରୁଷଗମନ ପାପ ବୋଲି ବିବେଚନା କରାଯାଉଥିଲା । ମନୁ କହନ୍ତି—ଯେଉଁ ସ୍ତ୍ରୀ ଧନ ଓ ରୂପର ଗର୍ବ କରି ପରପୁରୁଷ ସହ ପ୍ରୀତି କରେ, ତାହାକୁ ରାଜା ଶ୍ୱାନଦ୍ୱାରା କ୍ଷତବିକ୍ଷତ କରାଇବା ଉଚିତ । (୫୧୧)

ଶାରଳା ଦାସଙ୍କ ଯୁଗରେ ଏତାଦୃଶ ଧର୍ମନିଷ୍ଠ ସଂଯତ ଦାମ୍ପତ୍ୟ-ଜୀବନ ହିଁ ସମାଜର ଆଦର୍ଶ ଥିଲା । ସେ କାଳରେ ପର ସ୍ତ୍ରୀକୁ ଲୋକେ ମାତା ରୂପରେ ଦେଖୁଥିଲେ । (୫୧୨) ପର ସ୍ତ୍ରୀ ହରଣ କଲେ ମନୁଷ୍ୟ ନର୍କରେ ପଡ଼େ ବୋଲି ଲୋକେ ବିଚାର କରୁଥିଲେ । ଲକ୍ଷ୍ମଣଙ୍କ ଉକ୍ତିରୁ ଏହା ସ୍ପଷ୍ଟ :

"ଲକ୍ଷ୍ମଣ ବୋଇଲେ ମୋର ନ ବଳଇ ମତି
ପର ସ୍ତିରୀ ହରଣରେ ନରକେ ପଡ଼ନ୍ତି ।" (୫୧୩)

ପରଦାରାସଙ୍ଗ କେବଳ କ୍ଷଣିକ ସୁଖ ଦିଏ, ଶରୀରକୁ ବିନଷ୍ଟ କରେ, ସମାଜ-ଶୃଙ୍ଖଳା ଭଙ୍ଗି ଦିଏ, ତାହା କବି ପ୍ରଦର୍ଶନ କରିଛନ୍ତି ଏବଂ ତାଦୃଶ କାର୍ଯ୍ୟକୁ ବର୍ଜନ କରିବା ପାଇଁ ନିର୍ଦ୍ଦେଶ ମଧ୍ୟ ଦେଇଅଛନ୍ତି :

"କ୍ଷଣିକ ସୁଖ ସେ ପରଦାର ରସରଙ୍ଗ
କ୍ଷଣକ ଭିତରେ ସର୍ବ ବପୁ ହୋଏ ଭଙ୍ଗ ।"
"କାମାକ୍ଷୀ ସୁମର ନରେ କାମକଷ୍ଟ ଫିଟୁ
ପରଦାରକୁ ସହର ସଂସାର ନ ଭୁଟୁ ।"
"ପୋଡ଼ୁ ପୋଡ଼ୁ ପରଦାର ଆଜଠାରୁ ନୋହୁ
ଯେ କରିବ ପରଦାର ପ୍ରାଣ ଛାଡ଼ ଯାଉ ।" (୫୧୪)

'ଦାଣ୍ଡି ରାମାୟଣ' (୫୧୫) ଓ 'ଭାଗବତ'ରେ (୫୧୬) ପର ସ୍ତ୍ରୀ-ହରଣର ନିନ୍ଦା ରୂପ ପାଇଅଛି । ବଳରାମ ଦାସ ପର ସ୍ତ୍ରୀ ସୋଦର ଭଗିନୀ ସଦୃଶ ବୋଲି ପ୍ରଦର୍ଶନ କରିଅଛନ୍ତି । (୫୧୭)

ଅନ୍ୟ ପକ୍ଷରେ, ଲୋକେ ସେ କାଳରେ ବିଶ୍ୱାସ କରୁଥିଲେ ଯେ ସ୍ୱପୁରୁଷ ସହ ବା ସ୍ୱଦାରା ସହ ମିଳନ ଆୟୁ ବୃଦ୍ଧି କରେ । (୫୧୮) ସ୍ୱପୁରୁଷ ସହ ବାସ କରିବା ନାରୀ ପକ୍ଷରେ ସତୀତ୍ୱ ଓ ସ୍ୱଦାରା ସହ ମିଳିତ ହେବା ପୁରୁଷ ପକ୍ଷରେ ଯତିତ୍ୱର ଲକ୍ଷଣ ।

"ସ୍ୱ ଦାରାଏ ଯତି ଆଉ ସ୍ୱ ପୁରୁଷେ ସତୀ
ଶାହାସ୍ତ୍ରରେ ଲେଖା ଅଛି ଏସନ ଉକତି ।" (୫୧୯)

ସେ ଯୁଗରେ ବେଶ୍ୟାସଙ୍ଗ ଘୋର ନିନ୍ଦନୀୟ ଓ ଗର୍ହିତ କର୍ମ ଥିଲା । 'ମୁଦ୍‌ଗଲ ଉପାଖ୍ୟାନ'ରେ କବି ତାହା ଦର୍ଶାଇଅଛନ୍ତି । ମୁଦ୍‌ଗଲ ନାମକ ଉତ୍କଳ-ଦେଶୀ ବ୍ରାହ୍ମଣ ଦିନର ଦିନରେ ଥରେ ମାତ୍ର ହବିଷ୍ୟାନ୍ନ ଭକ୍ଷଣ କରି କାଶୀ-ଧାମରେ ନିଷ୍ଠାରେ ବାସ କରୁଥିଲା । ହିରଣ୍ୟକେଶୀ ନାମକ ବେଶ୍ୟାର ପ୍ରେମରେ ପଡ଼ି ସେ ଧର୍ମ-କର୍ମ ସବୁ ଛାଡ଼ିଲା । ମୃତ୍ୟୁ ପରେ ଯମ ତାହାକୁ ଦଣ୍ଡ ଦେଲେ । ପରିଣାମରେ ସେ ଶୃଗାଳ-ଜନ୍ମ ପାଇଲା । ତାର ନାମ 'ସାରସା' ହେଲା । (୫୨୦)

ତଦ୍ରୂପ ନାରୀ ପକ୍ଷରେ ପରପୁରୁଷ-ସହବାସ ପାପ ବୋଲି ବିବେଚିତ ହେଉଥିଲା । 'ରତ୍ନାବତୀ ଉପାଖ୍ୟାନ'ରେ ତାହା ପ୍ରଦର୍ଶିତ ହୋଇଅଛି । ଅନଙ୍ଗସେନ ରାଜାଙ୍କର ଭାର୍ଯ୍ୟା ପରପୁରୁଷ ସହ ରମଣ କରୁଥିଲେ । ବନଭୂମିରେ ସେ ବଳାତ୍କାର ଅଗ୍ନିକ ଋଷିଙ୍କ ସହ ଶୃଙ୍ଗାର କଲେ । ସେହି ପାପ ଫଳରେ ସେ ହରିଣୀଟିଏ ହୋଇ ଜନ୍ମ ହେଲେ । (୫୨୧) 'ଭାଗବତ'ରେ ପରପୁରୁଷଗମନର ନିନ୍ଦା ମଧ୍ୟ ନିହିତ :

"ପର ପୁରୁଷେ ମନ ଦେଇ । ଯେ ନାରୀ ଏକାନ୍ତେ ରମଇ ।।
ତାହାର ନାହିଁ ସୁଖ ଲେଶ । ନରକେ ହୁଏ ପରବେଶ ।।
ନନ୍ଦିତ ହୁଏ ନରଲୋକେ । ନିରାଶ ହୋଇ ସ୍ୱାମୀସୁଖେ ।।
ବିଧବା ହୁଏ ଜନ୍ମ ସାତ । ସେ ନାରୀ ସ୍ୱାମୀ ଅଭକତ ।।"(୫୨୨)

ଉକ୍ତ ଆଲୋଚନାରୁ ପ୍ରତିପାଦିତ ହୁଏ ଯେ, ସେ କାଳରେ ରାଜବଂଶରେ ଯୁବତୀ-ବିବାହ ଓ ବ୍ରାହ୍ମଣ ସମାଜରେ ବାଲ୍ୟ-ବିବାହ ପ୍ରଚଳିତ ଥିଲା । କେତେକ ସ୍ଥଳରେ ରାଜବଂଶରେ ଯୌବନ-ଲଭର ଅବ୍ୟବହିତ କାଳ ପୂର୍ବରୁ ବିବାହ କରାଯାଉଥିଲା । ବର-କନ୍ୟା ବାଛିଲାବେଳେ ଜାତି, ବର୍ଣ୍ଣ, କୁଳ, ରୂପ, ଗୁଣ ତଥା ବୟସର ବିଚାର ହେଉଥିଲା । ଜାତକ-ଦେଖା କେତେକ କ୍ଷେତ୍ରରେ ପ୍ରଚଳିତ ଥିଲା । ଅମାବାସ୍ୟାରେ ଜାତ କନ୍ୟାର ବିବାହ ଅମଙ୍ଗଳକର ବୋଲି ଲୋକେ ଭାବୁଥିଲେ । ଏଭଳି କନ୍ୟାକୁ ପ୍ରଥମେ ଶାହାଡ଼ା ବୃକ୍ଷ ସହ ବିବାହ ଦେଇ ପରେ ପୁରୁଷ ସହ ପରିଣୀତା କରାଯାଉଥିଲା । ବିବାହ-ପ୍ରସ୍ତାବ ମୁଖ୍ୟତଃ ପିତାମାତା ବା ଅଭିଭାବକଙ୍କ ଦ୍ୱାରା ସ୍ଥିରୀକୃତ ହେଉଥିଲା । ପୁରୁଷ ନିଜେ କନ୍ୟାପିତାଙ୍କ ସମୀପରେ ଉପନୀତ ହୋଇ ମଧ୍ୟ କନ୍ୟା-ପ୍ରାର୍ଥନା କରିପାରୁଥିଲେ । କନ୍ୟାପିତା ନିଜେ ବର ସମୀପରେ ସ୍ୱ କନ୍ୟାର ବିବାହ ପ୍ରସ୍ତାବ ଦେଇପାରୁଥିଲେ । ଯୁବକ-ଯୁବତୀ ପ୍ରେମାକୃଷ୍ଟ ହୋଇ ବିବାହ-ବନ୍ଧନରେ ଆବଦ୍ଧ ହେବାର ଦେଖାଯାଉଥିଲା । ବିବାହ-ପ୍ରସ୍ତାବର ଚୂଡ଼ାନ୍ତ ନିର୍ବନ୍ଧବେଳେ ହେଉଥିଲା । ବୈବାହିକ କର୍ମାନୁଷ୍ଠାନ ପୂର୍ବରୁ ଶୁଭଲଗ୍ନ ନିରୂପଣ, ବେଦୀ-ମଣ୍ଡପ ସ୍ଥାପନ, ବନ୍ଧୁ-ନିମନ୍ତ୍ରଣ ଓ ମଙ୍ଗଳନ ଆଦି କାର୍ଯ୍ୟ ଯଥାବିଧି ସଂପନ୍ନ କରାଯାଉଥିଲା । କନ୍ୟାପିତାର ଗୃହରେ ବିବାହ ସଂପାଦିତ ହେଉଥିଲା । ବର ଶୋଭାଯାତ୍ରାରେ କନ୍ୟାପିତାଙ୍କ ଗୃହକୁ ଆଗମନ କରୁଥିଲେ । ବେଦୀ ଉପରେ କର୍ମକାଣ୍ଡୋକ୍ତ ମହାଭାରତୀୟ ନାନା ବିଧିବିଧାନ ଅନୁଷ୍ଠିତ ହେଉଥିଲା । ସ୍ୱୀକାର, ବରଣ, ଦଶଦିଗପାଳାଦି ପୂଜା, ବାଗ୍‌ଦାନ, ଗନ୍ଧାଧିବାସ, କୌତୁକସୂତ୍ରବନ୍ଧନ, କନ୍ୟାଦାନ, ବରକନ୍ୟାଙ୍କର ସମ୍ମୁଖୀ-କରଣ, ମଧୁପର୍କ ପ୍ରଦାନ, ହସ୍ତଗ୍ରନ୍ଥି ବନ୍ଧନ, ଯୌତୁକ ପ୍ରଦାନ, କନ୍ୟା ସମର୍ପଣ, ଦଶଦୋଷ କ୍ଷମାଭିକ୍ଷା, ହୋମ, ଲାଜାହୋମ, ଘୃତପାରଣା ଓ ବନ୍ଦାପନା ଆଦି କର୍ମ ବେଦୀ ଉପରେ ପୁରୋହିତଙ୍କ ମାଧ୍ୟମରେ ଶୁଭବେଳାରେ ସଂପାଦନ କରା-ଯାଉଥିଲା । ସାଳଙ୍କାର କନ୍ୟାଦାନ ବିଧି ଥିଲା । ବରକନ୍ୟା ବିବାହ ପରେ ଏକ ଆସନରେ ବସି ପଂଚଗ୍ରାସୀ କରିବା ଭଳି ସ୍ଥାନୀୟ ଆଚାର ପ୍ରଚଳିତ ଥିଲା ।

ବିବାହ ଦିବସରେ ମଧୁଶଯ୍ୟା-ବିଧି ପାଳିତ ହେଉଥିଲା । ମଙ୍ଗଳନ ଓ ବିବାହ ଦିନ କନ୍ୟାପିତା ଭୂରି ଭୋଜନରେ ସମସ୍ତଙ୍କୁ ଆପ୍ୟାୟିତ କରୁଥିଲେ । ଚଉଠି ଓ ସାତମଙ୍ଗଳା ଭଳି ମହାଭାରତୀୟ ବିଧି ପାଳନ କରାଯାଉଥିଲା । ଅଧିକନ୍ତୁ ସ୍ଥାନୀୟ ଲୋକାଚାର ଭାବରେ ବିବାହର ଦ୍ୱିତୀୟ, ପଞ୍ଚମ ଓ ଅଷ୍ଟମ ଦିବସରେ କେତେକ ଅନୁଷ୍ଠାନ ପାଳିତ ହେଉଥିଲା । କନ୍ୟାବିଦାୟ ବିବାହର ପର ଦିବସରେ ଅଥବା ସାତମଙ୍ଗଳା ପରେ କରାଯାଉଥିଲା । ବର୍‌କନ୍ୟା କନ୍ୟାପିତାଙ୍କ ଗୃହରେ ଅଥବା ବରପିତାଙ୍କ ଗୃହରେ ସାତମଙ୍ଗଳା ଶେଷ ପର୍ଯ୍ୟନ୍ତ ରହୁଥିଲେ । ନବବଧୂର ପତିଗୃହ-ଯାତ୍ରା, ବାଦ୍ୟ-ବାଜଣା, ହୁଳହୁଳି ଧ୍ୱନି, ନୃତ୍ୟ ଓ ଗୀତ ମଧ୍ୟରେ କରାଯାଉଥିଲା । ମାତା ଓ ପିତା କନ୍ୟାକୁ ସେତେବେଳେ ଉପଦେଶାଦି ପ୍ରଦାନ କରୁଥିଲେ । ଶ୍ୱଶୁରାଳୟରେ ପୁରନାରୀମାନେ ବନ୍ଦାପନା କରି ବର-ବଧୂଙ୍କୁ ଗୃହକୁ ନେଉଥିଲେ । ଶ୍ୱଶୁରାଳୟରେ ନବବଧୂ ସମ୍ବର୍ଦ୍ଧନା ଲାଭ କରୁଥିଲେ । ଦାମ୍ପତ୍ୟ-ଜୀବନରେ ବଳିଷ୍ଠ ପୁତ୍ର-କାମନା ଦେଖାଯାଉଥିଲା । ସଂଯତ ଓ ଧାର୍ମିକ ଜୀବନ ଗୃହସ୍ଥର ଆଦର୍ଶ ଥିଲା । ପରଦାରାହରଣ, ବେଶ୍ୟାସଙ୍ଗ ଓ ନାରୀର ପରପୁରୁଷ ସହ ପ୍ରେମ ସମାଜରେ ନିନ୍ଦିତ କର୍ମ ଥିଲା ।

---

ସେ ଯେ ନ କଲ ଭବମନ୍ଥ (ମୂ. ପୋଥି—ବନ ୨ୟ—ପୃ ୨୫୧ କ ଓ ଖ) "ମୁହିଁ ସେ ଅବିବାହି ଅଟଇ ଉତ୍କଳାବତୀ" (ମୂ, ପୋଥି—ବନ, ୨ୟ ଖଣ୍ଡ—ପୃ ୨୫୦ କ) (୪୧) ସା. ମ.—ମଧ୍ୟ—ପୃ ୧୪୮ । (୪୨) ସା. ମ.—ମଧ୍ୟ—ପୃ ୩୨୬ । ( ପୁ. ପ୍ର. କଂ)

ଦ୍ରଷ୍ଟବ୍ୟ—ରାଧାରମଣ ପୁସ୍ତକାଳୟ ପ୍ରକାଶିତ ଗ୍ରନ୍ଥରେ କାଳେନ୍ଦ୍ରୀ ଓ ଆନନ୍ଦାନନ୍ଦଙ୍କର ଗୁପ୍ତ ମିଳନ କଥା ନାହିଁ । ପୁରାଣ ପ୍ରକାଶିକା କମ୍ପାନୀଙ୍କ ଗ୍ରନ୍ଥରେ ଏହା ଅଛି । (୪୩) ସା. ମ.—ମଧ୍ୟ—ପୃ ୨୬୨ । ( ମୂ. ପୋଥି—ମଧ୍ୟ—ପୃ ୧୮୫ ଖ ) । (୪୪) ସା. ମ—ମଧ୍ୟ—ପୃ ୩୮୧ ।

ଦ୍ରଷ୍ଟବ୍ୟ—ଊଷା ପରିଣୟ କଥାଟି ପ୍ରକ୍ଷେପ । ଏହା ପୋଥିରେ ନାହିଁ । ମହାଭାରତ ସାର ସଂଗ୍ରହ, ଜଗନ୍ନାଥ ଦାସଙ୍କ ମହାଭାରତ, ବିଚିତ୍ର ମହାଭାରତରେ ଏହି ପ୍ରସଙ୍ଗ ନାହିଁ । ପୁରାଣ ପ୍ରକାଶିକା କମ୍ପାନୀଙ୍କ ଗ୍ରନ୍ଥରେ ଏହା ଦେଖାଯାଏ । (ମଧ୍ୟ—ପୃ ୨୮—୨୯୦) (୪୫) ସା. ମ—ମଧ୍ୟ—ପୃ ୨୯୨—୩୦୧ । (ଏହା ମଧ୍ୟ ପ୍ରକ୍ଷେପ । ପୋଥିରେ ଏହି ପ୍ରସଙ୍ଗଟି ଦେଖାଯାଉନାହିଁ) । (୪୬) ସା. ମ.—ସ୍ୱର୍ଗ—ପୃ ୫ । (୪୭) ସା. ମ.—ବନ—ପୃ୧୯୭ ।

ଦ୍ରଷ୍ଟବ୍ୟ—ପୋଥିରେ ଅଛି "ବାଳୁତ ଅଜ୍ଞାନ ଏହୁ ହୋଇଲ ଯୁବତୀ ।" (ମୂ.ପୋଥି—ବନ ୨ୟ—ପୃ୫୮ କ) । (୪୮) ସା.ମ.—ବନ—ପୃ୨୮୮ । (୪୯) ରା. ବିଭା—ଅର୍ଜ୍ଜୁନ ଦାସ—ପୃ ୮୨—୮୩ । (୫୦) ଦା.ରା.—ବଳରାମ ଦାସ—ଆଦି—ପୃ ୩୧ । (୫୧) 'ବିଭା କରନ୍ତୁ କନ୍ୟାବର । ଯୁବତୀ ମଙ୍ଗଳ ବେଭାର ।' ଭାଗବତ—ଜଗନ୍ନାଥ ଦାସ—୧୦ମ ସ୍କନ୍ଧ (ଗୋପ)—ପୃ ୬ । (୫୨) Marriage and Family—E. Schmiedeler—P. 21 । (୫୩) Ibid—P. 12 । (୫୪) Ibid—P. 24 । (୫୫) ମନୁ—୩, ୧୨ । ୩,୪ । (୫୬) ମନୁ—୩, ୧୩ । (୫୭) ମନୁ—୩, ୧୪-୧୯ । (୫୮) ମନୁ—୩, ୫ । (୫୯) ଶୁ. ମା—ମଞ୍ଜୁକାଶୂର୍ଯ୍ୟ—୩, ୬୯—୭୮ ପୃ । (୬୦) ସ୍ମୃ. ଚ—ସଂସ୍କାରକାଣ୍ଡ—ଦେବଭଟ୍ଟ—ପୃ ୧୭୯ । (୬୧) ସଂ. ମ । ଅନୁ—୧୦୪, ୧୩୦—୧୩୨ । (୬୨) ଶୁ. ମା—ମଞ୍ଜୁକାଶୂର୍ଯ୍ୟ—ପୃ ୭୮ । (୬୩) ମନୁ—୯, ୮୯ । (୬୪) ସଂ. ମ.—ଆଦି—୧୦୯, ୬ । (କୁଳୀନା ରୂପବତ୍ୟଶ୍ଚ ତାଃ କନ୍ୟାଃ ପୁତ୍ର ସର୍ବଶଃ) । (୬୫) ସଂ. ମ.—ଶାନ୍ତି—୧୬୫, ୩୧—୩୨ । (ସ୍ତ୍ରୀରତ୍ନଂ ଦୁଷ୍କୁଳାଚ୍ଚାପି ବିଷାଦପ୍ୟମୃତଂ ପିବେତ୍) । (୬୬) ସଂ. ମ.—ବନ—୧୨୨ ଅଧ୍ୟାୟ । (୬୭) ସଂ. ରା—ବାଲ—୧୦ ଅଧ୍ୟାୟ । (୬୮) ଶ୍ରୀ. ଭାଗବତ—୩, ୨୨, ୯—୨୪ । (୬୯) ସା. ମ—ସ୍ୱର୍ଗ—ପୃ ୯ । ( ଅନ୍ୟ ଜାତି ସ୍ତ୍ରୀଙ୍କର ନ ଛୁଇଁବେ ଅଙ୍ଗ) । (୭୦) ସା. ମ—ଆଦ୍ୟ—ପୃ ୨୩୦ । (୭୧) ସା. ମ.—ପୃ ୧୭୬ । (୭୨) ସା. ମ—ବନ—ପୃ ୩୧ । (୭୩) ସା. ମ.—ପୃ ୨୮୩ । (୭୪) ସା. ମ—ସ୍ୱର୍ଗ—ପୃ ୫ । (୭୫) ସା. ମ—ଆଦ୍ୟ—ପୃ ୨୮୦ । (୭୬) ସା. ମ—ସ୍ୱର୍ଗ—ପୃ ୫—୬ । (୭୭) ସା. ମ—ସ୍ୱର୍ଗ—ପୃ ୬ । ( ଜାତି ମଧ୍ୟ ଉତ୍ତମରେ ଅଛୁ ବାବୁ ମିଳ ) । (୭୮) "ଉଦ୍ୟୁ

# ପାଦଟୀକା

(୧) Society—R. M. Maciver—P.7 । (୨) E. R. E.—vol. VIII—P. 423 । (୩) Marriage and Family—E. Schmiedeler—P.75 । (୪) E. S. Sc.—vol X—P 146 । (୫) Social Organisation—R. H. Lowie—P. 93 । (୬) Sociology—E. S. Bogardus—P. 75 । (୭) Marriage and Family—E. Schmiedeler—P. 38 । (୮) Sociology—E. S. Bogardus—P.116 । (୯) M. F. I.—K. M. Kapadia—P. 161 । (୧୦) Marriage and Family—E. Schmiedeler—P. 47 । (୧୧) ହିନ୍ଦୁ ସଂସ୍କାର—ରାଜବଳୀ ପାଣ୍ଡେ—ପୃ: ୧୯୫ । (୧୨) ସଂ.ମା ବୃ. ସୂ—କଲ୍ୟାଣ—ପୃ ୯୭ । (୧୩) ସଂ. ମ.—ଅନୁ—୪୫,୯ । (୧୪) ସ୍ମୃ. ଚ.—ସଂସ୍କାରକାଣ୍ଡ—ଦେବଭଟ୍ଟ—ପୃ ୧୭୭ । (୧୫) ଶ୍ରୀ. ଭାଗବତ— (ସଂ)—୩, ୧୪, ୧୮ । (୧୬) ବ. ପୁ.—୩, ୧୦, ୧୩ । (୧୭) ମନୁ—୪, ୧—୨ । (୧୮) ସଂ. ନା. ବ. ପୁ—କଲ୍ୟାଣ—ପୃ. ୧୩୫ । (୧୯) E. R. E—vol.—VIII—P. 423 । (୨୦) Alberueni's India—Sachau—vol. II, ch. LXIX—P.154. (୨୧) Marriage and Family—E. Schmiedeler—P. 21 (୨୨) ସଂ. ମ.—ଅନୁ—୪୪,୧୪ (୨୩) ମହାଭାରତେର ସମାଜ (ବଙ୍ଗଳା)—ସୁଖମୟ ଭଟ୍ଟାଚାର୍ଯ୍ୟ—ପୃ ୬ । (୨୪) ମନୁ—୯,୯୪ । (୨୫) ପ. ସ୍ମୃ—୭,୬—୭ । (୨୬) ସା. ମ.—ଆଦ୍ୟ—ପୃ ୩୬ । (୨୭) ସା. ମ.—ଆଦ୍ୟ—ପୃ ୬ । (୨୮) ସା. ମ.—ମଧ୍ୟ ପୃ ୪; (ମୂ. ପୋଥି—ମଧ୍ୟ—ପୃ: ୧ କ) । (୨୯) ସା. ମ.—ଉଦ୍—ପୃ ୧୨ । (୩୦) ସା. ମ.—ଆଦ୍ୟ—ପୃ ୧୨୬ । (୩୧) ସା. ମ—ବନ—ପୃ ୩୨୦ ।

ଦ୍ରଷ୍ଟବ୍ୟ—ପୋଥିରେ ମଧୁ ଶ୍ରବଣର ପତ୍ନୀଙ୍କ ନାମ 'କୃତାଞ୍ଜଳୀ'; ସେଠାରେ 'ଆଦିତ୍ୟ ବାର'ର ଉଲ୍ଲେଖ ଅଛି ( ମୂ. ପୋଥି—ବନ ୨ୟ—ପୃ୨୩୮ ଖ) । (୩୨) ଦା. ଘା.—ବଳରାମ ଦାସ—ଲଙ୍କା—ପୃ ୨୦୫ । (୩୩) ହ. ବଂ—ଅଚ୍ୟୁତାନନ୍ଦ ଦାସ—ପୃ୯୯୧ । (୩୪) ଅଚ୍ୟୁତାନନ୍ଦ ଦାସ—ପୃ ୯୯୧ । (୩୫) ସଂ. ରା—ଅଯୋଧ୍ୟା—୧୧୮, ୩୪ । (୩୬) ବି. ପୁ—୫, ୩୩, ୬ । (୩୭) ସା. ମ—ଆଦ୍ୟ—ପୃ ୭ । (୩୮) ସା. ମ.—ପୃ ୩୬ । (୩୯) ସା. ମ.—ପୃ ୨୧୨ । (୪୦) ସା. ମ—ବନ—ପୃ ୨୫୭ ।

ଦ୍ରଷ୍ଟବ୍ୟ—ପୋଥିରେ ଠିକ୍ ଏହି ପଦଟି ନାହିଁ । ତେବେ ସେଥିରେ ହାରାବତୀ ଯୁବତୀ ଥିବା କଥା ଉକ୍ତ ଅଛି । "ଅନେକ ପ୍ରକାରେ ମାଙ୍ଗଳିକ ରତ୍ନ, ତାହାକୁ ଇଚ୍ଛା

ଦେଖାଇ ତାହାଙ୍କୁ ଧଇଲାକ ବଳେ, ବନ୍ଧ କରାଇଲା ସେହି ପର୍ବତର ତଳେ ।” ସା. ମ—ଆଦ୍ୟ—ପୃ ୨୨୩ । (୭୯) ସା. ମ—ଆଦ୍ୟ—ପୃ ୨୨୩—୨୨୫ । (୮୦) ଭାଗବତ—ଜଗନ୍ନାଥ ଦାସ—୬ଷ୍ଠ ସ୍କନ୍ଧ—ପୃ ୮ । (୮୧) ହ୍ର.ବଂ—ଅ. ନ. ଦାସ—ପୃ ୧୬୫ । (୮୨) ନା.ର.ଗୀ—ଘା.କୃ. ଦ.ସ—ପୃ ୯୪—୯୫ । (୮୩) ସା.ମ—ଆଦ୍ୟ—ପୃ ୧୭୬—୧୭୮ । (୮୪) ସା.ମ—ବନ—ପୃ ୧୪୦ । (୮୫) ଭାଗବତ—ଜଗନ୍ନାଥ ଦାସ—୧୦ମ ସ୍କନ୍ଧ (ଦ୍ୱାରକା)—ପୃ ୨୯୫ । (୮୬) ସା. ମ—ସ୍ୱର୍ଗ—ପୃ ୬ (ଯାଚିଦେଲା ଯେତେବ ସର୍ବ ସୁଲକ୍ଷଣା ବାଳୀ ) । (୮୭) ସା.ମ—ଆଦ୍ୟ—ପୃ ୧୭୭ । (ନରେଖଇ ରାଜା ବସି ତା ରୂପ ଲକ୍ଷଣ) । (୮୮) ଭାଗବତ—ଜଗନ୍ନାଥ ଦାସ—୧୧ଶ ସ୍କନ୍ଧ—ପୃ ୧୩୩ । (୮୯) ସା.ମ—ମଧ୍ୟ—ପୃ ୨୬୬—୨୬୭ । ( ମୂ. ପୋଥି—ମଧ୍ୟ—ପୃ ୨୦୫ ଖ—୨୦୬ କ ) । (୯୦) ସା.ମ—ମଧ୍ୟ—ପୃ ୧୩୧ । (୯୧) ସା.ମ—ବନ—ପୃ ୨୮୮ । (୯୨) "କୁଳଦୂଷଣ କନ୍ୟାଗୁଟ, ରାଜନେ ସାବଧାନେ ଶୁଣ ।" ଭାଗବତ—ଜଗନ୍ନାଥ ଦାସ—୧୦ମ ସ୍କନ୍ଧ (ଦ୍ୱାରକା)—ପୃ ୧୪୧ । (୯୩) ସଂ.ମ—ସଭା—୪୫, ୪୧ । (୯୪) ସଂ.ମ—ଆଦ—୯୫, ୮୦ । (୯୫) ସଂ.ମା. ବୃ.ପୁ—କଲ୍ୟାଣ—ପୃ ୫୧୭ । (୯୬) ପ.ସ—ପୃ ୧୬ । (୯୭) ସା.ମ—ଆଦ୍ୟ—ପୃ ୧୭, ପୃ ୧୯ । (୯୮) "ଚତୁର୍ଥେ ରାଜନ ଶାରଭଦ୍ରକୁ ବରିଲା, ବରପୂର୍ବା ବୋଲି ସେହୁ ବବାହ ନୋହିଲା ।" ସା ମ—ଆଦ୍ୟ—ପୃ ୨୧ । (୯୯) ସା.ମ—ମଧ୍ୟ—ପୃ ୨୫୪ ।

ଦ୍ରଷ୍ଟବ୍ୟ—ପାଣ୍ଡୁଲିପିରେ ଊଣାଅଧିକେ ଏହି କଥା ଅଛି—

"ମୁହିଂ ଯେ ଅକଳଙ୍କ ଅଟଇ ମହାକ୍ଷତ୍ରୀ
ବଂଶର କଳଙ୍କ କୃଷ୍ଣ କାମପାଳ ଅଟନ୍ତି ।
ସଚରାଚର ପୃଥିବୀକ ମୁହିଁ ଯେ ଧାରଣ
ଗୋପାଳକୁଳେ ଦୋହିତା ଦେଲେ ଲଜ୍ଜ୍ୟା ହେବ ଜାଣ ।"

(ପ.ପ.ପୋଥି—ମଧ୍ୟ—ପୃ ୨୧୯ ଖ) । (୧୦୦) ସା.ମ—ଆଦ୍ୟ—ପୃ ୩୦୮ । (୧୦୧) ସା.ମ—ମଧ୍ୟ—ପୃ ୧୧୯ । (ତୁମ୍ଭ ରୂପ ଦେଖି ମୋର ବଳିଲା ମନାଷା ) ।

ଦ୍ରଷ୍ଟବ୍ୟ—ପାଣ୍ଡୁଲିପିରେ ଏହି ଭାବରେ ଉକ୍ତ ରହିଛି—"ମୁହିଁ ଯେ ହୀନଜନ ମୋତେ ନ କର ମନାଷା, ତୋହର ସାଦୃଶେ ଯେ ଜନ ତା ତୁଲେ ପୂରାଅ ଆଶା ।" (ମୂ. ପୋଥି—ମଧ୍ୟ—ପୃ ୧୦୪ କ) । (୧୦୨) ସା.ମ—ମଧ୍ୟ—ପୃ ୨୬୦ । (ଏହା ସ୍ୱରୂପ ସାକ୍ଷାତେ ଅଟେ କାମଦେବ ।)

ଦ୍ରଷ୍ଟବ୍ୟ—ପଞ୍ଚପକ୍ଷୀ ପୋଥିରେ ଅଛି—"ଯେହିହାର ରୂପ ସାକ୍ଷାତ ଅଟଇ ଯେ କାମ ।" (ପ.ପ. ପୋଥି—ମଧ୍ୟ—ପୃ ୨୨୬ ଙ) । (୧୦୩) ସା.ମ—ମଧ୍ୟ—ପୃ ୨୩୭ । (ଏହାର ରୂପ ହିଁ ମୋର ମନରେ ସିଦ୍ଧାନ୍ତ ) ।

ଦ୍ରଷ୍ଟବ୍ୟ—ପଞ୍ଚପଲ୍ଲୀ ପୋଥିରେ ଏହି ଉକ୍ତି ନାହିଁ । ମୂଳ ଗାଁ ପୋଥିରେ ଅଛି— "ଏହାର ରୂପକୁ ମୋର ନାହିଁ ନା ସିଦ୍ଧାନ୍ତ ।" (ମୂ. ପୋଥି—ପୃ. ୬୭° ଖ) । (୧୦୪) ସା. ମ—ବନ—ପୃ. ୧୫୭ । ( ତୋ ରୂପ ଦେଖି ମଦନେ ହେଲ ବରହିତା ) ମୂ.ପୋଥି—ବନ ୧ମ—ପୃ ୬୫୪ କ) । (୧୦୫) ସା.ମ—ଆଦ୍ୟ—ପୃ ୬୧୬ (ବିଦ୍ୟାଧର ପ୍ରାପ୍ତ ହୁଏ ରୂପ ସ୍ମାର ତୃଣ୍ୟ) । (୧୦୬) ସା.ମ—ମଧ୍ୟ—ପୃ ୬୫୪ । (ସମସ୍ତେ ବଶନ୍ତି ଯେହ୍ନେ ମକରକେତନ । ) ପ.ପ. ପୋଥି—ମଧ୍ୟ—ପୃ ୬୧୯ ଖ (ସବେଁ ବଶନ୍ତି ମକର-କେତନ ଜାଣି ) । (୧୦୭; ପରିମଳା—ନରସିଂହ ସେନ—ପୃ ୩୧ । (୧୦୮) ସା. ମ—ଆଦ୍ୟ—ପୃ ୬୧୧ । (ଧାର୍ମିକ ବିବେକୀ କ୍ଷତ୍ରୀବନ୍ତ ରଣଜିତା) । (୧୦୯) ସା.ମ.—ପୃ ୬୧୬ । ବିଶେଷରେ ଦେଖ ସାର ପୁରୁଷର ବେଶ) । (୧୧୦) ପରିମଳା—ନରସିଂହ ସେଣ—ପୃ ୩୧ । (୧୧୧) "ଜାତି କୁଳ ଗୋତ୍ର ଗୁଣଙ୍କ ବିଗ୍ଭର, ପ୍ରଦାନ କର ଗୋ ପ୍ରଭୁ ଏ ବେଳ କୁମାରୀ ।" ହ ବଂ.—ଅ.ନ. ଦାସ—ପୃ ୩୬ । (୧୧୨) ସା.ମ—ଆଦ୍ୟ—ପୃ ୩୫ । (୧୧୩) ଏଜନ । (୧୧୪) ହ.ବଂ—ଅ.ନ. ଦାସ—ପୃ ୧୬୪ । (୧୧୫) ସଂ.ଘ—ଆଦ୍ୟ—୭୨ ଅଧ୍ୟାୟ । (୧୧୬) ସଂ.ମ—ଆଦ୍ୟ—୧୯୬ ଅଧ୍ୟାୟ । (୧୧୭) ସଂ.ନା.ବି.ପୁ—କଲ୍ୟାଣ—ପୃ ୬୯୮ । (୧୧୮) Social Organisation—R.H. Lowie—P.184 । (୧୧୯) ସା.ମ—ଆଦ୍ୟ—ପୃ ୩୬—୩୭, ୩୯ । (୧୨୦) ସା.ମ—ଆଦ୍ୟ—ପୃ ୩୫ । ( ଉର୍ଦ୍ଧ୍ୱଶୀ କୁଣ୍ଡିକା ବୃଷଳୀ ଯେ ଅପୁସ୍ତୀ । ) (୧୨୧) ସା.ମ—ଆଦ୍ୟ—ପୃ ୩୫ । "ଅଗସ୍ତି ବୋଇଲେ ତାର କୁଣ୍ଡିକା ଯେ ବୃଷ, ଏଣୁ ଜାତରେ ହୋଇଲ ସେ ବ୍ରହ୍ମରାକ୍ଷସ ।" (୧୨୨) ସଂ. ନା. ବି. ପୁ—କଲ୍ୟାଣ—ପୃ ୬୯୮ । ବି. କ. କା—ବିହାରୀଲାଲ—ପୃ ୩୯୮ । (୧୨୩) ସ. ମ—ଆଦ୍ୟ—ପୃ ୩୯ । (୧୨୪) ବ୍ର. ଶ୍ରୀ. ପା—୬ଷ୍ଠ ଭାଗ—ଶ୍ରୀନିବାସାଗ୍ଭର୍ଯ୍ୟ—ପୃ୯୮୧ । (୧୨୫) ଦା. ଘ—ବଳରାମ ଦାସ—ଅ.ବ—ପୃ ୯୮୧—୯୮୨ । (୧୨୬) "ଜାତକପତ୍ର ଘେନ ବିଗ୍ଭରବା ଶୁଭ ଯୋଗେ ଅନୁକୂଳ ଘେନ ।" ଘ. ବ.—ଅର୍ଜୁନ ଦାସ—ପୃ ୭° । (୧୨୭) ବି. କ. କା—ବିହାରୀଲାଲ—ପୃ୪୪ । (୧୨୮) The Golden Bough—James Frazer—P 119 । (୧୨୯) ସା. ମ—ଅ.ଦ୍ୟ—ପୃ ୩୭—୩୯ । (୧୩୦) ସଂ. ମ—ଆଦ—୧୦୯ ଅଧ୍ୟାୟ । (୧୩୧) ସଂ. ସ୍କ. ପୁ—କଲ୍ୟାଣ—ପୃ ୫୪ । (୧୩୨) ସଂ. ଘ—ବାଲ—୬୭ ଅଧ୍ୟାୟ । (୧୩୩) ଶ୍ରୀ. ଭ—୩, ୨୨, ୭—୧୪ । (୧୩୪) ସଂ. ମ—ବନ—୧୧୫, ୨୫ । (୧୩୫) ସଂ.ମ.—୭୨, ୨ । (୧୩୬) ସା. ମ—ଆଦ୍ୟ—ପୃ ୩୯ । (ଗାନ୍ଧାରିକ ତୋର ଆମ୍ଭେ ଧୃତରାଷ୍ଟ୍ରେ ଦେବା) । (୧୩୭) ସା. ମ—ଆଦ୍ୟ—ପୃ ୬୧୧ । (ଜୟଦ୍ରଥକୁ ଦଆଅ ଦୁଃଶୀଳା କନ୍ୟାକୁ ) । (୧୩୮) ସା. ମ—ଆଦ୍ୟ—ପୃ ୪୩ । (ଆମ୍ଭ ପଣ୍ଡୁଙ୍କୁ ପ୍ରଦାନ କର ତୋର କୁନ୍ତୀ ) । (୧୩୯) ସା. ମ—ମଧ୍ୟ—ପୃ ୬୧୩ (କାର୍ତ୍ତିକେଶ୍ୱରକୁ ରୁଦ୍ର ଦେବୁ ହରଘର ) ମୂ. ପୋଥି—ମଧ୍ୟ—ପୃ ୬୩୬ କ । (୧୪୦) ସା. ମ—ମଧ୍ୟ—ପୃ ୬୧୪ । (୧୪୧) ଘ. ବ—ଅର୍ଜୁନ ଦାସ—ପୃ୫୫—୬° । (୧୪୨) ଏଜନ—ପୃ ୫୫ ( ବଘର ବଧୂ

ଯେସନେକ କାଣନ୍ତୁ ପିତାମାତା) । (୧୪୩) ସା. ମ—ସ୍ୱର୍ଗ—ପୃ ୬ । ( ତୁମ୍ଭଙ୍କୁ ପ୍ରଦାନ କର ଇଚ୍ଛଇ ଦୁହିତା ) । (୧୪୪) ଓ.ଇ.—ହରେକୃଷ୍ଣ ମହତାବ—୧ମ ଭାଗ—ପୃ ୨୬୧ । (୧୪୫) ସା. ମ—ଆଦ୍ୟ—ପୃ ୧୭୭ । ( ତୋହର ଦୁହିତା ଭୁଦ୍ଧ ଦେବୁ କ ବୋଇଲେ ) । (୧୪୬) ସା. ମ—ବନ—ପୃ ୧୪୦ । (୧୪୭) ସା. ମ—ମଧ୍ୟ—ପୃ ୪୯ । (ଏହି ବୃତ୍ତାନ୍ତ ପୋଥିରେ ନାହିଁ ) । (୧୪୮) ଦା. ଗ୍ର—ବଳରାମ ଦାସ—ଆଦ୍ୟ—ପୃ ୩୨ । (୧୪୯) କଳ୍ପଲତା—ଅର୍ଜ୍ଜୁନ ଦାସ—ପୃ ୪୮—୫୩ । (୧୫୦) କାଞ୍ଚୀ କାବେରୀ—ପୁରୁଷୋତ୍ତମ ଦାସ—ପୃ ୧୦ । O. H. R. J—vol. I, No. 3, October, 1952—P. 219 । (୧୫୧) Marriage and Family—E. Schmiedeler—P. 9 । (୧୫୨) Ibid—P. 13 । (୧୫୩) ସଂ. ସା. ବୃ. ପୁ – କଲ୍ୟାଣ—ପୃ ୫୨୩ । (୧୫୪) ସଂ.ସା.ବୃ.ପୁ.—ପୃ ୫୨୬ । (୧୫୫) ମନୁ—୩, ୩୨ । ସଂ. ମ—ଅନୁ—୪୪, ୩—୯ । (୧୫୬ ମନୁ—୩, ୨୩ । ସଂ. ମ—ଆଦ୍ୟ—୭୩, ୧୦ । (୧୫୭) ସଂ. ମ—ଆଦ୍ୟ—୭୨ ଓ ୭୩ ଅଧ୍ୟାୟ । (୧୫୮) କା. କା. ସଂ—ପୃ ୪୯—୫୬ । (୧୫୯) ସଂ. ମ—ଆଦ୍ୟ—୮୧ ଅଧ୍ୟାୟ । (୧୬୦) ସଂ. ମା. ବୃ. ପୁ—କଲ୍ୟାଣ—ପୃ ୫୨୬—୫୨୭; ପୃ ୫୨୩—୫୨୪ । (୧୬୧) ସା. ମ—ବନ—ପୃ ୨୭୫ । (୧୬୨) ସା. ମ—ଆଦ୍ୟ—ପୃ ୧୮୨—୧୮୫ । (୧୬୩) ସା.ମ—ବନ—ପୃ ୧୫୬—୧୬୮ । (୧୬୪) ସା.ମ—ମଧ୍ୟ—ପୃ ୨୬୨—୨୬୪ । (୧୬୫) ସା. ମ—ମଧ୍ୟ—ପୃ ୩୮୧ । (ଏହି ବୃତ୍ତାନ୍ତ ପୋଥିରେ ଅଭାବ) । (୧୬୬) ସା. ମ —ମଧ୍ୟ—ପୃ ୧୨୯, ପୃ ୧୩୧ ।

ଦ୍ରଷ୍ଟବ୍ୟ—ରେବନ୍ତ ଜଳକେଳି ସମୟରେ ଅବଗତ ହେଲେ ଯେ, ସୁଭଦ୍ରା ଅର୍ଜ୍ଜୁନଙ୍କ ଦ୍ୱାରା ଦୂଷିତା । ତାହା ଶୁଣି ସେ ମତ ଦେଲେ ଯେ, ଏହା କୂଳକୁ କଳଙ୍କକର । (ମୂ. ପୋଥି—ମଧ୍ୟ—ପୃ ୨୨୦ଖ, ପୃ ୧୨୧ କ । (୧୬୬ଚ) ପୁରାଣ ପ୍ରକାଶିକା କଂପାନୀଙ୍କ ମୁଦ୍ରିତ ମହାଭାରତରେ ସୁରେଖା-ପ୍ରଦ୍ୟୁମ୍ନଙ୍କ ଅଙ୍ଗଭୋଗ (ମଧ୍ୟ—ପୃ ୪୬୨) ଓ ତାହାର ନିନ୍ଦା (ମଧ୍ୟ—ପୃ ୪୬୩) ବର୍ଣ୍ଣିତ । ରାଧାରମଣ ପୁସ୍ତକାଳୟ ପ୍ରକାଶିତ ଗ୍ରନ୍ଥରେ ଏହି ବିଷୟ ଅଛି (ମଧ୍ୟ ପର୍ବ ) । (୧୬୭) ଚନ୍ଦ୍ରକଳା—ବିଶ୍ୱନାଥ କବିରାଜ—ପୃ ୫୭—୫୯ । (୧୬୮) O. H. R. J—Vol. I, No. 3, 1952—P. 219 । (୧୬୯) Marriage and Family—E. Schmiedeler —P.9, P.14 । (୧୭୦) ବୃ.ଶ୍ରୀ.ଦା.—୨ୟ ଭାଗ—ଶ୍ରୀନବାସାଗ୍ରହ୍ଣି—ପୃ ୧୮୬—୧୮୭ । (୧୭୧) ହିନ୍ଦୁ ସଂସ୍କାର —ରାଜବଳୀ ପାଣ୍ଡେ—ପୃ ୨୬୪—୨୬୫ । (୧୭୨) ହିନ୍ଦୁ ସଂସ୍କାର—ପୃ ୨୬୫ । (୧୭୩) ବି. କ. କା—ବିହାରିଲାଲ—ପୃ ୩୩୬, ପୃ ୩୨୧ । (୧୭୪) ହିନ୍ଦୁ ସଂସ୍କାର—ରାଜବଳୀ ପାଣ୍ଡେ—ପୃ ୨୬୫ । (୧୭୫) (ଜଳ ଢାଳ ଦେନ ରାଜା ସଂକଳପ କଲେ, ଏ ଦୁହିତା ତୋତେ ଦେବି ସତ୍ୟ ମନାସିଲେ ) ସା. ମ—ଆଦ୍ୟ—ପୃ ୮ । (୧୭୬) 'ପରୋହିତେ ରାଜ ଜେନ୍ଦୁ ଢ଼ାଳିଲେ ସତ୍ୟ ।' ସା. ମ— —ପୃ ୨୧୫ । (୧୭୭) 'ତୁମ୍ଭଙ୍କୁ ପ୍ରଦାନ କର

ଈଛଇ ଦୁହିତା, ଯାବତ ଚନ୍ଦ୍ରାର୍କେ ରହିଥାଉ ଏହି କଥା ।' ସା. ମ—ସ୍ୱର୍ଗ—ପୃ ୬ । (୧୭୮) ସା. ମ—ଆଦ୍ୟ—ପୃ ୮ । (୧୭୯) ଦା. ଗ୍ର—ବଳରାମ ଦାସ—ଆଦି—ପୃ ୧୭୭ । (୧୭୯ଅ) ଓଡ଼ିଶାରେ ଏହାର ନାମ 'ମାଳଚେକା' ବା 'ମହାପ୍ରସାଦ ନିର୍ବନ୍ଧ' । (୧୮୦) ବୃ. ଶ୍ରୀ. ଘ—୨ୟଭାଗ—ଶ୍ରୀନବାସାଗୃର୍ଯ୍ୟ—ପୃ ୧୮୫ । (୧୮୧) ସଂ. ନା. ବ. ପୁ—କଲ୍ୟାଣ—ପୃ ୨୯୩ । (୧୮୨) ସଂ. ମ—ଆଦ୍ୟ—୧୯୭,୫ । (୧୮୩) ହି. ସଂ—ରାଜବଲୀ ପାଣ୍ଡେ—ପୃ ୨୭୬ । (୧୮୪) ସା.ମ—ସ୍ୱର୍ଗ—ପୃ୫ । (୧୮୫) ସା.ମ—ଆଦ୍ୟ—ପୃ ୩୦୯ । (୧୮୬) ସା. ମ—ମଧ୍ୟ—ପୃ ୧୫୦ । (ମୂ. ପୋଥି—ମଧ୍ୟ—ପୃ ୧୫୨ଖ) (୧୮୭) ସା. ମ—ପୃ ୨୧୪ । (ମୂ. ପୋଥି—ମଧ୍ୟ—ପୃ ୨୧୪କ) (୧୮୮) ସା. ମ—ବିରାଟ—ପୃ ୧୮୦ । (୧୮୯) ସା. ମ—ମଧ୍ୟ—ପୃ ୫୫ । (ପୋଥିରେ ଏହା ନାହିଁ ।) (୧୯୦) ରା. ବି—ଅର୍ଜ୍ଜୁନ ଦାସ—ପୃ ୭୦ । (୧୯୧) ଭାଗବତ—ଜଗନ୍ନାଥ ଦାସ—୧୦ମ ସ୍କନ୍ଧ, ଦ୍ୱାରକା—ପୃ ୧୦୬ । (୧୯୨) ବି. କ. କା—ବିହାଖଣ୍ଡଳ—ପୃ ୨୮—୨୯ । (୧୯୩) ସଂ. ନା. ବ. ପୁ—କଲ୍ୟାଣ—ପୃ ୨୯୮ । (୧୯୪) ବି. କ. କା—ବିହାଖଣ୍ଡଳ—ପୃ ୩୦ । (୧୯୫) ଏକନ୍ । (୧୯୬) ସଂ. ନା. ବ. ପୁ—କଲ୍ୟାଣ—ପୃ ୨୯୮ । (୧୯୭) "ମେଢ଼ ମଣ୍ଡପ ମଣ୍ଡାଇ ଦେଉଳ ଜଗତି, ପନ୍ତ ପନ୍ତ ସୁବର୍ଣ୍ଣର କଳସ ବସାନ୍ତ ।" ସା. ମ—ମଧ୍ୟ—ପୃ ୫୫ । (ପୋଥିରେ ଅଭାବ) । (୧୯୮) ସା. ମ—ବିରାଟ—ପୃ ୧୭୭ । (୧୯୯) ସା. ମ—ସ୍ୱର୍ଗ—ପୃ ୬ । (୨୦୦) ରା. ବି—ଅର୍ଜ୍ଜୁନ ଦାସ—ପୃ ୭୧ । (୨୦୧) କଳ୍ପଲତା—ଅର୍ଜ୍ଜୁନ ଦାସ—ପୃ ୬୦—୬୧ । (୨୦୨) ଦା. ଗ୍ର—ବଳରାମ ଦାସ—ଆଦି—ପୃ ୧୮୯—୧୯୦ । (୨୦୩) ରୁକ୍ମଣୀବିଭା—କାର୍ତ୍ତିକ ଦାସ—ପୃ ୩୧ । (୨୦୪) ସଂ. ମ—ବିରାଟ—୭୨, ୧୩—୧୯ । (୨୦୫) ଏକନ୍—୭୨, ୨୪—୨୫ । (୨୦୬) ସା. ମ—ଆଦ୍ୟ—ପୃ ୩୦୯ । (୨୦୭) ସା. ମ—ଆଦ୍ୟ—ପୃ ୩୦୯ । (୨୦୮) ସା. ମ—ବିରାଟ—ପୃ ୧୭୭ । (୨୦୯) ସା. ମ—ମଧ୍ୟ—ପୃ ୧୪୮ । (୨୧୦) ସା. ମ—ସ୍ୱର୍ଗ—ପୃ ୬ । (୨୧୧) ସା. ମ—ବିରାଟ—ପୃ ୧୭୭ । (୨୧୨) ରା. ବି—ଅର୍ଜ୍ଜୁନ ଦାସ—ପୃ ୬୦—୭୦ । (୨୧୩) ରୁ. ବି—କାର୍ତ୍ତିକ ଦାସ—ପୃ ୩୯—୪୫ । (୨୧୩ଅ) ଗୋଟିଏ କୁମ୍ଭ ଉପରେ ଆମ୍ବଡ଼ାଳ ରଖି, ତା ଉପରେ ନାରିକେଳ ରଖାଯାଏ । ତାହା ଗଣେଶ, ବରୁଣ, ଆଦିତ୍ୟାଦି ନବଗ୍ରହ, ଇନ୍ଦ୍ରାଦି ଦଶଦିଗପାଳ ଓ ଗ୍ରାମଦେବତାଙ୍କର ପ୍ରତୀକ ରୂପରେ ପୂଜା ପାଏ । ବି. କ. କା—ବିହାଖଣ୍ଡଳ—ପୃ ୬୯ । (୨୧୪) ହି. ସଂ—ରାଜବଲୀ ପାଣ୍ଡେ—ପୃ ୨୬୬—୨୬୭ । (୨୧୫) ସଂ.ରା—ବାଳ—୭୨, ୯ । "ଭ୍ରାତୃଭିଃ ସହିତୌ ରାମଃ କୃତକୌତୁକମଙ୍ଗଳଃ ।" (୨୧୬) ସଂ.ମ—ଆଦ୍ୟ—୧୯୬, ୯ । ("କୃତ ମଙ୍ଗଳକି ସ୍ୱାଃ ।") (୨୧୭) ସଂ. ସ୍କ. ପୁ—କଲ୍ୟାଣ—ପୃ ୫୬ । (୨୧୮) ସା. ମ—ଆଦ୍ୟ—ପୃ ୩୧୦ । (୨୧୯) ସା. ମ—ପୃ ୩୦୯ । (୨୨୦) ସା. ମ—ବିରାଟ—ପୃ ୧୮୦ । (କରନ୍ତି ଯେ ଅନୁକୂଳ ମଙ୍ଗଳ ବିଧାନ ।) (୨୨୧) ସା. ମ—ଆଦ୍ୟ—ପୃ ୨୧୧ । (କରନ୍ତି ବିଧି ବିଧାନେ ଉତ୍ସବ ମଙ୍ଗଳ ।)

(୧୨୨) ସ୍. ମ—ଅର୍ଜ୍ଜୁନ ଦାସ—ପୃ ୭୧ । (୧୨୩) ପ୍ରା. ଗ. ପ. ଦ—(ପ୍ରାଚୀ)—ପୃ ୭୮ । (୧୨୪) ଦା. ସ—ବଳରାମ—ଆଦ୍ୟ—ପୃ ୧୯୦ – ୧୯୧ । (୧୨୫) ରୁ. ବ—କାର୍ତ୍ତିକ ଦାସ—ପୃ ୪୬ । (୧୨୬) ଲାବଣ୍ୟବତୀ—ଉପେନ୍ଦ୍ର ଭଂଜ—ପୃ ୧୫୮—୧୬୦ । (୧୨୭) ସା. ମ—ଅଦ୍ୟ—ପୃ ୮୯ । (୧୨୮) ସା. ମ—ବିରାଟ—ପୃ ୮୧୦ ।

ଦ୍ରଷ୍ଟବ୍ୟ—ସାଧାରଣତଃ ପୁସ୍ତକାଳୟ ପ୍ରକାଶିତ ଗ୍ରନ୍ଥର ପୃଷ୍ଠରେଖା-ପରିଚ୍ଛେଦରେ ମଙ୍ଗଳନ-ବର୍ଣ୍ଣନା ଛଳରେ ଭୋଜନ-ଚର୍ଚ୍ଚାର ଉଲ୍ଲେଖ ଅଛି । (ମଧ୍ୟ—ପୃ ୩୦୫) । (୧୨୯) ହ୍ର. ସଂ—ରାଜବଲୀ ପାଣ୍ଡେ—ପୃ ୧୬୭; ବୃ. ଶ୍ରୀ. ଧା—(୨ୟ ଭାଗ), ଶ୍ରୀନବାସାଗ୍ରଣୀ—ପୃ ୧୮୫—୧୮୬ । (୧୩୦) ସଂ. ମ—ଅଦ୍ୟ—୧୯୭, ୯ ("କୃତାଭିଷେକାଃ") । (୧୩୧) ସା. ମ—ମଧ୍ୟ—ପୃ ୩୧୦ । (ସ୍. ର. ସୁ) "ରାମଶିଳା-ରସ ଆଦ ନାନା ତୀର୍ଥ ପାଣି, ପାଣ୍ଡବ ଦ୍ରୌପଦୀ ଶିରେ ନାନ୍ତୁଳେ ଆଣି ।"

ଦ୍ରଷ୍ଟବ୍ୟ—ପୂର୍ବୋକ୍ତ ପ୍ରକାଶିକା କର୍ତ୍ତାମାନଙ୍କ ଗ୍ରନ୍ଥରେ ପରିବର୍ତ୍ତିତ ଭାଷାରେ ଏହି ସ୍ଥାନର ଉଲ୍ଲେଖ ମିଳେ । ଯଥା—"ଶ୍ରୀରାମ ମୁଦ୍ରାଶିଳା ପାଣି ଆଣିଦେଲେ । ପାଣ୍ଡବ ଦ୍ରୌପଦୀଙ୍କି ଯେ ଅଭିଷେକ କଲେ ।" (ସା. ମ—ଆଦ୍ୟ—ପୃ ୩୫୪) । (୧୩୨) ସ୍. ବ—ଅର୍ଜ୍ଜୁନ ଦାସ—ପୃ ୭୨—୭୩ । (୧୩୩) ପ୍ରା. ଗ. ପ. ଦ—ପ୍ରାଚୀ—ପୃ ୭୮ । (୧୩୪) କଳ୍ପଲତା—ଅର୍ଜ୍ଜୁନ ଦାସ—ପୃ ୬୩ । (୧୩୫) ଦା. ସ—ବଳରାମ—ଆଦ—ପୃ ୧୯୦—୧୯୧ । (୧୩୬) ଲାବଣ୍ୟବତୀ—ଉପେନ୍ଦ୍ର ଭଂଜ—ପୃ ୧୬୦ । (୧୩୭) ସଂ. ମ—ଆଦ—୧୯୭ଅ । (୧୩୮) ସଂ. ମ—ବିରାଟ—୭୨ଅ । (୧୩୯) ସ. ସ୍କ. ପୃ—କଲ୍ୟାଣ—ପୃ ୫୬—୫୭ । (୧୪୦) ସଂ. ସ—ବାଲ—୭୩ଅ । (୧୪୧) ସଂ. ସ୍କ. ପୃ—କଲ୍ୟାଣ—ପୃ ୫୬—୫୭ । (୧୪୨) ସଂ.ସ୍କ.ପୃ.—ପୃ ୫୬ । (୧୪୩) ହ୍ର. ସଂ—ରାଜବଲୀ ପାଣ୍ଡେ—ପୃ ୧୩୭—୧୩୮ । (୧୪୪) ସା. ମ—ମଧ୍ୟ—ପୃ ୨୧୬—୨୧୭ ।

"ବାଜଇ ଶଙ୍ଖ ମହୁରୀ ଝମକ ନିଶାଣ
ଭେରୀ ପଟାହ ଯେ ନାନାଦ ଯନ୍ତ୍ର ଜାଣ ।
ନାଟନ୍ତର କ୍ଷେତ୍ର ଯେ ଆଲମ୍ବ ଉତ୍ତୋଳନ
ଚନ୍ଦ୍ରକାନ୍ତ ଲଗିଲ ଯେ ମୁକୁତାର ତୋରଣ ।" (ମୂ. ପୋଥି—ମଧ୍ୟ—ପୃ ୨୪୧କ)
"ଶିରେ ସିମନ୍ତମୀ ଯେ ବାନ୍ଧୁଛି ଜଗଦଳା
ଯେ ଯାହାର ଅନୁରୂପେ ସଜ ହେଲେ ବାଳା ।
କଣ୍ଠେ ମଣିମାଣିକ୍ୟ ଶୋହଇ ଝଲଝଲ
ପ୍ରଚଣ୍ଡ ଆଦିତ୍ୟ ଜିଣି ତେଜ କଳେଟଳ ।" (ମୂ. ପୋଥି—ମଧ୍ୟ—ପୃ୨୪୧କ ଓ ଖ)
"ରାମକୃଷ୍ଣ ଆବର ନଇଲେ ଉଗ୍ରସେନ
ଭ୍ରାତାମାନଙ୍କୁ ଏକା ଘେନ ଅଛିନ୍ତି ପଦ୍ମନ ।" (ମୂ. ପୋଥି—ମଧ୍ୟ—ପୃ ୨୪୨କ)

(୧୪୫) ସା. ମ—ବିରାଟ—ପୃ ୧୬୫—୧୭୬ । (୧୪୬) ସା. ମ—ଅଦ୍ୟ—ପୃ ୨୦

(ପୁ. ପ୍ର. ଙ୍କ) ସା. ମ—ଆଦ୍ୟ—ପୃ ୧୮ । (ରୂ. ର. ପୁ.) । (୬୪୭) O. H. R. J.—Vol. X, No. 4 1962—P. 66. (୬୪୮) ସା. ଦ—ବିଶ୍ୱନାଥ କବିରାଜ—ପୃ ୧୬୪ । (୬୪୯) ରୂ. ବ—ଅର୍ଜ୍ଜୁନ ଦାସ—ପୃ ୭୦—୭୦ । (୬୫୦) ଦା. ଗ୍ର—ବଳରାମ ଦାସ—ଆଦ୍ଧ—ପୃ ୧୭୦—୧୭୫ । (୬୫୧) ବି. ଚ. କା—ବହ୍ମାଗ୍ରାଲ—ପୃ ୩୬୯—୩୩୧, ୩୪୮ । (୬୫୧କ) ଏଜନ୍ । (୬୫୧ଖ) "ଗ୍ରହପୂଜା ଗ୍ରହଶାନ୍ତି କଲେ ଗ୍ରହମନ୍ତ୍ରେ ।" "ଗ୍ରାମଦେବତାର ଗୋତ୍ର ଅଷ୍ଟେଷ୍ଟକଦ୍ୱିଜ ।" ସା. ମ—ଆଦ୍ୟ—ପୃ ୩୧୦ । (୬୫୧ଗ) ସା. ମ—ଆଦ୍ୟ—ପୃ ୩୦୯ । (୬୫୬) ସା. ମ—ବିରାଟ—ପୃ ୧୮୧—୧୮୬ । (୬୫୩) ଦା. ଗ୍ର—ବଳରାମ—ଆଦ୍ଧ—ପୃ ୧୧୪ । (୬୫୪) ପଣ୍ମଲା—ନରସିଂହ ସେଣ—ପୃ ୪୩ । (୬୫୫) ହ. ସଂ—ରାଜବଳୀ ପାଣ୍ଡେ—ପୃ ୬୭୫ । (୬୫୬) ବି. କ. କା—ବହ୍ମାଗ୍ରାଲ—ପୃ ୩୬୫ । (୬୫୭) ସା. ମ.—ଆଦ୍ୟ—ପୃ ୩୦୯ । "ବାଛିର ଯୋଗାଡ଼ ଘେନ ସେ ପଞ୍ଚାଳ ରାଜା, ଯୁଧିଷ୍ଠିରଙ୍କ ପାଦତଳେ କଲେ ପାଦ୍ୟପୂଜା ।" (୬୫୮) ସା. ମ—ଆଦ୍ୟ—ପୃ ୩୧୦ । (ସଂକଳ୍ପ ବାକ୍ୟରେ ଚହିଁ ସୀଭଙ୍କାର ଜର) । (୬୫୯) ସା. ମ—ଆଦ୍ୟ—ପୃ ୧୬୬ । (ସୀଭକାର ବରଣ ଏ ଆଦ୍ଧ କର୍ମ ସାର) । (୬୬୦) ସା. ମ—ମଧ୍ୟ—ପୃ ୧୫୦ । (୬୬୧) ସା. ମ.—ସ୍ୱର୍ଗ—ପୃ ୬ । (ସୀଭକାର ବରଣକୁ ହର ସାତୁ କଲ) । (୬୬୨) ବି. କ. କା—ବହ୍ମାଗ୍ରାଲ—ପୃ ୩୬୬ । (୬୬୩) ବି. କ. କା—ପୃ ୩୩୬ । (୬୬୪) ବି. କ. କା—ପୃ ୩୩୩ । (୬୬୫) ବି. କ. କା—ପୃ ୩୫୬ । (୬୬୬) ବି. କ.କା—ପୃ ୩୫୭ । (୬୬୭) ବି. କ. କା—ପୃ ୩୩୩—୩୩୫ । (୬୬୭କ) ସା. ମ—ଆଦ୍ୟ—ପୃ ୧୬୬ । (୬୬୭ଖ) ସା. ମ—ବିରାଟ—ପୃ ୧୮୧ (ସୀଭକାର ବରଣକୁ ସାର ମହାପର୍ବ) । (୬୬୭ଗ) ସା. ମ—ସ୍ୱର୍ଗ—ପୃ ୬ । (୬୬୮କ) ରୂ. ବ—ଅର୍ଜ୍ଜୁନ ଦାସ—ପୃ ୭୪ । (୬୬୮ଖ) କଳ୍ପଲତା—ଅର୍ଜ୍ଜୁନ ଦାସ—ପୃ ୪୪ । (୬୬୯) ଦା. ଗ୍ର—ବଳରାମ ଦାସ—ଆଦ୍ଧ—ପୃ ୧୧୭ । (୬୭୦) ପଣ୍ମଲା—ନରସିଂହ ସେଣ—ପୃ ୪୭ । (୬୭୧କ) "ଓଁ ବିଷ୍ଣୁ, ବିଷ୍ଣୁ" ଠାରୁ ଆରମ୍ଭ କରି "ଶରଣାଗତ" ପର୍ଯ୍ୟନ୍ତ ବାକ୍ୟ ପାଠ କଲ ପରେ ଦେଶକାଳ-ବାକ୍ୟ ସହ ବର-କନ୍ୟାଙ୍କର ପିତାଙ୍କ ନାମ, ବରକନ୍ୟାଙ୍କ ନାମ, ଗୋତ୍ର, ଶାଖା, ପ୍ରବର ଆଦ୍ଧ କହିବାକୁ ମହାବାକ୍ୟ କୁହାଯାଏ । (ବି. କ. କା—ବହ୍ମାଗ୍ରାଲ—ପୃ ୩୩୫—୩୩୬) । (୬୭୧ଖ) ଏଜନ । (୬୭୨) ସା. ମ—ଆଦ୍ୟ—ପୃ ୧୬୬ । "ମହାବାକ୍ୟ ଉଚ୍ଚାରଲେ କରି ବେଦଧ୍ୱନି ।" । (୬୭୩) ସା. ମ—ଆଦ୍ୟ—ପୃ ୩୧୦ । (ମହାବାକ୍ୟ ଉଚ୍ଚାରନ୍ତି ଧୌମ୍ୟ ପୁରୋହିତ) । (୬୭୪) ସା. ମ—ବିରାଟ—ପୃ ୧୮୬ (ମହାବାକ୍ୟ ଉଚ୍ଚାରନ୍ତି ଚହିଁ ବେଳ ଉନ) । (୬୭୫) "ଦେଶକାଳ ଶବ୍ଦ ଉଚ୍ଚାରନ୍ତି ପ୍ରୋହିତେ ।" (ମୂ. ପୋଥି—ମଧ୍ୟ—ପୃ ୧୫୬ଖ)

ଦ୍ରଷ୍ଟବ୍ୟ—ମହାବାକ୍ୟରେ ଦେଶକାଳ ଉଚ୍ଚାରିତ ହୁଏ (ବି.କ.କା—ବହ୍ମାଗ୍ରାଲ—ପୃ ୩୩୬) । (୬୭୬) ଦା.ଗ୍ର—ବଳରାମ ଦାସ—ଆଦ୍ଧ—ପୃ ୧୧୪ । (୬୭୭) ବି.କ.କା.—ବହ୍ମାଗ୍ରାଲ—ପୃ ୩୩୭—୩୩୮ । (୬୭୮) ବି.କ.କା—ପୃ ୩୩୯ । (୬୭୯) ବି.କ.କା—

—ପୃ ୩୪୧ । (୨୮୦) ବି.କ.କା—ପୃ ୩୪୪ । (୨୮୧) ବି.କ.କା—ପୃ ୩୪୧ । (୨୮୨) ସା. ମ—ମଧ୍ୟ—ପୃ ୨୮୩ । (୨୮୩) ସା. ମ—ସ୍ୱର୍ଗ—ପୃ ୬ । (୨୮୪କ) ସା. ମ—ଆଦ୍ୟ—ପୃ ୩୧୦ । (୨୮୪ଖ) ସା. ମ—ବିରାଟ—ପୃ ୧୮୨ । (୨୮୫) ରା. ବି—ଅର୍ଜ୍ଜୁନ ଦାସ—ପୃ ୭୨—୭୩ । (୨୮୬) ଦା. ରା—ବଳରାମ—ଆଦ—ପୃ ୧୯୫ । (୨୮୭କ) ହ. ବଂ.—ଅ. ନ. ଦାସ—ପୃ ୯୦୧ । (୨୮୭ଖ) ରୁ. ବି—କାର୍ତ୍ତିକ ଦାସ—ପୃ ୪୮ । (୨୮୮) ବି. କ. କା—ବିହ୍ୱାଗ୍ଲଲ—ପୃ ୩୩୮ । (୨୮୯) ସା. ମ—ଆଦ୍ୟ—ପୃ ୩୧୦ । (୨୯୦) ବି. କ. କା—ବିହ୍ୱାଗ୍ଲଲ—ପୃ ୩୪୮ । (୨୯୧) ପା. ଗୃ. ସୂ.—ପାରସ୍କରଗୃହ୍ୟ—ପୃ ୨ । (ଷଡ଼ର୍ଘ୍ୟଭବତ୍ୟାଚାର୍ଯ୍ୟ ଋତ୍ୱିକ୍ ବୈବାହ୍ୟୋରାଜାପ୍ରିୟଃ ସ୍ନାତକ ଇତି ।) (୨୯୨) ବି. କ. କା—ବିହାଗ୍ଲଲ—ପୃ ୩୪୯ । (୨୯୩) ହ. ସଂ—ରାଜବଳୀ ପାଣ୍ଡେ—ପୃ ୨୬୮ । (୨୯୪) ସା. ମ—ମଧ୍ୟ—ପୃ ୨୮୨ । (୨୯୫) ଦା. ରା—ବଳରାମ ଦାସ—ପୃ ୧୯୭ । (୨୯୬) ହ. ସଂ—ରାଜବଳୀ ପାଣ୍ଡେ—ପୃ ୨୭୨ । (୨୯୭) ସଂ. ମ—ବନ—୩୦୬, ୨୩ । (୨୯୮) ସଂ. ମ—ଅନୁ—୪୪, ୨୫ । (୨୯୯) ସା. ମ—ଆଦ୍ୟ—ପୃ ୯ । (ଜର୍ଘାତ ପ୍ରଦାନ କରେ କନ୍ୟାକୁ ତାହାଙ୍କୁ ।) (୩୦୦) ସା. ମ—ଆଦ୍ୟ—ପୃ ୧୫ । (ଏସନ ପ୍ରଦାନ କଲେ ନୃପନ୍ଧ କୁମାରୀ ।) (୩୦୧) ସା. ମ—ଆଦ୍ୟ—ପୃ ୨୧୨ । (୩୦୨) ସା. ମ—ଆଦ୍ୟ—ପୃ ୧୨୨ । (୩୦୩) ସା. ମ—ଆଦ୍ୟ—ପୃ ୩୧୧ । (ଦୁହିତା ପ୍ରଦାନ ତୁ ହ୍ୱୋ କଲୁ ପାଣ୍ଡବଙ୍କୁ ।) (୩୦୪) ସା. ମ—ମଧ୍ୟ—ପୃ ୧୫୦ । (୩୦୫ କ) ସା. ମ—ବିରାଟ—ପୃ ୧୮୨-୧୮୩ । (୩୦୫ ଖ) ସା. ମ—ସ୍ୱର୍ଗ—ପୃ ୬-୭ । (୩୦୬) ହ. ବଂ—ଅ. ନ. ଦାସ—ପୃ ୮୬ । (୩୦୭) ସଂ. ନା. ବି. ପୁ—କଲ୍ୟାଣ—ପୃ ୫୫ । (୩୦୮) ବି. କ. କା—ବିହ୍ୱାଗ୍ଲଲ—ପୃ ୩୬୨ । (୩୦୯) ଏଜନ୍—ପୃ ୩୬୧ । ହ. ସଂ—ରାଜବଳୀ ପାଣ୍ଡେ—ପୃ ୨୭୨-୨୭୩ । (୩୧୦) ସା. ମ—ବନ—ପୃ ୧୪୦ । (୩୧୧) ହ. ବଂ—ଅ. ନ. ଦାସ—ପୃ ୮୬ । (୩୧୨) ବି. କ. କା—ବିହ୍ୱାଗ୍ଲ ଲଲ—ପୃ ୩୬୧-୩୬୨ । (୩୧୩) ଏଜନ୍—ପୃ ୩୬୩ । (୩୧୪) ଏଜନ୍—ପୃ ୩୬୪ । (୩୧୫) ପା. ଗୃ. ସୂ—ପାରସ୍କରଗୃହ୍ୟ—ପୃ ୪ । (୩୧୬) ସା. ମ—ମଧ୍ୟ—ପୃ ୧୫୧ । "କୁସେ ବନ୍ଧନ କଲେ ସୁଭଦ୍ରା ଅର୍ଜ୍ଜୁନର ହସ୍ତେ ।" (ମୂ. ପୋଥି—ମଧ୍ୟ—ପୃ ୧୫୨ ଖ) । (୩୧୭) ସା. ମ—ଆଦ୍ୟ—ପୃ ୩୧୦ । (୩୧୭ କ) ଏଜନ୍ । (୩୧୮) ସା. ମ—ବିରାଟ—ପୃ ୧ ୨ । (୩୧୯) ଦା. ରା—ବଳରାମ—ଆଦ—ପୃ ୧୯୮ । (୩୨୦ କ) ବି. କ. କା—ବିହାଗ୍ଲ ଲଲ—ପୃ ୩୫୮ । (୩୨୦ ଖ) ଏଜନ୍—ପୃ ୩୬୭ । (୩୨୦ଗ) ସା. ମ—ସ୍ୱର୍ଗ—ପୃ ୭ । (୩୨୧କ) ସା. ମ—ଆଦ୍ୟ—ପୃ ୩୧୦ । (୩୨୧ଖ) ସା. ମ—ବିରାଟ—ପୃ ୧୮୨ ।

ଦ୍ରଷ୍ଟବ୍ୟ—ପୋଥିରେ ସୁଭଦ୍ରା ବିବାହକାଳରେ ନନ୍ଦଙ୍କ କୋଳରେ ଉପବେଶନ କରିଥିବାର ବର୍ଣ୍ଣନା ମିଳେ । "ନନ୍ଦର କୋଡ଼ରେ ନେଇ ବସାଇଲେ ଦୋହିତା ।" (ମୂ. ପୋଥି—ପୃ ୧୫୨ କ, ମଧ୍ୟପର୍ବ) । (୩୨୨) ଦା. ରା—ବଳରାମ ଦାସ—ଆଦ—

ପୃ ୧୯୭ । (୩୨୩) ମନୁ—୩, ୨୭-୨। । (୩୨୪) ସଂ. ଗୃ—ବାଳ—୨୩, ୨୫ ।
(୩୨୫) ସ. ମ—ଆଦ—୧୯୭,୭ । (୩୨୬) ବ୍. କ. କା—ବିବାହାଗ୍ନିକ—ପୃ ୩୬୧ ।
(୩୨୭) ସା. ମ—ମଧ୍ୟ—ପୃ ୨୩୬ । ମୂଳ ପୋଥି—ମଧ୍ୟ—ପୃ ୨୬୦ କ ।
(୩୨୮) ଗ୍. ବ—ଅର୍ଜୁନ ଦାସ—ପୃ ୭୨ । (୩୨୯) ପ୍ରା. ଗ. ପ. ଦ—ପ୍ରାଚୀ—ପୃ ୬୮ ।
(୩୩୦) ବ୍. କ. କା—ବିବାହାଗ୍ନିକ—ପୃ ୩୬୫ । (୩୩୧) ସଂ. ମ—ଆଦ—୧୯୭,୧୫ ।
(କୃତେ ବିବାହେ ଦ୍ରୁପଦୋ ଧନଂଦଦୌ) । (୩୩୨) ସ. ଗୃ—ବାଳ—୨୪,୩ ।
(ବିଦେହାନାଂ ଦଦୌ କନ୍ୟା ଧନଂ ବହୁ ।) (୩୩୩) ଶ୍ରୀ. ଭ—(ସଂ)—୩, ୨୨, ୨୩ ।
(୩୩୪) କା. ଗ—୧ମ ଖଣ୍ଡ—ପୃ ୭୯ । (୩୩୫) ସା. ମ—ଆଦ୍ୟ—ପୃ ୩୧୧ । (୩୩୬)
ସା. ମ—ମଧ୍ୟ—ପୃ ୧୫୧ ।

ଦ୍ରଷ୍ଟବ୍ୟ—ପୋଥିରେ ଅଛି—"ବାଭ୍ର ଯଉତୁକ ବଧି କରନ୍ତି ଯେ ପ୍ରୋହିତେ ।" (ମୂଳ ପୋଥି—ମଧ୍ୟ—ପୃ ୧୫୨ଖ) ଏଠାରେ ଯଉତୁକ ଦିଆଯାଇଥିବା ଦ୍ରବ୍ୟାଦିର ବର୍ଣ୍ଣନା ନାହିଁ । (ମୂଳ ପୋଥି—ମଧ୍ୟ—ପୃ ୧୫୩କ) । (୩୩୭) ସା. ମ—ଆଦ—ପୃ ୧୨୨ । (୩୩୭କ) ସା. ମ—ଆଦ—ପୃ ୨୧୬ । (୩୩୭ଖ) ସା. ମ—ଆଦ—ପୃ ୨୧୪ ! (୩୩୭ଗ) ସା. ମ—ବିରାଟ—ପୃ ୧୮୩ । (୩୩୭ଘ) ସା. ମ—ଆଦ—ପୃ ୪୩ । (୩୩୮) ସା. ମ—ଆଦ୍ୟ—ପୃ ୧୭୬ । (୩୩୯) ଗ୍. ବ—ଅର୍ଜୁନ ଦାସ—ପୃ ୭୫ । (୩୪୦) କଳ୍ପଲତା—ଅର୍ଜୁନ ଦାସ—ପୃ ୬୮ । (୩୪୧) ଦା. ଚ—ବଳରାମ ଦାସ—ଆଦ—ପୃ ୩୪, ପୃ ୧୯୮ । (୩୪୨) ଭାଗବତ—ଜଗନ୍ନାଥ ଦାସ—୧୦ମସ୍କନ୍ଧ (ଗୋପ)—ପୃ ୬, ପୃ ୧୦୦ । (୩୪୩) ପରିମଳା—ନରସିଂହ ସେଣ—ପୃ ୪୮ । (୩୪୪) ମ. ସା. ସଂ—ଗୋପୀନାଥ ଦାସ—ପୃ ୯୬—୯୭ ଆଦ୍ୟ, ପୃ ୧୭୫ ମଧ୍ୟ । (୩୪୪ଅ) କନ୍ୟାପିତା ଓ ବରପିତା ନବବସ୍ତ୍ର ପରିଧାନ କରି ବେଦୀରେ ପୀଢ଼ାଉପରେ ଗୁଆଟିଏ ରଖି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କୁ ପୂଜା କରନ୍ତି । ଏହାର ନାମ 'ପାଣି ପାଦ୍ୟ ଅର୍ଘ୍ୟ' ବ୍ରାହ୍ମଣଙ୍କ ସମାଜରେ କେବଳ ଏହା ପାଳିତ ହୁଏ । ବ. କ. କା—ବିବାହାଗ୍ନିକ—ପୃ ୩୬୭-୩୬୮ । (୩୪୫) ବ୍. କ. କା—ବିବାହାଗ୍ନିକ—ପୃ ୩୬୭ । (୩୪୬) ଏଜନ୍—ପୃ ୩୬୮ । (୩୪୭) ବ୍. କ. କା—ବିବାହାଗ୍ନିକ—ପୃ ୩୬୮ । (ବ୍ୟାଖ୍ୟାଂଶ ଦେଖ) (୩୪୮) ସା. ମ—ଆଦ୍ୟ—ପୃ ୩୧୨ । (୩୪୯) ସା. ମ—ମଧ୍ୟ—ପୃ ୧୫୧ ।

"ଦଶ ଦୋଷ ଖେମା ଏହାର କରିବ ଅର୍ଜୁନ ।"

(ମୂ. ପୋଥି—ମଧ୍ୟ—ପୃ ୧୫୫ କ) ।

(୩୫୦) ସା. ମ—ମଧ୍ୟ—ପୃ ୨୮୬ । (୩୫୧) ସା. ମ—ଆଦ୍ୟ—ପୃ ୧୭୭ । (୩୫୨) ବ୍. କ. କା—ବିବାହାଗ୍ନିକ—ପୃ ୩୨୩ । (୩୫୩) ଏଜନ୍ (୩୫୪) ଏଜନ୍—ପୃ ୩୨୪ । (୩୫୫) ସଂ. ସ୍କ. ପୁ—କଲ୍ୟାଣ—ପୃ ୫୮-୫୯ । (୩୫୬) ସା. ମ—ମଧ୍ୟ—ପୃ ୧୫୧ ।

'ଅର୍ଘ୍ୟ ବଢ଼ାଇ ବରକନ୍ୟା ନେଲେ ଅନ୍ତପୁରୀ ।'

(ମୂ. ପୋଥି—ମଧ୍ୟ—ପୃ ୧୫୪ଖ)

(୩୫୭) ସା. ମ—ଆଦ୍ୟ—ପୃ ୩୧୩ ।

"ଦ୍ରୌପଦୀ ଦେଖାର ମାତ୍ରା ଅଟେ ପଦ୍ମାବତୀ
ଲକ୍ଷକନ୍ୟା ଘେନ ବର ଶିରେ ଅର୍ଘ୍ୟ ଦ୍ୟନ୍ତି ।"

(୩୫୮) ଦା. ଗ୍ର—ବଳରାମ—ଆଦ୍ଧ—ପୃ ୧୯୯-୨୦୦ । (୩୫୯) ମ. ଭା—ଜଗନ୍ନାଥ ଦାସ—ମଧ୍ୟ—ପୃ ୧୧୧ । (୩୬୦) ପଞ୍ଚମଳା—ନରସିଂହ ସେଣ—ପୃ ୫୦ । (୩୬୧) ରୁ. ବ—କାର୍ତ୍ତିକ ଦାସ—ପୃ ୫୦ । (୩୬୨) ସା. ମ—ଆଦ୍ୟ—ପୃ ୩୧୩ । (୩୬୩) ସା. ମ—ମଧ୍ୟ—ପୃ ୨୮୪ । (ପୃ. ପ୍ର. କଂ) ସା. ମ—ମଧ୍ୟ—ପୃ ୨୮୬ । (ରା. ର. ପ୍ର) (୩୬୪) ସା. ମ—ଆଦ୍ଧ—ପୃ ୧୨୨ । (୩୬୫) ଦା· ଗ୍ର—ବଳରାମ ଦାସ—ଆଦ୍ଧ—ପୃ ୧୯୯-୨୦୦ । (୩୬୫ଅ) ବ୍ର. କ. କା—ବ୍ରହ୍ମାଣ୍ଡଲ୍ଲ—ପୃ ୩୬୯-୩୭୫ । (୩୬୬) ସଂ. ମ—ଅନୁ—୪୪, ୨୫ । (୩୬୭) ସଂ. ମ—ଆଦ୍ୟ—୧୯୭, ୧୧ । (୩୬୮କ) ସଂ. ଗ୍ର—ବାଲ—୭୩, ୨୪ । (୩୬୮ଖ) ପା. ଗୃ. ସୂ—ପାରସ୍କରଗୃହ୍ୟ—ପୃ ୪-୫ । (୩୬୯) ସା. ମ—ଆଦ୍ୟ—ପୃ ୩୧୨ । (୩୭୦) ଏଜନ୍—ପୃ ୧୮୬ । (୩୭୧) ଏଜନ୍—ପୃ ୨୧୨ । (୩୭୨) ଏଜନ୍—ପୃ ୧୨୨ । (୩୭୩) ସା. ମ—ବନ—ପୃ ୧୬୭ । (୩୭୪) ସା. ମ—ମଧ୍ୟ—ପୃ ୧୫୨ । (୩୭୫) ସା. ମ—ବରାଟ—ପୃ ୧୮୩ । (୩୭୬) ଏଜନ୍—ପୃ ୧୮୩—୧୮୪ । (୩୭୭) ଦା. ଗ୍ର—ବଳରାମ ଦାସ—ପୃ ୧୯୯ (ଆଦ୍ଧ) । (୩୭୭) ଭାଗବତ—ଜଗନ୍ନାଥ ଦାସ—୧୦ମ ସ୍କନ୍ଧ (ଦ୍ୱାରକା)—ପୃ ୬୩ । (୩୭୯) ବ୍ର. ସଂ—ରାଜବଲ୍ଲୀ ପାଣ୍ଡେ—ପୃ ୨୭୮ । (୩୮୦) ବ୍ର. କ. କା—ବ୍ରହ୍ମାଣ୍ଡ ଲ୍ଲ—ପୃ ୩୭୫-୩୭୭ । (୩୮୧) ପା. ଗୃ. ସୂ—ପାରସ୍କରଗୃହ୍ୟ—ପୃ ୬ ।

"କୁମାର୍ଯ୍ୟା ଭ୍ରାତାଶମୀପଲ୍ଲଶମିଶ୍ରାଂ ଲ୍ଲାଜାନାଂଜଲୀନା· ଜଳାବାବପତ ।"

(୩୮୨) ସଂ. ମ—ବାଲ—୭୪ଅ । ସଂ. ଗ୍ର—ଆଦ୍ଧ—୧୯୭ଅ । (୩୮୩) କା. ଗ୍ର—୧ମ ଭାଗ—ପୃ ୭୮ । (୩୮୪) ସା. ମ—ଆଦ୍ୟ—ପୃ ୩୧୨ । (୩୮୫) ସା. ମ—ଆଦ୍ୟ—ପୃ ୧୨୨ । (୩୮୬) ସା. ମ—ମଧ୍ୟ—ପୃ ୧୫୨ । (୩୮୭) ସା. ମ.—ବରାଟ—ପୃ ୧୮୩ । (୩୮୮) ଦା. ଗ୍ର—ବଳରାମ ଦାସ—ଆଁଦ୍ଧ—ପୃ ୧୯୯ । (୩୮୯କ) ପଞ୍ଚମଳା—ନରସିଂହ ସେଣ—ପୃ ୪୯ । (୩୮୯ଖ) ରୁ. ବଭ—କାର୍ତ୍ତିକ ଦାସ—ପୃ ୫୦ । (୩୯୦) ବ୍ର. ସଂ—ରାଜବଲ୍ଲୀ ପାଣ୍ଡେ—ପୃ ୨୮୦ । (୩୯୧) ସା. ମ—ମଧ୍ୟ—ପୃ ୧୫୨-୧୫୩ । (୩୯୨) ସା.ମ—ବରାଟ—ପୃ ୯୪ । (୩୯୨କ) ସା. ମ—ଆଦ୍ଧ—ପୃ ୨୧୨ । (ଏକ ଆସନେ ଭୋଜନ କରନ୍ତି ସେ ଦୁଇ ।) (୩୯୩) ପ୍ରା. ଗ. ପ. ଦ—ପ୍ରାଚୀ—ପୃ ୭୮ । (୩୯୪) ରା. ବା—ଅର୍ଜ୍ଜୁନ ଦାସ—ପୃ ୭୮ । (୩୯୫) ଦା. ଗ୍ର—ବଳରାମ ଦାସ—ଆଦ୍ଧ—ପୃ ୨୦୦ । (୩୯୬) ପଞ୍ଚମଳା—ନରସିଂହ ସେଣ—ପୃ ୫୦ । (୩୯୭) ବ୍ର. କ. କା—ପୃ ୩୭୪ । (୩୯୮) ଏଜନ୍—ପୃ ୩୮୧-୩୮୨ । (୩୯୯) ସା. ମ—ଆଦ୍ୟ—ପୃ ୩୧୨ । (୪୦୦) ସା. ମ—ମଧ୍ୟ—ପୃ ୧୫୧ । (୪୦୧) ସା. ମ—ମଧ୍ୟ—ପୃ ୨୮୬ । (୪୦୧କ) ସା. ମ—

ଆଦ୍ୟ—ପୃ ୨୧୨ । (ଘୃତ ପ୍ରାଶନ କଲେକ ବରକନ୍ୟା ବେନ ।) (୪୦୧ଖ) ସା. ମ—ଆଦ୍ୟ—ପୃ ୧୨୨ । (ଘୃତ ପାରଣା କଲେ ସେ ବରକନ୍ୟା ବେନ ।) (୪୦୨) ବି. କ. କା—ବିଦ୍ଧାଗାଲ୍ଲ—ପୃ ୩୫୮ । (୪୦୩) ଏଜନ୍—ପୃ ୩୫୮ (ବ୍ୟାଖ୍ୟା ଭାଗ) (୪୦୪) ସା.ମ—ମଧ୍ୟ—ପୃ ୨୮୨ । (୪୦୫) ଏଜନ୍—ପୃ ୨୮୩—୨୮୪ । (୪୦୬) ଏଜନ୍—ପୃ ୨୮୫-୨୮୬ । (୪୦୭) ପ୍ରା. ଗ. ପ. ଦ—ପ୍ରାଚୀ—ପୃ ୬୮ । (୪୦୮) ଶ. ଉ. ବୋ. ଅ—ଗୋପୀନାଥ ନନ୍ଦ (୧ମଭାଗ)—ପୃ ୧୭୬ । (୪୦୯) ବୃ. ଶ୍ରୀ. ଘ—ଶ୍ରୀନୀଳାସାଗ୍ରଣୀ—ପୃ ୧୭୬ । (୨ୟଭାଗ) (୪୦୯କ) ବି. କ. କା—ବିଦ୍ଧାଗାଲ୍ଲ—ପୃ ୩୨୮ । (୪୦୯ଖ) ଏଜନ—ପୃ ୩୨୯ । (୪୧୦) ସଂ. ମ—ବିରାଟ—୭୨,୭୬ । (୪୧୧) ସା. ମ—ସ୍ୱର୍ଗ—ପୃ ୭ । (୪୧୨) ସା. ମ—ମଧ୍ୟ—ପୃ ୨୮୭ । (୪୧୩) ସା. ମ—ବିରାଟ—ପୃ ୧୮୧ । (୪୧୪) ସା. ମ—ଆଦ୍ୟ—ପୃ ୩୧୦ । (୪୧୫) ସା. ମ—ମଧ୍ୟ—ପୃ ୧୫୦-୧୫୧ ।

ଦ୍ରଷ୍ଟବ୍ୟ—"ବାଜଇ ବିବିଧ ବାଦ୍ୟ ମଧୁର ଶଙ୍ଖଧ୍ୱନି ।"

(ମୂଳ ପୋଥି—ମଧ୍ୟ—ପୃ ୧୫୨ଖ)

ପୋଥିରେ 'ବିଭଗୀତ'ର ଉଲ୍ଲେଖ ମିଳେ ।

(ମୂଳ ପୋଥି—ମଧ୍ୟ—ପୃ ୧୫୨ଖ)

(୪୧୬) ଘ. ବି—ଅର୍ଜୁନ ଦାସ—ପୃ ୭୦-୭୫ । (୪୧୭) କଳ୍ପଲତା—ଅର୍ଜୁନ ଦାସ—ପୃ ୬୭-୬୮ । (୪୧୮) Society—R. M. MacIver P. 18 (୪୧୯) ଋ. ମ—ବିରାଟ—ପୃ ୭୨,୨୮ । (୪୨୦) ଋ. ଘ—ବାଳ—୬୯,୨୯ । (୪୨୧) ଋ. ସ୍କ. ପୁ—କଲ୍ୟାଣ—ପୃ ୫୯ । (୪୨୨) ସ. ମ—ବିରାଟ—ପୃ ୧୮୧ ।

ଦ୍ରଷ୍ଟବ୍ୟ—ପୋଥିରେ ସୁଭଦ୍ରା—ପରିଣୟ ପ୍ରସଙ୍ଗରେ ବିବାହପରେ ଭୋଜନର ବର୍ଣ୍ଣନା ମିଳେ । (ମୂଳ ପୋଥି—ମଧ୍ୟ—ପୃ ୧୫୫କ)

(୪୨୩) ଘ. ବି—ଅର୍ଜୁନ ଦାସ—ପୃ ୭୯ । (୪୨୪) ମ. ସା. ସଂ—ଗୋପୀନାଥ ଦାସ ପୃ ୬୮୧ । (୪୨୫) ଶ୍ରୀ ଭାଗବତ ସୁଧାସାଗର—ଗୀତାପ୍ରେସ—ପୃ ୭୩୬-୭୩୯ । (୪୨୬) ସା. ମ—ବନ—ପୃ ୨୯୨-୨୯୩ । (୪୨୭) ଘ. ମ—ବିରାଟ—ପୃ ୧୮୨ । (୪୨୮) ଭାଗବତ—ଜଗନ୍ନାଥ ଦାସ—୧୦ମସ୍କନ୍ଧ (ଦ୍ୱାରକା)—ପୃ ୬୧ । (୪୨୯) ଦ୍ୱ. ସଂ—ଘଜବଳୀ ପାଣ୍ଡେ—ପୃ ୨୮୧ । ବି. କ. କା—ବିଦ୍ଧାଗାଲ୍ଲ—ପୃ ୩୮୩ । (୪୩୦) ଦ୍ୱ. ସଂ—ଘଜବଳୀ ପାଣ୍ଡେ—ପୃ ୨୮୧ । (୪୩୧କ) ସା. ମ—ବିରାଟ—ପୃ ୧୮୪ । (୪୩୧ଖ) ସା. ମ—ଆଦ୍ୟ—ପୃ ୨୧୨ । (୪୩୧ଗ) ପ୍ରା. ଗ. ପ. ଦ—ପ୍ରାଚୀ—ପୃ ୬୯ । (୪୩୨କ) ଘ. ବି—ଅର୍ଜୁନ ଦାସ—ପୃ ୭୯-୮୬ । (୪୩୨ଖ) ଦା. ଘ—ବଳରାମ—ଆଦ୍ୟ—ପୃ ୨୦୧ । (୪୩୩) ପରିମଳା—ନରସିଂହ ସେଣ—ପୃ ୫୦ । (୪୩୪) ସା. ମ—ମଧ୍ୟ—ପୃ ୨୩୬ । (ଘ. ର. ପୁ ) ସା. ମ—ମଧ୍ୟ—ପୃ ୩୫୧ । (ପୁ. ପ୍ର. ଙ୍କ) (୪୩୫) ସା. ମ—ଆଦ୍ୟ—ପୃ ୩୧୪ । (୪୩୬) ମୂଳ ପୋଥି—ମଧ୍ୟ—ପୃ ୧୫୫କ ।

"ତୁମ୍ଭେ ପାଞ୍ଚଭାଇ ଅଷ୍ଟମଙ୍ଗଳା ସାର ।"

(୪୩୭) ସା. ମ—ମଧ୍ୟ—ପୃ ୨୮୭ । (୪୩୮) ସା. ମ—ଆଦ୍ୟ—ପୃ ୩୨୧ । (ମାଡା ଆଣି ଅର୍ଘ୍ୟ ଦେଲେ ଦ୍ରୌପଦୀର ଶିରେ ।) (୪୩୯) ସା. ମ—ମଧ୍ୟ—ପୃ ୩୫୧ । (ପୃ. ପ୍ର. କଂ). "ବନ୍ଧୁଣର ଘଣୀ ବରକନ୍ୟାଙ୍କୁ ବନ୍ଧାଇ ।" (୪୪୦) ସା. ମ.—ଆଦ୍ୟ ପୃ ୩୨୧ । (୪୪୧କ) "ରଥେ ବସାଇଲେ ସବେ ହୁଳହୁଳି ଦେଇ ।" ସା. ମ—ମଧ୍ୟ—ପୃ ୩୫୧ (ପୃ. ପ୍ର. କଂ) (୪୪୧ଖ) ପୋଥିରେ ନନ୍ଦଘଣୀ ସୁଭଦ୍ରାଙ୍କୁ ବେଶଭୂଷା କରିବା କଥା ଅଛି । ବରକନ୍ୟା ରଥରେ ଗିବାକଥା ମଧ୍ୟ ଏଠାରେ କୁହାଯାଇଛି । (ମୂ. ପୋଥି—ମଧ୍ୟ—ପୃ ୧୫୭ ଖ)

ଦ୍ରୌପଦୀ ମଧ୍ୟ ରଥରେ ବସି ଗମନ କରିଥିଲେ ।
"ଦେବରଥେ ଆରୋହିଲେ କୁନ୍ତୀ ଯେ ପାଞ୍ଚାଳୀ ।"
(ସା. ମ—ଆଦ୍ୟ—ପୃ ୩୨୧).

(୪୪୨) ସା. ମ—ଆଦ୍ୟ—ପୃ ୩୨୧ । (୪୪୩) ଏଜନ—ପୃ ୩୨୨ । (୪୪୩ଅ) ମୂ. ପୋଥି—ମଧ୍ୟ—ପୃ ୧୫୭ କ । ଚନ୍ଦ୍ରାବତୀଙ୍କ ପଡଗୃହ—ଯାହା ଦୃଶ୍ୟରେ ଅଛି—

"ଅନେକ ଝଣାଣ ଢୋଲ ଘନ ଘନ ବାଜେ
ଦ୍ୱାରକା ପୁରକୁ ବଜେ କଲେ ଦେବରାଜେ ।"
(ସା. ମ—ମଧ୍ୟ—ପୃ ୨୮୭).

(୪୪୪) ଗ୍ର. ବ—ଅର୍ଜ୍ଜୁନ ଦାସ—ପୃ ୯୧ । (୪୪୫) ଓ. ସା. ଇ—ସୂ. ନା. ଦାସ—ପୃ ୭୫ । (୧ମ ଖଣ୍ଡ) (୪୪୬) ମ. ସା. ସଂ—ଗୋପୀନାଥ ଦାସ—ଆଦ୍ୟ—ପୃ ୧୭୬, ୧୭୭ । (୪୪୭) ସା. ମ—ଆଦ୍ୟ—ପୃ ୩୨୨ । (୪୪୮) ସା. ମ—ମଧ୍ୟ—ପୃ ୨୮୭ । (୪୪୯) ସା. ମ—ମଧ୍ୟ—ପୃ ୧୫୫ । (ମୂଳ ପୋଥି—ମଧ୍ୟ—ପୃ ୧୫୭ଖ, ପୃ ୧୫୮କ) (୪୫୦) ଗ୍ର. ବ—ଅର୍ଜ୍ଜୁନ ଦାସ—ପୃ ୧୦୪ । (୪୫୧) ଢା. ଗ୍ର—ବଳରାମ—ଆଢ—ପୃ ୨୧୭ । (୪୫୨) ସା. ମ—ମଧ୍ୟ—ପୃ ୧୫୪ । (୪୫୨ଅ) ମୂଳ ପୋଥି—ମଧ୍ୟ—ପୃ ୧୫୭ କ । (୪୫୨ଆ) ସା. ମ—ମଧ୍ୟ—ମୂ ୧୫୪ । ମୂ. ପୋଥି—ମଧ୍ୟ—ପୃ ୧୫୭ଖ । (୪୫୨ଇ) ସା. ମ—ମଧ୍ୟ ପୃ ୨୮୭ । ମୂଳ ପୋଥି—ମଧ୍ୟ—ପୃ ୨୩୧ କ ଓ ଖ । (୪୫୩) ଏଜନ । (୪୫୪କ) ଗ୍ର. ବ—ଅର୍ଜ୍ଜୁନ ଦାସ—ପୃ ୧୦୩ । (୪୫୪ଖ) ମ. ଖ—ଜଗନ୍ନାଥ ଦାସ—ମଧ୍ୟ—ପୃ ୧୨୩ । (୪୫୫) ହ୍. ସଂ—ଗଜବଳୀ ପାଣ୍ଡେ—ପୃ ୨୮୪-୨୮୫ । ବ. କ. କା—ବିଦ୍ୟାଶ୍ରିଲଲ—ପୃ ୩୮୪ । (୪୫୬କ) ବ. କ. କା—ବିଦ୍ୟାଶ୍ରିଲଲ—ପୃ ୩୮୪ (୪୫୬ଖ) ପା. ଗୃ. ସୂ—ପାରସ୍କରଗୃହ୍ୟ—ପୃ ୮ । (୪୫୭) ବ. କ. କା—ବିଦ୍ୟାଶ୍ରିଲଲ—ପୃ ୪୦୩ । (୪୫୮କ) ଏଜନ—ବିଦ୍ୟାଶ୍ରିଲଲ—ପୃ ୪୦୪ । (୪୫୮ଖ) ଏଜନ—ପୃ ୪୦୫ । (୪୫୯) ସା. ମ—ବିରାଟ—ପୃ ୧୮୪ । (୪୬୦) ଏଜନ ।

(୪୬୧) "ଚତୁର୍ଥ ଦିବସେ ହେଲ ଚଉଠି ରଜନୀ
ନଗର ଉତ୍ସବ କଲେ ଦ୍ରୌପଦୀଙ୍କି ଘେନ ।"
(ସା. ମ—ଆଦ୍ୟ—ପୃ ୩୧୪ ।)

(୪୬୨) ନଗର ଉତ୍ସବ ବା ନଗରସ୍ନାନ ଚତୁର୍ଥୀ ରାତର କର୍ମ । ତଣ୍ଡୁଳରେ ନଗର ନିର୍ମାଣ କରି ତା ମଧ୍ୟରେ ଏକ ଶିଳା ରଖାଯାଏ । ଶିଳା ଉପରେ ବରକନ୍ୟା ବସନ୍ତି । ଚାରିଜଣ ବ୍ରାହ୍ମଣ ଚାରିପଟରେ ତଣ୍ଡୁଳପୂର୍ଣ୍ଣ କଳସୀ ଧରି ଠିଆ ହୁଅନ୍ତି । ସେମାନେ ମନ୍ତ୍ର ପଢ଼ି ବରକନ୍ୟାଙ୍କ ଉପରେ ତଣ୍ଡୁଳ ବର୍ଷଣ କରନ୍ତି । ଏହାହିଁ ନଗରସ୍ନାନ ବା ନଗର ଉତ୍ସବ । (ବି. କ. କା—ବିହାରୀଲାଲ—ପୃ ୪୦୦)

(୪୬୩) ସା. ମ—ମଧ୍ୟ—ପୃ ୧୫୩ ।

"ଚତୁର୍ଥୀ ସପ୍ତମଙ୍ଗଳା ଉତ୍ସବ ବିଧାନ
ଶେଷ କରି ଗଲେ ପୁଣି ଯେ ଯାହା ଭୁବନ ।"

ଦ୍ରଷ୍ଟବ୍ୟ—ପୋଥିରେ ସୁଭଦ୍ରା—ବିବାହ ଦୃଶ୍ୟରେ ଚଉଠି କଥା ଅଛି ।

ଯଥା—"ଚଉଠି ଉତ୍ସବ କରନ୍ତି ମିଳିଣ ସକଳ ।"
(ମୂଳ ପୋଥି—ମଧ୍ୟ—ପୃ ୧୫୫ଖ)

(୪୬୪) ସା. ମ—ଆଦ୍ୟ—ପୃ ୩୧୪ (୪୬୫) ସା. ମ—ବିରାଟ—ପୃ

ପୋଥିରେ ଚଉଠି ଦିନର ଉତ୍ସବ ପ୍ରସଙ୍ଗରେ ବର୍ଣ୍ଣିତ ହୋଇଛି—

"ଗଜମୋତି ଚୂର୍ଣ୍ଣ ନିର୍ମାଣ କଲେ ଗୁଣ୍ଡି
ତାହା ଯେ ଲେପନ କଲେ ବସି ବାରଦଣ୍ଡି ।"
"ଅଗୁରୁ ଚନ୍ଦନ କର୍ପୂର ସୁରଙ୍ଗ ହଳଦି ।"
"ତୃତୀୟେ ପରିହାସ ହୋଏକ ଯେକଣ କସ୍ତୁରୀ
ଚତୁର୍ଥେ ପରିହାସ କରନ୍ତି ଧୂଳି ମଣ୍ଡମରି ।"
(ମୂ. ପୋଥି—ମଧ୍ୟ—ପୃ ୧୫୫ଖ)

(୪୬୪) ସା. ମ—ଆଦ୍ୟ—ପୃ ୩୧୪ । (୪୬୫) ସା. ମ—ବିରାଟ—ପୃ ୮୪ ।

ଦ୍ରଷ୍ଟବ୍ୟ—ଏହି ବର୍ଣ୍ଣନାରେ ଅଛି ଯେ, ଚଉଠି-ଉତ୍ସବ ବହୁ ରାତି ପର୍ଯ୍ୟନ୍ତ ଚାଲିଲା । ତାପରେ ରାତି ପାହି ପ୍ରଭାତ ହେଲା । ପ୍ରଭାତପରେ ହଳଦୀ ଓ ଚନ୍ଦନାଦି ପରସ୍ପର ବୋଳି ହେଲେ । ଏଥିରୁ ଅନୁମିତ ହୁଏ ଯେ, ପଞ୍ଚମ ଦିନ ହିଁ ଉତ୍ସବ ହୋଇଥିଲା ।

(୪୬୬) ଚନ୍ଦ୍ର ବନ୍ଦାପନା କର୍ମ ଆଠମଙ୍ଗଳା ପରେ ଶୁକ୍ଳପକ୍ଷ ତୃତୀୟାରେ କରିବା ବିଧି । (ବି. କ. କା—ପୃ ୪୦୪) କିନ୍ତୁ ତାହା ସାତମଙ୍ଗଳା ଦିନ ପାଳନ କରିଯିବା କଥା କହନ୍ତି । (୪୬୭) ସା. ମ—ଆଦ୍ୟ—ପୃ ୩୧୪ । (୪୬୭କ) ସା. ମ—ଆଦ୍ୟ—ପୃ ୩୧୪ । (ଅଷ୍ଟମ ଦିବସେ ଅଷ୍ଟମଙ୍ଗଳାଙ୍କୁ ବରି ।)

ଦ୍ରଷ୍ଟବ୍ୟ—ଆଠମଙ୍ଗଳା କଥା ସୁଭଦ୍ରା—ପରିଣୟ ପ୍ରସଙ୍ଗରେ ପୋଥିରେ ଅଛି । ଯଥା—"ତୁମ୍ଭେ ପାଞ୍ଚଭାଇ ଅଷ୍ଟମଙ୍ଗଳା ସାରି ।" (ମୂ. ପୋଥି—ମଧ୍ୟ—ପୃ ୧୫୫କ)

(୪୬୮) ପ୍ରା. ଗ. ପ. ଦର୍ଶ—ପ୍ରାଚୀ—ପୃ ୬୧ । (୪୬୯) ମ. ସା. ସଂ—ଗୋପୀନାଥ—ପୃ ୬୮୧ । (୪୭୦) Marriage and Family—E. Schmiedeler—P. 39 (୪୭୧) Ibid—P. 2 (୪୭୨) ଉ. ସଂ—ଦୁର୍ଗାଦାସ ଲାହିଡ଼ୀ—ସଂଖ୍ୟା ୫୩

—ପୃ ୧୫୦୬—୧,୩୧,୮ । (୪୭୩) ଘ. ସଂ—ଦୁର୍ଗାଦାସ ଲାହିଡ଼ୀ—ସଂଖ୍ୟା ୯—ପୃ ୨୬୫—୩,୧୯,୧ । (୪୭୪) ସା. ସଂ—ଦୁର୍ଗାଦାସ ଲାହିଡ଼ୀ—ସଂଖ୍ୟା ୭—ପୃ ୧୪୧—୧,୧,୬,୪ । (୪୭୫) ସଂ. ମ—ଅନୁ—୪୫,୯ । (୪୭୬) ଦା. ଗ—ସୀତାରାମ ଚତୁର୍ବେଦୀ—ପୃ ୨—୧,୭ । (୪୭୭) ସା, ମ—ଆଦ୍ୟ—ପୃ ୬୦—୬୧ । (୪୭୮) ସା. ମ—ସଭା—ପୃ ୩୨ । (୪୭୯) ସା. ମ—ଆଦ୍ୟ—ପୃ ୪୯ । (୪୮୦) ସା. ମ—ଆଦ୍ୟ—ପୃ ୪୯, ପୃ ୯୨ ।

(୪୮୧) "ଯେ ଭାରଯା କଲ ଯେବେ ନୋହିଲ ସନ୍ତତି
ଆନ କନ୍ୟା କର୍ମା ବାଣ୍ଡ ନୋହିଲ ହେ ଯତି ।"
(ସା. ମ—ଆଦ୍ୟ—ପୃ ୪୮ ।)

ଦ୍ରଷ୍ଟବ୍ୟ—ପୁତ୍ର ନ ହେଲେ ପୁରୁଷ ଅନ୍ୟ ସ୍ତ୍ରୀ ଗ୍ରହଣ କରିପାରେ ବୋଲି କବି ସାନୁମତୀ-ଉପଖ୍ୟାନରେ ଦର୍ଶାଇଛନ୍ତି । ସେଠାରେ ଅଛି—"କରିବ ଅନ୍ୟ ସ୍ତ୍ରୀ ପୁତ୍ର ସୁଖ ପାଇଁ ।" (ମୂ. ପୋଥି—ମଧ୍ୟ—ପୃ ୧୧୫ଖ) ।

(୪୮୨) ରୁ. ସୁ. ହ—ନା. ନ. ଅ. ସ୍ୱାମୀ—ପୃ ୪୩ । (୪୮୩) ଭାଗବତ—ଜଗନ୍ନାଥ ଦାସ—ଷଷ୍ଠସ୍କନ୍ଧ—ପୃ ୬୭ । (୪୮୪) ଏଜନ୍—ତୃତୀୟସ୍କନ୍ଧ—ପୃ ୧୦୬ । (୪୮୫) ଶ୍ରୀ. ଭାଗବତ—(ସଂ)—୭,୪୦ । (୪୮୬) ମନୁ—୯,୮୧ । (୪୮୭) ସା. ମ—ସଭା—ପୃ ୨୫୩ । ସା. ମ—ଆଦ୍ୟ—ପୃ ୬୯ । (୪୮୮) ସା. ମ—ଆଦ୍ୟ—ପୃ ୨୧୯ । (୪୮୯) ଏଜନ—ପୃ ୪୯ । (୪୯୦) ସା. ମ—ସଭା—ପୃ ୩୨ । (୪୯୧) ସା. ମ—ଆଦ୍ୟ—ପୃ ୯୧ । (ସପମଜା ପୁରେ ଯମଶାସ୍ତି ତାକୁ ହିଏ ।) (୪୯୨) ଦା. ଗ—ବଲରାମ—ଆଦ—ପୃ ୧୦ । (୪୯୩) ସଂ. ମ—ଆଦ—୭୪,୯୮ । (୪୯୪) ସଂ. ମ—ଆଦ—୭୪,୩୯ । ଶ୍ରୀ. ଭାଗବତ—(ସଂ)—୨,୭,୯ । (୪୯୫) ସଂ. ନା. ବ. ପୁ—କଲ୍ୟାଣ—ପୃ ୧୩୬ । (୪୯୬) ସଂ. ବ୍ର. ବୈ. ପୁ—କଲ୍ୟାଣ—ପୃ ୪୪ । (୪୯୭) ସା. ମ—ଆଦ୍ୟ—ପୃ ୯୧ । (ସନ୍ତାନ ଥିଲେ ତାକୁ ନଦଣ୍ଡେ ଯମଦେବ ।) (୪୯୮) ସା. ମ—ଆଦ୍ୟ—ପୃ ୪୭ । ସଭା—ପୃ ୪ । ସଭା—ପୃ ୩୬୧ । (୪୯୯) ଦା. ଗ—ବଲରାମ—ଆଦ—ପୃ ୧୦ । (୫୦୦) ଭାଗବତ—ଜଗନ୍ନାଥ ଦାସ—୧୦ମସ୍କନ୍ଧ (ଗୋପ)—ପୃ ୩୫ । (୫୦୧) Marriage and Family—E. Schmiedeler—P. 8. (୫୦୨) ଶ୍ରୀ. ଭାଗବତ—(ସଂ)—୭,୧୨,୧୧ । ବ. ପୁ—୩,୮,୨୪—୨୫ । (୫୦୩) ବ. ପୁ—୪,୧୧,୧୨୩—୧୨୪ । (୫୦୪) ସଂ. ରା—ଅରଣ୍ୟ—୩୮,୩୦ । (୫୦୫) ସଂ. ମ—ଅନୁ—୧୨୯,୧ । (୫୦୬) ପରାଶର—୧୦,୫—୧୪ । (୫୦୭) ମନୁ—୮,୩୫୨ । (୫୦୮) ସଂ. ମା. ବ୍ର. ପୁ—କଲ୍ୟାଣ—ପୃ ୫୬୧ । (୫୦୯) ଏଜନ୍—ପୃ ୧୨୧ । (୫୧୦) ର୍ର. ସଂ—ଦୁର୍ଗାଦାସ ଲାହିଡ଼ୀ—ସଂଖ୍ୟା ୫୬—ପୃ ୧୬୧୯ (ଟୀକାଭାଗ) (୫୧୧) ମନୁ—୮,୩୭୧ । (୫୧୨) 'ଅଙ୍କୁଁନ ବୋଇଲେ ପରସ୍ତ୍ରୀ ମୋର ମାତା ।' (ସା. ମ—ମଧ୍ୟ—ପୃ ୧୧୯) (୫୧୩) ସା. ମ—ବନ—ପୃ. ୨୩୭ । (ଏହି ଉକ୍ତି ପୋଥିରେ ନାହିଁ । ମୂ. ପୋଥି—ବନ୨ୟ—ପୃ ୧୦୯କ) (୫୧୪)

ସା. ମ.—ଆଦ୍ୟ—ପୃ.୧୫୩ । (୫୧୫) ଦା.ରା—ବଳରାମ—ଅରଣ୍ୟ—ପୃ ୩୪ । (୫୧୬) ଭାଗବତ—ଜଗନ୍ନାଥ ଦାସ—୧ମସ୍କନ୍ଧ—ପୃ ୭୯ । (୫୧୭) ଦା. ରା—ବଳରାମ—ଆଦ— ପୃ ୨୦୪ । (୫୧୮) ସା. ମ.—ମଧ୍ୟ—ପୃ ୧୨୮ । (୫୧୯) ସା. ମ—ବନ—ପୃ ୧୩୮ ।

ଦ୍ରଷ୍ଟବ୍ୟ—ପୋଥିରେ ଅଛୁ—"ସ ଦାରାଏ ଯଉ ସଦାସାଏ ସଉ
ଶାସ୍ତ୍ର ସଙ୍ଗତେ ପଣ୍ଡାଏ ଏସନକ ଖଉ ।"
(ମୂ. ପୋଥି—ବନ୧ମ—ପୃ ୨୧୪ଖ, ୨୧୫କ)

(୫୨୦) ସା. ମ.—ବନ—ପୃ ୧୩୬—୧୩୯ । ମୂ. ପୋଥି—ବନ୧ମଭାଗ—ପୃ. ୨୧୫କ । (୫୨୧) ସା. ମ.—ଆଦ୍ୟ—ପୃ ୫୧-୫୨ । (୫୨୨) ଭାଗବତ—ଜଗନ୍ନାଥ ଦାସ—୧୦ମସ୍କନ୍ଧ (ଗୋପ)—ପୃ ୧୬୬ ।

---

## ଦ୍ୱିତୀୟ ଅଧ୍ୟାୟ

# ନାରୀର ସ୍ଥାନ

ନାରୀ ସନ୍ତାନର ଜନନୀ, ପାଳନ କାରିଣୀ ଓ ପ୍ରଥମ ଶିକ୍ଷାଦାତ୍ରୀ । ସେ ପୁରୁଷର ସହଧର୍ମିଣୀ, ପରିବାରର ସର୍ବମୟୀ କର୍ତ୍ତ୍ରୀ ଓ ଗୃହିଣୀ । ମାତାର ସ୍ନେହ, ସେବା ଓ ଯତ୍ନବଳରେ ଶିଶୁ ହୁଏ ମଣିଷ । ସମାଜର ପରମ୍ପରାକୁ ନାରୀ ପ୍ରବହମାନ କରେ ଓ ଉଦ୍‌ଜୀବିତ କରି ରଖେ । ସେ ପତ୍ନୀ, କନ୍ୟା ଓ ମାତା ରୂପରେ ପୁରୁଷର ଜୀବନକୁ ଅନୁପ୍ରାଣିତ କରେ ଏବଂ ସ୍ୱାର୍ଥକୁ ବିସର୍ଜନ ଦେଇ ତାହାର କଲ୍ୟାଣକାରିଣୀ ହୁଏ । ତେଣୁ କୌଣସି ଦେଶର ସଭ୍ୟତା ସମ୍ବନ୍ଧରେ ଜ୍ଞାନଲାଭ କରିବାକୁ ହେଲେ ପ୍ରଥମେ ସେ ଦେଶରେ ନାରୀଜାତିର ସାମାଜିକ ସ୍ଥାନ ଓ ସମ୍ମାନ ବିଚାର କରିବା ଆବଶ୍ୟକ । (୧)

ପ୍ରାଚୀନ ଭାରତରେ ନାରୀଜାତିର ସ୍ଥାନ ଉଚ୍ଚ ସ୍ତରରେ ଥିବାର ଜଣାଯାଏ । ବୈଦିକ କାଳରେ ପତି-ନିର୍ବାଚନ କ୍ଷେତ୍ରରେ ନାରୀର ଅଧିକାର ରହିଥିଲା । ସେ ନୃତ୍ୟଗୀତ, ଭୋଜିଭାତ ଓ ସାମାଜିକ ଉତ୍ସବରେ ଯୋଗ ଦେଇପାରୁଥିଲା । (୨) ନାରୀ ଧର୍ମକାର୍ଯ୍ୟରେ ଯୋଗ ନଦେଲେ ତାହା ଅସିଦ୍ଧ ବିବେଚିତ ହେଉଥିଲା । (୩) ଯଜ୍ଞରେ ମଧ୍ୟ ନାରୀମାନେ ଭାଗ ନେବା ନିମିତ୍ତ ଅଧିକାର ପ୍ରାପ୍ତ ହୋଇଥିଲେ । (୪) ନର-ନାରୀ ପରିଣତ ବୟସରେ ବିବାହ କରୁଥିଲେ ଏବଂ ସେଥିପାଇଁ ପିତାମାତା ବା ଭ୍ରାତା କାହାରି ଅନୁମତି ଗ୍ରହଣ କରିବା ଦରକାର ହେଉନଥିଲା । (୫) ବିବାହିତା ନାରୀ ପରିବାରର ଭୌତିକ ପ୍ରୟୋଜନ, ସୌଖ୍ୟ ତଥା ସମ୍ପଦର ଦାୟିତ୍ୱ ବହନ କରୁଥିଲେ । (୬) ନାରୀ-ଜାତିର ନୈତିକତା ଉଚ୍ଚ ଥିଲା ଏବଂ ବାଲ୍ୟବିବାହ ଅଜ୍ଞାତ ଥିଲା । (୭) କନ୍ୟାବସ୍ଥାରୁ ଆରମ୍ଭ କରି ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ସମାଜରେ ସେମାନଙ୍କର ଉଚ୍ଚ ସମ୍ମାନ ରହିଥିଲା । (୮) ବୌଦ୍ଧିକ କ୍ଷେତ୍ରରେ ନାରୀଜାତି ପାରଦର୍ଶିତା ଲାଭ କରିଥିଲେ ଏବଂ ସେମାନେ ବୈଦିକ ମନ୍ତ୍ର ରଚନା କରିପାରୁଥିଲେ । (୯) ପାଣିନିଙ୍କ କାଳରେ ଶିକ୍ଷା କ୍ଷେତ୍ରରେ ସେମାନଙ୍କର ସମ୍ମାନିତ ସ୍ଥାନ ଥିଲା । ସେମାନେ ଶିକ୍ଷା କେନ୍ଦ୍ରରେ ପ୍ରବିଷ୍ଟା ହୋଇ ମୀମାଂସା ଓ ବ୍ୟାକରଣ ଭଳି କଠିନ

ଶାସ୍ତ୍ରମାନ ଆଯ୍ୱତ୍ତ କରିପାରୁଥିଲେ । (୧୦) ପାଣିନଙ୍କ ଯୁଗରେ ପରଦା ପ୍ରଥା ପ୍ରଚଳିତ ନଥିଲା । ସେତେବେଳେ ମଧ୍ୟ ଯୁବତୀ-ବିବାହର ରୀତି ଥିଲା । ନାରୀଗଣ ପତି-ନିର୍ବାଚନ ବିଷୟରେ ସ୍ୱାଧୀନ ଥିଲେ । (୧୧) ପାତଞ୍ଜଳିଙ୍କ ଯୁଗରେ ସେମାନେ ଚଳାଚଳରେ ସ୍ୱାଧୀନତା ଲାଭ କରିଥିଲେ ଏବଂ ପରଦା ପ୍ରଥା ନଥିଲା । (୧୨) ଆର୍ଯ୍ୟମାନେ ଭାରତକୁ ଆଗମନ କରିବାର ବହୁ ଶତାବ୍ଦୀ ପର୍ଯ୍ୟନ୍ତ ନାରୀଜାତି ପ୍ରଭୂତ ସ୍ୱାଧୀନତା ଉପଭୋଗ କରିଆସୁଥିଲେ ଏବଂ ସେ କାଳ ସେମାନଙ୍କ ପାଇଁ ସୁବର୍ଣ୍ଣ ଯୁଗ ଥିଲା । (୧୩)

ମଧ୍ୟଯୁଗର ପ୍ରାରମ୍ଭରୁ (୧୦୦୦ ଖ୍ରୀଷ୍ଟାବ୍ଦ) ଉତ୍ତର-ଭାରତରେ ରାଜନୈତିକ କାରଣରୁ ନାରୀଜାତିର ଅଧୋଗତି ପରିଦୃଷ୍ଟ ହେବାକୁ ଲାଗିଲା । ମୁସଲମାନମାନଙ୍କର ବାରମ୍ବାର ଆକ୍ରମଣ ଫଳରେ ମୋଗଲ-ଯୁଗ ପର୍ଯ୍ୟନ୍ତ ଯେଉଁ ରାଜନୈତିକ, ସାମାଜିକ ତଥା ଆର୍ଥିକ ଦୁଃସ୍ଥିତି ଉପସ୍ଥିତ ହେଲା, ତାହାର ପରିଣାମରେ ନାରୀଜାତି ପରଦା ବରଣ କଲେ, ସେମାନଙ୍କର ଶିକ୍ଷାଦୀକ୍ଷା ବନ୍ଦ ହୋଇଗଲା ଏବଂ ସ୍ୱାଧୀନତା ଅପହୃତ ହେଲା । (୧୪) ଦକ୍ଷିଣ-ଭାରତରେ ସେତେବେଳେ ରାଜନୈତିକ ଅସ୍ଥିରତା ନ ଥିବାରୁ ସେଠାରେ ନାରୀଜାତିର ଅଧୋଗତି ବିଶେଷଭାବରେ ଦେଖାଦେଇ ନଥିଲା । (୧୫)

ମଧ୍ୟଯୁଗର ଆଦି ଭାଗରେ (୧୨୦୬ ଖ୍ରୀଷ୍ଟାବ୍ଦଠାରୁ ୧୫୨୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ) ଭାରତରେ ନାରୀର ସ୍ଥାନ ପ୍ରାଚୀନ କାଳ ତୁଳନାରେ ହ୍ରାସପ୍ରାପ୍ତ ହୋଇ-ଥିଲା । ନାରୀଜାତିର ଅଧୋଗତିର କାରଣ ସ୍ୱରୂପ ରାଜପରିବାର ତଥା ସାମନ୍ତ ପରିବାରମାନଙ୍କରେ ବହୁପତ୍ନୀ ଗ୍ରହଣ, ପରଦା ଓ ବାଲ୍ୟ-ବିବାହ ପ୍ରଥା ପ୍ରଚଳିତ ଥିଲା । ବିଧବାମାନଙ୍କର ପୁନର୍ବିବାହରେ ଅଧିକାର ନଥିଲା । ସେମାନେ ସନ୍ନ୍ୟାସିନୀର ଜୀବନ ଅତିବାହିତ କରୁଥିଲେ । ଦ୍ୱିଜୋତ୍ତର ଜାତିରେ ପରଦା ପ୍ରଥା ଦେଖା-ଯାଉ ନଥିଲା ଏବଂ ସେହି ସମାଜରେ ନାରୀମାନେ ସ୍ୱେଚ୍ଛାରେ ପ୍ରେମ ଓ ବିବାହ କରିପାରୁଥିଲେ । କେତେକ ପରିମାଣରେ କନ୍ୟାଜନ୍ମକୁ ଦୁର୍ଭାଗ୍ୟ ବୋଲି ବିବେଚନା କରାଯାଉଥିଲା । (୧୬) ନାରୀଜାତି ମଧ୍ୟରେ ଅଶିକ୍ଷା ଓ ଅନ୍ଧ-ବିଶ୍ୱାସର ପ୍ରଭାବ ମଧ୍ୟ ରହିଥିଲା । (୧୭) ସେ ଯୁଗରେ ସତୀପ୍ରଥା କେତେକ ସ୍ଥଳରେ ପ୍ରଚଳିତ ଥିଲା । (୧୮) ଏହା ସତ୍ତ୍ୱେ ସମାଜରେ ସେମାନଙ୍କୁ ସମ୍ମାନଜନକ ସ୍ଥାନ ପ୍ରଦାନ କରାଯାଉଥିଲା । ପରିବାର ମଧ୍ୟରେ ନାରୀର ସର୍ବମୟ କର୍ତ୍ତୃତ୍ୱ ରହିଥିଲା । ତାହାର ବିନା ସହଯୋଗରେ ଧର୍ମକାର୍ଯ୍ୟ ଅନୁଷ୍ଠିତ ହୋଇପାରୁନଥିଲା । ନାରୀ-

ଜାତିର ଶିକ୍ଷା ପାଇଁ ବ୍ୟବସ୍ଥା କରାଯାଉଥିଲା ଏବଂ ସେମାନଙ୍କ ମଧ୍ୟରୁ କେତେକ ବିଦୁଷୀ ମହିଳା ମଧ୍ୟ ବାହାରିଥିଲେ । ସ୍ତ୍ରୀସମାଜ ମଧ୍ୟରେ ସଙ୍ଗୀତ, ନୃତ୍ୟ ଓ ଚିତ୍ରକଳାର ଶିକ୍ଷା ପ୍ରଚଳିତ ଥିଲା ଏବଂ ସେମାନଙ୍କ ମଧ୍ୟରୁ ଅନେକେ କଳାବିଦ୍ୟାରେ ନୈପୁଣ୍ୟ ହାସଲ କରିଥିଲେ । (୧୯) ପାରିବାରିକ ଜୀବନ ସ୍ଥୂଳତଃ ସୁଖମୟ ଥିଲା ଏବଂ ପତି-ପତ୍ନୀଙ୍କ ମଧ୍ୟରେ ସ୍ନେହ, ସମ୍ମାନ ଓ ସଦିଚ୍ଛା ବିଦ୍ୟମାନ ଥିଲା । (୨୦)

ମୁସଲମାନ ଆକ୍ରମଣ ଓ ରାଜନୈତିକ ଅସ୍ଥିରତା ନାରୀସମାଜର ଅଧୋଗତିର କାରଣ ବୋଲି ଗ୍ରହଣ କରାଯାଏ । (୨୧) କିନ୍ତୁ ଉତ୍କଳରେ ଗଜପତି କପିଳେନ୍ଦ୍ର ଦେବ ଓ ପୁରୁଷୋତ୍ତମ ଦେବଙ୍କ ଶାସନକାଳରେ ମୁସଲମାନମାନଙ୍କ ଆକ୍ରମଣ ପ୍ରତିହତ ହୋଇଥିଲା ଏବଂ ଶାନ୍ତି ତଥା ସୁଶାସନ ପ୍ରତିଷ୍ଠିତ ଥିଲା । (୨୨) ସାଧାରଣତଃ ସାମାଜିକ ଚିନ୍ତାକ୍ଷେତ୍ରରେ ନେତୃତ୍ୱର ଅଭାବକୁ ନାରୀଜାତିର ଅଧୋଗତିର କାରଣ ବୋଲି ବିବେଚନା କରାଯାଏ । (୨୩) ଓଡ଼ିଶାରେ ସେକାଳରେ ଏହି ନେତୃତ୍ୱର ଅଭାବ ନଥିଲା । କପିଳେନ୍ଦ୍ର ଦେବଙ୍କ ଯୁଗରେ ନୃସିଂହ ବାଜପେୟୀ, ନାରାୟଣ ମିଶ୍ର ଓ ଜଳେଶ୍ୱର ମିଶ୍ରଙ୍କ ଭଳି ପଣ୍ଡିତମାନେ ଆବିର୍ଭୂତ ହୋଇଥିଲେ । (୨୪) ପୁରୁଷୋତ୍ତମ ଦେବଙ୍କ କାଳରେ ବହୁ ପଣ୍ଡିତ ଥିଲେ । (୨୫) ସେମାନଙ୍କ ରଚନାବଳୀ ସାମାଜିକ ଚିନ୍ତା-ଜଗତରେ ନେତୃତ୍ୱ ପ୍ରଦାନ କରୁଥିଲା । ସୁତରାଂ ଶାରଳା ଦାସଙ୍କ ଯୁଗରେ ନାରୀର ସମ୍ମାନ ହ୍ରାସ ହେବାର କୌଣସି ରାଜନୈତିକ ତଥା ସାମାଜିକ କାରଣ ବିଦ୍ୟମାନ ନଥିଲା ।

ଶାରଳା ଦାସଙ୍କ ମହାଭାରତରେ ବର୍ଣ୍ଣିତ ନାରୀଜାତିର ଉନ୍ନତ ଆଲେଖ୍ୟ ଏହାର ପ୍ରମାଣ । 'ଶାରଳା ମହାଭାରତ'ର ସବିଶେଷ ଆଲୋଚନା କଲେ ଉପଲବ୍ଧି ହୁଏ ଯେ, ପଞ୍ଚଦଶ ଶତାବ୍ଦୀରେ ଉତ୍କଳୀୟ ସମାଜ, ପରିବାର ତଥା ଶିକ୍ଷା-ସଂସ୍କୃତିର କ୍ଷେତ୍ରରେ ନାରୀଜାତିର ସ୍ଥାନ ଓ ସମ୍ମାନ ହ୍ରାସପ୍ରାପ୍ତ ହୋଇ ନଥିଲା । ନିମ୍ନଲିଖିତ ଆଲୋଚନାରୁ ଏହି ଉକ୍ତିର ସତ୍ୟତା ପ୍ରତିପାଦିତ ହେବ ।

## ୧. ଘରସଂସାରରେ ନାରୀର ଭୂମିକା :

ଗୃହସ୍ଥାଶ୍ରମ ଓ ପରିବାର ମଧ୍ୟରେ ନାରୀର ସ୍ଥାନ ଓ ସମ୍ମାନ ଯୁଗେ ଯୁଗେ ପ୍ରତିଷ୍ଠା ଲାଭ କରିଆସିଅଛି । ନାରୀ ଘରସଂସାର କର୍ତ୍ତ୍ରୀ ଓ ପତିର ସାହାଯ୍ୟକାରିଣୀ ଭାବରେ ପ୍ରାଚୀନ କାଳରୁ ସ୍ୱୀକୃତ ହୋଇଥିବାର ପରିଦୃଷ୍ଟ ହୁଏ ।

ଋଗ୍‌ବେଦ ଯୁଗରେ ବିବାହିତା ନାରୀର ହସ୍ତରେ ପରିବାରର ସମସ୍ତ ଦାୟିତ୍ୱ ଅର୍ପଣ କରାଯାଉଥିଲା ଏବଂ ସେ ଶିଶୁ ତଥା ବୃଦ୍ଧ ସମସ୍ତଙ୍କର ଅଭିଭାବକ ରୂପରେ କାର୍ଯ୍ୟ କରୁଥିଲା । (୨୬) ଭାର୍ଯ୍ୟା ଧର୍ମାନୁଷ୍ଠାନରେ ସ୍ୱାମୀଙ୍କ ସହିତ ଯୋଗ ଦେଉଥିଲା ଏବଂ ତାହାଙ୍କର ସମସ୍ତ ଦାୟିତ୍ୱ ପାଳନରେ ସହାୟତା ପ୍ରଦାନ କରୁଥିଲା । (୨୭) 'ସଂସ୍କୃତ ମହାଭାରତ'ରେ ଭାର୍ଯ୍ୟାକୁ ପୁରୁଷର ଅର୍ଦ୍ଧେକ ଓ ସଖା ବୋଲି ବର୍ଣ୍ଣନା କରାଯାଇଅଛି । (୨୮) ବ୍ୟାସଦେବ କହିଛନ୍ତି—ଧର୍ମ, ଅର୍ଥ ଓ କାମ ଆଦି ପ୍ରତ୍ୟେକ ଦିଗରେ ଭାର୍ଯ୍ୟା ପୁରୁଷର ସହାୟିକା । ରୋଗ ଓ ବିପଦରେ ତାହାଠାରୁ ବଳି ବଡ଼ ଔଷଧ ନାହିଁ । (୨୯) ତାଙ୍କ ମତରେ ଗୃହିଣୀହୀନ ପରିବାର ଅରଣ୍ୟ-ସମାନ । (୩୦) 'ଭାଗବତ'ରେ ଭାର୍ଯ୍ୟାକୁ କାମଧେନୁ ଆଖ୍ୟା ଦିଆଯାଇ-ଅଛି । (୩୧)

## (କ) ନାରୀର ପାରିବାରିକ ଦାୟିତ୍ୱ ପାଳନ :

ଭାରତୀୟ ପରିବାରରେ ନାରୀ ଗୃହିଣୀ ରୂପରେ ସମସ୍ତ ପାରିବାରିକ ଦାୟିତ୍ୱ ବହନ କରେ । ପ୍ରାଚୀନ ଯୁଗରେ ଗୃହର ସବୁ ଦାୟିତ୍ୱ ବହନ କରିବା ତାର କର୍ତ୍ତବ୍ୟ ଥିଲା । (୩୨) ବାତ୍ସ୍ୟାୟନ ତେଣୁ କହିଛନ୍ତି—ଭାର୍ଯ୍ୟା ଗୃହ ପରିଷ୍କାର କରିବ, ଗୃହ-ଦେବତାଙ୍କୁ ପୂଜା ଦେବ, ଉଦ୍ୟାନର ଯତ୍ନ ନେବ, ସ୍ୱାମୀର ଭୋଜନ-ଚର୍ଚ୍ଚା କରିବ । (୩୩) 'ସଂସ୍କୃତ ମହାଭାରତ'ରେ ବର୍ଣ୍ଣନା କରାଯାଇଅଛି ଯେ, ପାଣ୍ଡବ-ପତ୍ନୀ ଦ୍ରୌପଦୀ ରାଜରାଣୀ ହୋଇ ମଧ୍ୟ ପତିସେବାଠାରୁ ଆରମ୍ଭ କରି ଗୃହର ପରିଷ୍କାର-ପରିଚ୍ଛନ୍ନତା ପର୍ଯ୍ୟନ୍ତ ସମସ୍ତ ଦାୟିତ୍ୱ ପାଳନ କରୁଥିଲେ । ସେ ସ୍ୱାମୀ ତଥା ସେମାନଙ୍କର ସେବକମାନଙ୍କୁ ସ୍ନାନ କରାଉଥିଲେ, ବାସନ ପରିଷ୍କାର କରୁଥିଲେ, ଶସ୍ୟାଦିର ସଂଚୟ କରୁଥିଲେ ଏବଂ ଭୋଜନ ପ୍ରସ୍ତୁତ କରି ପରିବେଷଣ କରୁଥିଲେ । (୩୪)

ପଞ୍ଚଦଶ ଶତାବ୍ଦୀରେ ଉତ୍କଳୀୟ କୁଳବଧୂଗଣ ଏତାଦୃଶ ଗୃହସୁଲଭ କର୍ମମାନ ସମ୍ପାଦନ କରି ସୁଗୃହିଣୀତ୍ୱର ପରିଚୟ ଦେଇଥିଲେ । ଶାରଳା ଦାସଙ୍କ ମହାଭାରତରୁ ଜଣାଯାଏ ଯେ, ସେ କାଳରେ ସୁଗୃହିଣୀର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ଥିଲା—ନିଜ ହସ୍ତରେ ରନ୍ଧନ କରି ସ୍ୱାମୀକୁ ଭୋଜନ କରାଇବା । ଏହାର କେତେକ ଦୃଷ୍ଟାନ୍ତ କବି-ଲେଖମାରେ ପରିଦୃଷ୍ଟ ହୁଏ । ବନଭୂମିରେ କୁନ୍ତୀ ଓ ମାଦ୍ରୀ ପାକ ସଂପାଦନ କରି ପଣ୍ଡୁଙ୍କୁ ଭୋଜନ କରାଉଥିଲେ ।

"ପଣ୍ଡୁ ବୋଇଲେ ଆମ୍ଭଙ୍କୁ ବଡ଼ କ୍ଷୁଧା ଲଗେ
ଦ୍ୱିଗୁଣ କରି ରନ୍ଧଣା କର ଯାଇ ବେଗେ ।
କୁନ୍ତୀ ମାଦ୍ରୀ ଦୁହେଁ ମିଶି ପାକ ସଜ୍ଜା କଲେ
କବାଟ କଲ ନଦୀକି ସ୍ନାନ ଅର୍ଥେ ଗଲେ ।" (୩୫)

ପାଣ୍ଡବ-ପତ୍ନୀ ଦ୍ରୌପଦୀ ଏହିଭଳି ରନ୍ଧନ କାର୍ଯ୍ୟ କରି ପତିମାନଙ୍କର ଭୋଜନ-ଚର୍ଚ୍ଚା କରୁଥିଲେ । ସତ୍ୟଭାମାଙ୍କ ଆଗରେ ସେ ତାହା ପ୍ରକାଶ କରିଥିଲେ ।

"ନ କରଇ ବ୍ରତ ମୁହିଁ ସୂପକାର-ବିଧି
ନିତ୍ୟେ ହେଁ ଜାଣଇ ମୁହିଁ ରନ୍ଧଣା ପ୍ରସିଦ୍ଧି । (୩୬)

ମାତା ମଧ୍ୟ ରନ୍ଧନ କରି ପୁତ୍ରମାନଙ୍କୁ ଭୋଜନ କରାଉଥିଲେ । ଶିବ-ପୁରରେ ବିଷ୍ଣୁକର ପଣ୍ଡାଙ୍କ ଘରେ ରହିଥିବାବେଳେ କୁନ୍ତୀ ଦେବୀ ନିଜେ ଧାନ କୁଟି ଚଉଳ ପ୍ରସ୍ତୁତ କରୁଥିଲେ ଏବଂ ପୁତ୍ରମାନଙ୍କୁ ରନ୍ଧନ କରି ଖୁଆଉଥିଲେ ।

"ନିତି ଷାଠିଏ ପଉଟି କୁଟିବି ଯେ ଏକା
ଭୁଲେ ମୋର ବାବୁ କେହି ଜଣେ ନାହିଁ ଶାଖା ।" (୩୭କ)
"ରାତ୍ରରେ ଭିକ୍ଷା ମାଗନ୍ତି ଗ୍ରାମେ ପାଞ୍ଚଜଣ
ଯେ ତଣ୍ଡୁଳ ମିଳେ କୁନ୍ତୀ କରନ୍ତି ରନ୍ଧନ ।
ଅର୍ଦ୍ଧେକ ଅନ୍ନ ନେଇ ସେ ଭୀମଙ୍କୁ ଦିଅନ୍ତି
ଆଉ ଅର୍ଦ୍ଧେ ପାଞ୍ଚଜଣ ଭୋଜନ କରନ୍ତି ।" (୩୭ଖ)

ପୁତ୍ରମାନେ ବିବାହ କଲା ପରେ ରନ୍ଧନର ଦାୟିତ୍ୱ ନବବଧୂଙ୍କ ଉପରେ ନ୍ୟସ୍ତ ହେଉଥିଲା ଏବଂ ମାତା କେବଳ ପରିବେଷଣର ଦାୟିତ୍ୱ ଗ୍ରହଣ କରୁଥିଲେ । ଧର୍ମଯଜ୍ଞକାଳରେ ଶ୍ରୀକୃଷ୍ଣ ଓ ସ୍ୱାମୀମାନଙ୍କ ପାଇଁ ନବବଧୂ ଦ୍ରୌପଦୀ ରନ୍ଧନ କରିଥିଲେ ଏବଂ କୁନ୍ତୀ ସେମାନଙ୍କର ଭୋଜନବେଳେ ପରିବେଷଣ କରିଥିଲେ । (୩୮) କୁରୁକଶାଳରେ କୁନ୍ତୀ ପୁତ୍ରମାନଙ୍କୁ ଅନ୍ନ ପରିବେଷଣ କରିଥିଲେ । (୩୯)

ନାରୀ ସ୍ୱହସ୍ତରେ ରନ୍ଧନ କରି ଅତିଥିସେବା କରିବା ଦେଖାଯାଉଥିଲା । କୃପୀଙ୍କ ଘରକରଣା ଚିତ୍ରରୁ ଏହା ସ୍ପଷ୍ଟ । ଦ୍ରୋଣଙ୍କ ପତ୍ନୀ କୃପୀ ନିଜ ହାତରେ ଭାତ ରାନ୍ଧି ଦ୍ରୁପଦ ରାଜାଙ୍କ ସୈନ୍ୟମାନଙ୍କୁ ଭୋଜନ ଦେଉଥିଲେ ।

"ଏକ ହାଣ୍ଡିକରେ ଘୃତ ହାଣ୍ଡିଏ ରାନ୍ଧଲେ
ଥାଟକୁ ଅଣ୍ଟଇ ନ ସରଇ ପରଷିଲେ ।
ସେହି ମାହେଶ୍ୱରୀ ଅନ୍ନ ଦେଉଥାନ୍ତି ନିତି
ଆନନ୍ଦରେ ସର୍ବେ ଖାଇ ଲଭନ୍ତି ତୃପତି ।" (୪୦)

ସତ୍ୟଭାମା ପ୍ରଭୃତି ମଧ୍ୟ ଅତିଥି ଅର୍ଜ୍ଜୁନ ଓ ସ୍ୱାମୀ ଶ୍ରୀକୃଷ୍ଣଙ୍କର ଭୋଜନ-ଚର୍ଚ୍ଚା କରିବା ବୃତ୍ତାନ୍ତ କବି ଦର୍ଶାଇଅଛନ୍ତି ।

"ଖାଷ୍ଟକନନ୍ଦନୀ ଆବର ପାଟବଂଶୀ
ସୁବର୍ଣ୍ଣ ଥାଳରେ ଆଣି ଅନ୍ନ ପରଷନ୍ତି ।
ଘୃତ ଆଣି ପରଷନ୍ତି ଦେବୀ କମଳିଣୀ
ଭୂମିରେ ପିତୃଲୋକଙ୍କୁ ଦେଇ ଅନ୍ନପାଣି ।" (୪୧)

ଭାର୍ଯ୍ୟା ତାହାର ଏହି ପ୍ରାଥମିକ ଦାୟିତ୍ୱ ପ୍ରତି ଉଦାସୀନ ହେଲେ ସମାଜରେ ନିନ୍ଦିତ ହେଉଥିଲେ ଏବଂ ଅନେକ ସମୟରେ ଏତାଦୃଶ ପରିସ୍ଥିତି ଦାମ୍ପତ୍ୟ-ଜୀବନକୁ ଛାରଖାର କରିଦେଉଥିଲା । କବି-ବର୍ଣ୍ଣିତ ଗଙ୍ଗା-ଶାନ୍ତନୁଙ୍କର ଦାମ୍ପତ୍ୟ-ଜୀବନ ଏହାର ଉଦାହରଣ । ଗଙ୍ଗା ଦେବୀ ତାଙ୍କର ସ୍ୱାମୀ ଶାନ୍ତନୁଙ୍କୁ ଯଥାସମୟରେ ଭୋଜନ ଦେଉ ନଥିଲେ । ସେ ପତିଙ୍କର ଭୋଜନର କୌଣସି ଯତ୍ନ ନେଉ ନଥିଲେ । ସେଥିପାଇଁ ଉଭୟଙ୍କର ଜୀବନ ଦୁଃଖମୟ ହେଲା ଏବଂ ଶେଷରେ ଗଙ୍ଗା ଦେବୀ ପତିଗୃହ ତ୍ୟାଗ କରିବାକୁ ବାଧ୍ୟ ହେଲେ । (୪୨)

ଶାରଳା ଦାସଙ୍କ ଆଦର୍ଶ ଓଡ଼ିଆ ଜାତିର ଆଦର୍ଶ ଥିଲା । କୋଣାର୍କ ମନ୍ଦିରର ଶିଳ୍ପୀ ପ୍ରସ୍ତରବକ୍ଷରେ ଗୃହିଣୀର ଅନ୍ନ-ରନ୍ଧନର ଦୃଶ୍ୟ ପ୍ରକାଶ କରିଥିବାର ପରିଦୃଷ୍ଟ ହୁଏ । (୪୩) 'ଶଶିସେଣା' କାବ୍ୟର ନାୟିକା ରନ୍ଧନ କାର୍ଯ୍ୟରେ ନିଯୁକ୍ତା ହେବାର ଶବ୍ଦ ମଧ୍ୟ ନିହିତ । (୪୪)

ସ୍ୱାମୀସେବା ସହିତ ଭୃତ୍ୟମାନଙ୍କର ଚର୍ଚ୍ଚା କରିବା ଏବଂ ଗୃହର ଅନ୍ୟାନ୍ୟ ଦାୟିତ୍ୱ ଗ୍ରହଣ କରିବା ସେ କାଳରେ ସୁଗୃହିଣୀର କର୍ତ୍ତବ୍ୟ ଥିଲା । ଦ୍ରୌପଦୀଙ୍କ ଚରିତ୍ରରେ କବି ତାହା ପ୍ରଦର୍ଶନ କରିଅଛନ୍ତି । ଦ୍ରୌପଦୀ ପ୍ରତ୍ୟହ ରନ୍ଧନ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ପତିସେବା ଓ ଧାଈ-ପରିବାରୀମାନଙ୍କର ଚର୍ଚ୍ଚା କରୁଥିଲେ । ଏପରିକି ଅଶ୍ୱଶାଳ ଓ ଗଜଶାଳର ତତ୍ତ୍ୱାବଧାନ କରିବା ତାଙ୍କର ଦୈନନ୍ଦିନ କର୍ତ୍ତବ୍ୟର ଅନ୍ତର୍ଭୁକ୍ତ ଥିଲା ।

"ମୋହର କର୍ମରେ ଜାଣ ଅଛୁଁ ପାଞ୍ଚପତି
ବିପ୍ରର ଖଟଇ ମୁହିଁ ତାହାଙ୍କ ପ୍ରକୃତି ।
ନିତି ସାଧମତେ ମୁହିଁ କରେ ତାଙ୍କ କର୍ମ
ପଞ୍ଚପତି ସେବୁଥାଏ ଚିନ୍ତି ଦେବଧର୍ମ ।

× × × ×

ଏକଶତ ଅଛନ୍ତି ମୋ ଧାଈ ପରିବାରୀ
ସର୍ବ ଚରଚଇ ମୁହିଁ ନିତ୍ୟକର୍ମ ସାରି ।
ଅଶ୍ୱଶାଳ ଗଜଶାଳ ସବୁ ଲଗେ ଚିନ୍ତା
ଏକାନ୍ତେ ଆରାଧି ଥାଇ ମୁହିଁ ପତିଭକ୍ତା ।" (୪୫)

ଗୃହର ଯାବତୀୟ କର୍ମ ଯଦି ପୁରୁଷ ଉପରେ ନ୍ୟସ୍ତ ହେଉଥିଲା, ତେବେ ତାହା ଅତୀବ ନିନ୍ଦନୀୟ ତଥା ପାପକର୍ମ ରୂପରେ ସମାଜରେ ବିବେଚନା କରାଯାଉଥିଲା । ଭାରଦା ବୃତ୍ତାନ୍ତରେ ଏହି କଥାଟି କବି ପ୍ରଦର୍ଶନ କରିଅଛନ୍ତି । ଭାରଦା ନିଜ ଗୃହରେ ରନ୍ଧନାଦି ସମସ୍ତ କାର୍ଯ୍ୟ ସଂପାଦନ କରିବା ସଙ୍ଗେ ସଙ୍ଗେ ସ୍ତ୍ରୀର ସାଜ-ଶୃଙ୍ଗାର ମଧ୍ୟ କରୁଥିଲା । (୪୬) ତେଣୁ ଭାରଦା ଓ ତାହାର ସ୍ତ୍ରୀ ଉଭୟେ ସମାଜରେ ନିନ୍ଦିତ ହେଉଥିଲେ ।

"ଭାଳଇ ମାରୁତି କଲା କେଡ଼େ ବଡ଼ କୃତ୍ୟ
ଏଡ଼େ ପାପୀର ଛୁଇଁବି କେମନ୍ତେ ମୁଁ ଗାତ୍ର ।" (୪୭)

ଶାରଳା ଦାସଙ୍କ ଅନ୍ୟତମ କୃତି 'ଲକ୍ଷ୍ମୀ ନାରାୟଣି ବଚନିକା'ରେ ସ୍ୱାମୀ ସ୍ତ୍ରୀର ସେବା କଲେ କଷ୍ଟ ପାଏ ବୋଲି ମଧ୍ୟ କୁହାଯାଇଛି ।

"ଗୀରସ୍ତ ହୋଇ ଯେବେ ଭାରିଜାଂକୁ
କରଇଂ ସେବା
ସଉଚବନ୍ତ ଥାଉଂ ସେ ଅନେକ
କଷ୍ଟ ହିଂ ପାଇବା ।" (୪୮କ)

ଶାଶୁ-ଶଶୁରଙ୍କ ସେବା ମଧ୍ୟ ବଧୂର ଅନ୍ୟତମ ପାରିବାରିକ କର୍ମ ଥିଲା । ଦ୍ରୌପଦୀଙ୍କ ମାତା କନ୍ୟା-ବିଦାୟ କାଳରେ ଶାଶୁ-ଶଶୁରଙ୍କ ସେବା କରିବା ନିମିତ୍ତ ତାହାକୁ ଉପଦେଶ ଦେଇଥିଲେ । (୪୮ଖ) ଅର୍ଜ୍ଜୁନ ଦାସଙ୍କ 'ରାମବିଭା' କାବ୍ୟରେ ଜନକଙ୍କ ପତ୍ନୀ ସୀତା ଦେବୀଙ୍କୁ ଶାଶୁ-ଶଶୁର ଓ ପତିସେବା ନାରୀର କର୍ତ୍ତବ୍ୟ ବୋଲି ବୁଝାଇବା ବୃତ୍ତାନ୍ତ ପରିଦୃଷ୍ଟ ହୁଏ । (୪୯) 'ଦାଣ୍ଡି ରାମାୟଣ'ରେ

ସୀତା-ବିବାହ ପ୍ରସଙ୍ଗରେ ଶାଶୂ ତଥା ସ୍ୱାମୀଙ୍କ ସେବା ନାରୀର କର୍ତ୍ତବ୍ୟ ବୋଲି କଥିତ ହୋଇଅଛି । (୫୦କ) ଆଧୁନିକ କବି ଗଂଗାଧର ମେହେର ଲେଖିଛନ୍ତି—

"ସ୍ୱାମୀ ଗୁରୁ ସ୍ୱାମୀ ପରମ ବାନ୍ଧବ
ସ୍ୱାମୀସେବା ନାରୀ-ଧର୍ମ,
ସ୍ୱାମୀପଦେ ଭକ୍ତି ଅର୍ଚ୍ଚନାରେ ମତି
ଅର୍ପି ତୁ କରିବୁ କର୍ମ ।
× × ×
ଶାଶୁଙ୍କ ଚରଣ ସେବୁଥିବୁ ନିତି
ଗୃହର ଦେବତା ମଣି,
ଶାଶୁଟି ସ୍ୱାମୀର ପୂଜା-ସିଂହାସନ
ସର୍ବ-ସଂପଦର ଖଣି ।" (୫୦ଖ)

## (ଖ) ପାରିବାରିକ ସମ୍ବନ୍ଧ ପ୍ରତିଷ୍ଠା :

ଗୋଟିଏ ସଂଯୁକ୍ତ ପରିବାର ଭାଙ୍ଗିଯିବାର ପ୍ରଧାନ କାରଣ ହେଉଛି— ପରିବାରରେ ରହୁଥିବା ନାରୀମାନଙ୍କର କଳହ । (୫୧) ତେଣୁ ନବବଧୂ ତାହାର ସ୍ୱାମୀଙ୍କ ପ୍ରତ୍ୟେକ ସଂପର୍କୀୟ ନରନାରୀଙ୍କ ସହିତ ଉତ୍ତମ ଓ ଯଥାଯଥ ବ୍ୟବହାର ପ୍ରଦର୍ଶନ କରିବା ଆବଶ୍ୟକ । ବାତ୍ସ୍ୟାୟନ କହନ୍ତି—ଭାର୍ଯ୍ୟା ତାହାର ଗୁରୁ, ଭୃତ୍ୟ ଓ ସ୍ୱାମୀଙ୍କ ଭଗିନୀ ଆଦିଙ୍କ ସହ ଉତ୍ତମ ବ୍ୟବହାର କରିବା ଉଚିତ । (୫୨)

ଶାରଳା ଦାସଙ୍କ ଯୁଗରେ ଉତ୍କଳୀୟ କୁଳବଧୂଗଣ ନିଜ ପରିବାରର ବିଭିନ୍ନ ନରନାରୀଙ୍କ ସହିତ କିପରି ସୌହାର୍ଦ୍ଦ୍ୟ ପ୍ରଦର୍ଶନ କରୁଥିଲେ, ତାହାର ଆଲେଖ୍ୟ କବି-ଲେଖନୀରେ ନିହିତ । କବି-ଲେଖନୀରୁ ଜଣାଯାଏ ଯେ ସେ କାଳରେ ନାରୀ ତାହାର ନଣନ୍ଦମାନଙ୍କ ପ୍ରତି ସ୍ନେହ ଓ ସହାନୁଭୂତି ପ୍ରଦର୍ଶନ କରୁଥିଲା । ସତ୍ୟଭାମା, ରେବତୀ ଓ ମାୟାବତୀଙ୍କ ଚରିତ୍ରରେ ଏହାର ଦୃଷ୍ଟାନ୍ତ ମିଳେ । ସତ୍ୟଭାମା ସୁଭଦ୍ରାଙ୍କ ନିବେଦନ ଅନୁସାରେ ଶ୍ରୀକୃଷ୍ଣଙ୍କ ଅନୁମତି ନେଇ ତାହାଙ୍କୁ ଅର୍ଜ୍ଜୁନଙ୍କ ସହ ଗୁପ୍ତରେ ମିଳିତ କରାଇବା ପାଇଁ ଯୋଜନା କରାଇଥିଲେ । (୫୩) ଅର୍ଜ୍ଜୁନ-ସୁଭଦ୍ରାଙ୍କ ପ୍ରଣୟକୁ ପ୍ରତ୍ୟାଖ୍ୟାନ କରିବାକୁ ସତ୍ୟଭାମା ପ୍ରଦ୍ୟୁମ୍ନ-ପତ୍ନୀ ମାୟାବତୀଙ୍କୁ ଗଦମନ୍ତ୍ର ପ୍ରୟୋଗ କରିବାକୁ ପରାମର୍ଶ ଦେଇଥିଲେ । (୫୪)

ସୁଭଦ୍ରା ମାୟାବତୀଙ୍କଠାରୁ ଉଲୁକ-ବିଦ୍ୟାବି ଶିଖିଲା ପରେ ସେ ପୁଣି ତାଙ୍କୁ ନେଇ ଅର୍ଜ୍ଜୁନଙ୍କ ଶୟନ-କକ୍ଷ ନିକଟରେ ଉପନୀତ କରାଇଥିଲେ । (୫୫) ସୁଭଦ୍ରାଙ୍କ ସହିତ ଅର୍ଜ୍ଜୁନଙ୍କ ବିବାହ ପାଇଁ ସେ ସତତ ଯତ୍ନଶୀଳା ଥିଲେ । ସୁଭଦ୍ରା ଅର୍ଜ୍ଜୁନଙ୍କର ପ୍ରେମ ଲାଭ କରିବା କାର୍ଯ୍ୟରେ ଅକୃତକାର୍ଯ୍ୟ ହୋଇ ବ୍ୟଥିତା ହେଲେ । ସେତେବେଳେ ସତ୍ୟଭାମା ହିଁ ତାଙ୍କୁ ଆଶ୍ୱାସନା ପ୍ରଦାନ କରିଥିଲେ । (୫୬) ବଳରାମଙ୍କ ପତ୍ନୀ ରେବତୀ ସୁଭଦ୍ରା-ଅର୍ଜ୍ଜୁନଙ୍କ ଗୁପ୍ତ ମିଳନ ବିଷୟ ଅବଗତ ହେଲା ପରେ କ୍ରୋଧ ପ୍ରକାଶ କରି ନଥିଲେ । ସେ ବରଂ ପରାମର୍ଶ ଦେଇଥିଲେ ଯେ ଅର୍ଜ୍ଜୁନ ସୁଭଦ୍ରାଙ୍କୁ ନେଇ ଦ୍ୱାରକାପୁରରୁ ଚାଲିଯାଆନ୍ତୁ । ବଳରାମଙ୍କୁ ସମସ୍ତ ଘଟଣା ବୁଝାଇ ଶାନ୍ତ କରିବେ ବୋଲି ସେ ପ୍ରତିଶ୍ରୁତି ପ୍ରଦାନ କରିଥିଲେ । (୫୭) ରେବତୀ ଓ ଶ୍ରୀକୃଷ୍ଣଙ୍କ ପତ୍ନୀମାନେ ନଣନ୍ଦ ସୁଭଦ୍ରାଙ୍କୁ ନେଇ ଜଳକେଳି କରିଥିଲେ । ସେମାନେ ତାହାଙ୍କୁ ମଧୁର ଓ ସ୍ନେହପୂର୍ଣ୍ଣ ହାସ-ପରିହାସଦ୍ୱାରା ଆନନ୍ଦ ପ୍ରଦାନ କରିଥିଲେ । (୫୮) ସ୍ନେହର ବଶବର୍ତ୍ତୀ ହୋଇ ସେମାନେ ପ୍ରତ୍ୟେକ ବିବାହ କାଳରେ ସୁଭଦ୍ରାଙ୍କୁ ଯୌତୁକ ଦେଇଥିଲେ । (୫୯)

ସପତ୍ନୀମାନଙ୍କ ପ୍ରତି ଆଦର ଭାବ ପ୍ରଦର୍ଶନ କରିବା ସେ ଯୁଗରେ ନାରୀର ଆଦର୍ଶ ଥିଲା । ଦ୍ରୌପଦୀଙ୍କ ଚରିତ୍ରରେ ଶାରଳା ଦାସ ତାହା ଦେଖାଇ ଅଛନ୍ତି । କବିଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ଅର୍ଜ୍ଜୁନ ସୁଭଦ୍ରାଙ୍କୁ ବିବାହ କରିବା ଦ୍ୱାରା ଦ୍ରୌପଦୀଙ୍କ ମନରେ ଅସୂୟା ବା ବିମର୍ଷ ଭାବ ଜାଗ୍ରତ ହୋଇ ନ ଥିଲା । ସେ ଭାନୁମତୀ ଓ କୁନ୍ତୀଙ୍କ ସହ ସୁଭଦ୍ରାଙ୍କୁ ବନ୍ଦାପନା କରିଥିଲେ । (୬୦) କୁନ୍ତୀ ଓ ମାଦ୍ରୀଙ୍କ ମଧ୍ୟରେ ମଧ୍ୟ ସଦ୍‌ଭାବ ଥିଲା । ଦୁହେଁ ବନଭୂମିରେ ମିଳିମିଶି ରନ୍ଧନ କାର୍ଯ୍ୟ କରୁଥିଲେ । (୬୧କ) କୁନ୍ତୀ ମାଦ୍ରୀଙ୍କୁ ଦୁର୍ବାସାଙ୍କଠାରୁ ପାଇଥିବା ଜପାମାଳି ପ୍ରଦାନ କରିଥିଲେ ଏବଂ ତାହା ଫଳରେ ମାଦ୍ରୀ ଅଶ୍ୱିନୀକୁମାରଙ୍କ ଔରସରୁ ପୁତ୍ର ଲାଭ କଲେ । (୬୧ଖ)

କୌଣସି କୌଣସି ସ୍ଥଳରେ ସପତ୍ନୀ-ସୁଲଭ ହିଂସା ଓ କଳହ ବି ଦେଖାଯାଉଥିଲା । କିନ୍ତୁ ତାହା ସମାଜରେ ନିନ୍ଦନୀୟ ବିବେଚିତ ହେଉଥିଲା । ଦ୍ରୌପଦୀଙ୍କ ପ୍ରତି ଭୀମ-ପତ୍ନୀ ହିଡ଼ିମ୍ବିକାଙ୍କର ହିଂସାଭାବ ରହିଥିଲା । ହିଡ଼ିମ୍ବିକା ଘଟୋତ୍କଚଙ୍କୁ ଧର୍ମଯଜ୍ଞକୁ ଗଲାବେଳେ ଉପଦେଶ ଦେଇ କହିଥିଲେ ଯେ, ଭୀମ-ସେନ, ବାସୁଦେବ ଓ ଯୁଧିଷ୍ଠିରଙ୍କ ବ୍ୟତୀତ ଆଉ କେହି ନମସ୍ୟ ନୁହନ୍ତି । (୬୨) ଘଟୋତ୍କଚ ମାତାଙ୍କର ଏତାଦୃଶ ଉପଦେଶ ଅଧର୍ମ ଓ ହିଂସା-ପ୍ରଣୋଦିତ ବୋଲି

ଉପଲବ୍‌ଧି କରିଥିଲେ; କାରଣ ସ୍ୱଉଦ୍ଧିକା ଦ୍ରୌପଦୀଙ୍କୁ ନମସ୍କାର କରିବା ପାଇଁ କହି ନ ଥିଲେ :

"ଘଟୋତ୍କଚ ବୋଲେ ମାତା ଅଧର୍ମ କହିଲୁ
ହିଂସା ପ୍ରାୟେ କରି ମାତ ମୋତେ ନରୋଧିଲୁ ।
ଯୁଧିଷ୍ଠିରଙ୍କ କୋଳେ ଥିବ ଦ୍ରୁପଦଦୁହିତା
ନମସ୍କାର କଲେ ତାଙ୍କୁ ଲକ୍ଷେକ ନୃପତି ।
ବ୍ରାହ୍ମଣ ରଜାର ସେହୁ ଅଟଇ କୁମାରୀ
ଯଜ୍ଞୁ ଜାତ ସେ ଅନାଦି ଦେବୀ ମାହେଶ୍ୱରୀ ।
ଯୁଧିଷ୍ଠି ଦେବଙ୍କଠାରୁ ଅଟେ ଗରୁ ଅଂଶୀ
ସେ କୋପ କରିଲେ ଅଙ୍ଗ ହୋଇଯିବ ଧ୍ୱଂସି ।
ତୋର ତାଙ୍କଠାରେ ଅଛୁ ସପତଣୀ-ହିଂସା
ତେଣୁ କରି ନ ଗୁଡ଼ିଲୁ କଳଙ୍କ ମମାଷା ।"(୬୩)

ଶାରଳା ଦାସଙ୍କ ଯୁଗରେ ଉତ୍କଳୀୟ ନାରୀମାନେ ତାଙ୍କର ନିକଟ-ସଂପର୍କୀୟା ନାରୀମାନଙ୍କ ପ୍ରତି ଉତ୍ତମ ବ୍ୟବହାର ପ୍ରଦର୍ଶନ କରି ଆଦର୍ଶ ଗୃହିଣୀର ପରିଚୟ ଦେଉଥିଲେ । କୁନ୍ତୀ ଓ ଗାନ୍ଧାରୀଙ୍କ ଚରିତ୍ରରୁ ଏହା ଉପଲବ୍‌ଧି ହୁଏ । ଗାନ୍ଧାରୀ ଅନ୍ଧପଟଳ ଗ୍ରହଣ କରିବା ସମ୍ବାଦ ପାଇବାମାତ୍ରେ କୁନ୍ତୀ ବନ-ଭୂମିରୁ ହସ୍ତିନାକୁ ଆଗମନ କଲେ । ସେ ତାହାଙ୍କୁ ନାନା ଭାବରେ ବୁଝାଇ ଅନ୍ଧପଟଳ ଖୋଲିଦେବା ନିମିତ୍ତ ଅନୁରୋଧ କରିଥିଲେ । (୬୪) କୁନ୍ତୀ ଗାନ୍ଧାରୀଙ୍କୁ କପରି ସ୍ନେହ କରୁଥିଲେ ତାହା ବାନପ୍ରସ୍ଥ ଦୃଶ୍ୟରୁ ଅବଧାରିତ ହୁଏ । ଗାନ୍ଧାରୀ ବାନପ୍ରସ୍ଥ ଆଚରଣ କରିବାର ଦେଖି କୁନ୍ତୀ ମଧ୍ୟ ତାଙ୍କ ସଙ୍ଗରେ ଯିବାପାଇଁ ଆଗଭର ହେଲେ :

"ଗାନ୍ଧାରୀ ଯାଉଛି ବାନପ୍ରସ୍ଥେ ବଂଶ ତେଜି
ମୁହିଁ ଏଥି ଥାଇ କମ୍ପା ପାପେ ଥିବ ମଜ୍ଜି ।
ବାଳୁତ କାଳରୁ ଆମ୍ଭେ ଅଟୁ ବେନି ସଖୀ
ସେ ଦୁଃଖ ପାଇଲେ ଅମ୍ଭେ କମ୍ପା ହେବୁ ସୁଖୀ ।" (୬୫)

ଗାନ୍ଧାରୀ ମଧ୍ୟ କୁନ୍ତୀଙ୍କ ପ୍ରତି ସହାନୁଭୂତିଶୀଳା ଥିଲେ । ପଣ୍ଡୁଙ୍କର ମୃତ୍ୟୁ-ସମ୍ବାଦ ପ୍ରାପ୍ତ ହୋଇ ସେ ଅବିଳମ୍ବେ ଶତଶୃଙ୍ଗ ପର୍ବତକୁ ଯାତ୍ରା କଲେ । (୬୬) ସେ ତାହାଙ୍କୁ ହସ୍ତିନାର ଅନ୍ତଃପୁରରେ ବାସ କରିବାକୁ ଅନୁରୋଧ ଜଣାଇଲେ

ଏବଂ କୋଳ କରି ଆଶ୍ୱାସନା ଦେଲେ । (୬୭) ଗାନ୍ଧାରୀ ନିଜ ପୁତ୍ର ତଥା ରାଜ୍ୟକୁ ତାଙ୍କ ହସ୍ତରେ ସମର୍ପଣ କରିବାକୁ କୁଣ୍ଠା ପ୍ରକାଶ କରି ନ ଥିଲେ :

"ଅନ୍ଧ ଅନ୍ଧୁଣୀ ଆମ୍ଭେ ହୋଇଲୁ ନିଷ୍ଫଳ
ସବୁ ପୁଅଙ୍କୁ ମାତା ତୁ ଯତ୍ନେ ପ୍ରତିପାଳ ।
ଯେତେ କାଳ ବଞ୍ଚିଥିବୁ ଆମ୍ଭେ ବେନି ପ୍ରାଣୀ
ତୁ ସେ ପାଞ୍ଚ ରାଜ୍ୟରେ ଯେ ହୋଇବୁ କାରେଣୀ ।
ଏକମାତ୍ର ପଣ୍ଡୁକୁ ଯେ ଦେଇ ନ ପାରିବ
ତୋହର ଆଜ୍ଞା ପାଳି ମୁଁ ଥିବ ତୋତେ ସେବ ।" (୬୮)

ଜତୁଗୃହରେ ପାଣ୍ଡବମାନଙ୍କ ସହ କୁନ୍ତୀ ନିହତ ହେବା ସମ୍ବାଦ ତାହାଙ୍କୁ ଦୁଃଖାନଳରେ ଦଗ୍ଧୀଭୂତ କରିଥିଲା । ସେ କରୁଣ ଭାବରେ କ୍ରନ୍ଦନ କଲେ :

"ମୁହିଁ ତ ବସିଅଛୁ ଗୋ ହୋଇଣ ଅନ୍ଧୁଣୀ
ଏ ପଞ୍ଚ କଣ୍ଟକେ ସିନା ତୁହି ଠାକୁରାଣୀ ।
କାହାକୁ ସମର୍ପି ଗଲୁ ଏତେକ ସଂପଦ
ମେଣ୍ଟି ନ ପାରିଲୁ ତୁହି କର୍ମର ବିପଦ ।" (୬୯)

ବେଳେ ବେଳେ ଦୁଇ ଭ୍ରାତୃଜାୟାଙ୍କ ମଧ୍ୟରେ କଳହ ମଧ୍ୟ ହେଉଥିଲା । ଶାରଳା ଦାସ କୁନ୍ତୀ ଓ ଗାନ୍ଧାରୀଙ୍କ ଶିବପୂଜା ପ୍ରସଙ୍ଗରେ ଏହାର ଏକ ଦୃଷ୍ଟାନ୍ତ ପରିବେଷଣ କରିଛନ୍ତି । ଗାନ୍ଧାରୀଙ୍କ ପୂର୍ବରୁ କୁନ୍ତୀ ବିରାଜେଶ୍ୱର ଶିବଙ୍କ ପୂଜା ସମାପନ କରିଥିଲେ । ତାହା ଦେଖି ଗାନ୍ଧାରୀ ଅସନ୍ତୁଷ୍ଟ ହୋଇଉଠିଲେ ଓ କୁନ୍ତୀଙ୍କୁ ଭର୍ତ୍ସନା କଲେ । ଉଭୟଙ୍କ ମଧ୍ୟରେ କିଏ ଆଗ ଶିବଙ୍କୁ ପୂଜା କରିବ, ସେ ବିଷୟରେ ପ୍ରବଳ ପ୍ରତିଦ୍ୱନ୍ଦ୍ୱିତା ଦେଖାଦେଲା । ଯେ ପ୍ରଥମେ ସହସ୍ର କନକ-ଚମ୍ପାରେ ଶିବଙ୍କୁ ଆରାଧନା କରିପାରିବ, ଶିବ ତାଙ୍କର ହେବେ ବୋଲି ଉଭୟେ ପ୍ରତିଜ୍ଞାବଦ୍ଧ ହେଲେ । କୁନ୍ତୀ ପ୍ରଥମେ ଅର୍ଜୁନ ଓ ଇନ୍ଦ୍ରଙ୍କ ସାହାଯ୍ୟରେ ସହସ୍ର କନକ-ଚମ୍ପା ନେଇ ଶିବଙ୍କ ପୂଜା ସମାପନ କରି ପ୍ରତିଯୋଗିତାରେ ଜିଣିଲେ । (୭୦କ) ଗାନ୍ଧାରୀ ପଛରେ ଆସି ତାହା ଦେଖି ଲଜ୍ଜିତ ହେଲେ । (୭୦ଖ)

## (ଗ) ପରାମର୍ଶ ଓ ସାହାଯ୍ୟଦାନ :

ନାରୀର କର୍ତ୍ତବ୍ୟ କେବଳ ପାରିବାରିକ କର୍ମରେ ସୀମିତ ହୋଇ ରହେ ନାହିଁ । ସେ ପୁରୁଷକୁ ଆବଶ୍ୟକ ସ୍ଥଳରେ ପରାମର୍ଶ ପ୍ରଦାନ କରେ ଏବଂ ପୁରୁଷର ଅଭୀଷ୍ଟ ସାଧନ ପଥରେ ସହାୟିକା ହୁଏ । 'ସଂସ୍କୃତ ମହାଭାରତ'ରେ ଏହାର ଉଦାହରଣ ମିଳେ । ଗାନ୍ଧାରୀ ସତତ ଧୃତରାଷ୍ଟ୍ରଙ୍କୁ ପୁତ୍ରମାନଙ୍କୁ ପ୍ରଶ୍ରୟ ନ ଦେବା ପାଇଁ ପରାମର୍ଶ ପ୍ରଦାନ କରୁଥିଲେ । (୭୧) ଭାରତୀୟ ସମାଜରେ ଏହା ହିଁ ଆଦର୍ଶ ଥିଲା । ପ୍ରସିଦ୍ଧ ପରିବ୍ରାଜକ ଆଲ୍‌ବରୁଣୀ ଲେଖିଛନ୍ତି ଯେ, ତାଙ୍କ କାଳରେ ଭାରତୀୟ ହିନ୍ଦୁମାନେ ସମସ୍ତ କାର୍ଯ୍ୟରେ ' ନିଜ ପତ୍ନୀର ପରାମର୍ଶ ଗ୍ରହଣ କରୁଥିଲେ । (୭୨ କ) 'ବ୍ରହ୍ମାଣ୍ଡ ପୁରାଣ'ରେ ରାଣୀ ଜାଗିଦା ରାଜା ବୃଷଭାନୁଙ୍କୁ ପରାମର୍ଶ ଦେବାର ଖବର ମିଳେ । (୭୨ଖ)

ଶାରଳା ଦାସଙ୍କ ଯୁଗରେ ଉତ୍କଳୀୟ ନାରୀ ତାହାର ସ୍ୱାମୀଙ୍କୁ ପରାମର୍ଶ ଦେଉଥିଲା ଏବଂ ଦରକାର ବେଳେ ସାହାଯ୍ୟ ବି କରୁଥିଲା । ଭାନୁମତୀ ଓ ଦ୍ରୌପଦୀଙ୍କ ଜୀବନରୁ ଏହା ପ୍ରତିପାଦିତ ହୁଏ । ପାଣ୍ଡୁଙ୍କର ସମ୍ପଦ ଦେଖି ଧୃତରାଷ୍ଟ୍ର ଯେତେବେଳେ ବିମର୍ଷ ହେଲେ, ସେତେବେଳେ ଗାନ୍ଧାରୀ ତାଙ୍କୁ ପରାମର୍ଶ ଦେଇ ଉଚିତ ମାର୍ଗ ପ୍ରଦର୍ଶନ କରିଥିଲେ :

"ଗୁଡ଼ି ଗୁଡ଼ି ଅଭିମାନ ନ ଭଲ ହେ ରାୟେ
ଦୁଃଖ ସୁଖ ହୃଦଗତେ ସଦା ରହିଥାଏ ।
ଅପର ସମ୍ପଦ ଦେଖି ନ ହୁଅ ବିକଳ
ସୁଦଶା କୁଦଶା ହୁଏ ଅଳପକେ ଭଲ ।" (୭୩)

ଦୁର୍ଯ୍ୟୋଧନଙ୍କ ପତ୍ନୀ ଭାନୁମତୀ ତାହାଙ୍କୁ ସର୍ବଦା ସତ୍ ପରାମର୍ଶ ଦେଇଛନ୍ତି । ସେ କହିଥିଲେ—"ଶ୍ରୀକୃଷ୍ଣଙ୍କ ପ୍ରସ୍ତାବ ଅନୁସାରେ ପାଣ୍ଡବମାନଙ୍କୁ ପାଞ୍ଚଗୋଟି ଗ୍ରାମ ଦାନ କର । ଭାଇମାନେ ଭାଗ ପାଇବା ସଚରାଚର ବିଧି । ଶ୍ରୀକୃଷ୍ଣ ପ୍ରୀତ ହେଲେ ପାଣ୍ଡବଗଣ ପ୍ରୀତ ହେବେ । ବହୁଲୋକଙ୍କର ମତ ଗ୍ରହଣ କରି କାର୍ଯ୍ୟ କରିବା ବିଧେୟ । ଜଣେକର ମତରେ ଚଳିଲେ ବିପଦ ସୁନିଶ୍ଚିତ । (୭୪) ବହୁମତରେ କାମ ନ କରି ଜଣକର ମତରେ କାମ କଲେ କିପରି ଅନିଷ୍ଟ ହୁଏ, ତାହା ସେ ଶୂଦ୍ରକ ରାଜାଙ୍କର ଉପାଖ୍ୟାନ ବର୍ଣ୍ଣନା କରି ବୁଝାଇଥିଲେ । (୭୫)

ସତ୍ୟଭାମା ମଧ୍ୟ ଶ୍ରୀକୃଷ୍ଣଙ୍କୁ ପରାମର୍ଶ ପ୍ରଦାନ କରୁଥିଲେ । ଶ୍ରୀକୃଷ୍ଣ ତାହାଙ୍କୁ ସୁଭଦ୍ରା ଓ ଅର୍ଜ୍ଜୁନଙ୍କର ଗୁପ୍ତ ମିଳନ କରାଇଦେବା ପାଇଁ ଆଦେଶ ଦେଇଥିଲେ । (୭୬) କିନ୍ତୁ ସତ୍ୟଭାମା ଏ ସମ୍ପର୍କରେ ନ୍ୟାୟାନୁମୋଦିତ ପନ୍ଥା ଗ୍ରହଣ କରିବା ନିମିତ୍ତ ତାହାଙ୍କୁ ଉପଦେଶ ପ୍ରଦାନ କରିଥିଲେ :

"ସତ୍ୟଭାମା ବୋଇଲେ ଏ କଥା ଦୃଢ଼ କର
ବଡ଼ଠାକୁରଙ୍କୁ କହି କର ବାହାଘର ।
ଆବର ଚତୁର୍ଯ୍ୟମନ୍ତ୍ର କି ପାଇଁ କରିବା
ଶୁଭ ଲଗନ ଧରାଇ ବିଭା କରାଇବା ।" (୭୭)

ପଣ୍ଡୁ ଅଗ୍ନିକ ଋଷିଙ୍କର ଅଭିଶାପକୁ ବିସ୍ମୃତ ହୋଇ କେବେ କେବେ କାମାତୁର ହେଲେ, କୁନ୍ତୀ ଦେବୀ ତାହାଙ୍କୁ ଅଭିଶାପ କଥା ସ୍ମରଣ କରାଇ ଦେଉଥିଲେ ଏବଂ ସେହି କାର୍ଯ୍ୟରୁ ତାହାଙ୍କୁ କ୍ଷାନ୍ତ କରୁଥିଲେ । (୭୮)

ଉତ୍କଳୀୟ ସମାଜରେ ନାରୀ ପୁରୁଷକୁ ପରାମର୍ଶ ଦେବାର ପରମ୍ପରା ରହିଛି । 'କଳ୍ପଲତା' କାବ୍ୟରେ ଅଛି ଯେ, ରାଣୀ କନ୍ୟାର ବିରହ-ଜନିତ ଦୁଃଖ ରାଜାଙ୍କୁ ଜଣାଇଥିଲେ । (୭୯) 'ହରିବଂଶ'ରେ ଅଛି ଯେ, ଉଗ୍ରସେନଙ୍କୁ ତାଙ୍କର ରାଣୀ ଦେବକୀ ଓ ଦୈବକୀଙ୍କ ନିମିତ୍ତ ଉପଯୁକ୍ତ ପାତ୍ର ସ୍ଥିର କରି ବିବାହ ଦେବାକୁ ପରାମର୍ଶ ପ୍ରଦାନ କରିଥିଲେ । (୮୦)

ପତ୍ନୀ ତାହାର ସ୍ୱାମୀଙ୍କ ଅଭୀଷ୍ଟ ସାଧନପଥରେ ସେତେବେଳେ ସାହାଯ୍ୟ କରିବା ଦେଖାଯାଉଥିଲା । ଏହାର ଏକ ଚିତ୍ର କବି ଶିବ-ପାର୍ବତୀଙ୍କ ପ୍ରସଙ୍ଗରେ ପ୍ରଦାନ କରିଅଛନ୍ତି । ଶିବ କାର୍ତ୍ତି ଓ କୃତ୍ତିବାସ ନାମକ ଅସୁରଦ୍ୱୟଙ୍କର ନିଧନ କାମନା କଲେ । (୮୧) ପାର୍ବତୀ ଗୋପାଳୁଣୀର ବେଶ ଧାରଣ କରି ଅସୁରଙ୍କୁ ମୋହିତ କଲେ ଏବଂ ବିଶ୍ୱରୂପ ଧାରଣ କରି ସେମାନଙ୍କୁ ପାତାଳକୁ ଗୁପିଦେଲେ । (୮୨) ହିଡ଼ମ୍ବିକା ମଧ୍ୟ ହିଡ଼ମ୍ବକ ଅସୁରକୁ ଭୀମ ହତ୍ୟା କଲାବେଳେ ତାଙ୍କୁ ସାହାଯ୍ୟ କରିଥିଲେ । ସେ ଭୀମଙ୍କୁ ଶକ୍ତି ପ୍ରଦାନ କରି ହିଡ଼ମ୍ବକର ମୃତ୍ୟୁରେ ସହାୟତା କଲେ (୮୩)

ଆବଶ୍ୟକ ବେଳେ ସ୍ୱାମୀ ପାଇଁ ସ୍ତ୍ରୀ କି ଭଳି ରଣଚଣ୍ଡୀ ମୂର୍ତ୍ତି ଧାରଣ କରେ, ତାହାର ଚିତ୍ର 'ହରିବଂଶ' ଓ 'ଶଶିସେଣା' କାବ୍ୟରେ ଦେଖାଯାଏ । ଶଶିସେଣା ସ୍ୱାମୀଙ୍କର ଶତ୍ରୁ ରାକ୍ଷସକୁ ହତ୍ୟା କରିଥିଲେ ଏବଂ ପୁରୁଷବେଶରେ ଗଣ୍ଡା ବଧ କରି ନିଜର ବୁଦ୍ଧିବଳରେ ମାଲୁଣୀର ହସ୍ତରୁ ନିଜର ସ୍ୱାମୀଙ୍କୁ ମୁକ୍ତ

କରିପାରିଥିଲେ । (୮୪) 'ହରିବଂଶ'ରେ କୁହାଯାଇଅଛି ଯେ, ଶିବ ତ୍ରିପୁରାସୁରକୁ ବଧ କଲାବେଳେ ଯେଉଁ ତ୍ରିଶୂଳ ତାହାର ବକ୍ଷରେ ବିଦ୍ଧ କଲେ, ତାହାକୁ ପାର୍ବତୀ ମାଡ଼ି ବସିଥିଲେ । (୮୫) କିମ୍ବଦନ୍ତୀରୁ ଜଣାଯାଏ ଯେ, ଜନୈକ ମତ୍ସ୍ୟଜୀବୀ-ଜାତିର ରାଜକନ୍ୟା 'କାରବାକୀ' ଯୁଦ୍ଧରେ ସ୍ୱାମୀ ନିହତ ହେବାର ଦେଖି ଅଶୋକଙ୍କ ସହ କଳିଙ୍ଗ-ବିଜୟ କାଳରେ ସଂଗ୍ରାମ କରିଥିଲେ । (୮୬କ)

ସେ କାଳରେ ସ୍ତ୍ରୀ ପୁରୁଷକୁ ଉପାର୍ଜ୍ଜନ କ୍ଷେତ୍ରରେ ମଧ୍ୟ ସାହାଯ୍ୟ କରୁଥିଲା । ନୀଚ ଜାତିମାନଙ୍କରେ ଏହା ଦେଖାଯାଉଥିଲା । ମେଳକ ଶୂଦ୍ରର ବୃତ୍ତାନ୍ତରେ କବି ତାହା ଦର୍ଶାଇଅଛନ୍ତି । ମେଳକ ଶୂଦ୍ର କାଠ କାଟି ଘରକୁ ଆଣୁଥିଲା ଏବଂ ତାହାର ସ୍ତ୍ରୀ ତାହାକୁ ନେଇ ହାଟରେ ବିକାକିଣା କରୁଥିଲା ।

"ଗୋଟିଏ କାଠ ଭାରିଂକିଣ ପକାଏ ସେ ଘରେ
ଭାର୍ଯ୍ୟା ବିକଇ ତାକୁ ନେଇଣ ହାଟରେ ।" (୮୬ଖ)

## (ଘ) ସନ୍ତାନକୁ ଶିକ୍ଷାଦାନ :

ପ୍ରାଚୀନ କାଳରେ ଭାରତୀୟ ନାରୀ ତାହାର ସନ୍ତାନର ଶିକ୍ଷାଦାତ୍ରୀର ଆସନ ମଧ୍ୟ ଗ୍ରହଣ କରୁଥିଲା । 'ମାର୍କଣ୍ଡେୟ ପୁରାଣ'ରେ ଏହାର ଦୃଷ୍ଟାନ୍ତ ନିହିତ । ମଦାଳସା ତାଙ୍କର ପୁତ୍ରମାନଙ୍କୁ ଆବାଲ୍ୟରୁ ବ୍ରହ୍ମଜ୍ଞାନ ପ୍ରଦାନ କରିଥିଲେ । ସେ ତାଙ୍କର ଶେଷ ସନ୍ତାନକୁ ରାଜନୀତି ଶିଖାଇଥିଲେ । (୮୭)

ପଞ୍ଚଦଶ ଶତାବ୍ଦୀରେ ଉତ୍କଳୀୟ ନାରୀ ତାହାର ସନ୍ତାନକୁ ଶିକ୍ଷା ପ୍ରଦାନ କରିପାରୁଥିଲା । ସୁଦେଷ୍ଣାଙ୍କ ଚରିତ୍ରରୁ ତାହା ଜଣାଯାଏ । ସୁଦେଷ୍ଣା ନିଜର ଶ୍ୱେତ ନାମକ ପୁତ୍ରକୁ ଅସ୍ତ୍ର-ପ୍ରୟୋଗର ମନ୍ତ୍ର ଶିଖାଇଥିଲେ । ସେ ପୁତ୍ରକୁ ବ୍ରହ୍ମାସ୍ତ୍ର ଓ ଧାତୁବିଦ୍ୟାର ଶିକ୍ଷା ଦେଇ ପାରି ନଥିବାରୁ ଦୁଃଖ ପ୍ରକାଶ କରିଥିଲେ ।(୮୮)

ଯଶୋବନ୍ତ ଦାସଙ୍କ 'ଗୋବିନ୍ଦଚନ୍ଦ୍ର'ରେ ମାତା ମୁକ୍ତା ଦେଈ ସତ୍‌ଶିକ୍ଷା ଦେବାଦ୍ୱାରା ପୁତ୍ର ସନ୍ନ୍ୟାସୀ ହୋଇଯିବା ବୃତ୍ତାନ୍ତ ରହିଛି । (୮୯)

## ୨. ସଦ୍‌ଗୁଣ ଓ ମହତ୍ତ୍ୱ :

ଭାରତୀୟ ନାରୀ ବହୁ ମହତ୍ତ୍ୱ ଓ ସଦ୍‌ଗୁଣର ଆଧାର । ସେ ଦୟା, ସହାନୁଭୂତି, ତ୍ୟାଗ, ସଂଯମ, ବୀରତ୍ୱ, ସାହସ, ଧର୍ମପରାୟଣତା ଓ ବଦ୍‌ବନ୍ତି ପ୍ରଭୃତି ଗୁଣର ମୂର୍ତ୍ତିମନ୍ତ ପ୍ରତିମା । ଉତ୍କଳୀୟ ନାରୀ ମଧ୍ୟ ବହୁ ମହନୀୟ ଗୁଣରେ ଭୂଷିତା । ନିମ୍ନ ଆଲୋଚନାରୁ ଏହି ଉକ୍ତିର ସତ୍ୟତା ପ୍ରତିପାଦିତ ହେବ ।

## (କ) ଦୟା ଓ ସହାନୁଭୂତି :

'ଭାଗବତ'ରୁ ନାରୀଜାତିର ସ୍ୱାଭାବିକ କରୁଣା ଓ ସହାନୁଭୂତିର ପରିଚୟ ମିଳେ । ଦ୍ରୌପଦୀ ପୁତ୍ରହନ୍ତା ଅଶ୍ୱତ୍ଥାମାଙ୍କୁ ବନ୍ଦୀ ଅବସ୍ଥାରେ ଦେଖି କହିଥିଲେ— "ଯେପରି ମୁଁ ପୁତ୍ରମାନଙ୍କ ଅଭାବରେ ଦୁଃଖ କରୁଅଛି, ସେହିପରି ଏହାଙ୍କର ମାତା କୃପୀ କ୍ରନ୍ଦନ କରିବେ ।" (୯୦) ସେଥିପାଇଁ ସେ ଅଶ୍ୱତ୍ଥାମାଙ୍କୁ ମୁକ୍ତ କରିଦେବା ନିମିତ୍ତ ପତିମାନଙ୍କୁ ନିବେଦନ କରିଥିଲେ । (୯୧)

ସେ ଯୁଗର ଉତ୍କଳୀୟ ନାରୀଜାତି ମଧ୍ୟରେ ଦୟା ଓ ସହାନୁଭୂତି ଭାବ ନିହିତ ଥିଲା । ବରୁଣ-ପତ୍ନୀ ଓ ପାର୍ବତୀଙ୍କ ବୃତ୍ତାନ୍ତରେ ଏହାର ଉଦାହରଣ ରହିଅଛି । ମାଳେନ୍ଦ୍ରୀ କନ୍ୟାକୁ ଜନ୍ମ ସମୟରେ ଚଣ୍ଡିଦୋଷ ଲାଗିଥିଲା । ଜ୍ୟୋତିଷଙ୍କ କହିବା ଅନୁସାରେ ବରୁଣ ଷୋଳ ବର୍ଷ ପର୍ଯ୍ୟନ୍ତ କନ୍ୟାର ମୁଖ ଦେଖିବେ ନାହିଁ ବୋଲି ସ୍ଥିର କରି ତାହାଙ୍କୁ ଜମ୍ବୁଦ୍ୱୀପକୁ ପ୍ରେରଣ କଲେ । ବରୁଣ-ପତ୍ନୀ କନ୍ୟାର ସଙ୍ଗରେ ଗଲେ । ସେ ବନମଧ୍ୟରେ କନ୍ୟାକୁ କୋଳରେ ଧରି ରୋଦନ କରୁଥିବାବେଳେ ପାର୍ବତୀ ଶିବଙ୍କ ସହ ଭ୍ରମଣରେ ବାହାରିଥିଲେ । ପାର୍ବତୀ କ୍ରନ୍ଦନ-ଧ୍ୱନି ଅନୁସରଣ କରି ବରୁଣ-ପତ୍ନୀଙ୍କ ସମୀପରେ ଉପସ୍ଥିତ ହେଲେ । (୯୨) ସେତେବେଳେ ପାର୍ବତୀ ଶିବଙ୍କୁ ବୁଝାଇଥିଲେ ଯେ, ନାରୀ ହୋଇ ନାରୀପ୍ରତି ସହାନୁଭୂତି ପ୍ରଦର୍ଶନ କରିବା କର୍ତ୍ତବ୍ୟ :

"ସ୍ତିରୀଙ୍କ ରୋଦନ ଶୁଣି ସ୍ତିରୀଏ ନ ଗଲେ
ଶତେ ଜନ୍ମ କାଠବେଙ୍ଗ ହୁଅନ୍ତି ସେ ଭଲେ ।" (୯୩)

ଅର୍ଜ୍ଜୁନ ଦାସଙ୍କ 'କଳ୍ପଲତା' କାବ୍ୟରେ ସଖୀ ମଦନମଞ୍ଜରୀ ରାଜକନ୍ୟାଙ୍କ ସହ ଚିତାଗ୍ନିରେ ପ୍ରବେଶ କରିବା ନିମିତ୍ତ ପ୍ରସ୍ତୁତ ହେବା ବର୍ଣ୍ଣନା ରହିଅଛି । ନାରୀ ପାଇଁ ନାରୀ କିପରି ଦୟା ଓ ସହାନୁଭୂତି ଦେଖାଏ, ତାହା ଏଥିରୁ ସ୍ପଷ୍ଟ ।(୯୪)

## (ଖ) ଉଦାରତା :

ଉତ୍କଳୀୟ ନାରୀର ଉଦାରତା କବି-ଲେଖମାରୁ ପ୍ରତିପାଦିତ ହୁଏ । ଗାନ୍ଧାରୀ ଉଦାରମନା ଓଡ଼ିଆ ନାରୀର ପ୍ରତୀକ । ଧୃତରାଷ୍ଟ୍ର ଜ୍ୟେଷ୍ଠ ହେଲେ ହେଁ କନିଷ୍ଠ ପାଣ୍ଡୁ ସିଂହାସନ ଲାଭ କରିଥିଲେ । ସେଥିପାଇଁ ଗାନ୍ଧାରୀଙ୍କ ମନରେ ଅସୂୟା ବା ହିଂସା ଭାବ ଦେଖା ଦେଇ ନଥିଲା; ବରଂ ସେ ଈର୍ଷାନଳରେ

ଦଗ୍‌ଧିଭୂତ ସ୍ୱାମୀ ଧୃତରାଷ୍ଟ୍ରଙ୍କୁ ସଂସାରରେ ସମସ୍ତଙ୍କୁ ସମାନ ଭାବରେ ଦେଖିବା ପାଇଁ ଉପଦେଶ ଦେଇଥିଲେ :

"ସଂସାରଯାକ ତୁ ଯେବେ କରିବୁ ଏକଭାବ
ତରିଯାଇ ଭବଜଳୁଁ ହୋଇବୁ ମୁକତ ।" (୯୫)

ଗାନ୍ଧାରୀ ଧୃତରାଷ୍ଟ୍ରଙ୍କୁ ପଣ୍ଡୁଙ୍କ ପ୍ରତି ହିଂସା ଓ ଅହଙ୍କାର ଭାବ ପୋଷଣ ନ କରିବା ନିମିତ୍ତ ପରାମର୍ଶ ପ୍ରଦାନ କରିଥିଲେ :

"ପରହିଂସା ପରନିନ୍ଦା ଛାଡ଼ି ଧୃତରାଷ୍ଟ୍ର
ଅନିତ୍ୟ ସଂସାର ଏହି ଅଟେ ମାୟାଭ୍ରଷ୍ଟ ।
ଲୋଭ ମୋହ କାମ କ୍ରୋଧ ଅହଙ୍କାର ହିଂସା
ଏହା ଦୂର କର ସ୍ୱାମୀ ନ ବଢ଼ା ମନୀଷା ।" (୯୬)

## (ଗ) ତ୍ୟାଗ :

ନାରୀଜାତି ମଧ୍ୟରେ ସ୍ୱାମୀ, ପୁତ୍ର ଓ କନ୍ୟାଙ୍କ ପାଇଁ ତ୍ୟାଗ ଓ ଆତ୍ମୋତ୍ସର୍ଗର ଭାବନା ନିହିତ । ସ୍ତ୍ରୀ କେବଳ ପରିବାରର କଲ୍ୟାଣ ପାଇଁ ଆତ୍ମବଳୀ ଦାନ କରେ ତାହାର ଏକ ଚିତ୍ର ଶାରଳା ଦାସ ବେଦଶ୍ରବା ବ୍ରାହ୍ମଣର ବୃତ୍ତାନ୍ତରେ ପରିବେଷଣ କରିଅଛନ୍ତି । ବେଦଶ୍ରବା ବ୍ରାହ୍ମଣର ଘରେ ବକାସୁର ପାଳି ପଡ଼ିବାରୁ ଗୋଟିଏ ନରବଳିର ଆବଶ୍ୟକ ହେଲା । (୯୭) ସେତେବେଳେ ବ୍ରାହ୍ମଣ-ପତ୍ନୀ ସେଥିପାଇଁ ନିଜକୁ ଉତ୍ସର୍ଗ କରିବାକୁ ପରାମର୍ଶ ଦେଇଥିଲେ :

"ବ୍ରାହ୍ମଣୀ ବୋଇଲା ନାଥ ବୁଦ୍ଧିଏ କରିବ
ଦୁହିତା ପୁତ୍ର ବେନିଙ୍କି ତୁମ୍ଭେ ପାଳୁଥିବ ।
ମୁହିଁ କାଲି ଭୋଜନରେ ତୋଷିବି ଦୈତ୍ୟକୁ
ତୁମ୍ଭେ ଥିଲେ ଭାରିଯା ତ ମିଳିବ ତୁମ୍ଭଙ୍କୁ ।" (୯୮)

ନାରୀ କେବଳ ନିଜର ପରିବାର ପାଇଁ ତ୍ୟାଗ କରେ ନାହିଁ, ଅଧିକନ୍ତୁ ପରାର୍ଥରେ ଆତ୍ମୋତ୍ସର୍ଗ କରିପାରେ । ଏହାର ଏକ ଦୃଷ୍ଟାନ୍ତ କବି କୁନ୍ତୀ ଦେବୀଙ୍କ ଚରିତ୍ରରେ ପ୍ରଦାନ କରିଅଛନ୍ତି । ବେଦଶ୍ରବା ବ୍ରାହ୍ମଣର ଘରେ ନରବଳି ପାଇଁ ଚିନ୍ତା ପଡ଼ିବାର ଦେଖି କୁନ୍ତୀ ଦେବୀ ଭୀମଙ୍କୁ ସେଥିପାଇଁ ଉତ୍ସର୍ଗ କରିବେ ବୋଲି ପ୍ରସ୍ତାବ ଦେଇଥିଲେ । (୯୯)

ସ୍ତ୍ରୀଜାତି କିପରି ତ୍ୟାଗ କରିପାରେ ତାହାର ଉଦାହରଣ 'ହରିବଂଶ'ରେ ଦେଖାଯାଏ । ଦେବକୀ କଂସକୁ ନିଷ୍କଣ୍ଟକ କରିବା ନିମିତ୍ତ ନିଜର ନବଜାତ

ପୁତ୍ରମାନଙ୍କୁ ଜନ୍ମ ହେବା ସଙ୍ଗେ ସଙ୍ଗେ ତାହାଙ୍କ ହସ୍ତରେ ସମର୍ପଣ କରିବେ ବୋଲି ପ୍ରତିଜ୍ଞା କରିଥିଲେ । (୧୦୦)

## (ଘ) ସଂଯମ :

ନାରୀ-ଜୀବନରେ ସଂଯମର ପରିଚୟ ମିଳେ । କବି ତାହା କୁନ୍ତୀଙ୍କ ଚରିତ୍ରରେ ଦେଖାଇଅଛନ୍ତି । ରାଜା ପଣ୍ଡୁ ଅଗ୍ନିକ ଋଷିଙ୍କଠାରୁ ଅଭିଶାପ ପାଇଥିଲେ ଯେ, ନାରୀ-ସହବାସ କାଳରେ ଅକାଳ-କାଣ୍ଡ ପଡ଼ିବ ଓ ସେ ତଦ୍ଦ୍ୱାରା ନିହତ ହେବେ । (୧୦୧) ପଣ୍ଡୁ କାମବଶ ହୋଇ କୁନ୍ତୀଙ୍କ ସମୀପକୁ ଆଗମନ କଲାବେଳେ ସେ ତାହାଙ୍କୁ ଅଭିଶାପର କଥା ସ୍ମରଣ କରାଇ ଦେଉଥିଲେ ଏବଂ ଶୃଙ୍ଗାରରୁ ବିରତ କରାଉଥିଲେ । (୧୦୨) କୁନ୍ତୀ ଓ ମାଦ୍ରୀ ସଂଯତ ଜୀବନ ଅତିବାହିତ କରୁଥିଲେ :

"ରତି ଇଚ୍ଛା ନକଲେ ସେ ମହାସତୀ ସାଧବୀ
ସ୍ୱାମୀ ନିମନ୍ତେ ଶୃଙ୍ଗାର ମନରେ ନ ଭାବି ।
ମନ ସଂଯମୀ ରହିଲେ ପଣ୍ଡୁର ରମଣୀ
ସ୍ୱାମୀ ଶଯ୍ୟାଗତ ତହିଁ ନାହିଁ ବର୍ଷ ତିନି ।" (୧୦୩)

## (ଙ) ବାତ୍ସଲ୍ୟ :

ପାରିବାରିକ ସ୍ନେହ-ମମତା ମଧ୍ୟରେ ବାତ୍ସଲ୍ୟ ଅନ୍ୟତମ ପ୍ରଧାନ ବିଭାବ । (୧୦୪) ନାରୀର ହୃଦୟରେ ସନ୍ତାନ-ପ୍ରେମ ବଡ଼ ପ୍ରବଳ । ବରୁଣ-ପତ୍ନୀ, ହିଡ଼ିମ୍ବିକା, କୁନ୍ତୀ ଓ ଗାନ୍ଧାରୀ ଆଦିଙ୍କ ଜୀବନରୁ ଏହାର ପରିଚୟ ମିଳେ ।

ନାରୀ ସନ୍ତାନ-ପ୍ରେମରେ ପଡ଼ି ଗୃହ ପର୍ଯ୍ୟନ୍ତ ପରିତ୍ୟାଗ କରିଦେଇ-ପାରେ । ବରୁଣ-ପତ୍ନୀ ତାହାର ଏକ ଦୃଷ୍ଟାନ୍ତ । ବରୁଣ କନ୍ୟା ଘନେନ୍ଦ୍ରୀଙ୍କୁ ଷୋଳ ବର୍ଷ ପାଇଁ ରାଜ୍ୟରୁ ଅନ୍ତର କଲେ; (୧୦୫) କିନ୍ତୁ ରାଣୀ କନ୍ୟାକୁ ଛାଡ଼ି ରହିପାରିଲେ ନାହିଁ । ସେ କନ୍ୟାର ସଙ୍ଗରେ ରାଜନଗର ପରିତ୍ୟାଗ କରି ବନଭୂମିକୁ ଗଲେ । (୧୦୬) ଏହିଭଳି ଦ୍ରୁପଦ ରାଜାଙ୍କ ପତ୍ନୀ ମଧ୍ୟ ପୁତ୍ର ପାଇଁ ଗୃହ-ତ୍ୟାଗ କରିଥିଲେ । ମଧୁକିଶୋର ରାଜାଙ୍କ କନ୍ୟା ମଧୁମତୀ ଦ୍ରୁପଦ-ପୁତ୍ର ଶିଖଣ୍ଡୀକୁ ବିବାହ କରିଥିଲେ । ଶିଖଣ୍ଡୀ ନଂପୁସକ ବୋଲି ଜଣାପଡ଼ିଲା । ମଧୁକିଶୋର କ୍ରୋଧର ବଶବର୍ତ୍ତୀ ହୋଇ ଦ୍ରୁପଦଙ୍କ ରାଜ୍ୟ ଆକ୍ରମଣ କଲେ । ପୁତ୍ର ଶିଖଣ୍ଡୀର ପ୍ରାଣ ଉପରେ ବିପଦ ଦେଖାଦେଲା । ତେଣୁ ତାଙ୍କର ମାତା ତାଙ୍କୁ ନେଇ

ବନଭୂମିରେ ଆଶ୍ରୟ ନେଲେ । ଚୂଳାକର୍ଣ୍ଣ ନାମକ ଗନ୍ଧର୍ବ ଶିଖଣ୍ଡିକୁ ନିଜର ପୁରୁଷତ୍ୱ ପ୍ରଦାନ କରିଥିଲେ । (୧୦୭)

ସନ୍ତାନର ମଙ୍ଗଳ ପାଇଁ ନାରୀ ସାହସିନୀ ହୁଏ ଓ ଲଜ୍ଜା-ସଙ୍କୋଚ ତ୍ୟାଗ କରିଦିଏ ହିଡ଼ିମ୍ବିକା ଚରିତ୍ରରେ ତାହା ଦେଖାଦେଉଥିଲା । ମାତାଙ୍କର ଉପଦେଶ-କ୍ରମେ ଘଟୋତ୍କଚ ରାଜସଭାରେ ଦ୍ରୌପଦୀଙ୍କୁ ନମସ୍କାର ନ କରିବାରୁ ସେ ତାହାଙ୍କୁ ଅଭିଶାପ ଦେଲେ । ତାହା ମାତା ହିଡ଼ିମ୍ବିକାଙ୍କ ହୃଦୟରେ ଗଭୀର ଆଘାତ ଦେଲା । ସଭାସ୍ଥଳର ଦ୍ୱାରଦେଶରେ ଥାଇ ସେ ଅଭିଶାପ ବୃତ୍ତାନ୍ତ ଶ୍ରବଣ କଲେ । ସେ ଆଉ ଧୈର୍ଯ୍ୟ ଧାରଣ କରିପାରିଲେ ନାହିଁ । ସେ ତତ୍‌କ୍ଷଣାତ୍ ଲାଜ, ଭୟ ଓ ସଙ୍କୋଚ ପରିତ୍ୟାଗ କରି ରାଜସଭାରେ ପ୍ରବେଶ କଲେ ଏବଂ ଦ୍ରୌପଦୀଙ୍କୁ ପ୍ରତି-ଅଭିଶାପ ଦେଲେ । ସର୍ବ ସମକ୍ଷରେ ସେ ଦ୍ରୌପଦୀଙ୍କ ଅଭିଶାପର ଅଯୌକ୍ତିକତା ଦର୍ଶାଇଥିଲେ । (୧୦୮)

କୁନ୍ତୀ ଦେବୀ ମଧ୍ୟ ସନ୍ତାନ-ବତ୍ସଳା ନାରୀ । ପାଣ୍ଡବମାନେ ବନବାସ କଲାବେଳେ ସେ ସେମାନଙ୍କ ସହିତ ବରାବର ରହିଥିଲେ । ସର୍ବଦା ରନ୍ଧନ କରି ସେ ପୁତ୍ରମାନଙ୍କୁ ଭୋଜନ କରାଉଥିଲେ । (୧୦୯) ସ୍ୱାମୀଙ୍କର ତିରୋଧାନଜନିତ ଶୋକକୁ ପୁତ୍ରମାନଙ୍କର ଲାଳନ-ପାଳନରେ ମନ ଦେଇ ବିସ୍ମୃତ ହୋଇଥିଲେ । (୧୧୦କ) କୁନ୍ତୀ କେବଳ ନିଜ ପୁତ୍ରଙ୍କୁ ପାଳନ କରିନଥିଲେ; ଅଧିକନ୍ତୁ ଗାନ୍ଧାରୀଙ୍କର ଶତ ପୁତ୍ରଙ୍କୁ ପାଳନ କରିଥିଲେ । (୧୧୦ଖ) ସନ୍ତାନ-ବତ୍ସଳା କୁନ୍ତୀ ଦେବୀ ନିଜ ପୁତ୍ରଙ୍କଠାରୁ ଅଧିକ ସ୍ନେହ ଗାନ୍ଧାରୀଙ୍କ ପୁତ୍ରମାନଙ୍କୁ ପ୍ରଦର୍ଶନ କରୁଥିଲେ । (୧୧୧)

ଗାନ୍ଧାରୀଙ୍କଠାରେ ସନ୍ତାନ-ବାତ୍ସଲ୍ୟ ମଧ୍ୟ ନିହିତ ଥିଲା । ମହାଭାରତ ଯୁଦ୍ଧ ପରେ ସନ୍ତାନମାନଙ୍କ ମୃତ୍ୟୁଜନିତ ଦୁଃଖରେ ଅଧୀରା ହୋଇ ସେ ଶ୍ରୀକୃଷ୍ଣଙ୍କୁ ଅଭିଶାପ ଦେବାକୁ ଭୁଲିଲେ ନାହିଁ । (୧୧୨) ଯୁଧିଷ୍ଠିରଙ୍କ ହାତରେ ଅକ୍ଷିପଟଳ ଉନ୍ମୋଚନ କରାଇ ତାହାଙ୍କୁ ପ୍ରଥମ ଦୃଷ୍ଟିପାତରେ ଭସ୍ମୀଭୂତ କରିଦେବେ ବୋଲି ସେ ମନେ ମନେ ସ୍ଥିର କରିଥିଲେ । (୧୧୩) ତାଙ୍କର ପୁତ୍ରମାନେ ଏକାଙ୍ଗ ଚକ୍ରବର୍ତ୍ତୀ ହେବେ ବୋଲି କାମନା କରି ଗାନ୍ଧାରୀ ପ୍ରତ୍ୟହ ଶିବଙ୍କୁ ଆରାଧନା କରୁଥିଲେ । (୧୧୪) କୁନ୍ତୀଙ୍କ ପୁତ୍ରମାନଙ୍କ ପ୍ରତି ତାଙ୍କର ସ୍ନେହଭାବ ବି ଥିଲା । ଯୁଧିଷ୍ଠିର ଜନ୍ମହେବାର ସମ୍ବାଦ ପାଇ ଗାନ୍ଧାରୀ ଶତଶୃଙ୍ଗ ପର୍ବତକୁ ଧାଇଁଯାଇ ଥିଲେ ଏବଂ ନବଜାତ ପୁତ୍ରକୁ କୋଳରେ ଧାରଣ କରିଥିଲେ । (୧୧୫)

ଜତୁଗୃହରେ ପାଣ୍ଡବମାନଙ୍କର ଦଗ୍ଧୀଭୂତ ହେବାର ସମ୍ବାଦ ପାଇ ଗାନ୍ଧାରୀ ବିକଳ ଭାବରେ କ୍ରନ୍ଦନ କରିଥିଲେ ଏବଂ ସେମାନଙ୍କ ସଙ୍ଗରେ ମୃତ୍ୟୁ-ବରଣ କରିବାକୁ ଚାହିଁଥିଲେ । (୧୧୬) ସେ ଦୁର୍ଯ୍ୟୋଧନଙ୍କୁ ପାଣ୍ଡବଙ୍କ ସଙ୍ଗରେ କଳହ ନ କରି ସେମାନଙ୍କୁ ରାଜ୍ୟ ପ୍ରଦାନ କରିବାପାଇଁ ଉପଦେଶ ଦେଇଥିଲେ । (୧୧୭)

ନାରୀଜାତିର ଏହି ଶାଶ୍ୱତ ସ୍ୱାଭାବିକ ବାତ୍ସଲ୍ୟ ମମତାର ପ୍ରକାଶ 'ରାମ ବିଭା' କାବ୍ୟରେ ମଧ୍ୟ ହୋଇଛି । 'ରାମବିଭା' କାବ୍ୟରେ ଅଛି ଯେ, ଦଶରଥଙ୍କର ରାଣୀମାନେ ବିଶ୍ୱାମିତ୍ରଙ୍କ ଅଭିଶାପ ବରଣ କରିବେ ପଛକେ, କିନ୍ତୁ ଶ୍ରୀରାମଙ୍କୁ ତାଙ୍କ ସଙ୍ଗରେ ଯିବାକୁ ଦେବେ ନାହିଁ ବୋଲି ପ୍ରକାଶ କରିଥିଲେ । (୧୧୮)

## (ଚ) କ୍ଷମା

ନାରୀଜାତି କ୍ଷମାମୟୀ ବୋଲି ସାରଳା ଦାସ ପ୍ରକାଶ କରିଅଛନ୍ତି । କୁନ୍ତୀ ଦେବୀଙ୍କଠାରେ କ୍ଷମାଗୁଣ ଦେଖା ଦେଇଛି । ଗାନ୍ଧାରୀଙ୍କ ପୁତ୍ରଗଣ ପାଣ୍ଡବମାନଙ୍କର ଦୁଃଖର କାରଣ ହୋଇଥିଲେ ହେଁ କୁନ୍ତୀଦେବୀ ଗାନ୍ଧାରୀଙ୍କ ସହିତ ବାନପ୍ରସ୍ଥକୁ ଯିବେ ବୋଲି ସ୍ଥିର କରିଥିଲେ । ଅନ୍ଧ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କୁ ବାଟକଢ଼ାଇ ନେବେ ଏବଂ ଯଥାକାଳରେ ସେମାନଙ୍କୁ ଅନ୍ନଜଳ ଯୋଗାଇବେ ବୋଲି କୁନ୍ତୀ ସେମାନଙ୍କ ସଙ୍ଗରେ ଯାଇଥିଲେ । (୧୧୯)

## (ଛ) ପତିଭକ୍ତି

ଭାରତୀୟ ନାରୀର ପତିପ୍ରେମ ଯୁଗେ ଯୁଗେ ଆଦର୍ଶସ୍ଥାନୀୟ । ରାମାୟଣରେ ପତି ନାରୀର ଦେବତା (୧୨୦), ପତିସେବା ସ୍ତ୍ରୀର ସନାତନ ଧର୍ମ । ପତିସେବା ଦ୍ୱାରା ନାରୀ ସ୍ୱର୍ଗଲାଭ କରେ ବୋଲି କୁହାଯାଇଅଛି । (୧୨୧) ମାର୍କଣ୍ଡେୟ ପୁରାଣରେ ସ୍ତ୍ରୀ ସର୍ବଦା ପୁରୁଷର ଅନୁକୂଳ ହୋଇ ରହିବା ଉଚିତ ବୋଲି ପ୍ରଦର୍ଶିତ ହୋଇଅଛି । (୧୨୨) ନାରଦ ପୁରାଣରେ ଅଛି ଯେ, ପତିଭକ୍ତା ନାରୀ ପାଖରେ ଭଗବାନ ରହନ୍ତି । (୧୨୩)

ଉତ୍କଳର ନାରୀ ପତିଭକ୍ତା । ପତିସେବା ସେମାନଙ୍କର ବ୍ରତ । ସାରଳା-ମହାଭାରତରେ ଥିବା ସତ୍ୟା ନାମକ ନାରୀର ବୃତ୍ତାନ୍ତରୁ ଏହା ଅବଧାରିତ ହୁଏ । ସତ୍ୟାଙ୍କୁ ବାଟ ପୁରୁଷମାନେ ଅଳଙ୍କାରର ଲୋଭ ଦେଖାଇଲେ; କିନ୍ତୁ ସେ ପତି-ଭକ୍ତିର ଆଦର୍ଶମୟ ପଥରୁ ବିଚ୍ୟୁତ ହେଲେ ନାହିଁ । ବିହନ୍ତା ପୁରୁଷମାନେ ତାଙ୍କର

ପ୍ରେମ କାମନା କରି ବିଫଳ ମନୋରଥ ହେଲେ । ଅଭିଶାପ ବଳରେ ସେମାନେ ସତ୍ୟାଙ୍କ ସ୍ୱାମୀ କୌଶିକଙ୍କୁ କୁଷ୍ଠରୋଗୀ କରିଦେଲେ । ତଥାପି ସତୀ ପତିସେବାରୁ ବିରତ ହେଲେନାହିଁ । କୁଷ୍ଠରୋଗଗ୍ରସ୍ତ ସ୍ୱାମୀଙ୍କର ମନୋବାଞ୍ଛା ପୂରଣ କରିବା ପାଇଁ ସେ ତାହାଙ୍କୁ କାନ୍ଧରେ ବସାଇ ବେଶ୍ୟାଳୟକୁ ଗଲେ । ଶେଷରେ ନିଜର ଅସାଧାରଣ ପାତିବ୍ରତ୍ୟ ବଳରେ ସେ ପତିଙ୍କୁ ଦୁରାରୋଗ୍ୟ କୁଷ୍ଠରୋଗରୁ ମୁକ୍ତ କଲେ । (୧୨୪) ଗାନ୍ଧାରୀ ମଧ୍ୟ ପତିଭକ୍ତା ରମଣୀ । ଧୃତରାଷ୍ଟ୍ର ଜନ୍ମାନ୍ଧ ଥାଇ ପୁତ୍ରମାନଙ୍କର ସଂପଦ ଦେଖିବା ସୌଖ୍ୟରୁ ବଂଚିତ ଥିଲେ । ତାହା ଉପଲବ୍ଧି କରି ଗାନ୍ଧାରୀ ସ୍ୱଚକ୍ଷରେ ଅନ୍ଧପଟଳ ବାନ୍ଧିଲେ । (ଆଦ୍ୟ ୮୦ପୃ) ଦୁର୍ଯ୍ୟୋଧନ ଭାନୁମତୀଙ୍କୁ ବିବାହ କଲା ପରେ ମାତା ଗାନ୍ଧାରୀଙ୍କୁ ଅନ୍ଧପଟଳ ଖୋଲିବା ପାଇଁ କହିଥିଲେ; କିନ୍ତୁ ଗାନ୍ଧାରୀ ଅଟଳ ରହିଲେ । (ଆଦ୍ୟ ୧୨୩ପୃ) କୁନ୍ତୀ ଦେବୀ ଅନ୍ଧପଟଳ ଖୋଲିବା ପାଇଁ କହିବାରୁ ସେ ତାହା ଅସ୍ୱୀକାର କରି ଉତ୍ତର ଦେଲେ—

"ଗାନ୍ଧାରୀ ବୋଇଲେ ମୋର ସ୍ୱାମୀର ଯେ ଯୋଗ
ମୁଁ ତାର ଭାରିଯା ସିନା କରିବ ତା ଭୋଗ ।
ସ୍ୱାମୀ ଦୃଷ୍ଟି କଷ୍ଟୀ ମୁହିଁ ତାଙ୍କ ସଙ୍ଗେ କଷ୍ଟୀ
ତାଙ୍କ ଦୃଷ୍ଟି ନାହିଁ କପାଁ ଥିବ ମୋର ଦୃଷ୍ଟି ।" (ଆଦ୍ୟ ୮୨ପୃ)

ସେବା ଓ ଭକ୍ତିରେ ସ୍ୱାମୀଙ୍କୁ ସନ୍ତୁଷ୍ଟ କରିବା, ପତିଭକ୍ତିରେ ମୁକ୍ତିର ସନ୍ଧାନ ପାଇବା ସେ ଯୁଗର ଆଦର୍ଶ ଥିଲା । (୧୨୫) ସେତେବେଳେ ନାରୀମାନେ ଭାବୁଥିଲେ ଯେ, ପତିଭକ୍ତିରେ ହିଁ ସେମାନଙ୍କର ନିଜର ସ୍ୱାର୍ଥ ନିହିତ । (୧୨୬) ସ୍ୱାମୀର କଥା ମାନି ନ ଚଳିଲେ ନାରୀ ସେ ଯୁଗରେ ନିନ୍ଦିତ ହେଉଥିଲେ । (୧୨୭) 'ଲକ୍ଷ୍ମୀନାରାୟଣୀ' ବଚନିକାରେ ସାରଳା କହନ୍ତି ଯେ, ଭାର୍ଯ୍ୟା ଗୃହସ୍ଥଙ୍କୁ ସେବା ନ କଲେ ସ୍ତ୍ରୀ ସଂସାର ମଧ୍ୟରେ ପରିଗଣିତା ହୁଅନ୍ତି ନାହିଁ । (୧୨୮) ରାମବିଭା (ପୃ୯୦), ଦାଣ୍ଡି ରାମାୟଣ (ଆଦି୨୦୬ପୃ) ଓ ଜଗନ୍ନାଥ ଦାସଙ୍କ ଭାଗବତରେ ପତିଭକ୍ତି ଓ ପତି ସେବାର ମହିମା କୀର୍ତ୍ତିତ ହୋଇଅଛି । (୧୨୯)

## (ଜ) ଧର୍ମପରାୟଣତା

ବ୍ୟକ୍ତିର ନୈତିକ ଚରିତ୍ର ଧର୍ମଭାବନା ସହିତ ଘନିଷ୍ଠ ସମ୍ବନ୍ଧ ରଖେ । ସ୍ୱାମୀ ଓ ସ୍ତ୍ରୀ ଉଭୟେ ଧର୍ମପରାୟଣ ନ ହେଲେ ଦାମ୍ପତ୍ୟ ଜୀବନ ସୁଖକର ଓ

ସଫଳ ହୁଏନାହିଁ । (୧୩୦) ହିନ୍ଦୁନାରୀ ଆଜନ୍ମ ମୃତ୍ୟୁ ପର୍ଯ୍ୟନ୍ତ ତାହାର ପ୍ରତ୍ୟେକ ଚିନ୍ତା ତଥା କାର୍ଯ୍ୟରେ ଧର୍ମ-ଭାବନା ପୋଷଣ କରେ । ସେ ମନ୍ଦିରକୁ ଯାଏ ଓ ଦେବତାଙ୍କୁ ପୁଷ୍ପାଞ୍ଜଳୀ ଅର୍ପଣ କରେ । ବେଦ କାଳରେ ନାରୀର ଧର୍ମାଚରଣରେ ଅଧିକାର ରହିଥିଲା । ସେ ଯଜ୍ଞାଗ୍ନି ସ୍ଥାପନ କରୁଥିଲା, ବୈଦିକମନ୍ତ୍ର ଉଚ୍ଚାରଣ କରୁଥିଲା ଓ ଯଜ୍ଞରେ ବଳିଦାନ ବି କରୁଥିଲା । (୧୩୧) ପ୍ରାଚୀନ ଯୁଗରେ ସ୍ୱୟଂପ୍ରଭା (୧୩୨), ଶାଣ୍ଡିଲ୍ୟ (୧୩୩), ସୁଲଭା (୧୩୪), ଶିବା (୧୩୫) ଓ ବରସ୍ୱୀ (୧୩୬) ଭକ୍ତିମତୀ ନାରୀ ଥିଲେ ।

ସାରଳା ଦାସଙ୍କ ମହାଭାରତରେ ଉତ୍କଳୀୟ ନାରୀମାନଙ୍କର ଧର୍ମପ୍ରାଣତାର ବହୁ ପରିଚୟ ନିହିତ । ଗାନ୍ଧାରୀଙ୍କର କପାଳୀ ତୀର୍ଥରେ ବ୍ରତ ପାଳନ(ଆଦ୍ୟ ୮୦ପୃ), ଗାନ୍ଧାରୀ ଓ କୁନ୍ତୀଙ୍କର ଶିବପୂଜା (ମଧ୍ୟ ୨୪୯ପୃ), ବିଶ୍ୱାବସୁଙ୍କ ପତ୍ନୀର ମାଘ ବ୍ରତ (ବନ ୨୧୬ପୃ), ଶଚୀଙ୍କର ପ୍ରାଚୀ ନଦୀରେ ସ୍ନାନ (ସ୍ୱର୍ଗ ୧୨ପୃ), ଶିବପୁର ନାରୀଙ୍କ ଗଣେଶପୂଜା (ବନ ୩୧ପୃ), ସୁହାଣୀ କନ୍ୟାର ଶିବଙ୍କ ଆରାଧନା (ସ୍ୱର୍ଗ ୧୧ପୃ), ଗାନ୍ଧାରୀଙ୍କ ଗଙ୍ଗାସ୍ନାନ (ଆଦ୍ୟ ୬୧ପୃ), ଅମ୍ବାଙ୍କ ମାଧବପୂଜା (ଆଦ୍ୟ ୩୩ପୃ) ସେ ଯୁଗର ନାରୀଙ୍କ ଧର୍ମପ୍ରାଣତାର ପରିଚୟ ଦିଏ ।

ଇତିହାସ ପୃଷ୍ଠାରୁ ଜଣାଯାଏ ଯେ, ଓଡ଼ିଶାର ସୁପ୍ରସିଦ୍ଧ ସ୍ମୃତିକାର ଶମ୍ଭୁକର ବାଜପେୟୀଙ୍କ ଧର୍ମପ୍ରାଣା ପତ୍ନୀ ସତ୍ୟବତୀ ପ୍ରତ୍ୟହ ପଦ୍ମ ତୋଳି ଶ୍ରୀକୃଷ୍ଣ ପୂଜା କରୁଥିଲେ ।(୧୩୭) ଅତୀତରେ ଦେବୀଙ୍କ ପୂଜାର୍ଚ୍ଚନାରେ ଜୀବନ ଅତିବାହିତ କରିଥିବା ଷାଠିଏ ଜଣ ନାରୀ ସନ୍ନ୍ୟାସିନୀଙ୍କର ମୂର୍ତ୍ତି ଭୁବନେଶ୍ୱରରେ ଥିବା ବିନ୍ଦୁସାଗର ପୁଷ୍କରିଣୀର ଏକ ପାର୍ଶ୍ୱରେ ଦେଖାଯାଏ । (୧୩୮) ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର, ବ୍ରହ୍ମେଶ୍ୱର ମନ୍ଦିର ଓ କେତେକ ପରବର୍ତ୍ତୀକାଳୀନ ଦେବାଳୟରେ ନାରୀ ସନ୍ନ୍ୟାସିନୀଙ୍କର ଚିତ୍ର ପରିଦୃଷ୍ଟ ହୁଏ । (୧୩୯) ଉଦୟଗିରିର ରାଣୀଗୁମ୍ଫାରେ ନାରୀ ସନ୍ନ୍ୟାସିନୀଙ୍କ ଚିତ୍ର ମିଳେ । (୧୪୦) ଅନନ୍ତ ବାସୁଦେବ ମନ୍ଦିରର ଅନୁଶାସନରୁ ଉପଲବ୍ଧି ହୁଏ ଯେ, ଗଜପତି ଅନଙ୍ଗଭୀମ ଦେବଙ୍କ କନ୍ୟା ଚନ୍ଦ୍ରିକା ଦେବୀ ଆବାଲ୍ୟରୁ ବିଷ୍ଣୁଭକ୍ତା ଥିଲେ ଓ ଗୋଟିଏ ମନ୍ଦିର ନିର୍ମାଣ କରାଇଥିଲେ । (୧୪୧) ଭୁବନେଶ୍ୱରରେ ଭୌମକରବଂଶୀୟା ରାଣୀ ମୋହିନୀ ଦେବୀ ବିନ୍ଦୁ ସରୋବରର ଦକ୍ଷିଣରେ ଗୋଟିଏ ମନ୍ଦିର ପ୍ରତିଷ୍ଠା କରି ନିଜର ଧର୍ମପ୍ରାଣତାର ପରିଚୟ ଦେଇଥିଲେ । (୧୪୨) ବ୍ରହ୍ମେଶ୍ୱର ମନ୍ଦିର ଗାତ୍ରରେ ଭକ୍ତିଭାବବିହ୍ୱଳା ରମଣୀମାନଙ୍କର ନୃତ୍ୟର ଚିତ୍ର ମିଳେ । (୧୪୩) ବିଶ୍ୱନାଥ

କବିରାଜଙ୍କ 'ସାହିତ୍ୟ-ଦର୍ପଣ' ଗ୍ରନ୍ଥରେ ନାରୀ ସନ୍ନ୍ୟାସିନୀଙ୍କର ଉଲ୍ଲେଖ ଦେଖାଯାଏ ।

"ଦୂତ୍ୟଃ ସଖୀ ନଟୀ ଦାସୀ ଆତ୍ରେୟୀ ପ୍ରତିବେଶିନୀ
ବାଳାପ୍ରବ୍ରଜିତା କାରୁଃ ଶିଲ୍ପିନ୍ୟାଦ୍ୟା ସ୍ୱୟଂ ତଥା ।" (ପୃ୯୨)

ଏହି ସମସ୍ତ ଉଦାହରଣରୁ ପ୍ରତିପାଦିତ ହୁଏ ଯେ, ଧର୍ମପରାୟଣ ହୋଇ ଆଜୀବନ ଭକ୍ତିପୂତ ଜୀବନ ଅତିବାହିତ କରିବା ସେ ଯୁଗର ନାରୀଜାତି ମଧ୍ୟରେ ପରିଦୃଷ୍ଟ ହେଉଥିଲା । ସାରଳାଙ୍କ ଲେଖାରେ ସେହି ପରମ୍ପରା ହିଁ ରୂପଲାଭ କରିଅଛି ।

## (ଖ) ବିଦ୍ବତ୍ତା ଓ ଶିକ୍ଷା

ପ୍ରାଚୀନ କାଳରେ ଭାରତୀୟ ନାରୀମାନେ ଶିକ୍ଷାଲାଭ କରୁଥିଲେ । ସେମାନଙ୍କ ମଧ୍ୟରେ ବିଦୁଷୀ ରମଣୀ ଥିଲେ । ବୃହଦାରଣ୍ୟକ ଉପନିଷଦ୍‌ରୁ ପରିଜ୍ଞାତ ହୁଏ ଯେ, ଗାର୍ଗୀ ଜଣେ ବିଦୁଷୀ ମହିଳା ଥିଲେ । ସେ ଯାଜ୍ଞବଲ୍କ୍ୟଙ୍କ ଭଳି ପଣ୍ଡିତଙ୍କୁ ଜନକଙ୍କ ରାଜସଭାରେ ବ୍ରହ୍ମତତ୍ତ୍ୱ ଜିଜ୍ଞାସା କରିଥିଲେ । (୧୯୪) ବୌଦ୍ଧ ଥେରିଗାଥାରୁ ଜଣାଯାଏ ଯେ, ସାବଥୀର ଶେଠ-କନ୍ୟା, କସ୍‌ସା ଗୌତମୀ ଓ ସୁମନା ଜ୍ଞାନଲାଭ କରିପାରିଥିଲେ । (୧୯୫) 'ଧାପଦକାପ୍ପ' ଗ୍ରନ୍ଥରେ ଅଛି ଯେ, ସୁଯ୍ୟର୍ଯ୍ୟ-ବଟସା ନାମକ ରମଣୀ ଧର୍ମସଭାରେ ନୃତ୍ୟ କରିଥିଲେ । (ପୃ୧୮୩) ଏହି ବୃତ୍ତାନ୍ତରୁ ଅବଧାରିତ ହୁଏ ଯେ, ବୌଦ୍ଧ ଯୁଗରେ ନାରୀ କଳାର ସାଧନା କରୁଥିଲେ । ଶିବା ନାମକ କନ୍ୟାର ବେଦାଧ୍ୟୟନ, ସୁଲଭାଙ୍କର ମୋକ୍ଷଧର୍ମ ବିଚାର, ଉତ୍ତରା କନ୍ୟାର ନୃତ୍ୟଗୀତ ଶିକ୍ଷା ମହାଭାରତ ଯୁଗରେ ନାରୀଗଣ ସୁଶିକ୍ଷିତା ଥିବାର ପ୍ରମାଣ ପ୍ରଦାନ କରେ । (୧୯୬)

ପଞ୍ଚଦଶଶତାବ୍ଦୀରେ ଉତ୍କଳରେ ନାରୀଶିକ୍ଷା ପ୍ରଚଳିତ ଥିଲା । ସେମାନଙ୍କ ମଧ୍ୟରେ କେତେକ ବିଦୁଷୀ ରମଣୀ ମଧ୍ୟ ଥିଲେ । ସାରଳା ଦାସଙ୍କ ମହାଭାରତରେ ଏହାର ସୂଚନା ମିଳେ । ଭାନୁମତୀ ପରମ ଜ୍ଞାନବତୀ ଓ ଶାସ୍ତ୍ର-ନିର୍ଜିତା ଥିଲେ । (ଆଦ୍ୟ ୧୧୯ପୃ) ପାଣ୍ଡବ-ପତ୍ନୀ ଦ୍ରୌପଦୀ ପଣ୍ଡିତା ନାରୀ ଥିଲେ । (୧୯୭) କବି କହନ୍ତି ଯେ ପାବତୀ ଲକ୍ଷେ ଜ୍ୟୋତିଷଶାସ୍ତ୍ର ଅଧ୍ୟୟନ କରିଥିଲେ । (୧୯୮) ହାରିବତୀ ଓ ମାୟାବତୀ ଉଭୟେ ତନ୍ତ୍ରବିଦ୍ୟାରେ ପାରଙ୍ଗମ ଥିଲେ । ହାରିବତୀ ନାଗାନ୍ତ ବିଦ୍ୟା ବଳରେ ମନ୍ତ୍ର ପଢ଼ି ଅର୍ଜୁନଙ୍କୁ ଅଶୀତାଳ ଗଭୀର

ଗହ୍ୱର ମଧ୍ୟରୁ ଉଠାଇ ଆଣିପାରିଥିଲେ । ଏଥିରୁ ସ୍ପଷ୍ଟ ଯେ ସେ ତନ୍ତ୍ର ମନ୍ତ୍ର ଜାଣିଥିଲେ । (୧୪୯) ମାୟାବତୀ ତନ୍ତ୍ରାଦି ବିଦ୍ୟା ବଳରେ ସୁଭଦ୍ରାଙ୍କ ପ୍ରତି ଅର୍ଜ୍ଜୁନଙ୍କୁ ଆକୃଷ୍ଟ କରାଇଥିଲେ । ସେ ସୁଭଦ୍ରାଙ୍କୁ ସବୁ ବିଦ୍ୟା ଶିଖାଇ ଦେଇଥିଲେ । (୧୫୦) ସୁଦେଷ୍ଣା ଯୁଦ୍ଧବିଦ୍ୟା ଓ ରାଜନୀତି ସମ୍ବନ୍ଧରେ ଜ୍ଞାନ ଲାଭ କରିଥିଲେ । ଚନ୍ଦ୍ରପୁର ନାମକ ରାଜ୍ୟରେ ସେ ପୂର୍ବଜନ୍ମରେ ଶାସନ କରିବା କଥାରୁ ଏହା ସ୍ପଷ୍ଟ । ମାତୃଗର୍ଭରେ ଥିବା ବେଳେ ସେ ଧନୁର୍ବିଦ୍ୟା ସମ୍ବନ୍ଧରେ ଜ୍ଞାନ ଲାଭ କରିଥିଲେ ବୋଲି କବି କହିଛନ୍ତି । (ଉଦ୍ ୧୫ ପୃ) ସୁଦେଷ୍ଣାଙ୍କର ଭ୍ରାତା କୀଚକଙ୍କ ସମୀପକୁ ପତ୍ରଲିଖନ ଓ ମହାଭାରତ ସମର ସମ୍ବନ୍ଧରେ ଭବିଷ୍ୟତ ବାଣୀ କଥନ ବର୍ଣ୍ଣନାରୁ ଅବଧାରିତ ହୁଏ ଯେ ସେ ପରମ ବିଦୁଷୀ ମହିଳା ଥିଲେ । (୧୫୧) ଦ୍ରୌପଦୀଙ୍କ ପରିଚାରିକା ଦ୍ରୌପଦୀଙ୍କୁ ବିଭିନ୍ନ ଗାଣିତିକ ବିଚାର ବୁଝାଇଥିବାରୁ ଜଣାଯାଏ ଯେ, ପରିଚାରିକା ଗଣିତ ବିଦ୍ୟାରେ ପାରଦର୍ଶିନୀ ଥିଲେ । (ଆଦ୍ୟ ୨୫୯ପୃ) ସେ କାଳର ନାରୀଜାତି ମଧ୍ୟରେ ସଙ୍ଗୀତ, ନୃତ୍ୟ ଓ ଚିତ୍ରାଙ୍କନ ବିଦ୍ୟାର ଆଦର ଥିଲା । (୧୫୨) ମାଦ୍ରୀ ଦେବୀ ଜ୍ୟୋତିଷ ବିଦ୍ୟା ଜାଣିଥିଲେ । ତେଣୁ ସେ କହିଥିଲେ ଯେ, ଗଣ୍ଡଦୋଷ ବିଚାର ନ କରି ପଣ୍ଡୁ ନବଜାତ ଶିଶୁ ଯୁଧିଷ୍ଠିରଙ୍କ ସମୀପକୁ ଯିବା ଠିକ୍ ନୁହେଁ । (ଆଦ୍ୟ ୫୮ ପୃ)

ଉତ୍କଳରେ ନାରୀଶିକ୍ଷାର ପରମ୍ପରା ପ୍ରତିଷ୍ଠିତ ଥିଲା । ଭୁବନେଶ୍ୱର ମନ୍ଦିରଗାତ୍ରରେ ନାରୀ ଶିକ୍ଷାଦାନ କରୁଥିବା ଓ ଶିଷ୍ୟାଗଣ ଶିକ୍ଷା ଗ୍ରହଣ କରୁଥିବାର ଚିତ୍ର ଅଙ୍କିତ । (୧୫୩) ପଞ୍ଚଦଶ ଶତାବ୍ଦୀରେ ମାଧବୀ ଦାସୀ ନାମକ ନାରୀ କବି ଥିବାର ଜଣାଯାଏ । କଳ୍ପଲତା କାବ୍ୟରେ ନାରୀମାନଙ୍କର ନୃତ୍ୟଗୀତର ବହୁ ବର୍ଣ୍ଣନା ଅଛି । (୧୫୪) ସ୍ୱପ୍ନ ଇଚ୍ଛାବତୀ କାବ୍ୟରେ ନାୟିକା ସାହିତ୍ୟ ଓ ସଂଗୀତ ଅଧ୍ୟୟନ କରୁଥିବା କଥା ବର୍ଣ୍ଣିତ । (ପୃ୧୦) ଉଷାଭିଳାଷ କାବ୍ୟରେ ନାୟିକା ନୃତ୍ୟ ଗୀତ ଓ ସାହିତ୍ୟରେ ନିପୁଣ ଥିଲେ ବୋଲି କଥିତ ।

"ନୃତ୍ୟ ଗୀତ ବାଦ୍ୟ କାବ୍ୟ ରସରେ କୁଶଳ
ବିବିଧ ବିଳାସ ରସେ ବଞ୍ଚଇ ସେ କାଳ ।"
"ସାହିତ୍ୟ ପଢ଼ଇ କୁଟେ ସଖୀଙ୍କ ମେଳେ
ଉତ୍ସୁକ ହୁଅଇ ପୁଣି ରତିରସ ଖେଳେ ।" (୧୪ ଓ ୧୫ପୃଷ୍ଠା)

## (ଙ) ବୀରତ୍ୱ ଓ ସାହସ

ଭାରତୀୟ ନାରୀଗଣ ଯୁଗେ ଯୁଗେ ବୀରତ୍ୱ ଓ ସାହସ ପ୍ରଦର୍ଶନ କରି ଆସି ଅଛନ୍ତି । ପୁରାଣ ଇତିହାସରୁ ଏହାର ପ୍ରମାଣ ମିଳେ । ସଂସ୍କୃତ ମହାଭାରତରୁ ଜଣାଯାଏ ଯେ ଶକୁନ୍ତଳା, ଗାନ୍ଧାରୀ, କୁନ୍ତୀ ଓ ଦ୍ରୌପଦୀ ତେଜସ୍ୱିନୀ ନାରୀ ଥିଲେ (୧୫୫) ମଧ୍ୟଯୁଗରେ ନାରୀ ସିଂହାସନରେ ଉପବେଶନ କରି ରାଜ୍ୟ-ଶାସନ କରୁଥିଲେ ଓ ଶତ୍ରୁସେନାର ସମ୍ମୁଖୀନ ବି ହେଉଥିଲେ । କାକତୀୟ ବଂଶର ରାଣୀ ରୁଦ୍ରାମ୍ବା, କାଶ୍ମୀରର ରାଣୀ ସୂର୍ଯ୍ୟମତୀ (୧୫୬) ସିଂହାସନରେ ଉପବେଶନ କରି-ଥିଲେ । ଚାଲୁକ୍ୟ ବଂଶର ରାଣୀ ନାଇକା ଶିଶୁପୁତ୍ରକୁ କୋଡ଼ରେ ଧାରଣକରି ଯୁଦ୍ଧ କରିଥିବାର ଜଣାଯାଏ । (୧୫୭) ରାଷ୍ଟ୍ରକୂଟ ବଂଶର ରାଣୀ ଶୀଳା ଦେବୀ ମଧ୍ୟ ରାଜ୍ୟ ଶାସନ କରୁଥିଲେ । (୧୫୮) ରାଜପୁତ ବଂଶର ରାଣୀ କର୍ମ ଦେବୀ କୁତବୁଦ୍ଦିନ ଆଇବାକ୍‌ଙ୍କ ସହିତ ସମର କରିଥିଲେ । (୧୫୯) ସୂର୍ଯ୍ୟବଂଶର ଗଜପତି କପିଳେନ୍ଦ୍ର ଦେବ କୋଣ୍ଡାପିଲି ଦୁର୍ଗ ଅବରୋଧ କଲାବେଳେ ସେହି ଦୁର୍ଗର ରାଣୀ ଚନ୍ଦ୍ରାବତୀ ତାଙ୍କୁ ବାଧା ପ୍ରଦାନକଲେ ଓ ବୀରତ୍ୱ ପ୍ରଦର୍ଶନ କରିଥିଲେ । (୧୬୦)

ପଞ୍ଚଦଶ ଶତାବ୍ଦୀର ଉତ୍କଳୀୟ ନାରୀମାନଙ୍କ ଠାରେ ବୀରତ୍ୱ ଓ ସାହସ ନିହିତ ଥିଲା । ସାରଳା ଦାସଙ୍କ ଲେଖାରେ ଏହାର ଦୃଷ୍ଟାନ୍ତ ରହିଅଛି । କଳ୍କି-ବର୍ଣ୍ଣିତ ବିରାଟ-ପତ୍ନୀ ରାଣୀ ସୁଦେଷ୍ଣା ଜଣେ ବୀରରମଣୀ । ସେ ଏକ ଜନ୍ମରେ ଚମ୍ପପୁର ନାମକ ରାଜ୍ୟର ରାଣୀ ହୋଇଥିଲେ ଏବଂ ଅସୁରମାନଙ୍କୁ ଦମନ କରି-ଥିଲେ । (ଉଦ୍ ୧୫ପୃ) ଉତ୍କଳର ବୀରରମଣୀମାନେ ପ୍ରିୟ ପୁତ୍ର ଓ ପତିଙ୍କୁ ହର୍ଷ ହସି ଯୁଦ୍ଧଭୂମିକୁ ପ୍ରେରଣ କରୁଥିଲେ । ଦୁର୍ଯ୍ୟୋଧନଙ୍କ ବିରୁଦ୍ଧରେ ଉତ୍ତରକୁମର ଯୁଦ୍ଧଯାତ୍ରା କଲାବେଳେ ମାତା ସୁଦେଷ୍ଣା କଲ୍ୟାଣ କାମନା କରିଥିଲେ ଓ ଅନ୍ୟାନ୍ୟ ନାରୀମାନେ ବନ୍ଦାପନା କରି ବିଦାୟ ଦେଇଥିଲେ । (୧୬୧) ଦ୍ରୌପଦୀ ଅର୍ଜୁନଙ୍କୁ ଉତ୍ତରକୁମରଙ୍କ ସାରଥୀ ଭାବରେ ଯୁଦ୍ଧଯାତ୍ରା କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । (୧୬୨) ମହାଭାରତ ସମରକୁ ଗଲାବେଳେ ଦ୍ରୌପଦୀ ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କୁ ବନ୍ଦାପନା କରି ବିଦାୟ ଦେଇଥିଲେ । (ଭୀଷ୍ମ ୨୫-୨୬ପୃ) ପାର୍ବତୀଙ୍କ ଚରିତ୍ରରେ ମଧ୍ୟ କବି ବୀରତ୍ୱ ଆରୋପ କରିଛନ୍ତି । ପାର୍ବତୀ କାର୍ତ୍ତି ଓ କୃତ୍ତିବାସ ନାମକ ଅସୁର ଦ୍ୱୟଙ୍କୁ ହତ୍ୟାକରିବା ତାଙ୍କ ବୀରତ୍ୱର ପରିଚୟ ଦିଏ । (୧୬୩)

ସାରଳାଙ୍କ କୁନ୍ତୀ ଦେବୀ ଜଣେ ଅସାଧାରଣ ବୀରରମଣୀ । କୁନ୍ତୀ ଶ୍ରୀକୃଷ୍ଣଙ୍କୁ ସ୍ପଷ୍ଟ ଭାବରେ ଜଣାଇ ଦେଇଥିଲେ ଯେ, ପାଣ୍ଡବମାନେ କୌରବଙ୍କ ସହ ବନାଯୁଦ୍ଧରେ କୌଣସି ସମାଧାନ କରିବା ତାଙ୍କର ଇଚ୍ଛା ନୁହେଁ । ସେ ଚାହିଁଥିଲେ ଯେ ତାଙ୍କର ପୁତ୍ରମାନେ ବୀରତ୍ୱର ପ୍ରମାଣ ଦିଅନ୍ତୁ । ବୀରସନ୍ତାନର ଜନନୀ ରୂପରେ ପରିଚିତା ହେବା ଥିଲା ତାଙ୍କର ଲକ୍ଷ୍ୟ । ତେଣୁ ସେ ବାଣନାସ୍ତ୍ର ପକାଇ ଶ୍ରୀକୃଷ୍ଣଙ୍କୁ ଯୁଦ୍ଧ ପାଇଁ ପ୍ରଣୋଦିତ କରିଥିଲେ ।

"ମୋହର ପୁତ୍ର ଗୁଡ଼ାକ ଶୃଗାଳ ସମାନ
ଧିକ ଧିକ ହେଉ କନା ତାଙ୍କର ଜୀବନ ।
ଆମ୍ଭର ସଖା ସୋଦର ଅଟୁ ତୁ ଯୁକତେ
କର ତୁ ଉପାୟ ଯୁଦ୍ଧ ହୋଇବ ଯେମନ୍ତେ ।
ତୁମ୍ଭେ ଗୋବିନ୍ଦ ସମର ଯବେ ନ କରାଉ
ମୋହର ରୁଧିର ମିଶାଇ ତୁ ମିଷ୍ଟାନ୍ନ ଖାଉ ।
ତୁ ଯେବେ ପ୍ରବୋଧ କର ଆସୁ ବନମାଳୀ
ତୋର ଆଗରେ ପଶିବ ନଷ୍ଟେ ଅଗ୍ନି ଜାଳି ।" (ଉଦ୍ ୩୭ପୃ)

କେବଳ ମହାଭାରତରେ ନୁହେଁ, 'ଚଣ୍ଡୀ ପୁରାଣ'ରେ ମଧ୍ୟ ସାରଳା ନାରୀଙ୍କୁ ବୀରରମଣୀ ରୂପରେ ପ୍ରତିଷ୍ଠା କରିଅଛନ୍ତି । ଦୁର୍ଗା ନାରୀ ହୋଇ ଅସୁର-ମାନଙ୍କୁ କପରି ବଧ କରିଥିଲେ, ତାହାର ବର୍ଣ୍ଣନା 'ଚଣ୍ଡୀ ପୁରାଣରେ' ଅଛି । (୧୬୪) ଶଶୀସେଣା ପୁରୁଷ ବେଶ ଧାରଣ କରି କପରି ସାହସର ସହ ଗଣ୍ଡାକୁ ବଧ କଲେ ଓ ରାଜାଙ୍କର ପ୍ରୀତିଭାଜନ ହେଲେ ତାହା କବି ପ୍ରତାପ ରାୟ ମଧ୍ୟ ବର୍ଣ୍ଣନା କରିଅଛନ୍ତି । (୧୬୫) ଭୌମକର ବଂଶରେ ବହୁ ତେଜସ୍ୱିନୀ ରମଣୀ ସିଂହାସନରେ ଉପବିଷ୍ଟ ହୋଇ ରାଜ୍ୟ ଶାସନ କରିଥିବାର ଉପଲବ୍ଧ ହୁଏ । (୧୬୬) ମୌର୍ଯ୍ୟଯୁଗରେ ମତ୍ସ୍ୟଜୀବି ଜାତିର ରାଜକନ୍ୟା କାରୁବାକୀ ଅଶୋକଙ୍କ ସହ ସମର କରିଥିଲେ ବୋଲି ଜଣାଯାଏ । (୧୬୭) ଉଦୟଗିରିର ରାଣୀଗୁମ୍ଫାରେ ଥିବା ଗୋଟିଏ ପ୍ରସ୍ତର-ଖୋଦିତ ଚିତ୍ରରେ ଜଣେ ରାଜକୁମାରୀ ଜଣେ ରାଜକୁମାରଙ୍କ ସହ ଯୁଦ୍ଧ କରୁଥିବାର ପରିଦୃଷ୍ଟ ହୁଏ । ଗଣେଶ ଗୁମ୍ଫାରେ ଗୋଟିଏ ଚିତ୍ରରେ ଦେଖାଯାଏ ଯେ ଗୋଟିଏ ନାରୀ ପୁରୁଷ ସହ ଯୁଦ୍ଧ କରୁଅଛି । (୧୬୮) କମ୍ବଦନ୍ତୀ କହେ, ବାଙ୍କି ରାଜ୍ୟର ରାଣୀ ଶତ୍ରୁ ବିରୁଦ୍ଧରେ ସୈନ୍ୟ-ଚାଳନା କରି ବିଜୟିନୀ ହୋଇଥିଲେ । (୧୬୯) ଷଡ଼େଇକଳାର ରାଣୀ ନିଜର ପୁତ୍ରକୁ ଶତ୍ରୁ ବିରୁଦ୍ଧରେ

ଲଢ଼ିବା ପାଇଁ ଗଭୀର ପ୍ରେରଣା ଦାନ କରିଥିବାର ଜଣାଯାଏ । (୧୭୦) 'ପାଇକ ଖେଦା'ରେ ଅଛି ଯେ ଓଡ଼ିଆ ପୁଅ ଯୁଦ୍ଧକୁ ଗଲାବେଳେ ତାହାର ମାଆ, ମାଉସୀ ଓ ପତ୍ନୀ ବନ୍ଦାପନା କରି ବିଦାୟ ଦେଉଥିଲେ ।

"ମାଆ ମାଉସୀ ଗୁଆ ଅଣିବେ, ଯତନରେ ହଳଦୀରେ ଧୋଇବେ ।
ବାମା ରତନ ଥିବ, ଦୁବ ଅଠର ଦେବ, ସୂତାଗଣ୍ଠି ଦେବ ଗୋ ।
ବାରାନସୀ, ଚଣ୍ଡିକା ରଚି ଗଣ୍ଠି ଆଣ୍ଠରେ ବାରାନସୀ ଗୋ ।
ବ୍ରତ ଡୋରିରେ ଦୁବ ଗୁଡ଼ାଇ ଫୁଲ ଚନ୍ଦନ ଯତନେ ଦେଇ ।
ଧୂପ ବନ୍ଦାଇ ଦେବ ମଣ୍ଡା ଅଠର ଦେବ, ମନାସିବ ଶୁଭ ଗୋ ।
ଚେତିଥିବ, ଓଲଟା ଚକୁଳିକୁ ନ ଭୁଲିବ, ଚେତିଥିବ, ଗୋ । (ପୃ୯)

## ୩. ସାମାଜିକ ପ୍ରଥା ଓ ନାରୀଜାତି

ସମାଜର ରୀତିନୀତି ନାରୀଜାତିକୁ ଗଭୀର ଭାବରେ ପ୍ରଭାବିତ କରେ । ସତୀପ୍ରଥା, ପରଦାପ୍ରଥା, ବିଧବାପ୍ରଥ ନାରୀସମାଜର ପ୍ରଗତି ପଥରେ ପ୍ରତିବନ୍ଧକ । ନାରୀର ବିବାହଯୋଗ୍ୟ ବୟସ ହ୍ରାସ ହେଲେ ତାର ଶିକ୍ଷାଦୀକ୍ଷା ବାଧା ପାଏ । ତେଣୁ ବାଲ୍ୟବିବାହ ପ୍ରଥା ନାରୀ ପକ୍ଷରେ କ୍ଷତିକର । ଅନ୍ୟପକ୍ଷରେ ଯୁବତୀ-ବିବାହ ତାକୁ ଶିକ୍ଷାଲାଭ ପାଇଁ ସୁଯୋଗ ପ୍ରଦାନ କରେ । ପୁରୁଷ ଏକପତ୍ନୀକ ହେଲେ ପରିବାରରେ ନାରୀର ସମ୍ମାନ ସୁରକ୍ଷିତ ରହେ । ପୁରୁଷ ବହୁପତ୍ନୀକ ହେଲେ ନାରୀର ଦୁଃଖ-ଦୁର୍ଦ୍ଦଶାର ସୀମା ରହେ ନାହିଁ । ପଞ୍ଚଦଶ ଶତାବ୍ଦୀରେ ଥିବା ସାମାଜିକ ପ୍ରଥା ଗୁଡ଼ିକର ବିଚାର କଲେ, ସେ ଯୁଗର ନାରୀଜାତିର ଯଥାର୍ଥ ସ୍ଥିତି ଉପଲବ୍ଧ ହେବ । ସାରଳାଙ୍କ ମହାଭାରତରୁ ସେ କାଳର ସମାଜିକ ପ୍ରଥାର ବହୁ ପରିଚୟ ମିଳେ । ନିମ୍ନ ଆଲୋଚନାରୁ ତାହା ଜଣାଯିବ ।

### (କ) ଏକପତ୍ନୀ ଗ୍ରହଣ

ଏକପତ୍ନୀ ଗ୍ରହଣ କରିବା ରୀତି ବିଶ୍ୱ ସମାଜର ସାଧାରଣ ନୀତି । ପ୍ରାଚୀନ କାଳରୁ ଏହି ନୀତି ମାନବ ସମାଜରେ ଗୃହୀତ ହୋଇଆସୁଅଛି । ଏହା ଏବେ ମଧ୍ୟ ସମାଜରେ ମୁଖ୍ୟ ସ୍ଥାନ ଲାଭ କରେ(୧୭୧) । ପାଶ୍ଚାତ୍ୟ ସମାଜଶାସ୍ତ୍ରବିଦ୍ କହନ୍ତି ଯେ ବିବାହରେ ଏକଭିତ୍ର ଭାବନା ନିହିତ । ତେଣୁ ବହୁପତ୍ନୀ ବା ବହୁସ୍ୱାମୀ ଗ୍ରହଣ ବିବାହରେ ନିଷିଦ୍ଧ ହେବା ଉଚିତ । (୧୭୨) ବ୍ୟାସଦେବ ଏକପତ୍ନୀ ଗ୍ରହଣ ରୀତିକୁ ପ୍ରଶସ୍ତ ବୋଲି ମତ ଦେଇଅଛନ୍ତି । (୧୭୩)

ପଞ୍ଚଦଶ ଶତାବ୍ଦୀରେ ଏକପତ୍ନୀଗ୍ରହଣ ପ୍ରଥା ଉତ୍କଳରେ ସର୍ବଜନାଦୃତ ଥିଲା । ସାରଳା ଦାସ ସାଧାରଣ ସ୍ତରର ଲୋକଙ୍କ ବିଷୟ ବର୍ଣ୍ଣନା କଲାବେଳେ ଗୋଟିଏମାତ୍ର ଭାର୍ଯ୍ୟାର ସୂଚନା ଦେଇଅଛନ୍ତି । କବିଙ୍କ ବେଦଶ୍ରବା (ଆଦ୍ୟ ୭୩୦ ପୃ), ବିଷ୍ଣୁକର (ଆଦ୍ୟ ୨୨୦ପୃ), ଶଶିକର (ଆଦ୍ୟ ୧୭୬ ପୃ), ଦ୍ରୋଣ (୧୭୪), ଏକଲବ୍ୟ (ଆ ୧୦୦), ରୁଦ୍ରଶ୍ରବଣ (ଉ ୩୮ପୃ), ଶାନ୍ତନୁ (ମ ୪୧୨ ପୃ), ଅନନ୍ତା (ଉ ୭୬ ପୃ), ମେଳକ (ଉ ୭୫ ପୃ), କୌଶିକ (ବ ୨୮୪ପୃ), ସୁଜାଣେଶ୍ୱର ( ସ୍ୱ ୯ପୃ) ଏକପତ୍ନୀକ ପୁରୁଷ ।

କବି ଏକପତ୍ନୀଗ୍ରହଣ ଖତିର ପ୍ରଶଂସା ବହୁ ସ୍ଥଳରେ କରିଅଛନ୍ତି । ଦୁର୍ଯ୍ୟୋଧନ ଏକପତ୍ନୀକ ଥିଲେ । ସେଥିପାଇଁ ସେ ନିଜକୁ ଗୌରବାନ୍ୱିତ ମନେ କରୁଥିଲେ । ଦୁର୍ଯ୍ୟୋଧନଙ୍କ ଉକ୍ତିରେ ଏକପତ୍ନୀଗ୍ରହଣର ପ୍ରଶଂସା ଓ ବହୁପତ୍ନୀ ଗ୍ରହଣର ନିନ୍ଦା ନିହିତ । ଯଥା—

"ଏକା ବୁଦ୍ଧି ତାର ମୋର ସମାନ ପ୍ରକୃତି
ଏକା ଭାରିଯା ମୋହର ଅଟେ ଭାନୁମତୀ ।"
"ଏକା ଭାରିଯାରେ ଯିନା ରହେ ସନ୍ତର୍ପିଯା
ଅଳପେ ଆୟୁଷ ତୁଟେ ଯାର ବେନି ପ୍ରିୟା ।" (ଉ୧୦ପୃ)

ଶ୍ରୀକୃଷ୍ଣଙ୍କ ମୁଖରେ କବି ଏକପତ୍ନୀ ଗ୍ରହଣ ଖତିର ପ୍ରଶଂସା ମଧ୍ୟ ପ୍ରଦାନ କରିଛନ୍ତି । ଯଥା—

"ଏକ ସ୍ତ୍ରିରି ସଙ୍ଗ କରି ଏକ ବାକ୍ୟ ଭାଷି
ମୂର୍ଖ ହୋଇ ମୁଖେ ଯେହୁ କଠୋର ନ ଭାଷି ।" (ଉ୨୫ପୃ)

ଉତ୍କଳୀୟ ପରମ୍ପରାରେ ଏକପତ୍ନୀତ୍ୱ ହିଁ ଆଦର୍ଶ ଖତି । ବଳରାମ ଦାସ 'ଦାଣ୍ଡି ରାମାୟଣ'ରେ କହନ୍ତି ଯେ ସୀତା ରାମଚନ୍ଦ୍ରଙ୍କୁ ଏକପତ୍ନୀ ଗ୍ରହଣ ରୂପକ ଆଦର୍ଶ ବ୍ରତକୁ ଆଚରଣ କରିବା ପାଇଁ ଶପଥ କରାଇଥିଲେ । (ଆ୨୦୪) 'ଭାବବତ'ରେ ମଧ୍ୟ ତଦ୍ରୂପ ଚିନ୍ତା ନିହିତ । (ପୃ ୮୪-୮୫) ହରିବଂଶରେ ଅଚ୍ୟୁତାନନ୍ଦ କହନ୍ତି ଯେ, ଏକ ସ୍ତ୍ରୀ ପାଇଁ ଏକ ପୁରୁଷ ବିଧିର ବିଧାନ । (ପୃ ୧୧୫ ଓ ପୃ ୩୨୪)

## (ଖ) ବହୁପତ୍ନୀ ଗ୍ରହଣ

ଭାରତୀୟ ସମାଜରେ ବହୁପତ୍ନୀ ଗ୍ରହଣ ପ୍ରଥା ବହୁ ପ୍ରାଚୀନ । ବୈଦିକ କାଳରୁ ଆଜି ପର୍ଯ୍ୟନ୍ତ ଏହି ପ୍ରଥା ପ୍ରଚଳିତ ହୋଇ ଆସୁଅଛି । (୧୭୫) ଋକ୍

ବେଦରେ ଅଛି—"ଯେପରି ଅନେକ ସ୍ତ୍ରୀ ଜଣେ ସ୍ୱାମୀଙ୍କୁ ଭଜନ୍ତି, ସେହିପରି ଭଗିନୀ ପୃଥିବୀ ଓ ସ୍ୱର୍ଗ ଇନ୍ଦ୍ରଙ୍କୁ ଭଜନ କରନ୍ତି ।" (୧୭୬) କାମସୂତ୍ରରେ ଅଛି—"ପୁରୁଷ ବହୁ ସ୍ତ୍ରୀ ଏକତ୍ର କରି ସମସ୍ତଙ୍କ ସଙ୍ଗରେ ସମାନ ଭାବରେ ମିଳିତ ହେଉ ।" (୧୭୭) ସଂସ୍କୃତ ମହାଭାରତରୁ ଉପଲବ୍ଧ ହୁଏ ଯେ, ପୁରୁଷ ପକ୍ଷରେ ବହୁପତ୍ନୀ ଗ୍ରହଣ ସେ କାଳରେ ଅଧର୍ମ ବୋଲି ବିବେଚିତ ହେଉ ନ ଥିଲା । (୧୭୮)

ପଞ୍ଚଦଶ ଶତାବ୍ଦୀରେ ଉତ୍କଳର ରାଜପରିବାରରେ ବହୁ ପତ୍ନୀ ଗ୍ରହଣ ରୀତି ପ୍ରଚଳିତ ଥିଲା । କେତେକ ଦୃଷ୍ଟାନ୍ତରୁ ଏହା ପ୍ରତିପାଦିତ ହେବ । ଯୁଧିଷ୍ଠିର ଦ୍ରୌପଦୀଙ୍କ ବିଦ୍ୟମାନତାରେ ଯାଜପୁରନିବାସୀ ହରିସାହୁଙ୍କ କନ୍ୟା ସୁହାଣୀର ପାଣି ଗ୍ରହଣ କରିଥିଲେ । (ସ୍ୱ ପୃଷ୍ଠା-୬) ରାଜା ଯଯାତି ନଅ ଗୋଟି କନ୍ୟା ବିବାହ କରିଥିଲେ । ସେମାନଙ୍କ ନାମ ହେଲା—ଦେବଯାନୀ, ଭିଷ୍ଣା, ଶର୍ମିଷ୍ଠା, ତାରା, ବୃନ୍ଦାବତୀ, ଯୋଗବତୀ, ରେବତୀ, ମୃଗାକ୍ଷୀ ଓ କୃଷ୍ଣା ।(୧୭୯) ମୂଳ ମହାଭାରତରେ ଯଯାତିଙ୍କର ଦେବଯାନୀ (ବହୁସ୍ୱ ଭାର୍ଯ୍ୟାଂ ଧର୍ମେଣ ଦେବଯାନୀଂ ସୁମଧ୍ୟମାମ୍ ), (ଶର୍ମିଷ୍ଠା ପୂଜୟାମାସ ଶର୍ମିଷ୍ଠାଂ ଧର୍ମ ଚ ପ୍ରତ୍ୟପାଦୟତ୍) ଓ ବିଶ୍ୱାଚୀ (ବିଶ୍ୱାଚ୍ୟା ସହିତୋ ରେମେ ପୁନର୍ଶ୍ଚୈତ୍ରରଥେ ବନେ) ନାମକ ପତ୍ନୀଙ୍କ ନାମ ମିଳେ । (୧୮୦) ବିଷ୍ଣୁପୁରାଣରେ ମଧ୍ୟ ଯଯାତିଙ୍କର ଏହି ପତ୍ନୀତ୍ରୟଙ୍କର ନାମ ମିଳେ । (୧୮୧) ରାଜପରିବାରରେ ପ୍ରଚଳିତ ବହୁ ପତ୍ନୀ ଗ୍ରହଣ କରିବା ପ୍ରଥାକୁ ଲକ୍ଷ୍ୟ କରି ସାରଳା ଦାସ ମୂଳ ସଂଖ୍ୟାକୁ ତ୍ରିଗୁଣିତ କରିଅଛନ୍ତି ବୋଲି ପ୍ରତୀତ ହୁଏ । ଗୋପ୍ୟାନପୁରର ରାଜା କର୍ଣ୍ଣକେଶରୀ ତାଙ୍କର ସ୍ତ୍ରୀ ସାନୁମତୀଙ୍କ ବର୍ତ୍ତମାନତାରେ ଅନ୍ୟ ସ୍ତ୍ରୀ ଗ୍ରହଣ କରିବାକୁ ସ୍ଥିର କରିବା ବୃତ୍ତାନ୍ତରୁ ସେ କାଳରେ ରାଜବଂଶରେ ବହୁପତ୍ନୀ ଗ୍ରହଣର ରୀତି ଥିଲା ବୋଲି ଅବଧାରିତ ହୁଏ । (୧୮୨)

ଉତ୍କଳୀୟ ରାଜବଂଶରେ ବହୁପତ୍ନୀ ଗ୍ରହଣର ପରମ୍ପରା ଥିବା କଥା ଇତିହାସ କହେ । ଗଙ୍ଗବଂଶର ପ୍ରତିଷ୍ଠାତା ଚୋଡ଼ଗଙ୍ଗ ଦେବଙ୍କର ବହୁ ରାଣୀ ଥିବାର ଜଣାଯାଏ । ନରସିଂହ ଦେବ ତୃତୀୟ ଦୁଇଟି ପତ୍ନୀ, ନରସିଂହ ଦେବ ଚତୁର୍ଥ ଚାରିଗୋଟି ପତ୍ନୀ, କପିଳେନ୍ଦ୍ର ଦେବ ଏକାଧିକ ପତ୍ନୀ (୧୮୩) ଓ ପୁରୁଷୋତ୍ତମ ଦେବ ନବପତ୍ନୀ ଗ୍ରହଣ କରିଥିଲେ । (୧୮୪) 'ଚଣ୍ଡୀ ପୁରାଣ'ରେ କୁହାଯାଇଅଛି ଯେ, ମାଳତୀ କନ୍ୟା ବୈଲୋଚନଙ୍କୁ ଅନ୍ୟ ନାରୀମାନଙ୍କର ଅଙ୍ଗ ସ୍ପର୍ଶ ନ କରିବା ପାଇଁ ଶପଥ କରାଇ ଥିଲେ । ଏହି

ବୃତ୍ତାନ୍ତରୁ ଜଣାଯାଏ ଯେ ବୈଲୋଚନ ବହୁପତ୍ନୀକ ଥିଲେ । (ପୃ୯୩) 'କଳ୍ପଲତା' କାବ୍ୟରେ ନାୟିକାର ବହୁ ଜନନୀ ଥିଲେ ବୋଲି କୁହାଯାଇଅଛି । (୧୮୫) 'ପରିମଳା' କାବ୍ୟରେ ବିକ୍ରମକେଶରୀ ରାଜାଙ୍କର ସହସ୍ର ସଂଖ୍ୟକ ରାଣୀ ଥିଲେ ବୋଲି କବି କହିଛନ୍ତି । (୧୮୬)

## (ଗ) ସତୀଦାହ

ସତୀ ବା ସହମରଣ ଏକ ନିଷ୍ଠୁର ପ୍ରଥା । ବୈଦିକ ଯୁଗରେ ଏହାର ପ୍ରଚଳନ ନଥିଲା । ସେତେବେଳେ ସ୍ୱାମୀର କନିଷ୍ଠ ଭ୍ରାତା ସଙ୍ଗରେ ବିଧବା ନାରୀକୁ ବିବାହ କରାଇ ଦିଆଯାଉଥିଲା । (୧୮୭) ମହାଭାରତ ଯୁଗରେ ସହମରଣ ପ୍ରଶଂସିତ ହେଉଥିଲେ ହେଁ, ସମାଜରେ ବ୍ୟାପକ ଭାବରେ ତାହାର ପ୍ରଚଳନ ନଥିଲା । (୧୮୮) ଯେଉଁ ନାରୀମାନେ ବୈଧବ୍ୟ ଜୀବନ ନିମିତ୍ତ ଭୟଭୀତ ହେଉଥିଲେ, ତାଙ୍କ ପାଇଁ ଏହା ଥିଲା ଏକ ବିକଳ୍ପ ପନ୍ଥା । କିନ୍ତୁ ବ୍ରହ୍ମଚର୍ଯ୍ୟ ଜୀବନ ଉପରେ ସମାଜପତିମାନେ ପ୍ରାଧାନ୍ୟ ଦେଉଥିଲେ । ସମାଜ ନିୟୋଗ ପ୍ରଥା ଓ ବିଧବା-ବିବାହକୁ ସ୍ୱୀକୃତି ନ ଦେବାରୁ ନାରୀଜାତି ସତୀପ୍ରଥାର ଶିକାର ହେଲେ । (୧୮୯) ଏକାଦଶ ଶତାବ୍ଦୀ ବେଳକୁ ନାରୀପାଇଁ ଦୁଇଟି ପନ୍ଥା ଥିଲା—ବୈଧବ୍ୟ ବ୍ରତର ପାଳନ ଅଥବା ପତିର ଚିତାଗ୍ନିରେ ମୃତ୍ୟୁବରଣ । (୧୯୦) ଆକବରଙ୍କ କାଳରେ ଏହି ପ୍ରଥା ତିଷ୍ଠି ରହିଥିଲେ ହେଁ, ସତୀ ହେବା ପାଇଁ କାହାକୁ ବାଧ କରାଯାଉ ନ ଥିଲା । ରାଜା ମାନସିଂହଙ୍କର ପନ୍ଦର ଶହ ରାଣୀଙ୍କ ମଧ୍ୟରୁ କେବଳ ଷାଠିଏ ଜଣ ମାତ୍ର ସତୀ ହୋଇଥିବାର ଜଣାଯାଏ । (୧୯୧) ମଧ୍ୟଯୁଗରେ ସତୀପ୍ରଥା ରାଜପରିବାର ତଥା ଅନ୍ୟ ସମାଜରେ ବିରଳ ଭାବରେ ଦେଖାଯାଉଥିଲା । (୧୯୨) ଦକ୍ଷିଣ-ଭାରତରେ ଉଚ୍ଚବଂଶ ତଥା ସାଧାରଣ ସମାଜରେ ଏହି ପ୍ରଥା ପ୍ରଚଳିତ ନ ଥିଲା । (୧୯୩)

ସାରଳା ମହାଭାରତର ଆଲୋଚନାରୁ ଜଣାଯାଏ ଯେ, ପଞ୍ଚଦଶ ଶତାବ୍ଦୀରେ ଉତ୍କଳରେ ସତୀପ୍ରଥା ବିରଳ ଭାବରେ ପ୍ରଚଳିତ ଥିଲା । କୌଶିକ ବ୍ରାହ୍ମଣର ପତ୍ନୀ ସତ୍ୟା ସ୍ୱାମୀଙ୍କ ସହ ଦଗ୍ଧ ହୋଇଥିଲେ । (ବ ୨୮୬ପୃ) ଅଭିମନ୍ୟୁ ଯୁଦ୍ଧରେ ନିହତ ହେବା ପରେ ଉତ୍ତରା କନ୍ୟା ସତୀ ହେବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ । (ଦ୍ରୋ ୫୪ପୃ) ଏହି ଦୃଷ୍ଟାନ୍ତରୁ ସତୀ ପ୍ରଥାର ଅସ୍ତିତ୍ୱ ଉପଲବ୍ଧ ହୁଏ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ମୂଳ ମହାଭାରତରେ ସତୀ

ହେବା ପାଇଁ ଉତ୍ତରଙ୍କ ଇଚ୍ଛା ପ୍ରକାଶ କଥା ନାହିଁ । (୧୯୪) ମାର୍କଣ୍ଡେୟ ପୁରାଣରେ ସତ୍ୟାଙ୍କର ଚିତାରୋହଣ ବୃତ୍ତାନ୍ତ ମଧ୍ୟ ନାହିଁ । (୧୯୫)

ସାରଳା ଦାସ କେତେକ ସ୍ଥଳରେ ସତୀର ପ୍ରଶଂସା କରିଅଛନ୍ତି । ସେଥିରୁ ମନେହୁଏ ଯେ, ତାଙ୍କ କାଳରେ ସତୀପ୍ରଥାକୁ ଲୋକେ ପ୍ରଶଂସମାନ ଦୃଷ୍ଟିରେ ଦେଖୁଥିଲେ । କର୍ଣ୍ଣଙ୍କ ମୁଖରେ କବି କହିଛନ୍ତି ଯେ, ସ୍ୱାମୀର ଚିତାରେ ଦେହ ବିସର୍ଜନ ନକଲେ ସ୍ତ୍ରୀ ଅଧର୍ମର ଭାଗୀ ହୁଏ ।

"ବ୍ରାହ୍ମଣ ହୋଇଣ ଯେବେ ଜଳେ କରେ ଭସ୍ମ
ସ୍ୱାମୀ ଚିତାରେ ନ ଢଏ ଯେବେ ସ୍ତିରି କାଯ୍ୟ
କ୍ଷତ୍ରିୟ ହୋଇ ଉଠଇ ଯେହୁ ସମରକୁ
କେବେ ଧର୍ମ ପାଇ ନୁହେଁ ଏ ତିନି ଲୋକଙ୍କୁ । (ଖି ୭୨ପୃ)

ଉତ୍ତର ମଧ୍ୟ ସତୀର ପ୍ରଶଂସା କରି କହିଥିଲେ । ଯଥା—

"ଯେଉଁ ସ୍ତିରି ସ୍ୱାମୀ ସଙ୍ଗେ ନ ଢଅନ୍ତି ଝାସ
ଜୀବନ୍ତେ ହୀନ ହୁଅନ୍ତେ ମଲେ ନର୍କବାସ ।
ଯେଉଁ ସ୍ତିରି ସ୍ୱାମୀ ସଙ୍ଗେ ନାଶ ହୋଇଥାନ୍ତି
ସ୍ୱାମୀ କୁଳ ପିତା କୁଳ ଉଦ୍ଧାର କରନ୍ତି ।" (ଦ୍ରୋ ୫୪ ପୃ)

ସାରଳା ମହାଭାରତର କେତେକ ଦୃଶ୍ୟରୁ ପ୍ରତିପାଦିତ ହୁଏ ଯେ, ସତୀ ପ୍ରଥା ସେ ଯୁଗରେ ବାଧ୍ୟତାମୂଳକ ନ ଥିଲା, କି ବ୍ୟାପକ ଭାବରେ ପ୍ରଚଳିତ ନଥିଲା । ମୂଳ ମହାଭାରତରେ ମାଦ୍ରୀ ସ୍ୱାମୀଙ୍କ ଚିତାରେ ପ୍ରବେଶ କରିବା ଲିଖିତ ରହିଛି । (୧୯୬) କିନ୍ତୁ ସାରଳା ଦାସ ପାଣ୍ଡୁ ଓ ମାଦ୍ରୀ ଏକତ୍ର ଏକ ସମୟରେ ନିହତ ହେଲେ ବୋଲି ବର୍ଣ୍ଣାଇ ମୂଳର ସହମରଣ ବୃତ୍ତାନ୍ତକୁ ପରିହାର କରି ଅଛନ୍ତି । (ଆ୮୩ପୃ) ମୂଳ ମହାଭାରତରେ ଅଛି ଯେ, ଶ୍ରୀକୃଷ୍ଣଙ୍କ ପତ୍ନୀମାନଙ୍କ ମଧ୍ୟରୁ କେତେକ ସହମରଣ ଆଚରଣ କରିଥିଲେ । (୧୯୭) ସାରଳା ଦାସ ତାହା ପରିବର୍ତ୍ତନ କରିଦେଇଛନ୍ତି । ସେ କହନ୍ତି ଯେ, ଅର୍ଜୁନ ସେମାନଙ୍କୁ ବାଲୁଙ୍କା ନାମକ ନଦୀର ତୀରରେ ଏକ ନଗର ପ୍ରତିଷ୍ଠା କରି ରଖାଇଦେଇ ଥିଲେ । (ମୂ ୨୨ପୃ) ମଧୁ ଶ୍ରବଣ (ବ୩୨୦ପୃ), ବାମଦେବ (ବ୧୪୦ପୃ) ଓ ଶଶିକର (ଆ ୧୭୭ପୃ) ପ୍ରଭୃତିଙ୍କ ବିଧବା ପତ୍ନୀଗଣ ଥିବା କଥା ସାରଳା ଦାସ ବର୍ଣ୍ଣାଇଅଛନ୍ତି । କୌରବଙ୍କ ଶବଦାହ ବେଳେ ତାଙ୍କର ପତ୍ନୀଗଣ କେହି ଚିତାଗ୍ନିରେ ପ୍ରବେଶ କରିବାର ଚିତ୍ର କବି ଦେଇନାହାନ୍ତି । (ଶା ୧୩-୧୪ପୃ)

ଦୁଃଶୀଳା କନ୍ୟା ସତୀ ନ ହୋଇ ଗାନ୍ଧାରୀ ଓ ଧୃତରାଷ୍ଟ୍ରଙ୍କ ବାନପ୍ରସ୍ଥ କାଳ ଯାଏଁ ଜୀବିତ ଥିଲେ ବୋଲି କବି-ଲେଖାମାରୁ ସୂଚିତ ହୁଏ । (୧୯୮)

ଅର୍ଜୁନ ଦାସଙ୍କ 'କଳ୍ପଲତା' କାବ୍ୟରେ ନାୟିକା ସ୍ୱେଚ୍ଛାରେ ସତୀ ଯିବା କଥା ବର୍ଣ୍ଣିତ । (ପୃ୯୧) ବଳରାମ ଦାସ 'ଦାଣ୍ଡି ରାମାୟଣ'ରେ ଦର୍ଶାଇଛନ୍ତି ଯେ, ଦଶରଥଙ୍କର ରାଣୀମାନେ ସତୀ ହୋଇ ନ ଥିଲେ । (୧୯୯) ଏଥିରୁ ସ୍ପଷ୍ଟ ଯେ ସେ ଯୁଗରେ ସତୀ ହେବା ବାଧ୍ୟତାମୂଳକ ନଥିଲା ।

ଓଡ଼ିଶାର ପ୍ରାଚୀନ ଇତିହାସ ପ୍ରତି ଦୃକ୍‌ପାତ କଲେ ଉପଲବ୍ଧି ହୁଏ ଯେ ପ୍ରାଚୀନ କାଳରେ ସତୀପ୍ରଥା ଉତ୍କଳରେ ପ୍ରାୟ ଦେଖାଯାଉନଥିଲା । ଭୌମ ଯୁଗରେ ତ୍ରିଭୁବନ ମହାଦେବୀ, ଗୌରୀ ମହାଦେବୀ ସ୍ୱାମୀଙ୍କ ମୃତ୍ୟୁ ପରେ ସତୀ ନ ଯାଇ ସିଂହାସନ ଆରୋହଣ କରିଥିଲେ । (୨୦୦) ଓଡ଼ିଶାର ମନ୍ଦିର ଗାତ୍ର ବା କୌଣସି ଶିଳା ଲେଖରେ ସତୀର ଚିହ୍ନ ମିଳେ ନାହିଁ । ତେଣୁ ଅବଧାରିତ ହୁଏ ଯେ, ଓଡ଼ିଶାରେ ପ୍ରାଚୀନ ଓ ମଧ୍ୟ ଯୁଗରେ ସତୀପ୍ରଥାର ପ୍ରାଧାନ୍ୟ ନଥିଲା ।

## (ଘ) ପରଦା ପ୍ରଥା

ପ୍ରାଚୀନ ଭାରତରେ ପରଦା ପ୍ରଥା ନ ଥିଲା । ବୈଦିକକାଳରେ ଭାରତୀୟ ସମାଜରେ ଏହା ଅଜ୍ଞାତ ଥିଲା । (୨୦୧) ମୁସଲମାନମାନେ ଏ ଦେଶକୁ ଆଗମନ କରିବା ପର୍ଯ୍ୟନ୍ତ ପରଦା ପ୍ରଥା ଭାରତରେ ପଦାର୍ପଣ କରି ନ ଥିଲା । ଭାରତୀୟ ନାରୀମାନେ ସରଳ ନିରାଡ଼ମ୍ବର ପୋଷାକ ପରିଧାନ କରି, କିଛି ଅଳଙ୍କାର ଲଗାଇ, ସ୍ୱାଧୀନ ଭାବରେ ବିଚରଣ କରୁଥିଲେ । (୨୦୨) ମୁସଲମାନ ଜାତିରେ ପ୍ରଚଳିତ ପରଦା ପ୍ରଥାକୁ ଅନୁକରଣ କରି, ସାଧାରଣ ନାରୀପକ୍ଷର ଅଭାବ ଦେଖି, ହିନ୍ଦୁମାନେ ଏହା ପ୍ରଚଳନ କରିବାର ଜଣାଯାଏ । (୨୦୩) ଦିଲ୍ଲୀର ସୁଲତାନମାନଙ୍କ ଅମଳରେ ପରଦା ପ୍ରଥା ସର୍ବସାଧାରଣ ରୀତିରେ ପରିଣତ ହେଲା । ଅବଶ୍ୟ ନିମ୍ନ ଶ୍ରେଣୀରେ ଓ ଗ୍ରାମାଞ୍ଚଳରେ ଏହା ଅଜ୍ଞାତ ଥିଲା । (୨୦୪) କିନ୍ତୁ ଦକ୍ଷିଣ ଭାରତରେ ଏହି କୁପ୍ରଥା ଆଦୌ କୌଣସି ସମାଜରେ ପ୍ରଚଳିତ ନଥିବାର ଜଣାଯାଏ । (୨୦୫)

ପଞ୍ଚଦଶ ଶତାବ୍ଦୀରେ ଉତ୍କଳୀୟ ରାଜବଂଶରେ ବୟସ୍କା ନାରୀଙ୍କ ପାଇଁ ପରଦାର କଟକଣା ନ ଥିଲା । ସାରଳା ମହାଭାରତର କେତେକ ଦୃଷ୍ଟାନ୍ତରୁ

ତାହା ସ୍ପଷ୍ଟ । କବି କହନ୍ତି ଯେ ସୁଦେଷ୍ଣା ଶ୍ରୀକୃଷ୍ଣ ଓ ଅର୍ଜୁନ ପ୍ରଭୃତିଙ୍କ ସମକ୍ଷରେ ବସି ମହାଭାରତ ଯୁଦ୍ଧର ଭବିଷ୍ୟତ ଫଳାଫଳ ବିଚାର କରିଥିଲେ । (ଉ ୧୫-୧୮ପୃ) ଦ୍ରୌପଦୀ ରାଜସୂୟ ଯଜ୍ଞ କାଳରେ ରାଜସଭାରେ ଲକ୍ଷେ ରାଜା, ଶ୍ରୀକୃଷ୍ଣ ଓ ବ୍ୟାସଦେବଙ୍କ ଉପସ୍ଥିତିରେ ସ୍ୱାମୀମାନଙ୍କ ସହ ଉପବିଷ୍ଟ ହୋଇଥିଲେ । (ସ ୨୫୬ ପୃ) 'ସତ୍ୟ ଆତ୍ମ ବିବରଣ' ପ୍ରସଙ୍ଗରେ ଅଛି ଯେ ଦ୍ରୌପଦୀ ଶ୍ରୀକୃଷ୍ଣ ଓ ସ୍ୱାମୀମାନଙ୍କ ଆଗରେ ଉପସ୍ଥିତ ହୋଇ ନିଃସଙ୍କୋଚରେ ସତ୍ୟ ପ୍ରକାଶ କରିଥିଲେ । (୨୦୬) ଭୀମଙ୍କ ପତ୍ନୀ ହିଡ଼ିମ୍ବିକା ରାଜସଭାରେ ପ୍ରବେଶ କରି ଦ୍ରୌପଦୀଙ୍କ ସହ କଳହ କରିବାକୁ କୁଣ୍ଠିତା ହୋଇ ନ ଥିଲେ । (ସ ୨୫୬ ପୃ) ଯମୁନା ନଦୀର ତୀରରେ ଗାନ୍ଧାରୀ ଦୁର୍ବାସାଙ୍କୁ ଦେଖି ସଙ୍କୋଚ କଲେ ନାହିଁ, ବରଂ ନିଃସଙ୍କୋଚ ଭାବେ ପୁତ୍ର ତଥା ଦୁହିତା ଭିକ୍ଷା କଲେ । (ଆ ୨୯ପୃ) 'ଦାଣ୍ଡି ରାମାୟଣ'ରେ ଅଛି ଯେ ମନ୍ଦୋଦରୀଙ୍କ ସହ ରାବଣର ତିନକୋଟି ରାଣୀ ଶ୍ରୀରାମଙ୍କ ଦର୍ଶନ ନିମିତ୍ତ ରାଜଦାଣ୍ଡରେ ଗମନ କରିଥିଲେ । (ଲ ୩୦୩ପୃ) ଜଗନ୍ନାଥ ଦାସଙ୍କ ଭାଗବତରେ ନାରୀ ସଭାରେ ଉପବେଶନ କରିବାର ଚିହ୍ନ ମିଳେ । (୨୦୭)

ଅବିବାହିତା କୁମାରୀ କନ୍ୟାମାନଙ୍କ ପାଇଁ ମଧ୍ୟ ପରଦାର ଆବଶ୍ୟକ ନ ଥିଲା । ଦ୍ରୌପଦୀ ସ୍ୱୟମ୍ବର ସଭାକୁ ଗଲାବେଳେ ପରଦାର ବ୍ୟବହାର କରାଯାଇ ନ ଥିଲା । (୨୦୮) ହରସାହୁ ନିଜର ଅବିବାହିତା କନ୍ୟା ସୁହାଣୀକୁ ଯୁଧିଷ୍ଠିରଆଦିଙ୍କ ସମୀପକୁ ପେଶିବାରେ ଦ୍ୱିଧା ପ୍ରକାଶ କରିନାହାନ୍ତି । (ସ୍ୱ ୫ପୃ)

ସାଧାରଣ ସମାଜରେ ପରଦାର ପ୍ରଚଳନ ନ ଥିଲା, କବି-ବର୍ଣ୍ଣିତ କେତେକ ଘଟଣାରୁ ଏହା ଅବଧାରିତ ହୁଏ । କବି ଲେଖିଛନ୍ତି ଯେ, ମେଳକ ଶୂଦ୍ରର ସ୍ତ୍ରୀ ହାଟରେ କାଠ ବ୍ୟବସାୟ କରୁଥିଲା । (ଉ୬୫ପୃ) ପାର୍ବତୀ ଗୋପାଳୁଣୀ ବେଶରେ ଏକାମ୍ର କ୍ଷେତ୍ରର ରାସ୍ତାରେ ଦଧି ବିକ୍ରୟ କରିଥିଲେ । (ସ୍ୱ ୧୨-୧୩ପୃ) ରୁଦ୍ରଶର୍ମଣ ନାମକ ବିପ୍ରର ପତ୍ନୀ ଦ୍ୱାରେ ଦ୍ୱାରେ ବୁଲି ଭିକ୍ଷା କରୁଥିଲେ । (ଉ ୩୮ ପୃ) ବେଦଶ୍ରବା ବ୍ରାହ୍ମଣର ପତ୍ନୀ ପାଣ୍ଡବଙ୍କ ସହ କଥୋପକଥନ କରି ସେମାନଙ୍କୁ ସ୍ୱାମୀଙ୍କ ଅବିଦ୍ୟମାନତାରେ ଘରେ ଆଶ୍ରୟ ଦେଇଥିଲେ । (ଆ ୨୩୦ପୃ) ବିଷ୍ଣୁକର ବିପ୍ରର ପତ୍ନୀ ପାଣ୍ଡବମାନଙ୍କୁ ଦେଖାଦେଇ ଅର୍ଘ୍ୟ ପ୍ରଦାନ କରିଥିଲେ । (ଆ ୨୨୦ପୃ) ନର୍ଣ୍ଣର ଦେଶର ନାରୀମାନେ ଭୀମସେନଙ୍କ ଦର୍ଶନ ପାଇଁ ଆସିଥିଲେ । (ସ ୧୦୭ପୃ) 'ରାମବିଭା' କାବ୍ୟରେ ଅଛି ଯେ,

ମିଥିଳାପୁରର ନାରୀଗଣ ରାମଙ୍କୁ ଦର୍ଶନ କଲେ । (ପୃ ୯୧) 'କାଞ୍ଚିକାବେରୀ' କାବ୍ୟରେ ଅଛି ଯେ, ମାଣିକ ନାମକ ଗୋପାଳୁଣୀ ପାଇକମାନଙ୍କୁ ଦଧି ବିକ୍ରୟ କରୁଥିଲେ । (ପୃ୨୮-୪୮)

ସାରଳାଙ୍କ ବର୍ଣ୍ଣନାରୁ ଜଣାଯାଏ—ରାଜପରିବାରର ନବବଧୂ ତଥା ଯୁବତୀ କନ୍ୟାଙ୍କ ପାଇଁ ପରଦାର ବ୍ୟବସ୍ଥା ସେ କାଳରେ ଥିଲା । ଯେଉଁ ଯୁବତୀ କନ୍ୟାର ବିବାହ ଆସନ୍ନ ବା ପ୍ରସ୍ତାବିତ, ତାହା ପାଇଁ ପରଦାର ଆବଶ୍ୟକ ପଡ଼ୁଥିଲା । ଭାନୁମତୀ ଓ ଚନ୍ଦ୍ରାବତୀଙ୍କ ପ୍ରସଙ୍ଗରୁ ଏହା ପ୍ରତିପାଦିତ ହୁଏ । ଦୁର୍ଯୋଧନଙ୍କ କନ୍ୟା ଚନ୍ଦ୍ରାବତୀ ସ୍ୱୟମ୍ବର ସଭାକୁ ବସ୍ତ୍ର ଆଢ଼ୁଆଳ ମଧ୍ୟରେ ଗମନ କରିଥିଲେ—"ବହୁତ ଯେ ପାଟଛନ୍ଦ ଉହାଡ଼ ବସନ ।" (୨୦୯) ଭୂମନ୍ୟୁ ରାଜାଙ୍କ କନ୍ୟା ଭାନୁମତୀ ସ୍ୱୟମ୍ବର ସଭାକୁ ବସ୍ତ୍ର ଆଢ଼ୁଆଳ ମଧ୍ୟରେ ଆସିଥିଲେ —"ରତ୍ନ ଖଚିତ ହାନ୍ଦୋଳା ମଧ୍ୟେ ବସ୍ତ୍ର ଟାଣି ।" (ଆ ୧୧୭ପୃ) ଧର୍ମଯଜ୍ଞ କାଳରେ ଶ୍ରୀକୃଷ୍ଣ ସହସା ପାଣ୍ଡବଙ୍କ ଘରେ ପହଞ୍ଚିଲେ । ସେତେବେଳେ ଦ୍ରୌପଦୀ ତାଙ୍କୁ ଦେଖା ଦେଇ ନ ଥିଲେ । ସେ ରନ୍ଧନକାର୍ଯ୍ୟ କଲେ ଓ କୁନ୍ତୀ ପରିବେଷଣ କାର୍ଯ୍ୟ କଲେ । (ମ ୩୨୦ପୃ) ଦ୍ରୌପଦୀ ନବବଧୂ ଥିବାରୁ ଶ୍ରୀକୃଷ୍ଣଙ୍କ ସମ୍ମୁଖକୁ ଆସି ନ ଥିଲେ । ଗାନ୍ଧାରୀ ନବବଧୂ ଥିବା ବେଳେ ଦେବର ପଣ୍ଡୁଙ୍କୁ ମଧ୍ୟ ଦେଖା ଦେଉ ନ ଥିଲେ । ଗୋଟିଏ ଘଟଣାରୁ ଏହା ଅବଧାରିତ ହୁଏ । ଧୃତରାଷ୍ଟ୍ର ନିଜର ଦୁର୍ଭାଗ୍ୟ କଥା ସ୍ମରଣ କରି ଦିନେ ଦୁଃଖ କଲେ । ଗାନ୍ଧାରୀ ତାଙ୍କୁ ସାନ୍ତ୍ୱନା ଦେଉଥିଲେ । ଏହି ସମୟରେ ରାଜା ପଣ୍ଡୁ ଉପଗତ ହେଲେ । ଗାନ୍ଧାରୀ ସେ ସ୍ଥଳରୁ ରାଜାଙ୍କୁ ଦେଖି ଅନ୍ତର ହେଲେ । (ଆ ୪୭ପୃ)

କୌଣସି କୌଣସି ସ୍ଥଳରେ ଯୁବତୀ ଅଥଚ ଅବିବାହିତା ରାଜକନ୍ୟାଙ୍କ ପାଇଁ ପରଦାର ବ୍ୟବସ୍ଥା ହେଉ ନ ଥିଲା । କବି ବର୍ଣ୍ଣିତ ଗୋଟିଏ ଉଦାହରଣରୁ ଏହା ସ୍ପଷ୍ଟ । ଅର୍ଜୁନ ଏକଦା ଶ୍ରୀକୃଷ୍ଣଙ୍କ ଘରେ ପହଞ୍ଚିଲେ । ସେତେବେଳେ ତାଙ୍କୁ ଅତିଥି ଭାବରେ ସ୍ୱାଗତ କରାଯାଇଥିଲା । ବନ୍ଦାପନାରେ ଅନ୍ୟ ନାରୀମାନଙ୍କ ସହ ଯୁବତୀ ସୁଭଦ୍ରା ଭାଗ ନେଇଥିଲେ । ସୁଭଦ୍ରା ସେତେବେଳକୁ ଅବିବାହିତା ଥିଲେ । (ମ ୧୧୧ପୃ)

## (ଡ) ବିଧବା ପ୍ରଥା

ପ୍ରାଚୀନ ଯୁଗରେ ବିଧବାର ପୁନର୍ବିବାହ ଶାସ୍ତ୍ରାନୁମୋଦିତ ଥିଲା । ମନୁ ଅକ୍ଷତଯୋନି ବିଧବା ଅନ୍ୟ ପୁରୁଷକୁ ବିବାହ କରିପାରେ ବୋଲି ମତ

ଦେଇଛନ୍ତି । ବିଧବା ନିଜ ଇଚ୍ଛାରେ ଅନ୍ୟ ପୁରୁଷଙ୍କୁ ପତି ରୂପରେ ଗ୍ରହଣ କରି ଯେଉଁ ପୁତ୍ର ଲାଭ କରୁଥିଲା, ତାକୁ 'ପୌନର୍ଭବ' ଆଖ୍ୟା ଦିଆଯାଉଥିଲା । (୨୧୦) ପୁରାଣମାନଙ୍କରେ ବିଧବାର ପୁନର୍ବିବାହ କରାଯାଉଥିବାର ବହୁ ଦୃଷ୍ଟାନ୍ତ ମିଳେ । ରାମାୟଣରେ ବାଳୀର ପତ୍ନୀ ତାରା ଦେବର ସୁଗ୍ରୀବଙ୍କୁ ବିବାହ କରିଥିଲେ ବୋଲି କୁହାଯାଇଅଛି । (୨୧୧) ଋକ୍ ବେଦର କେତେକ ସୂକ୍ତରୁ ଜଣାଯାଏ ଯେ, ବିଧବା ତାହାର ଦେବରଙ୍କୁ ବିବାହ କରିପାରୁଥିଲେ । (୨୧୨) ଦିଲ୍ଲୀର ସୁଲତାନମାନଙ୍କ ଅମଳରେ ହିନ୍ଦୁ ବିଧବାମାନେ ପୁନର୍ବିବାହ କରିପାରୁ ନ ଥିଲେ । (୨୧୩) ସେ କାଳରେ ସେମାନେ ବେଶୀ ଭାଗରେ ସନ୍ନ୍ୟାସିନୀର ଜୀବନ ଅତିବାହିତ କରୁଥିଲେ । (୨୧୪) ଆଲ୍‌ବିରୁଣୀଙ୍କ କାଳକୁ ଆଉ ବିଧବା-ବିବାହ ଚଳଣିରେ ନଥିଲା । (୨୧୫)

ଉତ୍କଳୀୟ ସମାଜରେ ପଞ୍ଚଦଶ ଶତାବ୍ଦୀରେ ସାଧାରଣ ସ୍ତରରେ ବିଧବା-ବିବାହ ପ୍ରଚଳିତ ନଥିବାର ଜଣାଯାଏ । ଶଶିକର ବିପ୍ରର ପତ୍ନୀ ଶ୍ରିୟା (ଆ ୧୭୭ ପୃ), ବାମଦେବ ବିପ୍ରର ପତ୍ନୀ (ବି ୧୪୦ପୃ) ଓ ମଧୁଶ୍ରବଣ ବିପ୍ରର ଭାର୍ଯ୍ୟା କୁରଙ୍ଗିନୀ (ବି ୩୨୦ପୃ) ବିଧବା ଭାବରେ କାଳଯାପନ କରୁଥିଲେ ବୋଲି କବି କହନ୍ତି । ଜୟନ୍ତୀ ନାମ୍ନୀ ଶବରୁଣୀ ସ୍ୱାମୀର ବିୟୋଗ ପରେ ପୁତ୍ରମାନଙ୍କ ସହ ବୈଧବ୍ୟ ଜୀବନ ଅତିବାହିତ କରୁଥିବାର ଚିତ୍ର କବି-ଲେଖନୀରେ ନିହିତ । (ଆ ୧୫୯ପୃ)

ଗାନ୍ଧାରୀଙ୍କ ବୃତ୍ତାନ୍ତରୁ ଜଣାଯାଏ ଯେ ବିଶେଷ ପରିସ୍ଥିତିରେ ସେ କାଳରେ ବିଧବାର ବିବାହ ହେଉଥିଲା । ଗାନ୍ଧାରୀ ଗୋଟିକ ପରେ ଗୋଟିଏ ସ୍ୱାମୀ ବରଣ କଲେ, କିନ୍ତୁ ସେମାନେ ବରଣ ପରେ ପରେ ମୃତ ହେଲେ । (ଆ ୩୭ପୃ) ପରେ ଧୃତରାଷ୍ଟ୍ର ତାଙ୍କୁ ବିବାହ କଲେ । କବି ତାହାଙ୍କୁ ସ୍ପଷ୍ଟତଃ ବିଧବା ବୋଲି ଘୋଷଣା କରିଅଛନ୍ତି । (୨୧୬) ବାସ୍ତବ ପକ୍ଷରେ ସାରଳା ଦାସଙ୍କ ନିଜ ସମାଜରେ 'ଦୁତିଅ ଘର' ବ୍ୟବସ୍ଥା ଥିବାର ଜଣାଯାଏ । (୨୧୭)

ବିଧବାର ଜୀବନରେ ନୈତିକ ସ୍ଖଳନ ସେକାଳର ସମାଜରେ ଅତ୍ୟନ୍ତ ନିନ୍ଦନୀୟ ବିବେଚିତ ହେଉଥିଲା । ଶଶିକର ବିପ୍ରର ପତ୍ନୀ ଶ୍ରିୟା ବାଳବିଧବା ଥିଲା । ସେ ଦେଶର ସାଧବ ଔରସରୁ ଶ୍ରିୟା କନ୍ୟା ଜନ୍ମ କଲା । ସମାଜରେ ନିନ୍ଦା ହେବ ବୋଲି ସେ ସେହି ନବଜାତ କନ୍ୟାକୁ ରାତ୍ରରେ ଗ୍ରାମର ବାହାରେ ପକାଇଦେଲା । ପେଟ ଟାଣୁଛି ବୋଲି ଛଳନା କରି ଘର ଭିତରେ ଶୋଇଲା । (ଆ ୧୭୭ପୃ) ବାମଦେବ ବିପ୍ରର ପତ୍ନୀ ନିଜ ଘରର ନିକଟରେ ଥିବା ଶୁଦ୍ରର

ଔରସରୁ କନ୍ୟା ଜାତ କଲ । କିନ୍ତୁ ଲଜ୍ଜାରେ ଘରେ ରହିପାରିଲ ନାହିଁ । ଘର ଛାଡ଼ି ଅରଣ୍ୟରେ ପାଗଳୀ ପ୍ରାୟ ଭ୍ରମଣ କଲ । କନ୍ୟାଟିଏ ଜନ୍ମ ହେଲାପରେ ସେ ତାକୁ ଜଳରେ ଭସାଇ ଦେଲ । (ବ ୧୪୦ପୃ) ସମାଜର ଭୟରେ ସେ ଏପରି କର୍ମ କରିବାକୁ ବାଧ୍ୟ ହେଲ । ମଧୁଶ୍ରବଣ ବିପ୍ରର ବିଧବା ପତ୍ନୀ କୁରଙ୍ଗୀ ଶାସେକ ନାମକ ଶୂଦ୍ରର ଔରସରୁ ଗୋଟିଏ ପୁତ୍ର ଜାତ କଲ । ସମାଜ ଭୟରେ ନବଜାତ ଶିଶୁକୁ ସେ ସଙ୍ଗରେ ନେଇ ଅରଣ୍ୟରେ ବାସ କରିବାକୁ ଲଗିଲ । (୨୧୮)

ସେ ଯୁଗରେ ବିଧବାମାନେ ନୈଷ୍ଠିକ ଜୀବନ ଯାପନ କରିବା ଉଚିତ୍ ବୋଲି ବିବେଚିତ ହେଉଥିଲ । ବିଧବା ନାରୀପକ୍ଷରେ ଅନ୍ୟର ପାଖରେ ଭୋଜନ କରିବା ନିଷିଦ୍ଧ ଥିଲ । ସେମାନେ ଶୁଚି ହୋଇ ସ୍ୱହସ୍ତରେ ରାନ୍ଧି ଖାଉଥିଲେ । କୁନ୍ତୀ ଦେବୀଙ୍କ ବୃତ୍ତାନ୍ତରୁ ଏହା ଉପଲବ୍ଧି ହୁଏ । କୁନ୍ତୀ ଦେବୀ ବିଷ୍ଣୁର ପତ୍ନୀଙ୍କ ପାଗରେ ଖାଇବାକୁ ଅସ୍ୱୀକାର କରିଥିଲେ ।

"କୁନ୍ତୀ ପ୍ରତିବାକ୍ୟ ପତି ବିଯୋଗରୁ ଆମ୍ଭେ<br>
ପର ଅନ୍ନଭୋଗୀ ନୋହୁ ଜାଣ ଏବେ ତୁମ୍ଭେ ।<br>
ବାବୁ ପୁତ୍ର ଯେବେ ପାକ ସମ୍ପାଦିବୁ ଆମ୍ଭେ<br>
ତୁମ୍ଭ ହସ୍ତପାକ ଅନ୍ନ ନ ଭୁଞ୍ଜିବୁ କେବେ ।" (ଆ୦୨୧ପୃ)

ସାରଳାଙ୍କ କାଳରେ ବିଧବାଙ୍କ ପ୍ରତି ସମାଜରେ ଆଦର ଓ ସମ୍ମାନ ରହିଥିଲ । ବିଷ୍ଣୁର ଓ ତାଙ୍କ ପତ୍ନୀ କୁନ୍ତୀ ବିଧବା ଥିଲେ ବୋଲି ତାଙ୍କର ଖୁବ୍ ଆଦର କରିଥିଲେ । ବିଷ୍ଣୁରଙ୍କ ପତ୍ନୀ କୁନ୍ତୀଙ୍କୁ ଅର୍ଘ୍ୟଦାନ କରି ସମ୍ମାନ ପ୍ରଦର୍ଶନ କରିଥିଲେ । ବିଷ୍ଣୁର ତାଙ୍କ ପାଇଁ ଭୋଜନର ସମସ୍ତ ବ୍ୟବସ୍ଥା କରି ଦେଇଥିଲେ । (ଆ୨୨୦-୨୨୧ପୃ)

## (ଚ) ସ୍ୱାଧୀନତା

ପ୍ରାଚୀନ କାଳରେ ପତି-ନିର୍ବାଚନ କ୍ଷେତ୍ରରେ ସମାଜ ଯୁବତୀ ନାରୀକୁ ସ୍ୱାଧୀନତା ପ୍ରଦାନ କରିଥିଲ । ଋକ୍ ବେଦ ଯୁଗରେ ଯୁବକ-ଯୁବତୀ ପତି ବା ପତ୍ନୀ ନିର୍ବାଚନ କରି ପରିଣୟସୂତ୍ରରେ ଆବଦ୍ଧ ହୋଇ ପାରୁଥିଲେ । (୨୧୯) ମନୁସ୍ମୃତି ତଥା ମହାଭାରତରେ ଅଛି ଯେ, କନ୍ୟା ଋତୁମତୀ ହେବାର ତିନିବର୍ଷ ପର୍ଯ୍ୟନ୍ତ ଅପେକ୍ଷା କରିବ ଏବଂ ବିଦ୍ୱାନ ପତି ପ୍ରାପ୍ତ ନ ହେଲେ ସ୍ୱୟଂ ସମାନ ଜାତି ଓ

ଗୁଣବିଶିଷ୍ଟ ସ୍ୱାମୀ ବରଣ କରିବ । (୨୨୦) ପାତଞ୍ଜଳଙ୍କ କାଳରେ ରାଜପରିବାର ତଥା ବ୍ରାହ୍ମଣ ସମାଜରେ ଯୁବତୀକନ୍ୟା ନିଜେ ନିଜର ପତି ନିର୍ବାଚନ କରିପାରୁଥିଲି । (୨୨୧) ଦେବଯାନୀ, ଶକୁନ୍ତଳା ଓ ସାବିତ୍ରୀ ଆଦି ଭାରତୀୟ ନାରୀଗଣ ସ୍ୱେଚ୍ଛାକ୍ରମେ ପତି ବରଣ କରିଥିଲେ ବୋଲି ପୁରାଣମାନଙ୍କରେ ବର୍ଣ୍ଣିତ ହୋଇଅଛି ।

ସାରଳା ଦାସଙ୍କ ଯୁଗରେ ଯୁବତୀ କନ୍ୟାମାନଙ୍କର କେତେକ ସ୍ୱାଧୀନତା ଥିବାର ଜଣାଯାଏ । ସେତେବେଳେ କେତେକ ସ୍ଥଳରେ ବିବାହ ବ୍ୟାପାରରେ ଯୁବତୀର ଇଚ୍ଛା ହିଁ ପ୍ରାଧାନ୍ୟ ଲଭ କରୁଥିଲା । କେତେକ ଦୃଷ୍ଟାନ୍ତରୁ ଏହା ପ୍ରତିପାଦିତ ହେବ । ଶ୍ରୀକୃଷ୍ଣଙ୍କ ଭଗିନୀ ସୁଭଦ୍ରା ନିଜ ଇଚ୍ଛାରେ ଅର୍ଜ୍ଜୁନଙ୍କୁ ପତି ପଦରେ ବରଣ କରିଥିଲେ । (ମ୧୧୧-୧୫୨ପୃ) ଚନ୍ଦ୍ରାବତୀ ଶାମ୍ବଙ୍କୁ (ମ୨୬୦-୨୬୨ପୃ), ହାରାବତୀ ଅର୍ଜ୍ଜୁନଙ୍କୁ (ବ୧୫୭ପୃ) ଓ ମାଳେନ୍ଦ୍ରୀ ଆନନ୍ଦାନନ୍ଦଙ୍କୁ (ମ୨୩୭ପୃ) ସ୍ୱେଚ୍ଛାରେ ପତି ରୂପରେ ଗ୍ରହଣ କରିଥିଲେ । ମାଳେନ୍ଦ୍ରୀ କନ୍ୟାପାଇଁ ଆନନ୍ଦାନନ୍ଦ ଓ କାର୍ତ୍ତିକକୁମାରଙ୍କ ମଧ୍ୟରେ ସଙ୍ଘର୍ଷ ଜାତ ହେବାରୁ ବ୍ରହ୍ମା ମଧ୍ୟସ୍ଥତା କରି କନ୍ୟାର ଇଚ୍ଛାକୁ ପ୍ରାଧାନ୍ୟ ଦେଇଥିଲେ ।

"ବରଣମାଳା କନ୍ୟାର ହସ୍ତେ ଦେଇ ଦେବ
ଯାହାର କଣ୍ଠରେ କନ୍ୟା ମାଳା ଲମ୍ବାଇବ
ତାହାର ହୋଇବ କନ୍ୟା ଆମ୍ଭର ବିଚାରେ
ଶୁଣି ସନମତ ହେଲେ ହର ମାଳାମ୍ବରେ ।" (୨୨୨)

ଏହି ମତ ହିଁ ସେ କାଳର ପରମ୍ପରାରେ ଥିଲା; କେତେକ ଦୃଷ୍ଟାନ୍ତରୁ ତାହା ପ୍ରମାଣିତ ହୁଏ । କଳ୍ପଲତା କାବ୍ୟରେ କୁହାଯାଇଅଛି ଯେ, ନାୟିକା ପିତାମାତାଙ୍କ ନିରୂପିତ ପାତ୍ରକୁ ବିବାହ ନକରି ସ୍ୱେଚ୍ଛାରେ ପତି ମନୋନୟନ କରିଥିଲେ । 'ଲୁଣ୍ଠ ଇଚ୍ଛାବତୀ' କାବ୍ୟର ନାୟିକା ମଧ୍ୟ ନିଜ ଇଚ୍ଛାରେ ପତି ବରଣ କରିଥିଲେ ବୋଲି କବି ବର୍ଣ୍ଣନା କରିଅଛନ୍ତି । (ଇଚ୍ଛାସ୍ୱୟଂ ବରିବି ବୋଲି ମନେ କଲି ବାଞ୍ଛା । (ପୃ୯)

ସାରଳା ଦାସଙ୍କ ଯୁଗରେ ରାଜବଂଶର ନାରୀମାନେ ଅଧିକ ବୟସରେ ବିବାହ କରିବାର ଅଧିକାର ଲଭ କରିଥିଲେ । ଅର୍ଜ୍ଜୁନଙ୍କର ସୁଭଦ୍ରାଙ୍କ ପ୍ରତି ଉକ୍ତିରୁ ଏହା ଅବଧାରିତ ହୁଏ । ଅର୍ଜ୍ଜୁନ କହିଥିଲେ ଯେ ନାରୀ ପକ୍ଷରେ ଅଷ୍ଟାଦଶ ବର୍ଷ ହିଁ ପୁରୁଷ ସହ ସମ୍ମିଳିତ ହେବାର ଉପଯୁକ୍ତ କାଳ ।

"ତରଣ ବରଷେ ପୁଣି ହୋଇଲେ ପୁରୁଷେ
ସ୍ତ୍ରିଏ ହୋଇବେ ଜାଣ ବର୍ଷ ଅଷ୍ଟାଦଶେ ।
ଏସନ ସମସ୍ତ ଜାଣ ଆଗ ବମ୍ବିଓଷ୍ଟି
ସ୍ତ୍ରି ସ୍ତ୍ରୀ ପୁରୁଷ ସଙ୍ଗମେ ଅନୁକୂଳ ଗୋଟି ।" (୨୨୩)

ସାରଳା ଦାସଙ୍କ ମହାକାବ୍ୟ-ବର୍ଣ୍ଣିତ ନାୟିକାଗଣ ଅଧିକାଂଶ ଯୁବତୀ ଅବସ୍ଥାରେ ବିବାହ କରିଅଛନ୍ତି । ରାଜପରିବାରରେ ଅଧିକ ବୟସରେ ବିବାହ କରିବା ସେ ଯୁଗର ଚଳଣିରେ ଥିଲା । ଚନ୍ଦ୍ରାବତୀ ମହିଷାସୁରକୁ ଯୁବତୀ ଅବସ୍ଥାରେ ବିବାହ କରିଥିଲେ ବୋଲି 'ଚଣ୍ଡୀପୁରାଣ'ରେ କୁହାଯାଇଅଛି । (ତ୍ରୈଲୋକ୍ୟ-ମୋହିନୀ ସେହିପରି ନବୀନା ଯୁବତୀ । (ପୃ୨୩) କାବ୍ୟ-ନାୟିକା କଳ୍ପଲତା କୋଡ଼ିଏ ବର୍ଷ ବୟସରେ ବିବାହ କରିଥିଲେ ବୋଲି ଅର୍ଜୁନ ଦାସ ଉଲ୍ଲେଖ କରିଅଛନ୍ତି । (ପୃ୫୩)

ବିଭିନ୍ନ ଉତ୍ସବ ଓ କ୍ରୀଡ଼ା-କୌତୁକରେ ଭାଗ ନେବାର ଅଧିକାର ନାରୀମାନେ ସେତେବେଳେ ପ୍ରାପ୍ତ ହୋଇଥିଲେ । କବିଙ୍କ ବର୍ଣ୍ଣନାରେ ଏହାର ବହୁ ପରିଚୟ ମିଳେ । ବିରାଟ ରାଜ୍ୟରେ ଅନୁଷ୍ଠିତ ଚନ୍ଦନଯାତ୍ରା ଉତ୍ସବରେ ସୁଦେଷ୍ଣା, ଦ୍ରୌପଦୀ ଓ ଅନ୍ୟାନ୍ୟ ନାରୀଗଣ ଯୋଗ ଦେଇଥିଲେ ।(ବି୫୫-୫୬ପୃ) ଶମୀବୃକ୍ଷ ତଳେ ଯୁଧିଷ୍ଠିରଙ୍କ ଅଭିଷେକ ହେଲାବେଳେ ଦ୍ୱାରକାର ନାରୀମାନେ ସେହି ଅନୁଷ୍ଠାନରେ ଯୋଗ ଦେବାକୁ ଆସିଥିଲେ । (ବି୧୬୧ପୃ) ଦ୍ରୌପଦୀଙ୍କ ବିବାହ କାଳରେ ଦ୍ୱାରକାର ନାରୀମାନେ ଉପସ୍ଥିତ ଥିଲେ । (ଆ୩୧୩) ଉତ୍ତରା କନ୍ୟାର ବିବାହୋତ୍ସବରେ ଯୋଗଦାନ କରିବା ପାଇଁ ଦ୍ୱାରକାର ନାରୀଗଣ ବିରାଟ ପୁରକୁ ଯାତ୍ରା କରିଥିଲେ । (ବି୧୭୬ପୃ) ଦ୍ୱାରକାରେ ସତ୍ୟଭାମା ଓ ରେବତୀ ପ୍ରମୁଖ ନାରୀମାନେ ଏକତ୍ର ହୋଇ ନାନା ହାସ ପରିହାସ ମଧ୍ୟରେ ଜଳ-କ୍ରୀଡ଼ା କରିଥିଲେ । (୨୨୪) ଉତ୍ତରା କନ୍ୟାର ଯୌବନପ୍ରାପ୍ତି ସମ୍ବାଦ ପାଇ ଦ୍ରୌପଦୀ ଓ ସୁଭଦ୍ରା ବିରାଟ ରାଜ୍ୟକୁ ଗମନ କରିଥିଲେ । (ଉଦ୍ ୧୨ପୃ) 'ଦାଣ୍ଡି ରାମାୟଣ'ରେ ସୀତାଙ୍କ ବିବାହ ଅବସରରେ ଦଶରଥଙ୍କର ପତ୍ନୀଗଣ ମିଥିଳାକୁ ଯାତ୍ରା କରିଥିଲେ ବୋଲି ବର୍ଣ୍ଣିତ । (ଆ୧୭୩ପୃ) ବିଶ୍ୱନାଥ କବିରାଜଙ୍କ 'ଚନ୍ଦ୍ରକଳା' ନାଟିକାରେ ନାୟିକା ସଖୀମାନଙ୍କ ଗହଣରେ ଅରଣ୍ୟ ମଧ୍ୟରେ କ୍ରୀଡ଼ା-କୌତୁକ କରୁଥିବା ଚିତ୍ର ଦିହୃତ । (୨୨୫)

## (ଛ) ନାରୀ ଉପହାର

ନାରୀକୁ ଉପହାରରୂପେ ପ୍ରଦାନ କରିବା ଏକ ପ୍ରାଚୀନ ମହାଭାରତୀୟ ରୀତି । ଏହି ପ୍ରଥା ନାରୀସମାଜ ପ୍ରତି ଅସମ୍ମାନକର । ପ୍ରାଚୀନ କାଳରେ ଏହି ନିନ୍ଦନୀୟ ପ୍ରଥା ବିଦ୍ୟମାନ ଥିଲା । ଉତ୍ତରାଙ୍କ ବିବାହ କାଳରେ ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ ବହୁ ନାରୀ ଉପହାର ସ୍ୱରୂପ ପ୍ରଦାନ କରିଥିଲେ ବୋଲି ମୂଳ ମହାଭାରତରେ ବର୍ଣ୍ଣିତ । (୨୨୬) ଜନକ ସୀତାଙ୍କ ସଙ୍ଗରେ ଶହ ଶହ କନ୍ୟା ଓ ଦାସୀ ଉପହାର ସ୍ୱରୂପ ପ୍ରେରଣ କରିଥିଲେ ବୋଲି ମୂଳ ରାମାୟଣରେ କଥିତ । (୨୨୭)

ଏତାଦୃଶ ଅହିତକର ଓ ଘୃଣ୍ୟ ପ୍ରଥା ପଞ୍ଚଦଶ ଶତାବ୍ଦୀର ରାଜପରିବାର-ମାନଙ୍କରେ ପ୍ରଚଳିତ ଥିବାର ଜଣାଯାଏ । ଦ୍ରୌପଦୀଙ୍କ ପରିଣୟ ବେଳେ ରାଜା ଦ୍ରୁପଦ ଅଳଙ୍କାରରେ ବିଭୂଷିତ ଏକଲକ୍ଷ ପୋଇଲି ଯୌତୁକ ରୂପରେ ଦେଇଥିଲେ ବୋଲି କବି ଲେଖିଛନ୍ତି । (ଆ୩୧୧ପୃ) ଉତ୍ତରା ପରିଣୟରେ ଏକ ସହସ୍ର ଦାସୀ (ବି୧୮୩ପୃ), ଭାନୁମତୀଙ୍କ ବିବାହ ବେଳେ ନୃତ୍ୟକାରୀ ଗଣିକା (ଆ୧୨୨ପୃ), ଦୁଃଶୀଳା ବିବାହ ସମୟରେ ବହୁ ଦାସୀ (ଆ୨୧୨ପୃ) ଯୌତୁକ ସ୍ୱରୂପ ପ୍ରଦତ୍ତ ହୋଇଥିଲେ । କର୍ଣ୍ଣ ଶଲ୍ୟଙ୍କୁ କହିଥିଲେ ଯେ, ସେ ତାଙ୍କର ସାରଥୀ ହେଲେ ଏକ ସହସ୍ର ପଦ୍ମିନୀ ଜାତୀୟା ନାରୀ ଉପହାର ପାଇବେ । (୨୨୮) 'ଦାଣ୍ଡି ରାମାୟଣ'ରେ ଅଛି ଯେ, ବିଶ୍ୱାମିତ୍ର ସୁରଭି ଗାଭୀ ବଦଳରେ ଅଳଙ୍କାରଯୁକ୍ତ କୋଟିଏ କନ୍ୟା ବଶିଷ୍ଠଙ୍କୁ ସମର୍ପଣ କରିବେ ବୋଲି ଜଣାଇ ଥିଲେ । (ଆ୧୧୯ପୃ)

## (ଜ) କନ୍ୟାଜନ୍ମ

କନ୍ୟାଜନ୍ମକୁ ଯେପରି ଭାବରେ ସମାଜରେ ଗ୍ରହଣ କରାଯାଏ, ସେଥିରୁ ନାରୀଜାତିର ସାମାଜିକ ପ୍ରତିଷ୍ଠା ବିବେଚନା କରାଯାଏ । ଋକ୍ ବେଦ ଯୁଗରେ ପୁତ୍ରକନ୍ୟାଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ଲୋକେ ଦେଖୁ ନ ଥିଲେ । (୨୫୯) ବୃହଦାରଣ୍ୟକ ଉପନିଷଦ୍‌ରେ ଅଛି ଯେ, ବିଦୁଷୀ କନ୍ୟା ପାଇବା ନିମିତ୍ତ ତିଳ-ତଣ୍ଡୁଳରେ ତିଆରି ଖେଚେଡ଼ି ଭୋଜନ କରିବା କର୍ତ୍ତବ୍ୟ । ଏଥିରୁ ପ୍ରତିପନ୍ନ ହୁଏ ଯେ, ଲୋକେ ଉପନିଷଦ୍ କାଳରେ ପୁତ୍ର ପରି କନ୍ୟା ମଧ୍ୟ କାମନା କରୁଥିଲେ । (୨୩୦) ସଂସ୍କୃତ ମହାଭାରତରେ କୁହାଯାଇଛି—"ଯଥୈବାତ୍ମା ତଥା ପୁତ୍ରଃ ପୁତ୍ରେଣ ଦୁହିତା ସମା ।" ଅର୍ଥାତ୍—ପୁତ୍ର ଆତ୍ମା ସଙ୍ଗରେ ସମାନ ଏବଂ

କନ୍ୟା ପୁତ୍ର ସମ । (୨୩୧) ସେ କାଳରେ ପୁତ୍ରର ଯେପରି ଜନ୍ମକାଳୀନ ସଂସ୍କାର ପାଳିତ ହେଉଥିଲା, କନ୍ୟାର ମଧ୍ୟ ତଦ୍ରୂପ ହେଉଥିଲା । ସାବିତ୍ରୀଙ୍କର ଜନ୍ମକାଳୀନ ସଂସ୍କାର ଯଥାବିଧି ପାଳିତ ହୋଇଥିଲା ବୋଲି ମହାଭାରତ କହେ । (୨୩୨)

ସାରଳା ଯୁଗରେ କନ୍ୟାଜନ୍ମ ଓ କନ୍ୟାପାଳନ ପ୍ରତି ଲୋକଙ୍କର ଆଦର ଭାବ ରହିଥିଲା । ରଜା ଦ୍ରୁପଦ କନ୍ୟାଟିଏ କାମନା କରି ଯଜ୍ଞ କରିଥିଲେ । (୨୩୩) ଗାନ୍ଧାରୀ ପୁତ୍ର ଓ କନ୍ୟା ଉଭୟ ନିମିତ୍ତ ଦୁର୍ବାସାଙ୍କୁ ବର ମାଗିଥିଲେ । (ଆ ୭୯ ପୃ) ରଜା ଦ୍ରୁପଦ ଦ୍ରୌପଦୀଙ୍କର ଜାତସଂସ୍କାର ଓ ନାମକରଣ ଯଥାବିଧି କରାଇଥିଲେ । (ଆ ୨୧୦ ପୃ) ଶଶିକର ବିପ୍ରର ବିଧବାପତ୍ନୀ ଯେଉଁ ଜାରଜ କନ୍ୟା ଜାତ କରିଥିଲେ, ତାହାକୁ ଶୃଗାଳ-ଦମ୍ପତି ଲାଳନପାଳନ କରିଥିଲେ । (ଆ୧୭୬ପୃ) ବାମଦେବ ବିପ୍ରର ବିଧବା ଭାର୍ଯ୍ୟାଠାରୁ ଜାତ କନ୍ୟାକୁ ସାରସ ନାମକ ଶୃଗାଳ ମଧ୍ୟ ଲାଳନପାଳନ କରିଥିଲା । (ବ ୧୪୦ ପୃ)

ଉତ୍କଳୀୟ ପରମ୍ପରାରେ କନ୍ୟାଜନ୍ମପ୍ରତି ଏତାଦୃଶ ଆଦର ଭାବ ଥିବାର ଜଣାଯାଏ । 'ରୁଦ୍ର ସୁଧାନିଧି'ରେ କୁହାଯାଇଅଛିଯେ, ଶିବ ପାର୍ବତୀଙ୍କୁ କନ୍ୟାଟିଏ ଜାତ କରିବା ପାଇଁ ଅନୁରୋଧ କରିଥିଲେ । (ପୃ୩) 'ଦାଣ୍ଡି ରାମାୟଣ'ରେ ଦଶରଥଙ୍କ କନ୍ୟା ଶାନ୍ତାଙ୍କୁ ଲୋମପାଦ ଲାଳନପାଳନ କରିଥିଲେ ବୋଲି ବର୍ଣ୍ଣନା କରାଯାଇଅଛି । (ଆ୧୧ପୃ) ଜଗନ୍ନାଥ ଦାସ ଭାଗବତରେ ବୃକ୍ଷମାନେ କନ୍ୟା-ପାଳନ କରିବା କଥା କହିଅଛନ୍ତି । ଏଥିରେ ଦୁହିତା ଲାଭ ଉଦ୍ଦେଶ୍ୟରେ ଲୋକେ ଯଜ୍ଞ କରୁଥିଲେ ବୋଲି ମଧ୍ୟ କୁହାଯାଇଅଛି । (୨୩୪)

## ୪. ନାରୀଜାତିପ୍ରତି ମନୋଭାବ

ପ୍ରାଚୀନ ଭାରତୀୟ ସମାଜରେ ନାରୀଜାତିପ୍ରତି ଉଚ୍ଚ ମନୋଭାବ ଥିଲା । ରାଜନୈତିକ, ସାମାଜିକ ତଥା ଆର୍ଥିକ ଉତ୍ଥାନପତନ ମଧ୍ୟରେ ଭାରତୀୟ ନାରୀ ସର୍ବଦା ପବିତ୍ରତା ତଥା ଦେବୀତ୍ୱର ପ୍ରତୀକ ରୂପରେ ସମ୍ମାନ ଲାଭ କରିଆସିଅଛି । (୨୩୫) ଭାରତୀୟ ସଭ୍ୟତାର ଦୀର୍ଘ ଇତିହାସରେ ଅସଂଖ୍ୟ ବାଧାବିଘ୍ନ, ବହିଃଶତ୍ରୁର ଆକ୍ରମଣ, ବିପରୀତ ଧର୍ମ-ଧାରଣା ଓ ବିଶ୍ୱାସର ସମ୍ମୁଖୀନ ହୋଇ ସମାଜ ପରି-ବର୍ତ୍ତିତ ରୂପ ଧାରଣ କରିଥିଲେ ହେଁ ଭାରତୀୟ ସାହିତ୍ୟରେ ସତତ ସମାନ ଭାବରେ ନାରୀଜାତି ପ୍ରତି ସମ୍ମାନ ପ୍ରଦର୍ଶିତ । ବେଦ କୌଣସି ଅଧିକାର, ବିଶେଷତଃ ଧର୍ମା-ଚରଣର ଅଧିକାର ନାରୀପାଇଁ ନିଷେଧ କରିନାହିଁ । ହିନ୍ଦୁଧର୍ମ ବେଦକୁ ସବୁଠାରୁ

ଅଧିକ ମାନ୍ୟତା ପ୍ରଦାନ କରେ । ସୁତରାଂ ସ୍ମୃତି ତଥା କେତେକ ପୁରାଣରେ ବେଦବାଣୀର ଯେଉଁ ବିପରୀତ ମନୋଭାବ ସାମୟିକ ଭାବରେ ନାରୀଜାତିର ସଂପର୍କରେ ପ୍ରକାଶ ପାଇଅଛି, ତାହା ପରିହାର କରାଯାଇପାରେ । (୨୩୬) ଏହି ମହାଭାରତୀୟ ପରମ୍ପରାର ପରିପ୍ରେକ୍ଷୀରେ ପଞ୍ଚଦଶ ଶତାବ୍ଦୀର ଉତ୍କଳୀୟ ସମାଜରେ ନାରୀଜାତି ପ୍ରତି କିଭଳି ମନୋଭାବ ଥିଲା ତାହା ବିଚାରଯୋଗ୍ୟ ।

## (କ) ପ୍ରଶଂସା

ଭାରତୀୟ ସାହିତ୍ୟରେ ନାରୀଜାତିର ବହୁ ପ୍ରଶଂସା ନିହିତ । ମନୁସ୍ମୃତିରେ ଅଛି ଯେ, ପରିବାରରେ ଭାର୍ଯ୍ୟା ଓ ଲକ୍ଷ୍ମୀଙ୍କର ଆସନ ସମାନ । ଯେଉଁ ଗୃହରେ ନାରୀର ପୂଜା ହୁଏ, ସେଠାରେ ଦେବତା ବାସ କରନ୍ତି । (୨୩୭) ସଂସ୍କୃତ ମହାଭାରତରେ କୁହାଯାଇଅଛି ଯେ, ଗୃହସ୍ଥର ଧର୍ମ ଓ ଆନନ୍ଦ ଭାର୍ଯ୍ୟାର ଅଧୀନ । ସଂସାର ରୂପକ ସାଗରରୁ ଉତ୍ତୀର୍ଣ୍ଣ ହେବା ପାଇଁ ଭାର୍ଯ୍ୟା ହିଁ ପ୍ରମୁଖ ସାଧନ । (୨୩୮) ସଂସ୍କୃତ ଭାଗବତ କହେ ଭାର୍ଯ୍ୟା ବିନା ଦେବତା, ଋଷି ପିତୃଲୋକଙ୍କର ଋଣ ପରିଶୋଧ କରାଯାଇ ପାରେନାହିଁ । (୨୩୯) ରାମାୟଣରେ ଅଛି—ଧର୍ମ, ଅର୍ଥ ଓ କାମ ଏହି ତ୍ରିବର୍ଗ ଭାର୍ଯ୍ୟାର ଅଧୀନ । (୨୪୦) ତୈତ୍ତିରୀୟ ଉପନିଷଦ୍‌ରେ ମାତାଙ୍କୁ ଦେବତା ରୂପରେ ଦେଖିବା ନିମିତ୍ତ (ମାତୃଦେବୋଭବ) ଗୁରୁ ଶିଷ୍ୟମାନଙ୍କୁ ଉପଦେଶ ପ୍ରଦାନ କରିବା କଥା ଅଛି । (୨୪୧) 'ଦୁର୍ଗା ସପ୍ତଶତୀ'ରେ ସମସ୍ତ ସ୍ତ୍ରୀଜାତି ଦେବୀ ଦୁର୍ଗାଙ୍କର ମୂର୍ତ୍ତି ବୋଲି କଥିତ । (୨୪୨) ବ୍ରହ୍ମବୈବର୍ତ୍ତ ପୁରାଣର ମତରେ ମାତା ପିତାଠାରୁ ଶହେ ଗୁଣ ଅଧିକ ପୂଜନୀୟା । (୨୪୩)

ସାରଳା ଦାସଙ୍କ ବହୁ ଉକ୍ତିରୁ ପ୍ରମାଣିତ ହୁଏ ଯେ, ସେ ଯୁଗର ନାରୀଜାତିପ୍ରତି ପ୍ରଶଂସମାନ ମନୋଭାବ ବିଦ୍ୟମାନ ଥିଲା । ସତ୍ୟଭାମା ସୁଭଦ୍ରାଙ୍କୁ ଆଶ୍ୱାସନା ଦେବା ଛଳରେ ନାରୀଜାତିର ପ୍ରଶଂସା କରିଥିଲେ । ସେ କହିଥିଲେ—"ତୁ କିମ୍ପାଇ ନିନ୍ଦା କରୁ ସ୍ତିରୀ ଜନମକୁ ।

ସ୍ତିରୀ ଉତ୍ପତ୍ତି କରଇ ସିନା ପୁରୁଷକୁ ।
ସ୍ତିରୀ ନ ଥିଲେ ପୁରୁଷ ହୁଅନ୍ତେ ଗୋ କାହିଁ
ପୁରୁଷ ବିଧାତା ସ୍ତିରୀ ଗଢ଼ିଅଛି ବିହି ।
ଆଗହୁଁ ଦେଖ ସଙ୍ଗାତ ସ୍ତିରୀ ନାମ ଧରି
ପଛରେ ସିନା ପୁରୁଷ ନାମକୁ ଉଚ୍ଚାରି ।

ଆଗ ଦେଖ ଲକ୍ଷ୍ମୀ ବୋଲି ପଛେ ନାରାୟଣ
ଆଗେ ଉମା ମହେଶ୍ୱର ପଛେ ସୁମରଣ ।
ସକଳ ଜନଙ୍କ ସ୍ତିରୀ ଅଟଇ ଗୋ ମୂଳ
ସ୍ତିରୀଙ୍କ ବଶ ଅଟନ୍ତି ପୁରୁଷ ସକଳ ।" (ମ୧୨୦ପୃ)

ଦ୍ରୌପଦୀଙ୍କ ବିବାହ କାଳରେ ବ୍ୟାସଦେବ ରାଜା ଦ୍ରୁପଦଙ୍କୁ ବୁଝାଇ କହିଥିଲେ—"ନାରୀ ହିଁ ଅନାଦି, ସରସ୍ୱତୀ ଓ ଅପର୍ଣ୍ଣା । ତାହାଙ୍କଠାରୁ ଉତ୍ପତ୍ତି ତଥା ପ୍ରଳୟ ହୁଏ । ସେହି ଶକ୍ତିରୂପିଣୀ ସ୍ତ୍ରୀଜାତିଠାରୁ ଏହି ସଂସାର ସୃଷ୍ଟି ହୋଇ-ଅଛି ।" (ଆ୩୧୨ପୃ) ସାରଳା ଦାସ କହନ୍ତି ଯେ, ବିପଦ କାଳରେ ନାରୀର ନାମ ଉଚ୍ଚାରଣ କଲେ ପୁରୁଷ ସଙ୍କଟରୁ ଉଦ୍ଧାର ଲାଭ କରେ । ନଳରାଜା ଦମୟନ୍ତୀଙ୍କର ନାମୋଚ୍ଚାରଣ କରି ସର୍ପର ମୁଖରୁ ରକ୍ଷା ପାଇଲେ । (୨୪୪) କବିଙ୍କ ମତରେ ପତ୍ନୀ ସଙ୍ଗରେ ଥିଲେ ପୁରୁଷ କେବେହେଁ କ୍ଳେଶ ଲାଭ କରିବ ନାହିଁ, ବରଂ ଶୁଭ ଫଳ ଭୋଗ କରିବ । ନାରୀକୁ ସଙ୍ଗରେ ରଖିବା ପୁରୁଷ ପକ୍ଷରେ ଧର୍ମର କଥା । ରାମଚନ୍ଦ୍ର ସୀତାଙ୍କୁ ସଙ୍ଗରେ ନେଇ ବନବାସ କରିଥିବାରୁ ତାଙ୍କୁ ବନବାସ-କଷ୍ଟ ଜଣାଯାଇ ନ ଥିଲା । (୨୪୫) ସେ କାଳର ଲୋକେ ନାରୀକୁ ମାତା ରୂପରେ ଦେଖୁଥିଲେ । ପ୍ରଣୟ-କାଙ୍‌କ୍ଷିଣୀ ହାରାବତୀଙ୍କୁ ଅର୍ଜ୍ଜୁନ ସେହି ମର୍ମରେ କହିଥିଲେ—"ପର ପୁରୁଷ ପିତା, ପର ସ୍ତିରୀ ମାତା ।" (ବ୧୫୮ପୃ) ଉର୍ବଶୀଙ୍କୁ ମଧ୍ୟ ଅର୍ଜ୍ଜୁନ ତଦ୍ରୂପ କହିଥିଲେ । (ବ୫୨ପୃ)

'ଚଣ୍ଡୀ ପୁରାଣ'ରେ କବି କହନ୍ତି ଯେ, ପ୍ରତ୍ୟେକ ନାରୀ ଦେବୀଙ୍କ ଅଂଶ । ସଂସାରରେ ଯେତେ ସ୍ତ୍ରୀ ଜାତି ହୁଅନ୍ତି ସମସ୍ତେ ଦେବୀଙ୍କ ଅଂଶ ନେଇ ଜନ୍ମଗ୍ରହଣ କରନ୍ତି । ସଂସାର ମଧ୍ୟରେ ଯେତେକ ଯୁବତୀ ଅଛନ୍ତି, ପ୍ରତ୍ୟେକ ଦେବୀଙ୍କର ନାମ ବହନ କରନ୍ତି । (ପୃ୧୧୭) 'ବାଲ୍ମିକି ରାମାୟଣ'ରେ ବଳରାମ ଦାସ କହିଅଛନ୍ତି ଯେ, ପ୍ରତ୍ୟେକ ସ୍ତ୍ରୀଙ୍କ ଦେହରେ ଦେବୀ ଉମା ନିବାସ କରନ୍ତି । (ଆ୯୭ପୃ)

(ଖ) **ନିନ୍ଦା**

ସ୍ମୃତି ତଥା ପୁରାଣରେ ପ୍ରଶଂସା ସହିତ ନାରୀଜାତିର ନିନ୍ଦା ମଧ୍ୟ ଅଛି । ସଂସ୍କୃତ ମହାଭାରତରେ ଅଛି—"ଅନୃତଂ ସତ୍ୟମିଥ୍ୟା ହିଃ ସତ୍ୟମ୍ପି ତଥା ନୃତମ୍ ।" ଅର୍ଥାତ୍—ନାରୀ ସତ୍ୟକୁ ମିଥ୍ୟା ତଥା ମିଥ୍ୟାକୁ ସତ୍ୟ କରିପାରେ । (୨୪୬) ବ୍ୟାସଦେବଙ୍କ ମତରେ—"ନହି ସ୍ତ୍ରୀଭ୍ୟଃ ପରଂ ପୁନପାପୀୟ କଞ୍ଚିଦସ୍ତି ବୈ ।" ଅର୍ଥାତ୍—ସ୍ତ୍ରୀଠାରୁ ବଳି ଅଧିକ ପାପୀ ଆଉ କେହି ସଂସାରରେ

ନାହାନ୍ତି । (୨୪୭) ସ୍ମୃତିକାର ମନୁ କହନ୍ତି—ଶଯ୍ୟା, ଆସନ, ଅଳଙ୍କାର, କାମ, କ୍ରୋଧ, କୁଟିଳତା, ମୋହ ଓ ଦୁରାଗ୍ରହ କେବଳ ନାରୀଙ୍କ ପାଇଁ ଆଦ୍ୟରେ ସୃଷ୍ଟି ହୋଇଥିଲା । ନାରୀ କେତେବେଳେ ହେଲେ ସ୍ୱତନ୍ତ୍ର ହୋଇ ରହିବାର ଯୋଗ୍ୟ ନୁହେଁ । (୨୪୮) ବିଷ୍ଣୁପୁରାଣରେ ନାରୀକୁ ନରକର ଦ୍ୱାର ଓ ଅବିଶ୍ୱାସୀ ପ୍ରାଣୀ ବୋଲି କୁହାଯାଇଛି । (୨୪୯) କାମଶାସ୍ତ୍ରର ପ୍ରଣେତା ବାତ୍ସ୍ୟାୟନ କହିଛନ୍ତି—ସ୍ତ୍ରୀ ଧର୍ମ ବା ଅଧର୍ମ କିଛି ବୁଝେ ନାହିଁ । ସେ କେବଳ କାମର ଅପେକ୍ଷା ରଖେ । (୨୫୦) ଶଙ୍କରଙ୍କ ମତରେ ସ୍ତ୍ରୀ ପୁରୁଷର ଏକମାତ୍ର ବନ୍ଧନ । (୨୫୧) ସେ ମଦ୍ୟପରି ମୋହ ଉତ୍ପାଦନ କରେ । (୨୫୨) ସ୍କନ୍ଦ ପୁରାଣ କହେ—ମିଥ୍ୟା, ସାହସ, ମାୟା, ମୂର୍ଖତା, ଅପବିତ୍ରତା ଓ ନିଷ୍ଠୁରତା ନାରୀର ସ୍ୱାଭାବିକ ଦୋଷ । (୨୫୩)

ଶାରଳା ଦାସ ମଝେ ମଝେ ନାରୀଜାତିର ନିନ୍ଦା ପୁରାଣକାରମାନଙ୍କ ଭଳି ପ୍ରଦାନ କରିଅଛନ୍ତି । କବି 'ସତ୍ୟ ଆତ୍ମ ବିବରଣ' ପ୍ରସଙ୍ଗରେ ଦ୍ରୌପଦୀଙ୍କ ସତ୍ୟପ୍ରକାଶ ଛଳରେ ଯାହା କହିଛନ୍ତି, ତାହା ନାରୀଜାତିର କାମପ୍ରବଣତା ପ୍ରତିପାଦନ କରେ ।

"ଦ୍ରୌପଦୀ ବୋଲେ ସ୍ତିରୀଙ୍କ ଏମନ୍ତ ପ୍ରକୃତି
ସୁନ୍ଦର ପୁରୁଷ ଦେଖି ବଳାବନ୍ତି ମତି ।
ସୁକୃତରେ ଛନ୍ତି ମୋର ଏହି ପାଞ୍ଚପତି
ଅର୍ଜୁନଠାରେ ମୋହର ବେଶି ଥାଏ ମତି ।
ଯଦ୍ୟପି ମୋହର ପତି ଛନ୍ତି ପାଞ୍ଚଜଣ
କର୍ଣ୍ଣ ସୌନ୍ଦର୍ଯ୍ୟରେ ମୋର ଭୁଲିଯାଏ ମନ ।"(୨୫୪)

ଅମ୍ବିକା କନ୍ୟା ସତ୍ୟବତୀଙ୍କୁ ଯାହା କହିଥିଲେ, ସେଥିରେ ମଧ୍ୟ ନାରୀଜାତିର ଦୁର୍ଗୁଣ ରୂପ ପାଇଅଛି । ଯଥା—

"ଅମ୍ବିକା ବୋଇଲା ଶୁଣ ମା ଗୋ ସତ୍ୟବତୀ
ସ୍ତିରୀଜନ୍ମ ହେତୁ ଆମ୍ଭେ ଅଟୁ ମନ୍ଦ ଜାତି ।
ସର୍ବଦା ଅଶୁଚି କରୁ ନାନାଦି ଅକ୍ରିୟା
ସମସ୍ତ ଧାଇଁଲୁ ମା ଗୋ ନାହିଁ ସତକ୍ରିୟା ।
ମଦିରା ଖାଇଲେ ଯେହ୍ନେ ହୁଏ ଅସମ୍ଭାଳ
ପରପୁରୁଷ ଦେଖିଲେ ତେହ୍ନେ ଆମ୍ଭେ ଭୋଳ ।
ଯାହାର ହାତ ଧରୁ ସେ ନୁହଇ ଆମ୍ଭର
ଅନ୍ତରତେ ଇଚ୍ଛ ପରପୁରୁଷ ସୁନ୍ଦର ।" (ଆ୨୯ପୃ)

ଶ୍ରୀକୃଷ୍ଣ ମଧ୍ୟ ନାରୀମାନେ ମିଥ୍ୟା କହନ୍ତି, ତାଙ୍କର କଥା ବିଶ୍ୱାସଯୋଗ୍ୟ ନୁହେଁ ବୋଲି ବଳରାମଙ୍କୁ ଜଣାଇଥିଲେ । (୨୫୫) ଦ୍ରୋଣ ଦୁର୍ଯ୍ୟୋଧନଙ୍କୁ ନାରୀର ପ୍ରଭାବ କପରି ଦୁଃଖମୟ ତାହା ବୁଝାଇଥିଲେ ।

"ସ୍ତ୍ରୀବଶେ ରହିଲେ ଜନ୍ମ ହୁଏ ମୋହମଦ
କୁଟୁମ୍ବରେ ହୁଏ ସଦା ଗୃହର ବିବାଦ ।" (ଖ୍ରୀ୧୦୯ପୃ)

ଭକ୍ତକବି ବଳରାମ ଦାସ 'ଦାଣ୍ଡି ରାମାୟଣ'ରେ ନାରୀକୁ ଚଞ୍ଚଳମନା ଓ ଅବିଶ୍ୱାସୀ ବୋଲି କହିଅଛନ୍ତି । (ଆ୪୮ପୃ) ଜଗନ୍ନାଥ ଦାସଙ୍କ ଭାଗବତରେ ଅଛି—"ନାରୀର ବଶ ହେଲେ ପୁରୁଷ ନର୍କରେ ପଡ଼େ । ସର୍ପ ଓ ଦୁର୍ଜ୍ଜନଙ୍କ ଭଳି ସେ ଅବିଶ୍ୱାସୀ । ନାରୀମାନେ ନିଷ୍ଠୁର, ଦୟାହୀନା, ସାହସୀ ଓ କ୍ରୋଧୀ ।" (୨୫୬)

## (ଗ) କରୁଣା

ପ୍ରାଚୀନ ସାହିତ୍ୟରେ ନାରୀର ନିନ୍ଦା କେତେକ ସ୍ଥଳରେ କରାଯାଇଥିଲେ ହେଁ ସେମାନଙ୍କ ପ୍ରତି ଦୟାପୂର୍ଣ୍ଣ ବ୍ୟବହାର କରିବା ନିମିତ୍ତ ନିର୍ଦ୍ଦେଶ ପ୍ରଦାନ କରାଯାଇଅଛି । ରାମାୟଣ କହେ—ନାରୀ ବଧଯୋଗ୍ୟା ନୁହେଁ, ସେ କ୍ଷମାର ପାତ୍ରୀ । ( ୨୫୭) ମାର୍କଣ୍ଡେୟ ପୁରାଣରେ କୁହାଯାଇଅଛି ଯେ, ଭାର୍ଯ୍ୟା ଦୁଃଶୀଳା ହେଲେ ମଧ୍ୟ ପୁରୁଷ ତାକୁ ପାଳନ କରିବା ଉଚିତ୍ । (୨୫୮) ବିଷ୍ଣୁ ପୁରାଣ ମତରେ ନାରୀକୁ ଅପମାନ ଦେବା ବା ତିରସ୍କାର କରିବା ଅନୁଚିତ । (୨୫୯) ସଂସ୍କୃତ ଭାଗବତ କହେ—ସ୍ତ୍ରୀ ଅପରାଧ କଲେ ମଧ୍ୟ ତାକୁ ପ୍ରହାର କରିବ ନାହିଁ । (୨୬୦) 'ଶୁକ୍ରନୀତିମ୍'ରେ ଅଛି ଯେ, ସ୍ତ୍ରୀ-ହରଣକାରୀ ଆତତାୟୀ । (ପୃ୬୮)

ଶାରଳା ଦାସଙ୍କ ଲେଖନୀରେ ନାରୀଜାତି ପ୍ରତି କରୁଣାଭାବ ପ୍ରକାଶ ପାଇଅଛି । କବି ଲେଖିଛନ୍ତି—ମାତାଙ୍କୁ ନିନ୍ଦା କଲେ ଦୁର୍ଗତି ଭୋଗ କରିବାକୁ ପଡ଼େ, ସ୍ତ୍ରୀର ନିନ୍ଦା କଲେ ଚଣ୍ଡାଳ ଘରେ ଜନ୍ମ ନେବାକୁ ହୁଏ, ଦେବୀଙ୍କ ନିନ୍ଦା କଲେ ଦୁଃଖ ମିଳେ, ପରର ସ୍ତ୍ରୀକୁ ନିନ୍ଦା କଲେ ମଧ୍ୟ ଦୁଃଖ ଭୋଗ କରିବାକୁ ପଡ଼େ । (ବି୭ପୃ) ଦୁଷ୍ଟା ଭାର୍ଯ୍ୟାକୁ କପରି ଦୟା ପ୍ରଦର୍ଶନ କରିବା ଉଚିତ, ତାହା ଗଙ୍ଗା-ଶାନ୍ତନୁଙ୍କ ଉପାଖ୍ୟାନରେ କବି କହିଅଛନ୍ତି । ଗଙ୍ଗାଦେବୀ ଦୁଷ୍ଟା ପ୍ରକୃତିର ଥିଲେ । ସେ ଶାନ୍ତନୁଙ୍କ ପ୍ରତି ଯଥାଯୋଗ୍ୟ ବ୍ୟବହାର କରୁ ନଥିଲେ । ପୁଣି ସେ ଗର୍ଭଜାତ ପୁତ୍ରମାନଙ୍କୁ ଗୋଟିକ ପରେ ଗୋଟିଏ ହତ୍ୟା କରିବାକୁ ଲାଗିଲେ ।

ତଥାପି ଶାନ୍ତନୁ ତାଙ୍କୁ ଅବଜ୍ଞା ଦେଖାଇ 'ଗାଙ୍ଗୀ' ବୋଲି କହିଲେ ନାହିଁ। (ଆ ୯-୧୪ପୃ) ନାରୀ କପରି ଅବଧ୍ୟା ତାହା ସାରଳା ଦାସ ଦର୍ଶାଇ ଅଛନ୍ତି। ହନୁମନ୍ତ ଶ୍ରୀକୃଷ୍ଣଙ୍କର ମହିମା ଗାନ କଲେ ଏବଂ ତାଙ୍କଠାରେ ଭକ୍ତି ରଖିବା ପାଇଁ ଦୁର୍ଯୋଧନଙ୍କୁ ଉପଦେଶ ଦେଲେ। ଶତ୍ରୁ ଶ୍ରୀକୃଷ୍ଣଙ୍କର ପ୍ରଶଂସା ଶୁଣି ଦୁର୍ଯୋଧନ କ୍ରୁଦ୍ଧ ହେଲେ। ତାଙ୍କର ଇଚ୍ଛା ହେଉଥିଲା ଯେ ସେ ହନୁମନ୍ତଙ୍କୁ ମୁଣ୍ଡକାଟ ଦଣ୍ଡ ଦେବେ; କିନ୍ତୁ ହନୁମନ୍ତ ସ୍ତ୍ରୀ ବୋଲି ଦୁର୍ଯୋଧନ ତାଙ୍କୁ ମୁଣ୍ଡକାଟ ଶାସ୍ତି ଦେଲେ ନାହିଁ। (ଉ୬୫ପୃ) ନାରୀକୁ ଦଣ୍ଡ ଦେଲେ ରାଜା ପାପୀ ବୋଲି ବିବେଚିତ ହେଉଥିଲେ। ସେ ଯେତେ ଦୋଷ କଲେ ମଧ୍ୟ ଦଣ୍ଡର ଯୋଗ୍ୟ ନୁହେଁ। ଅନଙ୍ଗସେନ ବୃତ୍ତାନ୍ତରେ ଏହା କବି ପ୍ରଦର୍ଶନ କରିଅଛନ୍ତି। ଅନଙ୍ଗସେନ ରାଜାଙ୍କ ରାଣୀ ରତ୍ନାବତୀ ଦୋଷ୍ଟରୁଣୀ ଥିଲେ। ସେ ସିନ୍ଧୁସ୍ନାନକୁ ଯିବା ବାଟରେ ଅଗ୍ନିକା ନାମକ ଋଷିଙ୍କ ସହ ବଳାତ୍କାର ରମଣ କଲେ। ଋଷି 'ଅନଙ୍ଗସେନ ରକ୍ଷାକର' ବୋଲି ଡାକିଲେ। ଅନଙ୍ଗସେନ ପାଦୁକା ମନ୍ତ୍ର ସାହାଯ୍ୟରେ ଘଟଣା ସ୍ଥଳରେ ପହଞ୍ଚିଲେ ଏବଂ କଟାରିଦ୍ୱାରା ରାଣୀ ରତ୍ନାବତୀଙ୍କୁ ହତ୍ୟା କଲେ। ଅନଙ୍ଗସେନ ତଥା ଅଗ୍ନିକା ଋଷି ଉଭୟେ ଯମଦ୍ୱାରରେ ଦୋଷୀ ବୋଲି ସାବ୍ୟସ୍ତ ହେଲେ। (ଆ୫୧-୫୨ପୃ) ଜଗନ୍ନାଥ ଦାସଙ୍କ ଭାଗବତରେ ସ୍ତ୍ରୀ-ହତ୍ୟା ପାପ ବୋଲି କଥିତ ହୋଇଅଛି। (୨୬୧) 'ଦାଣ୍ଡି ରାମାୟଣ'ରେ ମଧ୍ୟ ଅଛି—

"ବିଶେଷେ ଜନମି ଆବର ସ୍ତ୍ରୀବଧ
ସେ ତାତ ଏ ମହାପାପ ଅଟଇ ଅସାଧ।" (ଅ୮ପୃ)

ଉପରୋକ୍ତ ଆଲୋଚନାରୁ ପ୍ରତିପାଦିତ ହୁଏ ଯେ, ପଞ୍ଚଦଶ ଶତାବ୍ଦୀରେ ଉତ୍କଳୀୟ ନାରୀଗଣ ପରିବାରର ସର୍ବମୟ କର୍ତ୍ତ୍ରୀ ଓ ସୁଗୃହିଣୀ ଥିଲେ। ସେମାନେ ପତିକୁ ଉପଦେଶ ଦେଇପାରୁଥିଲେ, ସନ୍ତାନମାନଙ୍କୁ ଶିକ୍ଷା ପ୍ରଦାନ କରୁଥିଲେ ଓ ସ୍ୱାମୀଙ୍କୁ ସକଳ କାର୍ଯ୍ୟରେ ସାହାଯ୍ୟ କରୁଥିଲେ। ଶାଶୁ, ଶ୍ୱଶୁର, ନଣନ୍ଦ, ଦାସୀ-ପରିବାରୀ, ସପତ୍ନୀ ତଥା ଭ୍ରାତୃଜାୟାଙ୍କ ପ୍ରତି ନାରୀମାନେ ଯଥୋଚିତ ବ୍ୟବହାର ପ୍ରଦର୍ଶନ କରୁଥିଲେ। ସେ ଯୁଗର ନାରୀଜାତିର ପତିସେବା ଓ ପତିଭକ୍ତି ଆଦର୍ଶ ସ୍ଥାନୀୟ ଥିଲା। ଦରକାର ହେଲେ ନାରୀ ପତିପାଇଁ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେଉଥିଲା। ସେ କାଳର ଓଡ଼ିଆ ନାରୀ ବୀର ଓ ତେଜସ୍ୱିନୀ ଥିଲେ। ସେମାନେ ହସି ହସି ପ୍ରିୟ ପୁତ୍ର ଓ ପତିଙ୍କୁ ଯୁଦ୍ଧଭୂମିକୁ ପ୍ରେରଣ କରୁଥିଲେ। ସେ ଯୁଗର ନାରୀ-ଚରିତ୍ରରେ ଥିଲା ଦୟା, ସହାନୁଭୂତି, ଉଦାରତା, ତ୍ୟାଗ, ସଂଯମ, ବାତ୍ସଲ୍ୟ,

କ୍ଷମା, ଧର୍ମପରାୟଣତା, ସାହସ, ନିଷ୍ଠା ଓ ବିଦ୍‌ବତ୍ତା । ସେତେବେଳେ ଓଡ଼ିଆ ନାରୀସମାଜରେ ବିଦୁଷୀ ରମଣୀ ଥିଲେ ଓ ତନ୍ତ୍ର, କଳା, ଜ୍ୟୋତିଷ ଆଦିର ଚର୍ଚ୍ଚା କରୁଥିଲେ । କେହି କେହି ରାଜନୀତି ତଥା ଯୁଦ୍ଧାଦି ବିଦ୍ୟା ମଧ୍ୟ ଜାଣିଥିଲେ । ସେମାନେ ସ୍ୱେଚ୍ଛାରେ ପତି-ବରଣ କରିବା, ଅଧିକ ବୟସରେ ଅର୍ଥାତ୍ ଯୁବତୀ ଅବସ୍ଥାରେ ବିବାହ କରିବା, ଉତ୍ସବାଦିରେ ଯୋଗଦେବା, ତୀର୍ଥଯାତ୍ରା କରିବା, ବନ୍ଧୁ ବାନ୍ଧବଙ୍କ ଘରକୁ ଯିବା ପାଇଁ ଅଧିକାର ପାଇଥିଲେ । ପରଦାପ୍ରଥା ସାର୍ବଜନୀନ ରୀତି ନ ଥିଲା । ଏହା କେବଳ ନବବଧୂ ଓ ବିବାହ କରିବାକୁ ଯାଉଥିବା ନାରୀଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ସତୀପ୍ରଥା ବିରଳଭାବରେ ଦେଖାଯାଉ-ଥିଲା । ତାହା ବାଧ୍ୟତାମୂଳକ ନ ଥାଇ ସ୍ୱେଚ୍ଛାମୂଳକ ଥିଲା । ନାରୀଜାତି ପ୍ରତି ସମାଜର ମନୋଭାବ ମୁଖ୍ୟତଃ ପ୍ରଶଂସାମୂଳକ ଓ ଦୟାପୂର୍ଣ୍ଣ ଥିଲା । ବିଧବାମାନେ ପବିତ୍ର ଓ ନିଷ୍ଠାପର ଜୀବନ ଯାପନ କରୁଥିଲେ । ସମାଜରେ ସେମାନେ ସମ୍ମାନନୀୟ ସ୍ଥାନ ପାଉଥିଲେ । ରାଜପରିବାରରେ ବହୁ ପତ୍ନୀଗ୍ରହଣର ପ୍ରଥା ଥିଲେ ହେଁ ସାଧାରଣ ସ୍ତରରେ ଏକପତ୍ନୀଗ୍ରହଣ ସାର୍ବଜନୀନ ରୀତି ଥିଲା । ସୁତରାଂ କୁହାଯାଇପାରେ ଯେ, ପଞ୍ଚଦଶ ଶତାବ୍ଦୀରେ ସମାଜରେ ନାରୀଜାତିର ସ୍ଥାନ ଉଚ୍ଚରେ ଥିଲା ।

---

# ପାଦଟୀକା

(୧) The Position of Women in the Vedic Ritual—P. 1. (୨) Our Oriental Heritage—P. 401 (୩) Women of India—P.1 (୪) Our Oriental Heritage—P. 401. (୫)H.C.I.P, Vol. I—P. 389. (୬) Women in the Vedic Age—P. 19 (୭) The Cambridge History of India—P. 71, V.I. (୮) ଲୁଡ଼ୱି ଋଗ୍‌ବେଦ, ଭୂମିକା, ପୃ ୬୫ (୯) Women in the Vedic Age—P. 25. (୧୦) ପାଣିନିକାଳୀନ ଭାରତବର୍ଷ, ପୃ ୧୦୩-୧୦୪ (୧୧) J.O.I.H. Aug. 67, P. 534-538. (୧୨) India at the time of Patanjali—P. 11 (୧୩) Everyday life in Ancient India—P. 162 (୧୪) Women of India—P. 9. (୧୫) Ibid, P. 9-10 (୧୬) Society and Government in Medieval India, P. 203-204 (୧୭) ଭାରତବର୍ଷକା ଆର୍ଥିକ ଇତିହାସ—ପୃ୧୪୨ (୧୮) H.C.I.P., Vol. VI—P. 592 (୧୯) S. G. M. I.—P. 203 (୨୦) Ibid—P. 204. (୨୧) Women of India—P. 9 & 13 (୨୨) ଉତ୍କଳ ଇତିହାସ, ପୃ ୧୨୬-୧୩୦; ପୃ ୧୬୫-୧୬୮ । ଓଡ଼ିଶା ଇତିହାସ, ୧ମ, ପୃ ୨୪୬, ୨୪୯ ଓ ୨୫୫ (୨୩) Women of India P. 13 (୨୪) ଓ. ଇ, ୧ମ ପୃ ୨୫୪—୨୫୫ (୨୫) ଏଜନ୍ ପୃ ୨୬୨-୨୬୩ (୨୬) Women in the Vedic Age—P. 19 (୨୭) Ibid, P.1-2 (୨୮) ଘ.ମ. ଆଦି ୭୪, ୪୧-୪୨ (୨୯) ଏଜନ୍, ଶାନ୍ତି, ୧୪୪, ୧୩-୧୫ (୩୦) ଏଜନ୍—୧୪୪, ୬ । (୩୧) ଶ୍ରୀ. ଭା. (ସ୦)—୩, ୨୧, ୨୭ (୩୨) Studies in Indian History—P. 172. (୩୩) କାମସୂତ୍ରମ, ୨ସୂ—୪,୧,୩ । ୪,୧,୫ । ୪,୧,୧୦ । ୪,୧,୧୨ । ୪,୧,୧୬ । (୩୪) ସଂ. ମ.—ବନ ୨୩୩, ୨୪-୨୭ (୩୫) ସା.ମ.—ଆଦ୍ୟ, ପୃ ୬୮ ।

"ପଣ୍ଡୁ ବୋଇଲେ ଆଜ କ୍ଷୁଧା ବଡ଼ ଲଗି
ଦୁଗୁଣ ଯୋଗାଡ଼ ତୁମ୍ଭେ ରନ୍ଧଣା କର ବେଗ ।
ନଜ ପଢ ବୋଲେ ରନ୍ଧଣା ବେଗେ କଲେ
କବାଟ କିଳି କୋଇନ୍ତା ମାଦ୍ରୀ ସ୍ନାହାନ କରଗଲେ ।"

(ମୂ. ପୋ, ଆଦ୍ୟ, ୧ମ, ପୃ ୧୦୨ଖ)

(୩୬) ସା. ମ., ବନ, ପୃ ୨୪୦ ।

"ମାଗୋ ନବ ଅକ୍ଷୁବ୍ରତ ଯେ ସୂପକାର ବଧି
କହେଁ ଭୁଞ୍ଜାଇ ରନ୍ଧଣା ପାକସିଦ୍ଧ ।
ନବଲକ୍ଷ ଯାହାଙ୍କୁ ଖଟଇ ସୂପକାର
ଅମୀୟ ରସ ରନ୍ଧଣାରେ ମନ ତୋଷଇ ତାଙ୍କର ।

(ମୂ. ପୋ. ଆଦ୍ୟ ୧ମ, ପୃ ୧୧୪ଖ. ୧୧୫ କ)

(୩୬କ) ସା. ମ. ଆଦ୍ୟ ପୃ୨୨୧-୨୨୯ (୩୬ଖ) ଏଜନ୍—ପୃ ୨୨୨
(୩୮) ସା.ମ ମଧ୍ୟ ପୃ ୩୨୦ ।
(୩୯) ସା.ମ—ଆଦ୍ୟ ପୃ ୩୧୪ ।
(୪୦) ସା. ମ ଆଦ୍ୟ ପୃ ୯୪ ।

ପ୍ରେକ କୁଣ୍ଡାଇ ଗୋଟିକରେ ଘୃତ ରନ୍ଧିଲେ
ଆଟଯାକ ଅଣ୍ଟଇ ନ ସରଇ ପରଷିଲେ ।
ସେହି ମହାସତୀ ଯେ ଅର୍ଣ୍ଣ ଢଅଇ କତ
ଯାହାକୁ କତ ସେ ଢଅଇ ସେତେକ ହୁଅଇ ତୃପତ ।"

( ମୂ ପୋ ଆଦ୍ୟ ୧ମ ପୃ ୧୩୪ ଖ)

(୪୧) ସା. ମ, ମଧ୍ୟ ପୃ ୧୧୩ ।

"ଶ୍ରୀନ୍ଦ୍ରେକର ନନ୍ଦନୀ ଶ୍ରୀକୃଷ୍ଣ ପାଟବଂଶୀ
ମରୁକୁଣୀ ସୁବର୍ଣ୍ଣ ଥାଳରେ ଅର୍ଣ୍ଣ ପରଷନ୍ତୁ ।
ଘୃତ ପରଷିଲେ ଆଣି ଦେଖା କମଳଣୀ
ଦେବ ପିତୃ ପ୍ରଚ୍ଛିନ୍ନ କରନ୍ତୁ ଗୋସାମଣି ।" (ମୂ. ପୋ, ମଧ୍ୟ ୧ମ ପୃ୯୫କ)

(୪୨) ସା. ମ—ଆଦ୍ୟ, ପୃ ୯-୧୪ । (୪୩) ଓ. ଇ, ୧ମ, ପୃ ୨୩୪ (୪୪) ଶଶିସେଣା—ପୃ ୨୬ (୪୫) ସା. ମ—ବନ, ପୃ ୨୪୦ । ମୂ. ପୋ, ବନ ୧ମ, ପୃ ୧୧୪ ଖ, ପୃ ୧୧୫ କ (୪୬) ସା. ମ—ଉଦ୍ଯୋ, ପୃ ୯୯-୧୦୦ (୪୭) ଏଜନ୍— ପୃ ୧୦୦ (୪୮ କ) ଝଙ୍କାର, ୯ମ ବର୍ଷ, ୧ମ ସଂଖ୍ୟା, ପୃ ୧୭୧ (୪୮ଖ) ସା.ମ ଆଦ୍ୟ—ପୃ ୩୨୧ (୪୯) ଗ୍ରାମବାର୍ତ୍ତା —ପୃ ୯୦ (୫୦ କ) ଦା. ର, ଆଦ—ପୃ ୨୦୬ (୫୦ ଖ) ଗଙ୍ଗାଧର ଗ୍ରନ୍ଥାବଳୀ—ପୃ ୯୨ (୫୧) Races and Culture—P. 180 (୫୨) କାମସୂତ୍ରମ, ୨ୟ—୪, ୧, ୫ । (୫୩). ସା. ମ—ମଧ୍ୟ—ପୃ ୧୧୮—୧୧୯ (୫୪) ଏଜନ୍—ପୃ ୧୨୪ (୫୫) ଏଜନ— ପୃ ୧୨୬ (୫୬) ଏଜନ୍—ପୃ ୧୨୦ (୫୭) ଏଜନ୍—ପୃ ୧୩୨ (୫୮) ଏଜନ୍—ପୃ ୧୩୧, ମୂ. ପୋ, ମଧ୍ୟ ୧ମ, ପୃ ୧୨୦ଖ, ୧୨୦କ । (୫୯) ସା.ମ.—ମଧ୍ୟ—ପୃ ୧୫୧ । (ମହାଲକ୍ଷ୍ମୀ ସ୍ୱତନ୍ତ୍ର ଭାବେ ସୁଭଦ୍ରାଙ୍କୁ ଯୌତୁକ ଦେଇଥିଲେ ବୋଲି ପୋଥିରେ ଉକ୍ତ । ମୂ. ପୋ—ମଧ୍ୟ —୧ମ, ପୃ ୧୫୩ କ) (୬୦) ସା. ମ—ମଧ୍ୟ—ପୃ ୧୫୫ । ମୂ. ପୋ—ମଧ୍ୟ—୧ମ, ପୃ ୧୫୭ ଖ ଓ ୧୫୮ କ । (ଗୋପୀନାଥ ଦାସଙ୍କ ମହାଭାରତ ମଧ୍ୟ ପର୍ବ ପୃ ୧୭୮ ଓ

ଜଗନ୍ନାଥ ଦାସଙ୍କ ମହାଭାରତ ମଧ୍ୟପର୍ବ ପୃ ୧୧୨ ରେ ଏହି କଥା ଅଛି) । (୬୧ କ) ସା. ମ—ଆଦ୍ୟ—ପୃ ୬୮ (୬୧ ଖ) ଏଜନ—ପୃ ୭୫ (୬୨) ସା. ମ—ସଭା, ପୃ ୨୫୪ । ମୂ. ପୋ—ସଭା ୨ୟ, ପୃ ୮୫ ଖ । (୬୩) ଏଜନ୍ (୬୪) ସା. ମ—ଆଦ୍ୟ—ପୃ ୮୦-୮୨ (୬୫) ସା. ମ—ଆଶ୍ରମିକ, ପୃ ୪୬ (୬୬) ସା. ମ—ଆଦ୍ୟ—ପୃ ୮୬ (୬୭) ଏଜନ୍—ପୃ ୮୭ । (୬୮) ଏଜନ୍—ପୃ ୮୯ । (୬୯) ଏଜନ୍—ପୃ ୧୬୮ (୭୦କ) ସା.ମ—ମଧ୍ୟ—ପୃ ୨୪୮-୨୫୨ (୭୦ଖ) ଏଜନ୍—ପୃ ୨୫୧ (୭୧) ସ. ମ—ସଭା, ୭୫, ୮-୧୦ (୭୨କ) Alberuni's India, ch XVI, P. 181 (୭୨ ଖ) ବ୍ରହ୍ମାଣ୍ଡ ପୁରାଣ—୬, ୨୫ (୭୩) ସା. ମ—ଆଦ୍ୟ—ପୃ ୪୫ ।

"ଛୁଡ଼ିଲେ ଅଭିମାନ ସେ ନ ଧରଇ ଚିତେ
ଦୁଃଖ ସୁଖ ଦେହକୁ ସେ କରିଥାଇ ସ୍ନେହଭେ ।
ବାହ୍ୟସ୍ୟ ପର ଦେଖି ବିକୃତ ନ ଭାଳ
ସୁଦଶା କୁଦଶା ଅଳପ ହୁଅଇ କାଳ ।"

(ମୂ. ପୋ—ଆଦ୍ୟ ୧ମ, ପୃ ୭୧ ଖ)

(୭୪) ସାମ—ଉଦ୍—ପୃ ୫୬ । (୭୫). ଏଜନ୍—ପୃ ୫୬-୫୭ (୭୬) ସାମ—ମଧ୍ୟ—ପୃ ୧୧୨ (୭୭) ଏଜନ୍ ।

ସତ୍ୟଭାମାଏ ବୋଇଲେ ଏହି କଥା ହିଁ ନକର
ବୁଝାଇଣ କହ ମୋତେ କହ ଠାକୁରଙ୍କ ଆଗର ।
ଆଜି କର୍ମା ଚତୁର୍ଥୀ ବିଧାନ କରିବା
ଉଚ୍ଛବ କରାଇ ଆମ୍ଭେ ବିଶ୍ୱ କରାଇବା ।"

ମୂ. ପୋ—ମଧ୍ୟ—୧ମ, ପୃ ୯୪କ)

(୭୮) ସାମ—ଆଦ୍ୟ—ପୃ ୫୪ । (୭୯) କଳ୍ପଲତା—ପୃ ୨୨ । (୮୦) ହରିବଂଶ—ପୃ ୩୬ । (୮୧) ସା·ମ—ସ୍ୱର୍ଗ—ପୃ ୧୨ । (୮୨) ଏଜନ୍—ପୃ ୧୨—୧୩ । (୮୩) ସା.ମ—ଆଦ୍ୟ—ପୃ ୧୮୫ । (୮୪) ଶଶିସେଣା—ପୃ ୨୯—୩୭, ୩୯ । (୮୫) ହରିବଂଶ—ପୃ ୧୬୮ । (୮୬କ) ଓ·ଇ—୧ମ—ପୃ ୨୩ । (କ.ରବାକୀ ବୀର ଥିଲେ । ଦ୍ୱନ୍ଦ୍ୱ ଯୁଦ୍ଧରେ କଳିଙ୍ଗର ଯୁବରାଜଙ୍କ ଦ୍ୱାରା ପରାଭୂତ ହୋଇ ତାହାଙ୍କୁ ବିବାହ କରିଥିଲେ । କାରବାକୀ ନାଟକ—କେ. ଭି. ରାଓ—୧ମ ଅଙ୍କ ୨ୟ ଦୃଶ୍ୟ ଦ୍ରଷ୍ଟବ୍ୟ) (୮୬ଖ) ସା.ମ—ଉଦ୍—ପୃ ୭୫ । (୮୭) ସଂ.ମା·ବ୍ର.ପୁ—ପୃ ୧୦୫—୧୧୩ । (୮୮) ସା.ମ—ଉଦ୍—ପୃ ୭୫ । (୮୯) ଓ.ନା.ସଂ.ନା.ସା—ପୃ ୩୩୫—୩୩୯ । (୯୦) ଶ୍ରୀ.ଭା.ସ୍କ—୧, ୭, ୪୭ । (୯୧) ଏଜନ୍—୧, ୭, ୪୩ । (୯୨) ସା:ମ—ମଧ୍ୟ—ପୃ ୨୧୨—୨୧୩ । (୯୩) ଏଜନ୍ । ଦ୍ରଷ୍ଟବ୍ୟ:—ପୋଥିରେ ପାଠ ଭେଦ ଅଛି । ସେଥିରେ 'ପୁ ରୁଷେ ନ ରୁହାନ୍ତି ପଦ ଦେଖାଯାଏ ।

"ସୁଖ ତାହାଙ୍କ ଯେବେ ପୁରୁଷେ ନ ବୁଝନ୍ତି
କାଠ ବେଙ୍ଗ ହୋଇ ଶତେ ଜନ୍ମ ଯାଏ ଥାନ୍ତି ।" (ମୃ.ପୋ—ମଧ୍ୟ ୨ୟ—
ପୃ ୨୩୫ ଖ)

(୯୪) କଳ୍ପଲତା—ପୃ ୯୧ । (୯୫) ସା.ମ—ଆଦ୍ୟ—ପୃ ୪୫ ।
ସଂସାର ଯାକ ଯେବେ କରବୁ ସ୍ନେହକୁ
ତେବେ ସେ ତର ଏଥୁ ହୁଅନ୍ତି ମୁକତ ।" (ମୃ.ପୋ—ଆଦ୍ୟ ୧ମ—ପୃ ୭୧ ଖ)
(୯୬) ସା.ମ—ଆଦ୍ୟ—ପୃ ୪୬ ।
"ଅନିତ୍ୟ ସଂସାର ଏ ମାୟା ମୋହ ଘଟ ।"
"ସ୍ନେହା ନ କର ଶାନ୍ତି କର ମନ ସର ।
ଅନେକ ବାଟେଣ ସେ କହିଲେ ଗାନ୍ଧାର ।" (ମୃ. ପୋ—ଆଦ୍ୟ୧ମ, ପୃ ୭୨କ)
(୯୭) ସା. ମ—ଆଦ୍ୟ—ପୃ ୨୩୧ । (୯୮) ଏଜନ୍ (୯୯) ଏଜନ୍—ପୃ ୨୩୨ । (୧୦୦) ହରିବଂଶ—ପୃ ୧୨୪ । (୧୦୧) ସା.ମ—ଆଦ୍ୟ—ପୃ ୪୭ । (୧୦୨) ଏଜନ୍—ପୃ ୫୪ ।
(୧୦୩) ଏଜନ୍ । "ପାଣ୍ଟିଲେ ଶୃଙ୍ଗାର ଗୁଡ଼ିଲେ ରତି ଆଶା ।" (ମୃ.ପୋ—ଆଦ୍ୟ ୧ମ, ପୃ ୮୪କ)

"ଦାର ସଂହରଲେ ହେତୁ ପତିପତ୍ନୀ
ସ୍ୱାମୀ ଶେଯ୍ୟ ଛୁ ନ କଲେ ବରଷ ଉନ ।" (ମୃ. ପୋ—
ଆଦ୍ୟ ୧ମ, ପୃ ୮୪ଖ)

(୧୦୪) Marriage and Family—P.60 (୧୦୫) ସା.ମ—ମଧ୍ୟ, ପୃ ୨୧୨ । (୧୦୬) ଏଜନ୍—ପୃ ୨୧୨—୨୧୩ । (୧୦୭) ସା.ମ—ଆଦ୍ୟ, ପୃ ୨୧୬—୨୧୭ । (୧୦୮) ସା.ମ—ସଭା—ପୃ ୨୫୫—୨୫୬ । (୧୦୯) ସା.ମ—ଆଦ୍ୟ—ପୃ ୨୧୬—୨୧୭ । (୧୧୦କ) ଏଜନ—ପୃ ୮୫ । (୧୧୦ଖ) "ସବୁ ପୁଅଙ୍କୁ ମାତା ରୁ ଯତ୍ନେ ପ୍ରତିପାଳ"—ଆଦ୍ୟ, ପୃ ୮୯ । (୧୧୧) "ତୋ ପୁତ୍ର ହୁଁ ଅଧିକ ରୁ ମୋ ପୁତ୍ରଙ୍କୁ ଦେଖି ସା.ମ—ଅଦ—ପୃ ୧୬୮ । (୧୧୨) ସା. ମ—ନାଖ—ପୃ ୧୦ । ମୃ.ପୋ—ଶାନ୍ତି—ପୃ ୧୮୩କ । (୧୧୩) ଏଜନ—ପୃ ୪-୫ । ଏଜନ—ପୃ ୧୭୪କ । (୧୧୪) ସା.ମ—ମଧ୍ୟ—ପୃ ୨୪୯ । (୧୧୫) ଆଦ୍ୟ—ପୃ ୫୯ ।
(୧୧୬) "କେ ମୋତେ କଢ଼ାଇ ନେବ ଜତୁ ଘରେ,
ଅନ୍ଧ ଅନ୍ଧୁଣୀ ମରିବୁ ପୁଅଙ୍କ ସଙ୍ଗରେ ।" ସା. ମ.—ଆଦ୍ୟ—ପୃ ୧୬୮ ।

(୧୧୭) ସା. ମ.—ଉଦ୍—ପୃ ୧୪ (୧୧୮) ଗ୍ରାମବାର୍ତ୍ତା—ପୃ ୧୨ (୧୧୯) ସା.ମ—ଆଶ୍ରମ—ପୃ ୭୭ । (୧୨୦) ସଂ.ରା—ଅଯୋଧ୍ୟା—୧୪,୨୧ (୧୨୧) ଏଜନ୍—୨୪, ୧୩ । ୨୪,୨୬ । (୧୨୨) ସଂ. ମା. ବୃ. ପୁ—ପୃ—୧୭୦ (୧୨୩) ସଂ. ନା. ବି. ପୁ—ପୃ—୪୬ (୧୨୪) ବ; ପୃ—୨୮୩—୨୮୬ ।

(୧୨୫) "ସ୍ୱାବରେ ସେବା କରନ୍ତି ଭଜନ୍ତ ଯେ ପତ୍ତି
ପତ୍ତିଭକ୍ତା ସ୍ତ୍ରିୟଙ୍କର ଧ୍ରୁବ ସଦ୍‌ଗତି । ସା. ମ.—ବନ—ପୃ ୨୪୧ ।
"ସ୍ୱାବେ ସେବା କଲେ ଭଜନ୍ତି ଯିନା ପତ୍ତି
ପତ୍ତିଭକ୍ତାଙ୍କେଣ ସ୍ତ୍ରିୟଙ୍କର ସଦ୍‌ଗତି ।"(ମୃ.ପୋ—ବନ ୧ମ—ପୃ ୧୧୬କ)

(୧୨୬) 'ସ୍ୱାମୀମାନଙ୍କର ସ୍ୱାର୍ଥ ପତ୍ତିରେ ଭଜନ୍ତି ।' (ସା. ମ.—ବନ—ପୃ (୨୧୪)

(୧୨୭) 'ସ୍ୱାମୀର ବଚନ ଯେବେ ମେଣ୍ଟଣ କରଇ ଘରଣୀ
ଗୃହବାସୀ ନୋହି ସେ ହୁଅଇ ପରଦାରେଣୀ ।' (ମୃ. ପୋ.—ମଧ୍ୟ ୧ମ,
ପୃ (୮୨କ) ।

(୧୨୮) 'ସ୍ୱଗଜା ହୋଇ ଯେବେ ଗିରସ୍ତକୁ ନ ସେବଇଁ
ତାସ୍ୱ ସଂସାରରେ ସେ ତ ଲେଖା ଯେ ନୁହଇଂ ।'
ଝଙ୍କାର, ୧ମ ବର୍ଷ, ୧ମ ସଂଖ୍ୟା—ପୃ (୧୬୧)

(୧୨୯) ଭାଗବତ, ୧୦ମ, ଗୋପ—ପୃ ୧୬୫-୧୬୬ ।

(୧୩୦) Marriage and Family—P. 25 & 8 ।

(୧୩୧) The Position of Women in the Vedic Ritual —P. 1-2 ।

(୧୩୨) ସଂ.ଗ୍ର—କସ୍ମକ୍ଷ୍ୟା—୫୦, ୪୦ (୧୩୩) ସଂ.ମ—ଶଲ୍ୟ-୫୪,୭—୭ ।

(୧୩୪) ଏକନ, ଶାନ୍ତି (୩୨୦) ଅଧ୍ୟାୟ ।

(୧୩୫) ଏକନ୍, ଉଦ୍—୧୦୯, (୧୮) (୧୩୬) ବିଷ୍ଣୁପୁରାଣ—୧, ୧୫, ୧୧୮ ।

(୧୩୭) O. H. R. J. Oct. 1952—P. 193

(୧୩୮) A History of Orissa, Vol. I—P. 270

(୧୩୯) Archeological Remains at Bhubaneswar—P. 119 ।

(୧୪୦) A History of Orissa—Vol. II—P. 59

(୧୪୧) O. H. R. J—Jan. 1953—P. 282-284

(୧୪୨) ଓ. ଇ—୧ମ—ପୃ ୨୨୯ ।

(୧୪୩) ଏକନ୍—ପୃ ୨୨୭ (୧୪୪) ଉପନିଷଦ ଅଙ୍କ—ପୃ ୪୭୯—ପୃ ୪୮୧-୪୮୨ ।

(୧୪୫) J. O. I. H, Aug 1956—P. 167

(୧୪୬) ସଂ. ମ—ଉଦ୍—୧୦୯, ୧୮ । ଶାନ୍ତି ୩୨୦ ଅ । ବିରାଟ ୧୧ ଅ ।

(୧୪୭) "ସର୍ବଜ୍ଞା ମହାପଣ୍ଡିତା ପାଞ୍ଚାଳ କୁମାରୀ ।" (ସା. ମ.—ସଭା—ପୃ ୩୩୪)

(୧୪୮) ସା. ମ.—ସୂ. ଙ୍କ—ମଧ୍ୟ—ପୃ ୪୮-୪୯ (୧୪୯) ସା. ମ—ବନ -ପୃ ୧୭୩ । ମୃ. ପୋ—ବନ୧ମ—ପୃ—୨୫୪ କ । (୧୫୦) ସା. ମ.—ମଧ୍ୟ—ପୃ ୧୨୪—୧୨୭

(୧୫୧) ସା. ମ—ବିରାଟ—ପୃ ୬୨, ଉଦ୍—ପୃ ୧୪-୧୮ । (୧୫୨) 'ଶିକ୍ଷା' ଅଧ୍ୟାୟ

ଦ୍ରଷ୍ଟବ୍ୟ (୧୫୩) Archeological Remains at Bhubaneswar —P. 119 (୧୫୪) କଳ୍ପଲତା—ପୃ ୪ —ପୃ ୫ —ପୃ ୩୩ — ପୃ ୩୪—ପୃ ୬୮ (୧୫୫) ମହାଭାରତେର ସମାଜ—ପୃ ୬୭ (୧୫୬) H. C. I. P—vol V—P. 483—484 (୧୫୭) Socio-Economic History of Northern India—P. 139 (୧୫୮) H. C. I. P—vol IV, Forward—P. XIX (୧୫୯) S. E. H. NI—P. 139 (୧୬୦) ଉତ୍କଳ ଇତିହାସ—ପୃ ୧୫ (୧୬୧) ସା. ମ—ବିଷ୍ଟ—ପୃ ୧୧୨—୧୧୩. (୧୬୨) ଏକନ୍—ପୃ ୧୧୧ (୧୬୩) ସା. ମ.—ସ୍ୱର୍ଗ—ପୃ ୧୨—୧୪; ବନ—ପୃ ୨୩୪—୨୩୭ । (୧୬୪) ଚଣ୍ଡୀ ପୁରାଣ, ପୃ ୬୨—୯୧, ୯୬—୧୧୯, ୧୩୧—୧୩୨, ୧୩୫—୧୪୦, ୧୪୫—୧୪୮ । (୧୬୫) ଶଶିସେନା—ପୃ ୨୯ —ପୃ ୩୬—୩୯ (୧୬୬) ଓ. ଇ—୧ମ—ପୃ ୮୭—୯୦ (୧୬୭) ଏକନ୍—ପୃ ୨୩ (୧୬୮) A History of Orissa, vol. II, P—58 and 59 (୧୬୯) ଉତ୍କଳନା (୧୭୦) ଆଲେଖିକା—ପୃ ୭—୧୦ (୧୭୧) Sociology—P. 76 (୧୭୨) Marriage and Family P. 46. (୧୭୩) ମହାଭାରତେର ସମାଜ—ପୃ ୪୭ (୧୭୪) ସା. ମ—ଆଦ୍ୟ—ପୃ ୯୮—୯୪ (୧୭୫) Marriage and Family in India—P. 94. (୧୭୬) ଋ. ସଂ—୨, ୧, ୧୧, ୨, । (୧୭୭) କାମସୂତ୍ରମ୍, ୨ସୂ—୪, ୨, ୬୭ (୧୭୮) ସଂ. ମ—ଆଦି—୧୫୬, ୩୬ । (୧୭୯) ସା. ମ, ପୃ. ଙ୍କ—ଆଦ୍ୟ—ପୃ ୪ । ସା. ମ, ଶ୍ରୀ. ଭ, ଆଦ୍ୟ, ପୃ ୪—୫ । ମୃ. ପୋ, ଆଦ୍ୟ୧ମ—ପୃ ୬ କ ।

(ଦ୍ରଷ୍ଟବ୍ୟ :—ପୋଥିରେ ସାତଜଣ ରାଣୀଙ୍କ ନାମ ମିଳେ—ଦେବନାଗ୍ରା, ଭଗ୍ନି, ବୃନ୍ଦାବତୀ, ଯୁଗାବତୀ, ରେବତୀ, ମୃଗାକ୍ଷୀ ଓ କୃଷ୍ଣନାଥ ।)

(୧୮୦) ସଂ. ମ. ଅ.ଦ୍ୟ—୮୧, ୩୪ । ୮୨, ୨୪ । ୭୪, ୪୮ । (୧୮୧) ବିଷ୍ଣୁପୁରାଣ—୪, ୧୦, ୪ ଓ ୨୦ । (୧୮୨) ମୃ. ପୋ—ବନ୧ମ—ପୃ ୧୧୫ଘ (୧୮୩) ଓ. ଇ—୧ମ—ପୃ ୧୩୯—୧୪୦, ୧୪୩, ୨୦୦ ଓ ୨୫୭ । (୧୮୪) ଓ. ସା. ଇ—୧ମ —ପୃ ୩୬୧ (୧୮୫) "ଜନନୀ ସକଳ"—କଳ୍ପଲତା—ପୃ ୨୧ । (୧୮୬) "ରାଜାର ଶତସହସ୍ର କାମିନୀ"—ଫରମଳା ପୃ ୫ । (୧୮୭) Women in the Vedic Age —P. 166 (୧୮୮) ମହାଭାରତେର ସମାଜ—ପୃ ୮୩—୮୪ । (୧୮୯) The Position of Women in the Vedic Retual—P. 166 & 177 (୧୯୦) Alberune's Iudia, vol-II. ch. LXIX—P. 156 (୧୯୧) A-in-Akbari—P. 216 (୧୯୨) Women of India—P. 12 (୧୯୩) History of Southern India—p. 305 (୧୯୪) ସଂ ମ, ଦ୍ରୋଣ, ୭୭ ଅଧ୍ୟାୟ (୧୯୫) ସଂ. ମା. ବ୍ର ପ—ପୃ ୮୭ (୧୯୬) ସଂ. ମ—ଆଦ୍ୟ—୧୨୪, ୩୧ ।

(୯୭) ସଂ. ମ, ମୃଚ୍ଛକଟି—୭, ୨୩—୨୪ । (୯୮) "ବୃଦ୍ଧଶୀଳାକୁ ମୃଚ୍ଛ କେଉଁପରି ଧନ ନେବ ।" (ସା. ମ—ଆଶ୍ରମ—ପୃ ୪୮) (୯୯) ସଂ. ସ—ଉତ୍ତର—ପୃ ୯୦ (୧୦୦) A History of Orissa, vol-I—P. 35 (୧୦୧) Everyday Life in Ancient India—P. 162. Our Oriental Heritage, P. 401—402. (୧୦୨) H. C. I. P, vol. VI, Forward—P XXVI (୧୦୩) Women of India—P, 13 (୧୦୪) H. C. I. P, vol VI. P. 608-609. (୧୦୫) ଭାରତବର୍ଷ ର ଆର୍ଥିକ ଇତିହାସ—ପୃ ୧୪୨ । (୧୦୬) ସା. ମ—ବନ—ପୃ ୧୭୨ । ମୂ. ପୋ—ବନ୧ମ—ପୃ ୧୫ଖ ଓ ୧୬କ । (୧୦୭) ଭାଗବତ, ୬ଷ୍ଠ—ପୃ ୮୧ (୧୦୮) ସା. ମ—ଆଦ୍ୟ—ପୃ ୨୫୧—୨୫୨ । (୧୦୯) ସା. ମ—ମଧ୍ୟ—ପୃ ୨୫୮ । ମୂ. ପୋ—ମଧ୍ୟ୧ମ ପୃ ୧୧୩ଖ । (୧୧୦) ମନୁ—୯, ୧୭୫ ଓ ୧୭୬ (୧୧୧) ସଂ. ସ, କିଷ୍କିନ୍ଧ୍ୟା—୨୯, ୪ (୧୧୨) Women in the Vedic Age—P. 22 (୧୧୩) H. C. I. P, vol VI, P. 588—589. (୧୧୪) S. G. M. I—P. 203 (୧୧୫) Alberuni's India, vol II, ch. LXIX—P. 155 (୧୧୬) "ବିଧବା କନ୍ୟାକୁ ଧୃତରାଷ୍ଟ୍ରେ ଆଣି ଦେଲୁ ।" (ସା. ମ—ଆଦ୍ୟ—ପୃ ୧୩୪) (୧୧୭) ଓ. ଭା. ସା—ପୃ ୧୨୬ (୧୧୮) ସା. ମ—ବନ—ପୃ ୩୨୦ । ମୂ. ପୋ—ବନ୨ୟ—ପୃ ୨୩ ଖ । (୧୧୯) Our Oriental Heritage, P. 401—402 (୧୨୦) ମନୁ—୯, ୯୦ । ସଂ. ମ—ଅନୁ—୪୪, ୧୬ । (୧୨୧) India at the Time of Patanjali—P. 109 (୧୨୨) ସା. ମ—ମଧ୍ୟ—ପୃ ୨୩୬ । ମୂ. ପୋ—ମଧ୍ୟ୨ୟ—ପୃ ୨୭୦କ । (୧୨୩) ସା. ମ—ମଧ୍ୟ—ପୃ ୧୨୮ । ମୂ. ପୋ—ମଧ୍ୟ୧ମ—ପୃ ୧୧୭ଖ ଓ ୧୧୭କ ।

ଦ୍ରଷ୍ଟବ୍ୟ :—ପୋଥିରେ ପୁରୁଷର ବୟସ ୨୧ ଓ ସ୍ତ୍ରୀର ବୟସ ୧୬ ହେବା ଉଚିତ ବୋଲି ଉକ୍ତ ।

(୧୨୪) ସା. ମ—ମଧ୍ୟ—ପୃ ୧୩୧ । ମୂ. ପୋ—ମଧ୍ୟ୧ମ—ପୃ ୧୨୦ଖ ଓ ୧୨୧କ । (୧୨୫) ଚନ୍ଦ୍ରକଳା ନାଟିକା, ୪ର୍ଥ ଅଙ୍କ—ପୃ ୫୪ (୧୨୬) ସଂ. ମ—ଭୀଷ୍ମ—୭୨, ୫୬ । (୧୨୭) ସଂ. ସ, ବାଲ—୭୪, ୫ (୧୨୮) ସା. ମ—କର୍ଣ୍ଣ—ପୃ ୭ । ମୂ. ପୋ—କର୍ଣ୍ଣ—ପୃ ୬କ । (୧୨୯) Women in the Vedic Age—P. 2 (୧୩୦) ଉପନିଷଦ ଅଙ୍କ—ପୃ ୫୦୭ । (୧୩୧) ସଂ. ମ, ଆଦି—୪୫, ୧୧ (୧୩୨) ଏଜନ ବନ—୨୯୩, ୨୩ । (୧୩୩) "ମୁହିଁ କାମୀ ଯଜ୍ଞ କଲି ବୃଦ୍ଧତା ନିମନ୍ତେ ।" (ସା. ମ—ଆଦ୍ୟ—ପୃ ୨୦୮) (୧୩୪) ଭାଗବତ, ୬ଷ୍ଠ—ପୃ ୧୯; ୯ମ—ପୃ ୪ (୧୩୫) P. W. V. R—Preface ଦ୍ରଷ୍ଟବ୍ୟ । (୧୩୬) Ibid, P. 1 - 2 (୧୩୭) ମନୁ—୯, ୨୬ (୧୩୮) ସଂ. ମ, ଆଦି—୭୪, ୪୧ ଓ ୪୨ । (୧୩୯) ଶ୍ରୀ. ଭା, ସ୍କଂ—୩, ୨୧, ୧୬ ।

ସଂ. ମା. ବୃ. ପ – ପୃ ୧୬ । (୨୪୦) ସଂ ରା, ଅଯୋଧ୍ୟା – ୨୧, ୫୭ (୨୪୧) ଇ. କୌ. ଢ଼—ପୃ ୩୦୦ । (୨୪୨) ଦୁର୍ଗାସପ୍ତଶତ୍ୟାମ୍—ପୃ ୧୬୦ (୨୪୩, ସଂ. ବୃ: ବୈ. ପୁ—ପୃ ୫୨ । (୨୦୪) ସା. ମ—ବନ—ପୃ ୧୫୪ । ମୃ. ପୋ—ବନ୧ମ—ପୃ ୧୨୯କ ।

ଦ୍ରଷ୍ଟବ୍ୟ :— ରାଜା ଦଶରଥ ସ୍ତ୍ରୀ ରୂପ ଧରି ଲୁଚବାରୁ ପଶୁ ରାମ ତାଙ୍କୁ ବଧ କଲେ ନାହିଁ ବୋଲି ପୋଥିରେ ଉକ୍ତ ।

(୨୪୫) "ପତିର ସଙ୍ଗତେ ପତ୍ନୀ ଥିବାର ଯେ ଧର୍ମ
ନାନା ଶୁଭଯୋଗ ହୋଇ ନ ବାଧେ ଅକର୍ମ ।" (ସା. ମ-ମଧ୍ୟ-ପୃ ୧୦)
"ସ୍ୱାମୀ ହରଜା ଥିଲେ ରହଇ କୁଳଧର୍ମ ।" (ମୃ. ପୋ-ମଧ୍ୟ୧ମ-ପୃ ୧୦ଖ)

(୨୪୬) ସଂ. ମ, ଅନୁ—୩୯, ୯ (୨୪୭) ଏଜନ୍—୪୦, ୪ (୨୪୮) ମନୁ—୯, ୧୬ ଓ ୩ । (୨୪୯) ବିଷ୍ଣୁ ପୁରାଣ—୧, ୧୫, ୩୮ । ୩, ୧୨, ୩୦ (୨୫୦) କାମସୂତ୍ରମ, ୨ସ୍କ—୫, ୧, ୧୦ । (୨୫୧) "କା ଶୃଙ୍ଖଳା ପ୍ରାଣଭୃତା ହି ନାରୀ ।" (ମଣିରତ୍ନମାଳା—୧୫ ଶ୍ଳୋକ) (୨୫୨) "ସମ୍ମୋହନ ନୈବ ସୁରେବ କା ସ୍ତ୍ରୀ ।" (ଏଜନ୍—୬ ଶ୍ଳୋକ) (୨୫୩) ସଂ. ସ୍ନ. ପ– ପୃ ୨୫ । (୨୫୪) ସା. ମ—ବନ—ପୃ ୧୭୩ ।

"ଦ୍ରୌପଦୀ ବୋଇଲେ ସ୍ତ୍ରୀଙ୍କର ଏମନ୍ତ ପ୍ରକୃତ
ସୁବେଶ ପୁରୁଷ ଦେଖିଲେ ବଳାବନ୍ତ ମତ ।
ସେ ଅବା ଯଦ୍ୟପି ଭ୍ରାତା ପୁତ୍ର ହୋଇ
ସୁବେଶ ପୁରୁଷ ଦେଖି ଚିତ୍ତ ଯେ ଦୋଳାଇ ।
ଏ ମୋହର ଯଦ୍ୟପି ଅଛନ୍ତି ପଂଚପତି
ଏମାନେ ଥାନ୍ତେ ମୋର କର୍ଣ୍ଣଙ୍କୁ ବଳଇ ମତି ।
(ମୃ. ପୋ – ବନ୧ମ—ପୃ ୧୬କ)

(୨୫୫) "ସ୍ତ୍ରୀଙ୍କ ବୋଲକୁ ପ୍ରତେ ନ ଯିବା ଖେ ଦେବ
ଦେଖେକ କହନ୍ତି ମିଥ୍ୟା ସମସ୍ତ ପ୍ରସ୍ତାବ ।" (ସା. ମ – ମଧ୍ୟ—ପୃ ୧୩୬)
"ସ୍ତ୍ରୀଙ୍କର ବଚନକୁ ପରତେ ନ ଯିବା ।"
"ମାୟାମିତ୍ର ଦେନକର ସ୍ତ୍ରୀହାଙ୍କ ରସଭାବ ।"
(ମୃ. ପୋ—ମଧ୍ୟ୧ମ—ପୃ ୧୨୯ଖ)
"ସ୍ତ୍ରୀଙ୍କର ଚରିତ ଯେ ସମସ୍ତ ଅଟଇ ମିଥ୍ୟା ।"
(ମୃ. ପୋ—ବନ୧ମ—ପୃ ୧୫ଖ)

(୨୫୬) ଭାଗବତ, ୩ୟସ୍କନ୍ଧ—ପୃ ୧୭ ଓ ୧୭୩; ୯ମ ସ୍କନ୍ଧ—ପୃ ୭୫ । (୨୫୭) ସଂ. ରା, ଅଯୋଧ୍ୟା – ୭୮, ୨୧ (୨୫୮) ସଂ. ମା. ବୃ. ପ—ପୃ ୧୭୦ । (୨୫୯) ବିଷ୍ଣୁ ପୁରାଣ—୩, ୧୨, ୩୦ । (୨୬୦) ଶ୍ରୀ. ଭ, ସଂ—୩, ୧୭, ୨୦ । (୨୬୧) ଭାଗବତ, ୫ମ ସ୍କନ୍ଧ—ପୃ ୯୩ ।

---

# ତୃତୀୟ ଅଧ୍ୟାୟ

# ଶିକ୍ଷା

ଶିକ୍ଷାର ଅର୍ଥ ତଥା ଉଦ୍ଦେଶ୍ୟ ବ୍ୟାପକ । ସମାଜରେ ତାହାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଶିକ୍ଷା କହିଲେ ଜ୍ଞାନର ଆହରଣ, ପ୍ରବୃତ୍ତିର ଦମନ, ବ୍ୟକ୍ତିତ୍ୱର ବିକାଶ ଓ ଅନ୍ତର୍ନିହିତ ଶକ୍ତିସମୂହର ଉନ୍ମୋଚନ ନିମିତ୍ତ ସମାଜଦ୍ୱାରା ଗୃହୀତ ଏକ ପନ୍ଥାକୁ ବୁଝିବାକୁ ହୁଏ । (୧) ଏହାର ପ୍ରଧାନ ଲକ୍ଷ୍ୟ ହେଉଛି—ଲୋକକୁ ଉପାର୍ଜ୍ଜନକ୍ଷମ କରିବା, ଉତ୍ତମ ନାଗରିକ ରୂପରେ ଗଢ଼ିବା ଏବଂ ପ୍ରତିଭାକୁ ବିକଶିତ କରାଇବା । (୨) ଜୀବନର ଆଦର୍ଶ ସହ ପରିଚୟ (୩), ସାମାଜିକ ଐତିହ୍ୟର ହସ୍ତାନ୍ତର (୪), ଆଧ୍ୟାତ୍ମିକ ବ୍ୟକ୍ତିତ୍ୱର ବିକାଶ (୫) ଓ ଜୀବନର ମୂଲ୍ୟବୋଧ (୬) ଶିକ୍ଷାର ବିଭିନ୍ନ ଲକ୍ଷ୍ୟ । ଶିକ୍ଷା ପୁଣି ସାଂସ୍କୃତିକ ପରମ୍ପରାକୁ ପ୍ରବହମାନ କରିବା ନିମିତ୍ତ ଏକ ପ୍ରାଥମିକ ପନ୍ଥା ଏବଂ ବ୍ୟକ୍ତିବିଶେଷର ସାମାଜିକ-କରଣରେ ପ୍ରଧାନ ମାଧ୍ୟମ (୭) । ମାନବ ସମାଜର ନବୀକରଣ ଓ ବିକାଶ ନିମିତ୍ତ ଏହା ଏକ ପ୍ରୟୋଜନୀୟ ବିଷୟ । ରାଷ୍ଟ୍ର ଯେତେବେଳେ ଅନ୍ୟ ରାଷ୍ଟ୍ରସହ ଯୁଦ୍ଧବ୍ୟାପାରରେ ନିଯୁକ୍ତ ଥାଏ, ସେତେବେଳେ ଶିକ୍ଷା ହିଁ ଜାତିକୁ ତିଷ୍ଠି ରହିବା ନିମିତ୍ତ ଶକ୍ତି ତଥା ଉପାଦାନ ଯୋଗାଏ । ଶାନ୍ତିକାଳରେ ରାଷ୍ଟ୍ର ଅନ୍ୟ ଦେଶ ସହିତ ପ୍ରତିଯୋଗିତା କ୍ଷେତ୍ରରେ ଅବତୀର୍ଣ୍ଣ ହେଲେ, ଏହା ଜାତିକୁ ଜୀବନୀ ଶକ୍ତି ପ୍ରଦାନ କରେ । ଏକ ନିର୍ଦ୍ଦୋଷ ଜାତୀୟ ଶିକ୍ଷା-ଯୋଜନାଦ୍ୱାରା ସୁଦୃଢ଼ ଗଣତନ୍ତ୍ରର ପ୍ରତିଷ୍ଠା ସମ୍ଭବ ହୁଏ । (୮) ଚିନ୍ତାଶୀଳ ବ୍ୟକ୍ତିମାନେ ଶିକ୍ଷା-ବ୍ୟବସ୍ଥାକୁ ସମାଜରେ ପ୍ରଥମ ସ୍ଥାନ ପ୍ରଦାନ କରନ୍ତି । (୯) ଦେଶ ବା ଜାତି ଧର୍ମକୁ ପରିତ୍ୟାଗ କରିପାରେ, କେତେକ ପ୍ରକାର ବୈବାହିକ ମିଳନକୁ ବିବାହର ମର୍ଯ୍ୟାଦା ଦେଇ-ନପାରେ; କିନ୍ତୁ ଶିକ୍ଷାକୁ ଅସ୍ୱୀକାର କରି ତିଷ୍ଠି ପାରେ ନାହିଁ । ଏହାର ଅଭାବରେ ଯୁଗ ଯୁଗ ଧରି ସଞ୍ଚିତ ହୋଇଆସିଥିବା ଜ୍ଞାନ-ବିଜ୍ଞାନ ଓ ଶିଷ୍ଟାଚାର-କ୍ରମ ଲୋପ ପାଇଯାଏ । (୧୦) ସମାଜଶାସ୍ତ୍ରବିଦ୍‌ଗଣଙ୍କ ମତରେ କୌଣସି ଦେଶର ଶିକ୍ଷାପଦ୍ଧତି ସେହି ଦେଶକୁ ଉଦ୍‌ଜୀବିତ କରିରଖିବାର ଶକ୍ତି ଧାରଣ କରେ । ତେଣୁ ଶିକ୍ଷା ନିମିତ୍ତ ଏକ ଉତ୍ତମ ଯୋଜନା ସର୍ବଦା ଆବଶ୍ୟକ ଏବଂ ତାହାର ବ୍ୟବସ୍ଥା କରିବା ରାଷ୍ଟ୍ରର ଦାୟିତ୍ୱ ହେବା ଉଚିତ୍ । (୧୧)

ବ୍ୟକ୍ତିର ଜୀବନରେ ତଥା ସମାଜରେ ଶିକ୍ଷାର ବ୍ୟାପକ ପ୍ରଭାବ ଥିବାରୁ ସାମାଜିକ ଜୀବନର ବିଭିନ୍ନ କ୍ଷେତ୍ରରେ ତାହାର ଆଲୋଚନା ଆବଶ୍ୟକ । ସାରଳା ଦାସଙ୍କ ମହାଭାରତରୁ ପଞ୍ଚଦଶ ଶତାବ୍ଦୀର ଉତ୍କଳରେ ବିଦ୍ୟମାନ ଶିକ୍ଷା-ବ୍ୟବସ୍ଥାର ପର୍ଯ୍ୟାଲୋଚନା ପୂର୍ବରୁ, ସେ କାଳରେ ଭାରତରେ ଶିକ୍ଷାର କି ସ୍ଥିତି ଥିଲା, ତାହା ବିହଙ୍ଗାବଲୋକନ କରାଯାଇପାରେ ।

ଇତିହାସର ପୃଷ୍ଠାରୁ ଉପଲବ୍ଧ ହୁଏ ଯେ, ହିନ୍ଦୁ ଶିକ୍ଷା ମଧ୍ୟଯୁଗର ଆଦି ଭାଗରେ ପ୍ରାଚୀନ ଯୁଗର ତୁଳନାରେ ଅଧୋଗତ ହୋଇଥିଲେ ହେଁ ପୂର୍ଣ୍ଣତଃ ବିଲୁପ୍ତ ହୋଇ ଯାଇନଥିଲା; କିନ୍ତୁ ସେ କାଳରେ ମୁସଲମାନ ଜାତିର ଶିକ୍ଷା-ବ୍ୟବସ୍ଥା ବିକଶିତ ହେବାକୁ ଲାଗିଥିଲା । ମୁସଲମାନମାନଙ୍କ ପ୍ରବଳ ଆକ୍ରମଣ ଫଳରେ ହିନ୍ଦୁମାନଙ୍କର ବହୁ ଧର୍ମଗ୍ରନ୍ଥ, ଧର୍ମପୀଠ, ମନ୍ଦିର, ମଠ ଓ ଉଚ୍ଚ ଶିକ୍ଷାନୁଷ୍ଠାନ ଧ୍ୱଂସପ୍ରାପ୍ତ ହୋଇଥିଲା । (୧୨) ତକ୍ଷଶିଳା, ନାଳନ୍ଦା ଓ ବିକ୍ରମଶିଳାପରି ବୃହତ୍ ଶିକ୍ଷା କେନ୍ଦ୍ରଗୁଡ଼ିକ ମୁସଲମାନ ଶାସକ ଓ ଆକ୍ରମଣ-କାରୀମାନଙ୍କ ହସ୍ତରେ ବିନଷ୍ଟ ହୋଇଯାଇଥିଲା । ସେ କାଳରେ ପ୍ରାଥମିକ ଶିକ୍ଷା ପାଇଁ ପାଠଶାଳା ଓ ଉଚ୍ଚଶିକ୍ଷା ନିମିତ୍ତ ଟୋଲ ତଥା କେତେକ ଘରୋଇ ଅନୁଷ୍ଠାନ ବିଦ୍ୟମାନ ଥିଲା । ପାଠଶାଳାରେ ଲେଖା, ପଢ଼ା ଓ ଗଣିତର ଶିକ୍ଷା ପ୍ରଦାନ କରାଯାଉଥିଲା । ଟୋଲରେ ସଂସ୍କୃତଭାଷା, ସାହିତ୍ୟ, କାବ୍ୟ, ବ୍ୟାକରଣ, ଜ୍ୟୋତିଷ, ଛନ୍ଦ, ନିରୁକ୍ତ, ନ୍ୟାୟ ଓ ଦର୍ଶନ ପ୍ରଭୃତି ଶିକ୍ଷା ଦେବାର ବ୍ୟବସ୍ଥା ଥିଲା । (୧୩) ମୁସଲମାନ ଶାସକମାନଙ୍କଠାରୁ ହିନ୍ଦୁ ଶିକ୍ଷାନୁଷ୍ଠାନଗୁଡ଼ିକ କୌଣସି ସାହାଯ୍ୟ ପାଇ ପାରୁନଥିଲେ । ତଥାପି ପ୍ରତ୍ୟେକ ନଗର ବା ସହରରେ ସଂସ୍କୃତ ପାଠଶାଳାମାନ ଥିଲା ଏବଂ ପ୍ରତି ଗ୍ରାମରେ ପ୍ରାଥମିକ ଶିକ୍ଷାର ବ୍ୟବସ୍ଥା କରାଯାଇଥିଲା । ତତ୍କାଳୀନ ସରକାର ଜନଶିକ୍ଷାକୁ ନିୟନ୍ତ୍ରଣ, ପରିଚାଳନ ଓ ସୁଶୃଙ୍ଖଳ କରିବା ନିମିତ୍ତ ଆଦୌ ଯତ୍ନଶୀଳ ହେଉ ନଥିଲେ । ସେତେବେଳେ ଦରିଦ୍ର ବା ନୀଚ ଶ୍ରେଣୀର ଲୋକଙ୍କ ମଧ୍ୟରେ ଶିକ୍ଷାଦୀକ୍ଷା ପ୍ରାୟ ଦେଖାଯାଉ ନଥିଲା ଏବଂ ସେମାନଙ୍କ ମଧ୍ୟରେ ବହୁ ଅନ୍ଧବିଶ୍ୱାସ ବିଦ୍ୟମାନ ଥିଲା । ଉଚ୍ଚବର୍ଗର ଲୋକଙ୍କ ମଧ୍ୟରେ କେତେକ ଅନ୍ଧବିଶ୍ୱାସ ଥିଲେ ହେଁ ସେମାନେ ନୀଚଶ୍ରେଣୀର ଲୋକଙ୍କ ତୁଳନାରେ ଅଧିକ ଶିକ୍ଷିତ ଥିଲେ । ମୁସଲମାନମାନେ ସରକାରୀ ସାହାଯ୍ୟ ପାଇ ବହୁ ମକ୍ତବ ଓ ମଦ୍ରାସା ସ୍ଥାପନ କରିଥିଲେ । ସେଠାରେ ବିନା ବେତନରେ ଶିକ୍ଷାଦାନ କରାଯାଉଥିଲା । ମଦ୍ରାସାରେ ଅଧୀତବ୍ୟ ବିଷୟ ଥିଲା— ଧର୍ମଶାସ୍ତ୍ର, ସାହିତ୍ୟ, ବିଜ୍ଞାନ, ଇତିହାସ ଓ ରାଜନୀତି ଆଦି । ମକ୍ତବରେ ଅଧୀତବ୍ୟ

ବିଷୟ ଥିଲା—ଲେଖା, ପଢ଼ା, ଗଣିତ, ପାର୍ସିଭାଷା ଓ କୋରାନ୍ ପାଠ । (୧୪) ଦିଲ୍ଲୀର ସୁଲତାନମାନଙ୍କ ଅମଳରେ କେବଳ ପାର୍ସିଭାଷାର ପଣ୍ଡିତ ଓ ଲେଖକ-ମାନଙ୍କୁ ପ୍ରୋତ୍ସାହନ ଦିଆଯାଉଥିଲା । ସୁଲତାନମାନେ ଦେଶୀୟ ଭାଷା ବା ସଂସ୍କୃତ ଭାଷାର ଲେଖକମାନଙ୍କୁ ଉତ୍ସାହିତ କରୁ ନ ଥିଲେ । ତେଣୁ ପାର୍ସି ଲେଖକମାନେ ସେ କାଳରେ ଇତିହାସ, ସାହିତ୍ୟ ଓ ଧର୍ମବିଷୟକ ବହୁ ଗ୍ରନ୍ଥ ପ୍ରଣୟନ କରି-ପାରିଥିଲେ । (୧୫) ତଥାପି ହିନ୍ଦୁ ଲେଖକମାନେ ଦର୍ଶନ ଓ ଧର୍ମ ସମ୍ବନ୍ଧୀୟ ଗ୍ରନ୍ଥ, ନାଟକ, ଜୀବନଚରିତ ତଥା କାବ୍ୟମାନ ପ୍ରଣୟନ କରିଥିଲେ । ସ୍ଥାନେ ସ୍ଥାନେ ମୁସଲମାନ ରାଜ୍ୟ ପ୍ରତିଷ୍ଠା ହେବା ଫଳରେ ସଂସ୍କୃତ ଶିକ୍ଷା ଓ ସାହିତ୍ୟର ବିକାଶ ହ୍ରାସପ୍ରାପ୍ତ ହୋଇଥିଲା ଏବଂ ଆଞ୍ଚଳିକ ଭାଷା ସାହିତ୍ୟିକ ରୂପ ଗ୍ରହଣ କରିବାକୁ ଲାଗିଥିଲା । ଧର୍ମ-ସଂସ୍କାରକମାନଙ୍କ ପ୍ରଭାବ ଫଳରେ ଆଞ୍ଚଳିକ ଭାଷାଗୁଡ଼ିକ ବିଶେଷ ପ୍ରୋତ୍ସାହନ ଲାଭ କରିଥିଲା । ବହୁ ସଂସ୍କୃତ ଗ୍ରନ୍ଥ ଆଞ୍ଚଳିକ ଭାଷାରେ ସେତେ-ବେଳେ ଅନୁବାଦିତ ହୋଇଥିଲା । (୧୬)

ପଞ୍ଚଦଶ ଶତାବ୍ଦୀ ବେଳକୁ ଓଡ଼ିଶା ସ୍ୱାଧୀନ ରାଷ୍ଟ୍ର ଥିଲା । ପ୍ରବଳପ୍ରତାପୀ ସୂର୍ଯ୍ୟବଂଶୀୟ ରାଜାମାନେ ଓଡ଼ିଶାରେ ରାଜତ୍ୱ କରୁଥିଲେ । ମୁସଲମାନ ସଭ୍ୟତା ଉତ୍କଳରେ ସେତେବେଳକୁ ଆଦୌ ପ୍ରବେଶ କରି ନ ଥିଲା । ସୂର୍ଯ୍ୟବଂଶୀୟ ଗଜପତିମାନେ ସୁଶାସନ ପ୍ରତିଷ୍ଠା କରିଥିଲେ ଏବଂ ଲୋକେ ସେତେବେଳେ ସୁଖ-ଶାନ୍ତି ଉପଭୋଗ କରୁଥିଲେ । ତେଣୁ ହିନ୍ଦୁ ଶିକ୍ଷା ଉତ୍କଳରେ ବିନା ବାଧାରେ ସେ କାଳରେ ପ୍ରଚଳିତ ଥିଲା । ସାରଳା ଦାସଙ୍କ ମହାଭାରତରେ ତାହାର ପରିଚୟ ମିଳିଥାଏ ।

## ୧ । ଶିକ୍ଷାର ରୀତିନୀତି

ସାରଳା ଦାସଙ୍କ ମହାଭାରତରେ ଶିକ୍ଷାର ବହୁ ରୀତିମତି ଉପଲବ୍ଧ କରି-ଅଛୁ । ସେଥିରେ ଅଧ୍ୟୟନର ପ୍ରାରମ୍ଭ କାଳ, ବିଦ୍ୟାରମ୍ଭକାଳୀନ ବିଧିବିଧାନ, ଅଧ୍ୟୟନ ଓ ଲିଖନର ଉପାଦାନ, ଅଧ୍ୟୟନ ଦିବସ ଓ ସମୟ ଆଦି ସମ୍ବନ୍ଧରେ କେତେକ ସୂଚନା ମିଳିଥାଏ । ନିମ୍ନ ଆଲୋଚନାରୁ ତାହା ଉପଲବ୍ଧ ହେବ ।

### (କ) ବିଦ୍ୟାରମ୍ଭ କାଳ

ମଣିଷ ଭୂପୃଷ୍ଠରେ ପାଦ ଦେବା ସଙ୍ଗେ ସଙ୍ଗେ, କଥା କହିବା ପୂର୍ବରୁ ଶିକ୍ଷା ପାଇବାକୁ ଆରମ୍ଭ କରିଥାଏ । (୧୭) ବ୍ୟାପକଦୃଷ୍ଟିରୁ ଏହା ସତ୍ୟ ହେଲେ

ହେଁ, ବାସ୍ତବ ଜୀବନରେ ଶିଶୁ କଥା କହିବା ଓ ହୃଦୟଙ୍ଗମ କରିବାର ଶକ୍ତି ହାସଲ କଲାପରେ ଶିକ୍ଷାରମ୍ଭ କରେ । ପ୍ରାଚୀନ ଭାରତରେ ଶିଶୁର ବିଦ୍ୟାରମ୍ଭ କାଳ ପଞ୍ଚମବର୍ଷ (ପ୍ରାପ୍ତେ ତୁ ପଞ୍ଚମ ବର୍ଷେ) ଥିବାର ସ୍ମୃତିଚନ୍ଦ୍ରିକା ଗ୍ରନ୍ଥର ସଂସ୍କାରକାଣ୍ଡରୁ ଅବଧାରିତ ହୁଏ । (ପୃ୬୭-୬୭) ମଧ୍ୟଯୁଗରେ ଏହି କାଳ ମଧ୍ୟ ବିଦ୍ୟାରମ୍ଭର ସମୟ ଥିବାର ଜଣାଯାଏ । (୧୮) କେତେକ ସ୍ଥଳରେ ପାଞ୍ଚବର୍ଷ ପରେ ବିଦ୍ୟାରମ୍ଭ ହେଉଥିବାର ପରିଲକ୍ଷିତ ହୁଏ । ହୁଏନ୍ ସାଂଙ୍କ ବିବରଣୀରୁ ଉପଲବ୍ଧ ହୁଏ ଯେ ସେ କାଳରେ ଶିଶୁମାନେ ସାତବର୍ଷ ହେବା ପରେ ବିଦ୍ୟାଶିକ୍ଷା ଆରମ୍ଭ କରୁଥିଲେ । (୧୯) ଛାନ୍ଦୋଗ୍ୟ ଉପନିଷଦ୍‌ର ଗୋଟିଏ ବର୍ଣ୍ଣନାରୁ ଜଣାଯାଏ ଯେ, ଶ୍ୱେତକେତୁ ଆରୁଣୀୟ ଦ୍ୱାଦଶ ବର୍ଷ ବୟଃକ୍ରମ କାଳରେ ବିଦ୍ୟାରମ୍ଭ କରି ଚତୁର୍ବିଂଶ ବର୍ଷ ବୟସରେ ତାହା ସମାପନ କରିଥିଲେ । (୨୦)

ଶାରଳା ଦାସଙ୍କ ବର୍ଣ୍ଣନାରେ ବିଦ୍ୟାରମ୍ଭ କାଳ ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ବର୍ଷର ଉଲ୍ଲେଖ ନାହିଁ; କିନ୍ତୁ ତାଙ୍କର ପ୍ରଦତ୍ତ ତଥ୍ୟରୁ ଅବଧାରିତ ହୁଏ ଯେ, ଶିଶୁମାନେ ଅଳ୍ପ ବୟସରୁ ଶିକ୍ଷାରମ୍ଭ କରୁଥିଲେ । ଧୃତରାଷ୍ଟ୍ର ଓ ପାଣ୍ଡୁ ଅଳ୍ପ ବୟସରେ ବିଦ୍ୟାରମ୍ଭ କରିଥିଲେ । କାରଣ କବି କହନ୍ତି ଯେ, ସେ ଦୁହେଁ ବ୍ୟାସଙ୍କ କୋଳରେ ବସି ସଞ୍ଜୟଙ୍କଠାରୁ ପ୍ରାପ୍ତ ବିଦ୍ୟାର ପରୀକ୍ଷା ଦେଇଥିଲେ । (ଆ୯୩ପୃ) ଶ୍ରୀକୃଷ୍ଣ ଓ ବଳରାମ କିଞ୍ଚିତ ଅଧିକ ବୟସରେ ବିଦ୍ୟାରମ୍ଭ କରିଥିଲେ ବୋଲି ଉପଲବ୍ଧ ହୁଏ । କାରଣ ଶାରଳା ଦାସ ଦର୍ଶାଇ ଅଛନ୍ତି ଯେ, ସେମାନେ ମଥୁରା ଦେଶରୁ ଅବନ୍ତୀ ନଗରକୁ ଯାତ୍ରା କଲେ ଏବଂ ଶାନ୍ଦୀପନିଙ୍କ ପାଖରେ ବିଦ୍ୟାଶିକ୍ଷା କଲେ । (ମ୪୦୮ପୃ) ଅତ୍ୟଳ୍ପ ବୟସରେ ଦୂର ପଥ ଗୁରୁ-ଅନ୍ୱେଷଣରେ ଗମନ କରିବା ସମ୍ଭବପର ନୁହେଁ । ଅଧିକନ୍ତୁ ସେମାନେ ସେମାନଙ୍କର ଆଗମନ କରିବାର କାରଣ ଯେପରି ଭାବରେ ବ୍ୟକ୍ତ କରିଛନ୍ତି, ସେଥିରୁ ଅବଧାରିତ ହୁଏ ଯେ ସେମାନେ ସେତେବେଳକୁ ହିତାହିତ ଜ୍ଞାନ ଲାଭ କରିଥିଲେ ।

"ଗୋପାଳ ବେଶ ଯେ ହାଦେ ମଥୁରା ଦେଶର
ଶାସ୍ତ୍ର ଯେ ସଙ୍ଗୀତ ନାହିଁ ଅପାଠ ସେ ପୁର ।
କୁସ୍ଥାନ ଦେଶରେ ବାସ କରିଲୁ କୁଜନେ
ବେଦବିଦ୍ୟା ନ ଶୁଣିଲୁ ଆମ୍ଭେ ବେନି କର୍ଣ୍ଣେ ।" (୨୧)

ଯୁଧିଷ୍ଠିର ବିଳମ୍ବରେ ଶିକ୍ଷାରମ୍ଭ କରିଥିଲେ ବୋଲି ଶାରଳାଙ୍କ ବର୍ଣ୍ଣନାରୁ ସୂଚିତ ହୁଏ । କବି କହନ୍ତି ଯେ, ଯୁଧିଷ୍ଠିରଙ୍କୁ ସାତବର୍ଷ ହେବା ପରେ ଭୀମଙ୍କର

ଜନ୍ମ ହେଲ । (ଆ୭୫ପୃ) ଭୀମଙ୍କୁ ସାତବର୍ଷ ହେବାପରେ କୁନ୍ତୀ ପୁତ୍ର-କାମନା କରି ଅର୍ଜୁନଙ୍କୁ ଲାଭ କଲେ । (ଆ୭୨ପୃ) ଏହି ଘଟଣା ପରେ ପାଣ୍ଡୁଙ୍କର ମୃତ୍ୟୁ, ନକୁଳ-ସହଦେବଙ୍କ ଜନ୍ମ ଆଦି ହେଲ । ତାହାପରେ ପାଣ୍ଡୁଙ୍କର ପାଞ୍ଚ ପୁତ୍ର ଓ କୌରବଙ୍କର ପାଠାରମ୍ଭ ହୋଇଥିଲ । (ଆ୯୦ପୃ) ତେଣୁ ଅନୁମିତ ହେଉଅଛି ଯେ, ଯୁଧିଷ୍ଠିର ଚଉଦ ବର୍ଷ ହେବାର ପରେ ବିଦ୍ୟାରମ୍ଭ କରିଥିଲେ ।

ହିମାଳୟ-ପୁତ୍ର ଚନ୍ଦ୍ରଧ୍ୱଜ ଓ ପାର୍ବତୀ-ପୁତ୍ର କାର୍ତ୍ତିକକୁମାର ମଧ୍ୟ ବିଳମ୍ବରେ ପାଠାରମ୍ଭ କରିଥିଲେ ବୋଲି ସୂଚନାରୁ ପ୍ରକାଶ ପାଏ । କାରଣ କବି ଲେଖିଛନ୍ତି ଯେ ସେ ଦୁହେଁ ପଞ୍ଚଦଶ ବର୍ଷ ବୟଃକ୍ରମ କାଳରେ ବି କଳହ ତଥା କ୍ରୀଡ଼ାରେ ନିମଗ୍ନ ଥିଲେ । (ବି୨୭ପୃ)

ବଳରାମ ଦାସଙ୍କ 'ଦାଣ୍ଡିରାମାୟଣ' (ଆ୫୭ପୃ), କେଶବ ପଟ୍ଟନାୟକଙ୍କ 'କେଶବ ରାମାୟଣ' (ଆ୨୯ପୃ), ବିଶି ଖୁଣ୍ଟିଆଙ୍କ 'ବିଚିତ୍ର ରାମାୟଣ' (ଆ୨୨ପୃ) ପାଠରୁ ଜଣାଯାଏ ଯେ ରାମଚନ୍ଦ୍ର ପଞ୍ଚମବର୍ଷ ବୟଃକ୍ରମ କାଳରେ ବିଦ୍ୟାରମ୍ଭ କରିଥିଲେ । ଅଚ୍ୟୁତାନନ୍ଦଙ୍କ 'ହରିବଂଶ'ରେ କୁହାଯାଇଅଛି ଯେ, ଶ୍ରୀକୃଷ୍ଣ ଓ ବଳରାମ ନବମ ବର୍ଷ ପୂର୍ଣ୍ଣ ହେବା ପର୍ଯ୍ୟନ୍ତ ବିଦ୍ୟାରମ୍ଭ କରି ନ ଥିଲେ । (ପୃ୫୭୦)

## (ଖ) ବିଦ୍ୟାରମ୍ଭ ବିଧି

ହିନ୍ଦୁ ସମାଜରେ ବିଦ୍ୟାରମ୍ଭ କାର୍ଯ୍ୟ ଶୁଭ ଦିବସରେ କରାଯିବାର ବିଧି ଥିଲ । ଗୁରୁବାର, ଶୁକ୍ରବାର ବା ରବିବାରରେ ବିଦ୍ୟାରମ୍ଭ କରିବା ପ୍ରଶସ୍ତ ବୋଲି ବିବେଚିତ ହେଉଥିଲ । (୨୨) ପାଠାରମ୍ଭ ପୂର୍ବରୁ ବିଷ୍ଣୁ, ଲକ୍ଷ୍ମୀ ଓ ସରସ୍ୱତୀଙ୍କ ପୂଜା କରିବା କର୍ତ୍ତବ୍ୟ ବୋଲି 'ପଣ୍ଡିତସର୍ବସ୍ୱ' ଗ୍ରନ୍ଥରେ କୁହାଯାଇଅଛି । (ପୃ୨୨୭)

ସାରଳା ଦାସଙ୍କ ଯୁଗରେ ଏହି ମହାଭାରତୀୟ ପରମ୍ପରା ଅକ୍ଷୁଣ୍ଣ ଥିବାର ଜଣାଯାଏ । ସେ କାଳରେ ଶୁଭ ଦିବସ ଓ ଶୁଭ ମୁହୂର୍ତ୍ତାଦି ନିରୂପିତ ହୋଇ ବିଦ୍ୟାରମ୍ଭ କରାଯାଉଥିଲ । ବିଦ୍ୟାରମ୍ଭ ବେଳେ ଦୁର୍ଗା ଓ ଗଣେଶଙ୍କର ପୂଜା କରିବା ବିଧି ଥିଲ । 'ଶ୍ରୀ' ଠାରୁ ଲେଖା ଆରମ୍ଭ ହେଉଥିଲ । ସେଥିରୁ ଜଣାଯାଉଅଛି ଯେ ଲକ୍ଷ୍ମୀ ମଧ୍ୟ ପୂଜିତା ହେଉଥିଲେ । ଶିଶୁମାନେ 'ଶ୍ରୀ' ସହ 'ସିଦ୍ଧିରସ୍ତୁ' ଲେଖି ପ୍ରଥମ ପାଠାରମ୍ଭ କରୁଥିଲେ । କବିଙ୍କର କେତେକ ବର୍ଣ୍ଣନାରୁ

ଏହି ଗୀତ ସ୍ପଷ୍ଟ । କୌରବ ଓ ପାଣ୍ଡବଙ୍କ ବିଦ୍ୟାରମ୍ଭ ଗୁରୁବାର ଶୁକ୍ଳ କୃଷ୍ଣ-ଚତୁର୍ଥୀ ତିଥିରେ, ରୋହିଣୀ ନକ୍ଷତ୍ର ବୃଷ ରାଶି ତୈତିଳ ନାମକ କରଣ ଓ ଇନ୍ଦ୍ର ନାମକ ଯୋଗରେ ଅନୁଷ୍ଠିତ ହୋଇଥିଲା । (୨୩) ସେତେବେଳେ ଆଖଡ଼ା ଚଣ୍ଡୀ ଓ ଗଣେଶଙ୍କୁ ପୂଜା କରାଯାଇଥିଲା । (୨୪) ଶ୍ରୀକୃଷ୍ଣ ଓ ବଳରାମ 'ଶ୍ରୀ' ଓ 'ସିଦ୍ଧିରସ୍ତୁ' ଲେଖି ପାଠାରମ୍ଭ କରିଥିଲେ । (୨୫)

ନାରାୟଣ ଅବଧୂତ ସ୍ୱାମୀଙ୍କ 'ଚୈତନ୍ୟସୁଧାନିଧି'ରେ ନାୟକର ବିଦ୍ୟାରମ୍ଭ ବିନାୟକ ଓ ସରସ୍ୱତୀଙ୍କ ପୂଜା ସହ ଅନୁଷ୍ଠିତ ହେବା ବିଷୟ ନିହିତ । (ପୃ୧୦୦) 'ଦାଣ୍ଡି ରାମାୟଣ'ରେ ତଦ୍ରୂପ ବର୍ଣ୍ଣନା ଶ୍ରୀରାମଙ୍କ ବିଦ୍ୟାରମ୍ଭ ପ୍ରସଙ୍ଗରେ ମିଳେ । (ଆ୫୬ପୃ) 'ହରିବଂଶ'ରେ 'ଶ୍ରୀ' ଓ 'ସିଦ୍ଧିରସ୍ତୁ' ଲେଖା, ଗଣପତି ଓ ସରସ୍ୱତୀଙ୍କ ପୂଜା କଥା ଉକ୍ତ । (ପୃ୪୭୮)

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ସାରଳା ଦାସ ଗଣେଶଙ୍କ ପୂଜା କଥା କହିଥିଲେ ହେଁ, ସରସ୍ୱତୀଙ୍କ କଥା କହିନାହାନ୍ତି । ତାହା ସ୍ଥଳରେ ସେ ଚଣ୍ଡୀଙ୍କ ପୂଜା କଥା ଦର୍ଶାଇ ଅଛନ୍ତି । ଚଣ୍ଡୀପୂଜା ମଧ୍ୟ ସ୍ମୃତିସମ୍ମତ ଅଟେ । ସ୍ମୃତି-ଚନ୍ଦ୍ରିକା ମତରେ ହରି, ଲକ୍ଷ୍ମୀ ଓ ସରସ୍ୱତୀଙ୍କ ସହ ଦେବୀଙ୍କ ପୂଜା କର୍ତ୍ତବ୍ୟ । (୨୬)

## (ଗ) ଲେଖାପଢ଼ାର ଉପାଦାନ

ବୈଦିକ କାଳରେ ଲେଖାଲେଖି କରିବା ପ୍ରଚଳିତ ଥିଲେ ହେଁ ଶିକ୍ଷା-ପଦ୍ଧତିରେ ତାହା ସ୍ଥାନ ଲାଭ କରି ନ ଥିଲା (୨୭) ଖ୍ରୀଷ୍ଟପୂର୍ବ ୫ମ ବା ୪ର୍ଥ ଶତାବ୍ଦୀରୁ ଲେଖନକଳା ଓ ପୁସ୍ତକପାଠ ଶିକ୍ଷାକ୍ଷେତ୍ରରେ ସ୍ଥାନ ଲାଭ କଲା । (୨୮) ବୌଦ୍ଧଯୁଗରେ ସର୍ବପ୍ରଥମେ ତାଳପତ୍ର, ଭୂର୍ଜପତ୍ର ଓ ପ୍ରସ୍ତର ଫଳକ ଉପରେ ଲିପିର ବ୍ୟବହାର କରାଗଲା । ପ୍ରଥମେ କାଳିର ବ୍ୟବହାର କରା-ନଯାଇ କେବଳ ବକଳ ବା ପତ୍ର ଉପରେ ଲେଖାଯାଉଥିଲା; ପରେ ତାହା ଉପରେ କାଳିର ପ୍ରଲେପ ଦେବା ଆରମ୍ଭ ହେଲା । (୨୯) ମୋଗଲକାଳରେ ମଧ୍ୟ ଭାରତରେ ତାଳପତ୍ର ଓ ଭୂର୍ଜପତ୍ର ଉପରେ ଗ୍ରନ୍ଥମାନେ ଲେଖିବା ପରିଦୃଷ୍ଟ ହେଉଥିଲା । (୩୦)

ଉତ୍କଳରେ ତାଳପତ୍ର ଉପରେ ଲେଖନୀଦ୍ୱାରା ଲେଖିବା ରୀତି ପ୍ରଚଳିତ ଥିଲା । ସାରଳାଦାସ ବର୍ଣ୍ଣନା କରିଅଛନ୍ତି ଯେ, ଭୀମସେନଙ୍କ ଆଦେଶରେ ଧୂମ୍ରାକ୍ଷତ ନାମକ ପାତ୍ର ବିରାଟ ରାଜାଙ୍କ ନିକଟକୁ ତାଳପତ୍ରରେ 'ଶ୍ରୀମୁଖ' ବା ପତ୍ର

ଲେଖିଥିଲେ । (ସ୭୫ପୃ) ଯୁଧିଷ୍ଠିରଙ୍କ ଆଦେଶରେ ସହଦେବ ବିଭୀଷଣଙ୍କ ସମୀପକୁ ଶ୍ରୀମୁଖ ଲେଖିଥିଲେ । (ସ୨୫୮ପୃ) ବିରାଟ-ପତ୍ନୀ ସୁଦେଷ୍ଣା ମଧ୍ୟ କୀଚକଙ୍କ ଉଦ୍ଦେଶ୍ୟରେ ଏକ ପତ୍ର ଲେଖିଥିଲେ । (ବି୭୨ପୃ) ଅର୍ଜ୍ଜୁନଙ୍କ ଆଦେଶରେ ସୁରେଶ୍ୱର ମୁନି ଲେଖଣୀ ଧରି ତାଳପତ୍ରରେ ଚିଠି ଲେଖିବସିଲେ ବୋଲି କବି କହନ୍ତି । (ସ୧୪୩ପୃ) ଶ୍ରୀକୃଷ୍ଣ-ବଳରାମ ଶାନ୍ତିପନଙ୍କ ଆଶ୍ରମରେ ତାଳପତ୍ରରେ ଲେଖିବା ଶିକ୍ଷା କରିଥିଲେ । (୨୭) ସାରଳା ଦାସ ନିଜେ ଦେବୀପ୍ରଦତ୍ତ ଲେଖଣୀରେ ଗ୍ରନ୍ଥ ଲେଖିଥିଲେ ବୋଲି ଉଲ୍ଲେଖ କରିଅଛନ୍ତି । (୨୮)

ଓଡ଼ିଶାର ପ୍ରାଚୀନ ଗ୍ରନ୍ଥମାନ ତାଳପତ୍ରରେ ଲେଖାଯାଇଅଛି । ବର୍ତ୍ତମାନ ଯୁଗରେ ଗ୍ରାମଗହଳରେ ଜ୍ୟୋତିଷମାନେ ତାଳପତ୍ରରେ ପାଞ୍ଜି ଲେଖି ପ୍ରତିବର୍ଷ ଦୋଳ ପୂର୍ଣ୍ଣିମୀ ଦିନ ଦୋଳବେଦୀରେ ପାଠ କରିଥାନ୍ତି । ଓଡ଼ିଶାରେ ଏବେ ବି ତାଳପତ୍ରରେ ଜାତକ ଲେଖାଯାଉଛି । ବିବାହ-ବ୍ରତରେ ମଉଳା-ନିମନ୍ତ୍ରଣ ଓ ଜୋଇଁ-ନିମନ୍ତ୍ରଣ ଆଦି କାର୍ଯ୍ୟରେ ତାଳପତ୍ର ଲେଖା ଓଡ଼ିଶାରେ ଏ ଯୁଗରେ ମଧ୍ୟ ଚଳୁଅଛି । ରେଖା ପଞ୍ଚମୀ ଭଳି ପର୍ବଦିନରେ ତାଳପତ୍ରଖଣ୍ଡିକରେ 'ଘଣ୍ଟାକର୍ଣ୍ଣ ମହାବୀର' ଆଦି ଲେଖି ଦ୍ୱାରମୁହଁ ଗୃହରେ ବାନ୍ଧିବାର ବିଧି ଆଜିକାଲି ମଧ୍ୟ ଚଳୁଛି । ପଣ୍ଡିତ ନୀଳକଣ୍ଠ ଦାସଙ୍କ 'ଆତ୍ମଜୀବନୀ'ରୁ ଜଣାଯାଏ ଯେ, ଆଧୁନିକ କାଳର ପ୍ରାରମ୍ଭ ପର୍ଯ୍ୟନ୍ତ ଗ୍ରାମୀଣ ଚଟ୍ଟଶାଳୀମାନଙ୍କରେ ତାଳପତ୍ରର ପୋଥି ବ୍ୟବହୃତ ହେଉଥିଲା ଓ ତାଳପତ୍ର-ଲେଖା ଶିକ୍ଷା ଦିଆଯାଉଥିଲା । (୨୯) ଉତ୍କଳ-ଗୌରବ ମଧୁସୂଦନଙ୍କ ବାଲ୍ୟକାଳରେ ତାଳପତ୍ର-ଲେଖା ବ୍ୟବହୃତ ହେଉଥିଲା ବୋଲି ଉପଲବ୍‌ଧ ହୁଏ । (୩୦)

ସେ କାଳରେ 'ଖଡ଼ି' ଲେଖାର ଅନ୍ୟତମ ଉପାଦାନ ଥିଲା । ପ୍ରାଥମିକ ଶିକ୍ଷା ଖଡ଼ି ସାହାଯ୍ୟରେ ଭୂମିରେ ଲେଖି ସଂପାଦିତ ହେଉଥିଲା । ତେଣୁ ତାହାକୁ 'ଖଡ଼ିପାଠ' କୁହାଯାଇଥିଲା । କବି ଶ୍ରୀକୃଷ୍ଣ-ବଳରାମଙ୍କ ଶିକ୍ଷା ପ୍ରସଙ୍ଗରେ 'ଖଡ଼ିପାଠ' କଥା ଉଲ୍ଲେଖ କରିଅଛନ୍ତି । (୩୧) ଅନ୍ୟ ପ୍ରସଙ୍ଗରେ ଖଡିର ଉଲ୍ଲେଖ ମଧ୍ୟ ମିଳେ । ଯୁଧିଷ୍ଠିର ଖଡ଼ିରେ ପଶାପାଲି କାଟି ପଶାଖେଳରେ ପ୍ରବୃତ୍ତ ହେବା କଥା କବି-ଲେଖନୀରେ ଅଛି । (୩୨) ଖଡ଼ିରେ ବୃକ୍ଷର ଚିତ୍ର କରି ତାକୁ ଜୀବନ୍ୟାସ ଦେବା କଥା ସାରଳା ବର୍ଣ୍ଣନା କରିଅଛନ୍ତି । (୩୩) ରୁଦ୍ରସୁଧାନିଧି (ପୃ୧୦୦), ଦାଣ୍ଡି ରାମାୟଣ (ଆ୫୭ପୃ), ଗୁଣ୍ଡିଚା ଇଚ୍ଛାବତୀ (ପୃ୧୧) ଓ ଶଶିସେଣା କାବ୍ୟରେ (ପୃ୮-୯) ଖଡ଼ିର ବ୍ୟବହାର ପ୍ରଦର୍ଶିତ ହୋଇଅଛି ।

## (ଘ) ଅଧ୍ୟୟନ ରୀତି

ଆବୃତ୍ତି କରିବା, ମୁଖସ୍ଥ କରିବା ଓ ଶୁଣି ଶୁଣି ମନେ ରଖିବା ପ୍ରାଚୀନ କାଳରୁ ଭାରତରେ ଅଧ୍ୟୟନର ରୀତିରୂପରେ ପ୍ରଚଳିତ ହୋଇ ଆସିଅଛି । ବୈଦିକ ସ୍ତୋତ୍ରମାନଙ୍କର ଆବୃତ୍ତି ପାଇଁ ଏକପ୍ରକାର ଅଭ୍ୟାସମୂଳକ ପଦ୍ଧତି ସେ କାଳରେ ଗଢ଼ି ଉଠିଥିଲା । (୩୪) ବୈଦିକ ଯୁଗରେ ପ୍ରବୀଣ ପୁରୋହିତ-ମାନେ କର୍ମିକର୍ମଣିର ସଂଗୀତ ତଥା ସ୍ତୋତ୍ରକୁ ଶିଷ୍ୟର ସ୍ମୃତିରାଜ୍ୟରେ ପ୍ରବେଶ କରାଇବା ନିମିତ୍ତ ବାରମ୍ବାର ଆବୃତ୍ତି କରାଉଥିଲେ । (୩୫) ଉଚ୍ଚାରଣ ତଥା ଆବୃତ୍ତି ଉପରେ ସେ କାଳରେ ଖୁବ୍ ପ୍ରାଧାନ୍ୟ ଦିଆଯାଉଥିଲା । (୩୬) ବେଦ ଓ ମହାକାବ୍ୟର ସଂଗୀତ ଯୁଗ ଯୁଗ ଧରି ଏହି ଆବୃତ୍ତିଦ୍ୱାରା ବର୍ଦ୍ଧିଷ୍ଣୁ ହୋଇଥିଲା । ତାହା ସବୁ ଉଚ୍ଚାରଣ ନିମିତ୍ତ ଉଦ୍ଦିଷ୍ଟ ଥିଲା । (୩୭)

ସାରଳା ଦାସଙ୍କ ଯୁଗକୁ ଏହି ରୀତି ଜୀବିତ ରହିଥିଲା । ସେତେବେଳେ ମଧ୍ୟ ମୁଖସ୍ଥିକରଣ ଓ ଆବୃତ୍ତି ପ୍ରଧାନ ଅଧ୍ୟୟନ ରୀତିରୂପରେ ଗୃହୀତ ହେଉଥିଲା । ଉଚ୍ଚାରଣ ଉପରେ ସେ କାଳରେ ପ୍ରାଧାନ୍ୟ ଦିଆଯାଉଥିଲା । ଗୁରୁ ଯାହା ଲେଖି-ଦେଉଥିଲେ ଶିଷ୍ୟ ତାହାକୁ ଖଡ଼ିରେ ଘୋଷୁଥିଲେ । ଖଡ଼ିପାଠ ପରେ ଗୁରୁ ପୋଥି ପଢ଼ାଉଥିଲେ ଓ ଶିଷ୍ୟମାନେ ତାହା ଆବୃତ୍ତି କରୁଥିଲେ । ଶ୍ରୀକୃଷ୍ଣ-ବଳରାମଙ୍କ ପାଠପଢ଼ା ପ୍ରସଙ୍ଗରୁ ଏହା ଅବଧାରିତ ହୁଏ । ଯଥା—

"ପ୍ରଥମରେ ଲେଖିଦେଲେ ତାହାଙ୍କୁ ଶ୍ରୀଫଳା
ନିଃଶ୍ୱାସକେ ଲେଖିଲେ ତା ଦେବକୀର ବଳା ।"
"ବେଦବାକ୍ୟ ଦେଖାନ୍ତି ଯେ ତହୁଁ ଶାନ୍ତିପନ
ହେଲେ ଗୁରୁ ପଢ଼ିଲେ ତା ଦୁହେଁ ହୃଦେ ଘେନ ।" (୩୮)

ଶିଶୁମାନେ ଅର୍ଥ ନ ବୁଝିଲେ ମଧ୍ୟ ସଂସ୍କୃତ ଶ୍ଳୋକମାନଙ୍କୁ ମୁଖସ୍ଥ କରି ମନେ ରଖୁଥିଲେ । ଶ୍ରୀକୃଷ୍ଣ ଏହି ରୀତିରେ ଶ୍ଳୋକାଭ୍ୟାସ କରିଥିଲେ । ଏହାକୁ 'ଶ୍ଳୋକସାଧିବା' କୁହାଯାଉଥିଲା । (୩୯) ପରଶୁରାମ ଦ୍ରୋଣଙ୍କୁ ବେଦାଧ୍ୟୟନର ରୀତି ଓ ମନ୍ତ୍ରୋଚ୍ଚାରଣ ସଂପର୍କରେ ପରୀକ୍ଷା କରିବା କଥାରୁ, ସେ କାଳରେ ଆବୃତ୍ତି ଓ ଉଚ୍ଚାରଣ ଉପରେ କିପରି ଗୁରୁତ୍ୱ ପ୍ରଦାନ କରାଯାଉଥିଲା ତାହା ପ୍ରତିପାଦିତ ହୁଏ ।

"ବେଦ ଅଧ୍ୟୟନ ରୀତି ଜାଣୁଛିକି ବାବୁ
ମନ୍ତ୍ର ଉଚ୍ଚାରଣ କର ପରୀକ୍ଷା କରିବୁ ।

ପ୍ରଣବ ଉଚ୍ଚାର ବେଦ ଗାଇଲେ ଅଭ୍ୟାସେ
ବ୍ରହ୍ମାଣ୍ଡ କର୍ମିଲ ସେହି ମହାମନ୍ତ୍ରବାସେ ।" (୪୦)

'ଦାଣ୍ଡି ରାମାୟଣ'ରେ ଶ୍ଳୋକପାଠର କଥା ଅଛି ।(ଆ୫୭ପୃ) ହରିବଂଶରେ ଅକ୍ଷର ଘୋଷିବା ବିଷୟ ରହିଛି । (ପୃ୫୭୮) 'ସାହିତ୍ୟ ଦର୍ପଣ'ରେ ନିହିତ 'ଇତି-କୃତକତା ନାମ ଶିଷ୍ୟ ଗୁରୁଙ୍କ ଉଚ୍ଚାରଣ ଅନୁସରଣ କଲପରି ହୁଁ ହୁ ନାଦ କରେ' ଉକ୍ତିରୁ ସେ କାଳରେ ଉଚ୍ଚାରଣ ତଥା ଆବୃତ୍ତି ଉପରେ ଥିବା ପ୍ରାଧାନ୍ୟ ସୂଚିତ ହୁଏ । (୪୧)

## (ଙ) ଅଧ୍ୟୟନ କାଳ ଓ ଦିବସ

ସ୍ମୃତିମତରେ ବୃଷ୍ଟି, ଉଲ୍‌କାପାତ, ବିପ୍ଳବ, ସନ୍ଧ୍ୟା, ରାତ୍ରି, ଅମାବାସ୍ୟା, ଚତୁର୍ଦ୍ଦଶୀ, ଅଷ୍ଟମୀ ଓ ପୂର୍ଣ୍ଣିମୀ କାଳରେ ଅଧ୍ୟୟନ କରିବା ଅନୁଚିତ । (୪୨) 'ପାରସ୍କର ଗୃହ୍ୟସୂତ୍ର' ଅନୁସାରେ ଝଡ଼-ବତାସ, ଅମାବାସ୍ୟା ତିଥି, ଶ୍ରାଦ୍ଧକାଳ, ଅଗ୍ନ୍ୟୁତ୍ପାତ ସମୟ ଓ ସନ୍ଧିକାଳ ଅନଧ୍ୟୟନ ସମୟ ।(୪୩) ଜ୍ୟୋତିଷ-ଶାସ୍ତ୍ର-ମତରେ ଦ୍ୱିତୀୟା, ସପ୍ତମୀ, ତ୍ରୟୋଦଶୀ, ଚତୁର୍ଦ୍ଦଶୀ, ଅମାବାସ୍ୟା ଓ ପୂର୍ଣ୍ଣମୀ ଅନଧ୍ୟୟନ ଦିବସ । (୪୪) ଦେଶରେ ଯୁଦ୍ଧ-ବିଗ୍ରହ ଉପସ୍ଥିତ ହେଲେ ପୂର୍ବେ ବିଦ୍ୟାଧ୍ୟୟନ ସ୍ଥଗିତ ରହୁଥିଲା । ଶାଲ୍ୱରାଜ ଦ୍ୱାରକାପୁରୀ ଅବରୋଧ କରିବାରୁ ଯଜ୍ଞାଦି ସମସ୍ତ କାର୍ଯ୍ୟ ସ୍ଥଗିତ ରହିଥିଲା ବୋଲି ସଂସ୍କୃତ ମହାଭାରତରେ ବର୍ଣ୍ଣନା କରାଯାଇଅଛି । (୪୫)

ସାରଳା ଦାସଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ସେ କାଳରେ ଗୁରୁବାର ଥିଲା ଶିକ୍ଷାନୁଷ୍ଠାନମାନଙ୍କର ଅବସର ସମୟ । ସେଦିନ ପାଠଶାଳାରେ ପାଠପଢ଼ା ହେଉ ନ ଥିଲା । ଶ୍ରୀକୃଷ୍ଣଙ୍କ ଶିକ୍ଷା ପ୍ରସଙ୍ଗରେ କଥିତ ହୋଇଅଛି ଯେ, ଶ୍ରାବଣ ଚତୁର୍ଥୀ ଗୁରୁବାର ଦିନ ଗୁରୁ ଶାନ୍ଦୀପନ ଗୃହରେ ନ ଥିବାବେଳେ ତାଙ୍କର ଜଣେ ବନ୍ଧୁ ଉପଗତ ହେଲେ । ଗୁରୁପତ୍ନୀ ଶ୍ରିୟା ଦେବୀ ଶିଷ୍ୟମାନଙ୍କୁ ବନଭୂମିରୁ କାଠ ଆଣିବା ନିମିତ୍ତ ଆଦେଶ ଦେଇଥିଲେ । (୪୬) ସମ୍ଭବତଃ ଏହି ଦିବସଟି ଅବସର ସମୟ ଥିବାରୁ ଗୁରୁ ଅନୁପସ୍ଥିତ ରହିଥିଲେ ।

ରାତ୍ରିର ଶେଷ ଓ ସନ୍ଧ୍ୟାକାଳ ବିଦ୍ୟାଧ୍ୟୟନ ନିମିତ୍ତ ଅନୁପଯୋଗୀ ବୋଲି ବିବେଚିତ ହେଉଥିଲା । ଭୀମ ଦ୍ରୌପଦୀଙ୍କୁ ଯାହା କହିଥିଲେ, ସେଥିରୁ ଏହା ସ୍ପଷ୍ଟ ।

"ରାତ୍ର ବେଳ ଦଣ୍ଡ ଅଛୁ କ ସୌଖ୍ୟ ପ୍ରକାଶ
ଭୋଜନରେ ସୁଖ ନାହିଁ ନିଦ୍ରାରେ ଅଳସ ।
କଳହ ନ କରିବା କି ଶାସ୍ତ୍ର ନ ପଢ଼ିବା
ସମସ୍ୟା ନ ଦେବା ଅବା ମୌନବ୍ରତେ ଥିବା ।
ସନ୍ଧ୍ୟାକାଳେ ପଢ଼ିଲେ ଗୋ ମୂର୍ଖ ଜନ୍ମେ ଜନ୍ମେ
ପଣ୍ଡିତ ହୋଇ ଶୋଇଲେ ପଡ଼େ ମତିଭ୍ରମେ । (ବ୭୨ପୃ)

କବିଙ୍କ ବର୍ଣ୍ଣନାରୁ ଉପଲବ୍ଧ ହୁଏ ଯେ, ପୂର୍ବାହ୍ନ ଓ ଅପରାହ୍ଣରେ ଶିକ୍ଷା ପ୍ରଦାନ କରାଯାଉଥିଲା । ମଧ୍ୟାହ୍ନରେ ଶିଷ୍ୟମାନେ ଘରେ ବସି ପୁସ୍ତକ ପାଠ କରୁଥିଲେ । କୌରବ ଓ ପାଣ୍ଡବଗଣ ସକାଳ ଓ ସନ୍ଧ୍ୟାରେ ଯୁଦ୍ଧବିଦ୍ୟା ଶିକ୍ଷା କରୁଥିଲେ ଏବଂ ମଧ୍ୟାହ୍ନରେ ପୁସ୍ତକ ପାଠ କରୁଥିଲେ ।

"ସକାଳ ସଞ୍ଜବେଳରେ ଆଖଡ଼ା କରନ୍ତି
ମଧ୍ୟାହ୍ନ ବେଳରେ ସମସ୍ତେ ପାଠ ପଢ଼ୁଥାନ୍ତି ।" (୪୭)

କୌଟିଲ୍ୟ ଅର୍ଥଶାସ୍ତ୍ରରେ କହିଅଛନ୍ତି ଯେ, ରାଜପୁତ୍ରମାନେ ପୂର୍ବାହ୍ନରେ ଯୁଦ୍ଧବିଦ୍ୟା ଓ ଅପରାହ୍ନରେ ଇତିହାସ ପାଠ କରିବେ । ଦିବସ ତଥା ରାତ୍ରରେ ନୂତନ ପାଠ ଗ୍ରହଣ ନ କରି ପୂର୍ବପଠିତ ବିଷୟର ପୁନରାବୃତ୍ତି କରିବେ । (୪୮) ଏଥିରୁ ପ୍ରତିପାଦିତ ହୁଏ ଯେ, ପ୍ରାଚୀନ କାଳରେ ଦୁଇବେଳା ପାଠପଢ଼ା ହେବାର ରୀତି ଥିଲା ।

'ରୁଦ୍ରସୁଧାନିଧି' (ପୃ୪୭) ଓ 'ଗୁପ୍ତ ଇଚ୍ଛାବତୀ' (ପୃ୮) କାବ୍ୟରେ ଶିଷ୍ୟ ପ୍ରତ୍ୟୁଷରେ ବିଦ୍ୟାଳୟକୁ ଗମନ କରୁଥିବାର ଚିତ୍ର ନିହିତ । ଆଧୁନିକ କାଳର ପ୍ରାରମ୍ଭ ପର୍ଯ୍ୟନ୍ତ ଉତ୍କଳରେ ଦୁଇବେଳା ପାଠପଢ଼ା ହେବାର ରୀତି ପ୍ରଚଳିତ ଥିବାର ଜଣାଯାଏ । (୪୯)

## (ଚ) ପରୀକ୍ଷା

ପ୍ରାଚୀନ ଭାରତରେ ପରୀକ୍ଷା ରୀତି ପ୍ରଚଳିତ ଥିଲା । ବୈଦିକ ଯୁଗରେ ଯଜ୍ଞୀୟ କର୍ମାନୁଷ୍ଠାନ ପାଇଁ ଯୋଗ୍ୟ ବିବେଚିତ ହେଲେ ଶିଷ୍ୟ ଉପାଧି ଲାଭ କରୁଥିଲେ ଏବଂ ଅଯୋଗ୍ୟ ପ୍ରତିପନ୍ନ ହେଲେ କୃଷକ-ଶ୍ରେଣୀରେ ଭୁକ୍ତ ହେଉଥିଲେ । (୫୦) ପାଣ୍ଡବ ଓ କୌରବଗଣ ଯୁଦ୍ଧବିଦ୍ୟା ଶିଖିସାରିବା ପରେ ଗୁରୁ ଦ୍ରୋଣ ସେମାନଙ୍କର ଦକ୍ଷତା ପରୀକ୍ଷା କରିଥିଲେ ବୋଲି ସଂସ୍କୃତ

ମହାଭାରତରେ କୁହାଯାଇଅଛି । (୫୧) ଛାନ୍ଦୋଗ୍ୟ ଉପନିଷଦ୍‌ରେ ଇନ୍ଦ୍ର ଓ ବୀରୋଚନଙ୍କୁ ଗୁରୁ ପ୍ରଜାପତି ପ୍ରଶ୍ନ କରୁଥିବାର ଚିହ୍ନ ମିଳେ । (୫୨)

ସାରଳା ଦାସଙ୍କ ଯୁଗରେ ଶିକ୍ଷାକ୍ରମରେ ପରୀକ୍ଷା-ନିରୀକ୍ଷାର ବ୍ୟବସ୍ଥା ଥିବାର ଉପଲବ୍ଧ ହୁଏ । କବି କହନ୍ତି ଯେ, ପରଶୁରାମ ଦ୍ରୋଣାଚାର୍ଯ୍ୟଙ୍କୁ ଯୁଦ୍ଧାବିଦ୍ୟାବି ଶିକ୍ଷାଦେବା ପୂର୍ବରୁ ପରୀକ୍ଷା କରିଥିଲେ । (୫୩) ଲୋକେଶ୍ୱର ଗୁରୁଙ୍କ ଆଖଡ଼ାରେ ଉପସ୍ଥିତ ହୋଇ ଭାଗ୍ୟବର ଧୃତରାଷ୍ଟ୍ର ଓ ପଣ୍ଡୁଙ୍କୁ ପରୀକ୍ଷା କରିଥିବାର ଜଣାଯାଏ । (୫୪) ଗୁରୁ ଦ୍ରୋଣ କୌରବ ଓ ପାଣ୍ଡବମାନଙ୍କୁ କଠିନ ରୀତିରେ ପରୀକ୍ଷା କରିଥିଲେ । ସେ ଅରଣ୍ୟ-ମଧ୍ୟସ୍ଥ ଗୋଟିଏ ପର୍ବତରେ ଥିବା କୁଷ୍ମାଗୁରୁ ବୃକ୍ଷର ଅର୍ଦ୍ଧେକାଂଶ କାଟିଲେ । ଅବଶିଷ୍ଟାଂଶର ଉପରେ ଗୋଟିଏ ଖଡ଼ିକା ରଖିଲେ । ଖଡ଼ିକା ଉପରେ ଧାନ-ଶୃଙ୍ଗ ଏବଂ ଶୃଙ୍ଗଟିର ଉପରେ ଗରଗଡ଼, ସୋରିଷ ରଖାଗଲା । ଗୁରୁ ପ୍ରତ୍ୟେକ ଶିଷ୍ୟଙ୍କୁ 'କଣ ଦେଖୁଛ' ବୋଲି ପ୍ରଶ୍ନ କଲେ । କେହି ସଠିକ ଉତ୍ତର ଦେଇପାରିଲେ ନାହିଁ । କେବଳ ଅର୍ଜୁନ ସଠିକ ଉତ୍ତର ଦେଲେ ଏବଂ ଶର ସନ୍ଧାନ କରି ସୋରିଷଟିକୁ ଦୁଇଫାଳ କରିଦେଲେ । (୫୫)

ଏଠାରେ ଉଲ୍ଲେଖଯୋଗ୍ୟ ଯେ ମୂଳ ମହାଭାରତରେ ବର୍ଣ୍ଣିତ ପରୀକ୍ଷାରୁ ସାରଳା ଦାସଙ୍କ ବର୍ଣ୍ଣିତ ପରୀକ୍ଷାଟି କଠିନତର । ମୂଳ ଲେଖାରେ ଦ୍ରୋଣ ଶିଷ୍ୟମାନଙ୍କୁ ବୃକ୍ଷର ଅଗ୍ରଭାଗରେ ସ୍ଥାପିତ ଗୋଟିଏ କୃତ୍ରିମ ଶୃଗାଳର ମସ୍ତକ ଛେଦନ କରିବା ନିମିତ୍ତ ଶିଷ୍ୟମାନଙ୍କୁ ଆଦେଶ ଦେବା କଥା ଅଛି । (୫୬)

ନାରାୟଣ ଅବଧୂତ ସ୍ୱାମୀଙ୍କ 'ରୁଦ୍ରସୁଧାନିଧି'ରେ ଅଛି ଯେ, ସିଦ୍ଧ ରୁଦ୍ରଗଣଙ୍କର ପରୀକ୍ଷା ପାଇଁ ଶିବ ଗୋଟିଏ ସୁନ୍ଦରୀ କନ୍ୟା ଜାତ କରିବା ନିମିତ୍ତ ପାର୍ବତୀଙ୍କୁ ଅନୁରୋଧ କରିଥିଲେ । (ପୃ୩) 'ହରିବଂଶ'ରେ ସାନ୍ଦିପନି ଶିଷ୍ୟମାନଙ୍କୁ ପରୀକ୍ଷା କରିଥିଲେ ବୋଲି କୁହାଯାଇଛି ! (ପୃ୫୮୨-୫୮୩)

## ୨. ପଠିତବ୍ୟ ବିଷୟ

ପ୍ରାଚୀନ ଯୁଗରେ ଭାରତୀୟ ଶିକ୍ଷା-ବ୍ୟବସ୍ଥାରେ ବହୁବିଧ ବିଷୟରେ ପଠନ-ପାଠନ ପ୍ରଚଳିତ ଥିଲା । 'ମୁଣ୍ଡକୋପନିଷଦ'ର ଏକ ବର୍ଣ୍ଣନାରୁ ଉପଲବ୍ଧ ହୁଏ ଯେ, ସେ କାଳରେ ବେଦ, କଳ୍ପ (ଯଜ୍ଞର ବିଧି), ନିରୁକ୍ତ (ବୈଦିକ ଶବ୍ଦ ଓ ବାକ୍ୟର ଅର୍ଥ), ଛନ୍ଦ, ଜ୍ୟୋତିଷ, ଶିକ୍ଷା (ବେଦର ସ୍ୱର ଓ ଉଚ୍ଚାରଣ ବିଧି) ଅଧୀତବ୍ୟ ବିଷୟ ଥିଲା । (୫୭) ବୌଦ୍ଧ ଯୁଗରେ ଶବ୍ଦ, କଳା, ଚିକିତ୍ସା, ହେତୁ-

ବିଦ୍ୟା, ଅଧ୍ୟାତ୍ମବିଦ୍ୟା ସହିତ ଶାସ୍ତ୍ରାଦିର ଶିକ୍ଷା ପ୍ରଦତ୍ତ ହେଉଥିଲା । (୫୮) ସଂସ୍କୃତ ମହାଭାରତରେ ବେଦ, ଧନୁର୍ବିଦ୍ୟା, କଳା, ଇତିହାସ, ପୁରାଣ, ଉପାଖ୍ୟାନ, କର୍ମକାଣ୍ଡ, କୃଷି, ଗୋପାଳନ, ବାଣିଜ୍ୟ ଓ ରାଜନୀତି ଶାସ୍ତ୍ରର ଉଲ୍ଲେଖ ଦେଖାଯାଏ । (୫୯) ବିଷ୍ଣୁପୁରାଣରେ ବେଦାଙ୍ଗ (ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ ଓ ଜ୍ୟୋତିଷ), ବେଦ, ମୀମାଂସା, ନ୍ୟାୟ, ପୁରାଣ, ଧର୍ମଶାସ୍ତ୍ର, ଆୟୁର୍ବେଦ, ଧନୁର୍ବେଦ, ଅର୍ଥବିଦ୍ୟା ଓ ଗନ୍ଧର୍ବବିଦ୍ୟାକୁ ପଠିତବ୍ୟ ବିଷୟ ରୂପରେ ଗ୍ରହଣ କରାଯାଇଅଛି । (୬୦) ପ୍ରାଚୀନ ଭାରତ ବିଶ୍ୱକୁ ବୀଜଗଣିତ, ଦଶମିକ ଗଣନାପଦ୍ଧତି, ତ୍ରିକୋଣମିତି, ଚିକିତ୍ସାତତ୍ତ୍ୱ ଓ ସଙ୍ଗୀତକଳାର ପ୍ରଥମ ଶିକ୍ଷା ପ୍ରଦାନ କରିଥିଲା । (୬୧) ତକ୍ଷଶିଳା ବିଦ୍ୟାପୀଠରେ କଳା, ବିଜ୍ଞାନ ଓ ଚିକିତ୍ସାଶାସ୍ତ୍ର ପ୍ରଦତ୍ତ ହେଉଥିବାର ଉପଲବ୍ଧ ହୁଏ । (୬୨)

ସାରଳାଙ୍କ ମହାଭାରତରୁ ସେ କାଳର ଅଧୀତବ୍ୟ ବିଷୟମାନଙ୍କର ପରିଚୟ ମିଳେ । କବିଙ୍କ ପ୍ରଦତ୍ତ ବର୍ଣ୍ଣନାରୁ ପଠିତବ୍ୟ ବିଷୟମାନଙ୍କୁ ପ୍ରାଥମିକ, ଉଚ୍ଚଶିକ୍ଷା ଓ ବିଶେଷ ଶିକ୍ଷା ଭେଦରେ ବିଭାଗ କରି ବିଚାର କରାଯାଇପାରେ ।

## (କ) ପ୍ରାଥମିକ ଶିକ୍ଷା

ସାରଳାଙ୍କ କାଳରେ ପ୍ରାଥମିକ ଶିକ୍ଷାର ଅଧୀତବ୍ୟ ବିଷୟ ଥିଲା— ଅକ୍ଷରଶିକ୍ଷା, ମାତ୍ରା ବ୍ୟବହାର, ଫଳା ପ୍ରୟୋଗ, ଅନୁସ୍ୱାର-ବିସର୍ଗର ବ୍ୟବହାର, ପଣିକିଆ, ଶୋଧି, ଓଡ଼ାଙ୍କ, ହରଗୁଣ, ଫେଡ଼ାଣ, ମିଶାଣ, ଅଙ୍କନ, ନଳ, କୁଟା, ବିବସ୍ଥ, ତାଳପତ୍ରରେ ଲେଖିବା, ଶ୍ଳୋକାଭ୍ୟାସ ଓ ବିଭିନ୍ନ ଭାଷାଶିକ୍ଷା । ଶ୍ରୀକୃଷ୍ଣ ବଳରାମଙ୍କ ଶିକ୍ଷା ପ୍ରସଙ୍ଗରେ କବି ଏହି ସମସ୍ତ ବିଷୟର ଉଲ୍ଲେଖ କରିଅଛନ୍ତି । (୬୩) ସେ କାଳରେ ପ୍ରାଥମିକ ସ୍ତରରେ ଭାଷାଶିକ୍ଷା ଉପରେ ପ୍ରାଧାନ୍ୟ ଦିଆଯାଉଥିବାର ଜଣାଯାଏ । କବି କହନ୍ତି ଯେ, ଶ୍ରୀକୃଷ୍ଣ-ବଳରାମ ସାନ୍ଦୀପନଙ୍କ ପାଖରୁ ଓଡ଼ିଆ, ତେଲେଙ୍ଗୀ, ନାଗରୀ, ଦକ୍ଷିଣୀ, କନାଉଜୀ, ଦ୍ରାବିଡ଼, ଆଦିଭାଷା ସଂସ୍କୃତ, ବଙ୍ଗଳା, ପାର୍ସି, ଦରପଣୀ, ମହାରାଷ୍ଟ୍ରୀ, ଉଡ଼ଙ୍ଗ, ହିନ୍ଦୁସ୍ଥାନୀ, ଡାହାଳ, ବେତିର, ତଙ୍ଗର, ବେଳାଉଳ, କାମେଶ୍ୱ (ଆସାମୀ) ଓ ଭାରଥୀ ଭାଷା ଶିକ୍ଷା କରିଥିଲେ । (୬୪)

'ରୁଦ୍ରସୁଧାନିଧି'ରେ ନାୟକ ପ୍ରଥମେ ଖଡ଼ିପାଠ କ୍ରମରେ ଅକ୍ଷରଶିକ୍ଷା ପ୍ରାପ୍ତ ହେବା କଥା ବର୍ଣ୍ଣିତ । (ପୃ୧୦୦); ହରିବଂଶରେ ଶ୍ରୀକୃଷ୍ଣଙ୍କ ପ୍ରାଥମିକ ଶିକ୍ଷା

ପ୍ରସଙ୍ଗରେ ବର୍ଣ୍ଣ, ଫଳା ଓ ମାତ୍ରାଦିର ଉଲ୍ଲେଖ ଅଛି । (ପୃ୫୭୮) 'ଶ୍ରୀକୃଷ୍ଣ ଇଚ୍ଛାବଳୀ' କାବ୍ୟରେ ସାହିତ୍ୟ ଓ ସଙ୍ଗୀତ ଶିକ୍ଷାର ବିଷୟ ବର୍ଣ୍ଣିତ । (ପୃ୧୦)

ଓଡ଼ିଆ ଭାଷା ଓ ଲିପିର ଇତିହାସରୁ ପରିଲକ୍ଷିତ ହୁଏ ଯେ, ପଞ୍ଚଦଶ ଶତାବ୍ଦୀରେ ଓଡ଼ିଆଲିପି କୋଣ କୃତି ତ୍ୟାଗ କରି ବର୍ତ୍ତୁଳାକାର ଧାରଣ କରିଥିଲା । (୬୫) ଏହି ଶତାବ୍ଦୀର ଓଡ଼ିଆ ରାଜା କପିଳେନ୍ଦ୍ର ଓ ପୁରୁଷୋତ୍ତମ ଦେବଙ୍କ ଅମଳରେ ଓଡ଼ିଆ ସଂସ୍କାର ଆରମ୍ଭ ହୋଇଥିଲା । ବର୍ତ୍ତମାନ ଯେଉଁ ଆକାର ଓ ପ୍ରକାରର ଓଡ଼ିଆଲିପି ପ୍ରଚଳିତ ହେଉଅଛି, ତାହା ସାରଳା ଓ କପିଳେନ୍ଦ୍ରଙ୍କ ଯୁଗରେ ବଙ୍ଗଳା ତଥା ଦେବନାଗରୀ ପ୍ରଭାବରୁ ମୁକ୍ତ ହୋଇ ସ୍ୱତନ୍ତ୍ର ଲିପିରେ ପରିଣତ ହୋଇଥିଲା । (୬୬) ସୁତରାଂ ସାରଳା ଦାସ ପ୍ରାଦେଶିକ ଭାଷାମାନଙ୍କ ସହିତ ଓଡ଼ିଆ ଭାଷାର ଶିକ୍ଷାକୁ ପ୍ରାଥମିକ ସ୍ତରରେ ଯେଉଁ ପ୍ରାଧାନ୍ୟ ପ୍ରଦାନ କରିଅଛନ୍ତି, ତାହା ଯୁଗରୁଚିର ପରିପ୍ରକାଶ ।

## (ଖ) ଉଚ୍ଚଶିକ୍ଷା

ଉଚ୍ଚଶିକ୍ଷା କ୍ଷେତ୍ରରେ ବହୁ ବିଦ୍ୟାର ପଠନ-ପାଠନ ଉତ୍କଳରେ ହେଉଥିଲା । କବି କହନ୍ତି ଯେ ଶ୍ରୀକୃଷ୍ଣ-ବଳରାମ ସାନ୍ଦୀପନଙ୍କ ମଠରେ ବେଦ, ଜ୍ୟୋତିଷ, କାମଶାସ୍ତ୍ର, ଯୋଗବିଦ୍ୟା, ଗାରୁଡ଼ିବିଦ୍ୟା, ଧନୁର୍ବିଦ୍ୟା, ଶସ୍ତ୍ରାଦି ପ୍ରୟୋଗର ବିଦ୍ୟା, ତନ୍ତ୍ର ଓ ବିଭିନ୍ନ ଗ୍ରନ୍ଥପାଠ କରିଥିଲେ । (୬୭) ଧୃତରାଷ୍ଟ୍ର ଓ ପାଣ୍ଡୁ ସଂଜୟଙ୍କଠାରୁ ରସାୟନବିଦ୍ୟା, ଧାତୁବିଦ୍ୟା, ଧନୁର୍ବିଦ୍ୟା, ବେଦ ଓ ତନ୍ତ୍ରଶିକ୍ଷା କରିଥିଲେ । (୬୮) ପାଣ୍ଡୁଙ୍କୁ ଭୀଷ୍ମ ଧନୁର୍ବିଦ୍ୟା ଓ ମନ୍ତ୍ରବିଦ୍ୟା ସହ ମଲ୍ଲବିଦ୍ୟା ଶିଖାଇଥିଲେ ଏବଂ ଶାସ୍ତ୍ର ସମ୍ବନ୍ଧରେ ଜ୍ଞାନ ଦେଇଥିଲେ । (୬୯) ଜାମ୍ବବାନ ସଂସ୍କୃତ ଷଟ୍‌କାବ୍ୟ, ଚୌଦବିଦ୍ୟା ଓ ବେଦପାଠ କରିଥିଲେ । (୭୦) ଚୌଦବିଦ୍ୟା କହିଲେ ଛ ବେଦାଙ୍ଗ (ଶିକ୍ଷା, କଳ୍ପ, ନିରୁକ୍ତ, ଛନ୍ଦ, ଜ୍ୟୋତିଷ ଓ ବ୍ୟାକରଣ), ଚାରିବେଦ, ମୀମାଂସା, ନ୍ୟାୟ, ପୁରାଣ ଓ ଧର୍ମଶାସ୍ତ୍ରକୁ ବୁଝିବାକୁ ହୁଏ । (୭୧) ପାଣ୍ଡୁ ଲୋକେଶ୍ୱରଙ୍କଠାରୁ ସ୍ୱରବିଦ୍ୟା ମଧ୍ୟ ଶିକ୍ଷା କରିଥିଲେ ।(୭୨)

ଏହି ସମସ୍ତ ବିଷୟ ପଞ୍ଚଦଶ ଶତାବ୍ଦୀର ପାଠ୍ୟକ୍ରମରେ ଥିବା କଥା ସମସାମୟିକ ଲେଖାରୁ ଉପଲବ୍ଧ ହୁଏ । 'ରୁଦ୍ରସୁଧାନିଧି' କାବ୍ୟରେ ଅଛି ଯେ କାବ୍ୟ-ନାୟକ ବେଦ, ଧନୁର୍ବିଦ୍ୟା, ଶସ୍ତ୍ରବିଦ୍ୟା, ତନ୍ତ୍ର ଓ ଜ୍ୟୋତିଷପାଠ କରିଥିଲେ । (ପୃ୧୦୧) 'ହରିବଂଶ'ରେ ବେଦ, ଜ୍ୟୋତିଷ ଓ ତନ୍ତ୍ର ସହ କାବ୍ୟର ଶିକ୍ଷା ଦିଆଯାଉଥିବାର କୁହାଯାଇଛି । (ପୃ୫୭୮)

## ୩. ବିଶେଷ ଶିକ୍ଷା

ସାରଳାଙ୍କ କାଳରେ ଉଚ୍ଚଶିକ୍ଷା କ୍ଷେତ୍ରରେ ବହୁବିଧ ବିଷୟ ଅଧୀତବ୍ୟ ହେଉଥିଲେ ହେଁ ତନ୍ମଧ୍ୟରୁ କେତେଗୋଟି ବିଷୟ ଉପରେ ପ୍ରାଧାନ୍ୟ ଥିବାର ଉପଲବ୍ଧ ହୁଏ । ସେଗୁଡ଼ିକ ହେଉଛି—ଯୁଦ୍ଧବିଦ୍ୟା, ଜ୍ୟୋତିଷବିଦ୍ୟା, ବେଦ ଓ କର୍ମକାଣ୍ଡ, ଚିତ୍ରାଙ୍କନ, ପୁରାଣପାଠ, ଚିକିତ୍ସାବିଦ୍ୟା, ସଙ୍ଗୀତ-ନୃତ୍ୟ ଓ ତନ୍ତ୍ରବିଦ୍ୟା । ଏଥିମଧ୍ୟରୁ କେତେକ ଜାତିଗତ ବିଦ୍ୟା ରୂପରେ ଗୃହୀତ ହେଉଥିବାର ଜଣାଯାଏ । ନିମ୍ନ ଆଲୋଚନାରୁ ତାହା ପରିଲକ୍ଷିତ ହେବ ।

### (କ) ଯୁଦ୍ଧବିଦ୍ୟା

ମାନବଜାତି ଯେତେ ପ୍ରାଚୀନ, ଯୁଦ୍ଧ ସେତିକି ପ୍ରାଚୀନ । (୭୩) ଆତ୍ମରକ୍ଷା ଓ ଆତ୍ମ-ବିସ୍ତୃତି ପ୍ରଧାନ ମାନବିକ ପ୍ରବୃତ୍ତି । ପ୍ରଥମେ ବ୍ୟକ୍ତିସହ ବ୍ୟକ୍ତିର, ପରେ ବଂଶ ସହ ବଂଶର, ଶେଷରେ ରାଜ୍ୟ ସହ ରାଜ୍ୟର ଯୁଦ୍ଧ ଦେଖାଦେଇଥିଲା । (୭୪) ପ୍ରାଚୀନ କାଳରେ ଯୁଦ୍ଧାଦି ବିଦ୍ୟା କ୍ଷତ୍ରିୟ ଜାତିର ପ୍ରଧାନ ଅଧୀତବ୍ୟ ବିଷୟ ଥିଲା । ଭାରତୀୟ ପରମ୍ପରାରେ କ୍ଷତ୍ରିୟ-କର୍ମ ମଧ୍ୟରେ ଶାସ୍ତ୍ର-ଧାରଣ ପ୍ରାଧାନ୍ୟ ଲାଭ କରୁଥିଲା । (୭୫)

ସାରଳା ଦାସଙ୍କ ସମୟରେ କ୍ଷତ୍ରିୟମାନେ ଯୁଦ୍ଧବିଦ୍ୟାରେ ସୁଶିକ୍ଷିତ ହେଉଥିବାର ଜଣାଯାଏ । କବି ସବଂଶ ରାଜପୁତ୍ରମାନଙ୍କର ଶିକ୍ଷାପ୍ରସଙ୍ଗ ବର୍ଣ୍ଣନା କଲାବେଳେ ଯୁଦ୍ଧବିଦ୍ୟାର କଥା କହିଅଛନ୍ତି । ସେ କହନ୍ତି ଯେ ଧୃତରାଷ୍ଟ୍ର ଓ ପାଣ୍ଡୁ ବନମଧ୍ୟସ୍ଥ ଆଖଡ଼ାରେ ଧନୁ, ତୂଣ, ଫଳା, ଖଣ୍ଡା, ଡମ୍ବରୁ, ଭିରଧ, କୁନ୍ତ, ନାରାଚ, ଅସିପତ୍ର ଓ ଯାଟିର ବ୍ୟବହାରର ଅଭ୍ୟାସ କରୁଥିଲେ । ଭାର୍ଗବ ଗୁରୁ ପାଣ୍ଡୁଙ୍କୁ ଶସ୍ତ୍ର-ପ୍ରୟୋଗର ମନ୍ତ୍ର ଓ ବାଣ ପ୍ରୟୋଗର ରୀତି ଶିଖାଇଥିଲେ । (୭୬)

ପାଣ୍ଡବ ଓ କୌରବମାନଙ୍କୁ ଭୀଷ୍ମ ଇନ୍ଦ୍ରପ୍ରସ୍ଥର ସମୀପବର୍ତ୍ତୀ ବନରେ ଆଖଡ଼ାଘର ପ୍ରସ୍ତୁତ କରି ନାନାଦି ଶସ୍ତ୍ରବିଦ୍ୟା ପ୍ରଦାନ କରିଥିଲେ । (୭୭) ଦ୍ରୋଣାଚାର୍ଯ୍ୟ ସେମାନଙ୍କୁ ଗଦା, କୁନ୍ତ, ଗୁରୁଜ ଓ ଅସୀସମ୍ବନ୍ଧୀୟ ଜ୍ଞାନ ଦାନ କରିଥିଲେ । ସେ ମଧ୍ୟ ପାଣ୍ଡବ ଓ କୌରବଙ୍କୁ ଧନୁର୍ବିଦ୍ୟା, ଗଦାଯୁଦ୍ଧ ଓ ମଲ୍ଲବିଦ୍ୟା ଶିଖାଇଥିଲେ । (୭୮) ଦୁର୍ଯ୍ୟୋଧନ ରୈବତକ ପର୍ବତସ୍ଥ ଆଖଡ଼ାରେ ଗଦାଯୁଦ୍ଧ ଶିକ୍ଷା କରିଥିଲେ । (ଆ:୧୧୩ପୃ) ଶ୍ରୀକୃଷ୍ଣ-ବଳରାମ ଚଉଷଠୀ ବିନ୍ଧାଣ, ଧନୁ, ଫଳା, କୁନ୍ତ,

କମାଣ ଓ ଆଡ଼ଣ ଆଦି ବିଦ୍ୟା ଲାଭ କରିଥିଲେ । (୭୯) ବିରାଟପୁତ୍ର ଉତ୍ତର-କୁମାର ମାତା ସୁଦେଷ୍ଣାଙ୍କ ଠାରୁ ଅସ୍ତ୍ରଶସ୍ତ୍ରର ଜ୍ଞାନପ୍ରାପ୍ତ ହୋଇଥିଲେ । (ଉ୧୫ପୃ)

ସାରଳା ଯୁଗରେ ଉତ୍କଳରେ ସାମରିକ ଶିକ୍ଷାର ବିସ୍ତାର ହୋଇଥିଲା । ଓଡ଼ିଶାର ତତ୍‌କାଳୀନ ସୁଶିକ୍ଷିତ ସେନାବାହିନୀ ସାହାଯ୍ୟରେ ଗଜପତି କପିଳେନ୍ଦ୍ର ଦେବ ନିଜ ସାମ୍ରାଜ୍ୟକୁ ଗଙ୍ଗାଠାରୁ କାବେରୀ ପର୍ଯ୍ୟନ୍ତ ବୃଦ୍ଧି କରିପାରିଥିଲେ । (୮୦) ଐତିହାସିକମାନେ କହନ୍ତି ଯେ, ଐରଂବଂଶୀୟ ରାଜା ଖାରବେଳଙ୍କ ପରେ ଅନ୍ୟ କୌଣସି ଓଡ଼ିଆ ରାଜା ଏତେ ରାଜ୍ୟ ଜୟ କରି ପାରି ନଥିଲେ । (୮୧)

'ରୁଦ୍ରସୁଧାନିଧି'ରୁ ପରିଜ୍ଞାତ ହୁଏ ଯେ ନାୟକ ଧନୁର୍ବିଦ୍ୟା ସମ୍ପର୍କୀୟ ସମସ୍ତ କୌଶଳ, ଖଡ଼୍‌ଗ, ଫଳା ଓ ଗଦାଦିର ଚାଳନା; ମଲ୍ଲବିଦ୍ୟା ଶିକ୍ଷା କରିଥିଲେ । (ପୃ୧୦୩) 'ଦାଣ୍ଡି ରାମାୟଣ'ରେ ଅଛି ଯେ, ଶ୍ରୀକୃଷ୍ଣ ଯୁଦ୍ଧାଦି ବିଦ୍ୟା ଶିକ୍ଷା କରିଥିଲେ । (ଆ୪୮ପୃ)

## (ଖ) ବେଦ ଓ କର୍ମକାଣ୍ଡ

ଯୁଦ୍ଧ ଯେପରି ମୁଖ୍ୟତଃ କ୍ଷତ୍ରିୟର କର୍ମ ଥିଲା, ସେହିପରି ବେଦପାଠ ବ୍ରାହ୍ମଣର କର୍ମ ଥିଲା । ମନୁ କହନ୍ତି—ବିଦ୍ୱାନ ବ୍ରାହ୍ମଣ ବେଦ ଅଧ୍ୟୟନ କରିବେ ଓ କରାଇବେ । ଅଧୀତବ୍ୟ ବିଷୟମାନଙ୍କ ମଧ୍ୟରେ ବେଦପାଠ ହିଁ ସେମାନଙ୍କ ନିମିତ୍ତ ପ୍ରଧାନ ବିଷୟ । (୮୨) ଏତଦ୍‌ଭିନ୍ନ ଯଜ୍ଞ କରିବା ଓ ଯଜ୍ଞ କରାଇବା ବ୍ରାହ୍ମଣର କର୍ତ୍ତବ୍ୟ । (୮୩) ବୈଦିକ ଯୁଗରେ ବ୍ରାହ୍ମଣ ପୁରୋହିତ ତାହାର ପୁତ୍ର ଓ ଭ୍ରାତୃ-ଷ୍ପୁତ୍ରମାନଙ୍କୁ କର୍ମକାଣ୍ଡର ସଂଗୀତ ଓ ସ୍ତୋତ୍ରଗାନର ଶିକ୍ଷା ପ୍ରଦାନ କରୁଥିଲେ । (୮୪) ପୂର୍ବେ ବ୍ରାହ୍ମଣ ଜାତିର ବାଳକକୁ ଭବିଷ୍ୟତର ଜୀବିକାସ୍ୱରୂପ ପୁରୋହିତ-କର୍ମ ଶିକ୍ଷା ଦିଆଯାଉଥିଲା । ସେହି ପ୍ରକାର ଶିକ୍ଷା ବ୍ରାହ୍ମଣ ଜାତି ମଧ୍ୟରେ ଆବଦ୍ଧ ଥିଲା । (୮୫)

ସାରଳା ଦାସ ସର୍ବତ୍ର ବ୍ରାହ୍ମଣଙ୍କ ବେଦପାଠର ଉଲ୍ଲେଖ କରନ୍ତି । ବିବାହାଦି କାର୍ଯ୍ୟରେ ବ୍ରାହ୍ମଣ ପୌରୋହିତ୍ୟ କରିବା ଚିତ୍ର ସେ ଦେଇଅଛନ୍ତି । ସେଥିରୁ ସୂଚିତ ହୁଏ ଯେ, ସେ କାଳର ବ୍ରାହ୍ମଣମାନେ ବେଦ ଓ କର୍ମକାଣ୍ଡକୁ ଜାତିଗତ ବିଦ୍ୟାଭାବରେ ଶିକ୍ଷା କରୁଥିଲେ । କବି କହନ୍ତି—ପ୍ରୟାଗ ତୀର୍ଥରେ ଦ୍ରୋଣାଚାର୍ଯ୍ୟ ବେଦାଧ୍ୟୟନ କରିଥିଲେ । (୮୬) ସୁକାନ୍ତ ନଗରର ଅଧିବାସୀ ସମସ୍ତ ବ୍ରାହ୍ମଣ ବେଦପାଠରେ ସୁନିପୁଣ ଥିଲେ ।

"ବ୍ରାହ୍ମଣ ଶାସନ ଘର ପଞ୍ଚାଶ ବସନ୍ତି
ବେଦବିଦ୍ୟାରେ ସେମାନେ ନିର୍ଦ୍ଦିଷ୍ଟ ଅଛନ୍ତି ।" (ଆ୧୭୬ପୃ)

ସୁଭଦ୍ରା-ପରିଣୟ (ମ୧୫୧ପୃ), ଉତ୍ତରା-ବିବାହ (ବି୧୮୨ପୃ) ଦୃଶ୍ୟରେ ବ୍ରାହ୍ମଣ ପୁରୋହିତଙ୍କ ବେଦଧ୍ୱନିର ଉଲ୍ଲେଖ ରହିଛି । ଚନ୍ଦ୍ରାବତୀ-ବିବାହ (ମ୨୮୬ପୃ), ଦ୍ରୌପଦୀପରିଣୟ (ଆ୩୧୦ପୃ) ଓ ସୁହାଣୀ-ବିବାହ (ସ୍ୱ୬ପୃ) କାଳରେ ବ୍ରାହ୍ମଣ ହିଁ ପୌରୋହିତ୍ୟ କରିଅଛନ୍ତି । ବ୍ରାହ୍ମଣଙ୍କ ବେଦଗାନ କଥା 'ରାମବିଭା' (ପୃ୨୬), 'ଦାଣ୍ଡି ରାମାୟଣ' (ଆ୫୬ପୃ) ଆଦିରେ ମିଳେ । 'ବିଚିତ୍ର ଭାରତ'ରେ ମଧ୍ୟ ବିପ୍ରଙ୍କ ବେଦଗାନର ଉଲ୍ଲେଖ ରହିଅଛି । (୮୭)

## (ଗ) ଜ୍ୟୋତିଷବିଦ୍ୟା

ଜ୍ୟୋତିଷବିଦ୍ୟାର ଚର୍ଚ୍ଚା ଭାରତରେ ବହୁ ପ୍ରାଚୀନ । ବୈଦିକ କାଳରେ ମୁନିଋଷିମାନେ ଯଜ୍ଞର କାଳାକାଳ ନିର୍ଣ୍ଣୟ ପାଇଁ ଜ୍ୟୋତିଷ-ସୂତ୍ର ରଚନା କରି-ଥିଲେ । (୮୮) 'ଛାନ୍ଦୋଗ୍ୟ ଉପନିଷଦ୍'ରେ ଜ୍ୟୋତିଷବିଦ୍ୟାକୁ (ନକ୍ଷତ୍ରବିଦ୍ୟା) ପଠିତବ୍ୟ ବିଷୟମାନଙ୍କ ମଧ୍ୟରେ ଗଣନା କରାଯାଇଅଛି । (୮୯) ପୁରାଣମତରେ ଜ୍ୟୋତିଷଶାସ୍ତ୍ର ବ୍ରହ୍ମାଙ୍କଠାରୁ ସୃଷ୍ଟ । (୯୦)

ସାରଳାଙ୍କ ଯୁଗରେ ଜ୍ୟୋତିଷଶାସ୍ତ୍ରର ବହୁ ପ୍ରଭାବ ଥିବା କଥା କବି-ଲେଖାରୁ ଉପଲବ୍ଧ ହୁଏ । କବିଙ୍କ ବର୍ଣ୍ଣନାରୁ ପରିଜ୍ଞାତ ହେଉଅଛି ଯେ, ଏହି ବିଦ୍ୟାର ବିଶେଷ ଅଧ୍ୟୟନ ସେ କାଳରେ ପ୍ରଚଳିତ ଥିଲା । ସାରଳା ଦାସ ଜ୍ୟୋତିଷକୁ ବେଦ ଆଖ୍ୟା ପ୍ରଦାନ କରନ୍ତି । (୯୧) ତାଙ୍କ ଲେଖାରୁ ପ୍ରତିପାଦିତ ହୁଏ ଯେ, ସେତେବେଳେ ସମସ୍ତ ଶୁଭକର୍ମ ଓ ଯାତ୍ରାକାଳରେ ଜ୍ୟୋତିଷଶାସ୍ତ୍ର-ସମ୍ମତ ଶୁଭବେଳା ନିର୍ଣ୍ଣୟ କରାଯାଉଥିଲା ।

ପୁତ୍ରଟିଏ ଜନ୍ମହେଲେ ଲୋକେ ଶୁଭାଶୁଭ ବିଚାର କରୁଥିଲେ । ଶାନ୍ତନୁଙ୍କ ପୁତ୍ର ଜନ୍ମ ହେବା ଦୃଶ୍ୟରୁ ଏହା ଅବଧାରିତ ହୁଏ ।

"ବିଛା ମାସ କୃଷ୍ଣପକ୍ଷ ପ୍ରତିପଦା ଦିନେ
ରେବତୀ ନକ୍ଷତ୍ର ଭୃଗୁବାର ବିଦ୍ୟମାନେ ।
ସିଦ୍ଧି ନାମେ ଯୋଗ ପୁଣି କରଣ ବାଣିଜ୍ୟ
ରାତ୍ର ପାଞ୍ଚ ଘଡ଼ିରେ ଯେ ଉପୁଜିଲି ତନୁଜ ।
ପୁତ୍ର ଜନ୍ମ ହେବା ଶୁଣି ଗଣନ୍ତି ମହର୍ଷି
ଅମୃତ ଯୋଗେ ଏ ପୁତ୍ର ଜାତ ହେଲା ଆସି ।" (ଆ୧୩ପୃ)

ଯୁଦ୍ଧାରମ୍ଭ ବେଳେ ଶୁଭବେଳା ଦେଖାଯାଉଥିଲା । ଯୁଧିଷ୍ଠିର ମହାଭାରତ-ଯୁଦ୍ଧକୁ ନିର୍ଗତ ହେବା ପୂର୍ବରୁ ତାଙ୍କର ରାଶିନକ୍ଷତ୍ର ବିଗ୍ଭର କରାଯାଇ ଶୁଭ ସମୟ ନିରୂପଣ କରାଯାଇଥିଲା ।

"ରାଜାର ପୁର୍ନବସୁ ଯେ ମିଥୁନର ରାଶି
ରୋହିଣୀ ନକ୍ଷତ୍ର ତାର ବିପରୀତେ ବସି ।
ପୁଷ୍ୟାକୁ ରୋହିଣୀ ପୁଣି ଅଟଇ ଯେ ତାର
ଯୁଧିଷ୍ଠିଙ୍କୁ ଶୁଭ ତାର ଯୋଗ ସେହିଦିନର । (ଉ୭୯ପୃ)

ରାଜାମାନଙ୍କର ଅଭିଷେକ ବେଳରେ ମଧ୍ୟ ଜ୍ୟୋତିଷସମ୍ମତ ମାସ, ତିଥି, ନକ୍ଷତ୍ର, ବାର, କରଣ ଓ ଯୋଗାଦି ନିର୍ଣ୍ଣୟ କରାଯାଉଥିଲା । ଦୁର୍ଯ୍ୟୋଧନଙ୍କ ଅଭିଷେକକାଳୀନ ଚିତ୍ରରୁ ଏହା ସ୍ପଷ୍ଟ ।

"ଧନୁ ମାସ ଶେଷ ଦିନ ପୂର୍ଣ୍ଣିମା ଯେ ତିଥି
ପୁଷ୍ୟାନକ୍ଷତ୍ର ଆବର ବାର ବୃହସ୍ପତି ।
ତୈତିଳ ନାମେ କରଣ ଶୁଭ ନାମେ ଯୋଗ
କକଡ଼ା ପରେ ଚନ୍ଦ୍ରମା କରୁଅଛୁ ଭୋଗ ।
× × ×
ଧଇଲେ ଯେ ଅନୁକୂଳ ଶୁଭଯୋଗ ଲଗ୍ନେ
ଗୁରୁ ପୁଷ୍ୟା ଯେ ଅମୃତ ଯୋଗ ଏହି ଦିନେ ।" (ଆ୨୦୦ପୃ)

ବିଦ୍ୟାର ଅନୁକୂଳ ଶୁଭ ଲଗ୍ନରେ ହେଉଥିଲା । କୌରବ-ପାଣ୍ଡବଙ୍କ ଶିକ୍ଷାପ୍ରସଙ୍ଗରୁ ଏହା ସ୍ପଷ୍ଟ ।

"ତୁଳ ମାସ କୃଷ୍ଣ ଚଉଠୀ ଗୁରୁବାରେ
ରୋହିଣୀ ନକ୍ଷତ୍ର ଯେ ଅଟଇ ସେହିଦିନରେ ।
ତିତ୍ତୁଳ୍ୟ ନାମେ କରଣ ଇନ୍ଦ୍ର ନାମେ ଯୋଗ
ତୁଳ ସଂକ୍ରାନ୍ତିକ ପଞ୍ଚଦିବସ ଭୋଗ ।" (୯୨)

ଶୁଭଦିନ ଦେଖି ପରୀକ୍ଷା କାର୍ଯ୍ୟ ବି ସଂପନ୍ନ ହେଉଥିଲା । ଲୋକେ-ଶ୍ବର ଗୁରୁ ଧୃତରାଷ୍ଟ୍ର ଓ ପଣ୍ଡୁଙ୍କୁ ପରୀକ୍ଷା କରିବା ଚିତ୍ରରୁ ଏହା ଅବଧାରିତ ହୁଏ ।

"କକଡ଼ା ମାସ କୃଷ୍ଣପକ୍ଷ ଚଉଠି
ପଣ୍ଡିତ ବାର ଶତଭିଷା ନକ୍ଷତ୍ର ଘଟି ।
× × ×

କୁମାର ପଣ୍ଡିତଙ୍କୁ ଦେଖି ହରଷ ହୋଇଲେ
ସକଳ ବିଦ୍ୟାମାନ ପରୀକ୍ଷା କରାଇଲେ ।" (୯୩)

ବିଦେଶ-ଗମନ କଲେ ଲୋକେ ଶୁଭଲଗ୍ନ ଦେଖି ଯାଉଥିଲେ । ଅର୍ଜୁନଙ୍କ ବନବାସପ୍ରସଙ୍ଗରୁ ଏହା ପ୍ରତିପାଦିତ ହୁଏ ।

"ମୀନ ମାସ ଶୁକ୍ଳ ପକ୍ଷ ଚତୁର୍ଦ୍ଦଶୀ ସଉରି ବାର
ସ୍ୱାତି ନକ୍ଷତ୍ରକୁ ଭୋଗ ଅଛଇ ସେ ଦିନର ।
ଚବିଶ ଦଣ୍ଡ ନିତ୍ୟ ଯେ ଭୋଗ୍ୟ ଆବର ଥିଲା
ବୁଧର ବେଳେ ଅର୍ଜୁନ ଯେ ଅନୁକୂଳ କଲା । (୯୪)

ଯାଗଶାଳାର ପ୍ରତିଷ୍ଠା ବି ଶୁଭଲଗ୍ନରେ ହେଉଥିଲା । ଦ୍ରୁପଦରାଜାଙ୍କ ଯଜ୍ଞ-ବର୍ଣ୍ଣନାରୁ ଏହା ସ୍ପଷ୍ଟ । (ଆ୨୦୮ପୃ) ଗୃହ-ପ୍ରବେଶ ମଧ୍ୟ ଦିନ ବାର ଓ କରଣାଦି ଦେଖି କରାଯାଉଥିଲା । ପାଣ୍ଡବଙ୍କ ଜତୁଗୃହ ପ୍ରବେଶ ବର୍ଣ୍ଣନାରୁ ତାହା ପ୍ରତିପାଦିତ ହୁଏ । (ଆ୧୪୦ପୃ) ମନ୍ଦିର-ଗଠନ ବି ଶୁଭଦିନରେ ହେଉଥିଲା । କବି-ବର୍ଣ୍ଣିତ ଜଗନ୍ନାଥ ମନ୍ଦିର ନିର୍ମାଣ ବର୍ଣ୍ଣନା ପାଠ କଲେ ତାହା ଅବଧାରିତ ହୁଏ । ( ମୁ ୩୧ପୃ)

ସାରଳା ଦାସ ଜ୍ୟୋତିଷବିଦ୍ୟାର ଯେଉଁ ପ୍ରତିପତ୍ତି ପ୍ରଦର୍ଶନ କରିଅଛନ୍ତି ତାହା ପଞ୍ଚଦଶ ଶତାବ୍ଦୀର ଅନ୍ୟ କୃତିମାନଙ୍କରେ ଦେଖାଯାଏ । 'ଚଣ୍ଡୀ ପୁରାଣ'ରେ ବର୍ଣ୍ଣନା କରାଯାଇଅଛି ଯେ ଶୁଭ ଦିନ, ରାଶି, କରଣ ଓ ଯୋଗ ଦେଖି ମହିଷାସୁର ଦିଗ୍‌ବିଜୟରେ ନିର୍ଗତ ହୋଇଥିଲେ । (ପୃ୧୫) 'ରାମବିଭା' କାବ୍ୟରେ ଦଶରଥ ଶ୍ରୀରାମଙ୍କ ବିବାହୋପଲକ୍ଷରେ ଜ୍ୟୋତିଷସମ୍ମତ ଶୁଭଲଗ୍ନ ଦେଖି ମିଥିଳାକୁ ଯାତ୍ରା କରିଥିଲେ ବୋଲି କଥିତ । (ପୃ୬୧)

ସେ ଯୁଗରେ ଜ୍ୟୋତିଷଶାସ୍ତ୍ରର ପଠନ-ପାଠନ ଗଣକଶ୍ରେଣୀର ବୃତ୍ତିଗତ ବିଦ୍ୟା ଥିଲା । କବି ଗଣକମାନଙ୍କର ପାଞ୍ଜି ପାଠ କଥା ସବିଶେଷ କହିଅଛନ୍ତି । ସେମାନେ ବିବାହ ବେଳେ ପାଞ୍ଜି ପାଠ କରୁଥିଲେ । ସୁଭଦ୍ରା-ପରିଣୟ ବର୍ଣ୍ଣନାରେ ଗଣକ ପଞ୍ଜିକା ପାଠ କରିବା କଥା କବି ଉଲ୍ଲେଖ କରିଅଛନ୍ତି । (୯୫) ଗଣକମାନେ ଜାତକ ଦେଖି ଫଳାଫଳ ବି ନିର୍ଣ୍ଣୟ କରି ଦେଉଥିଲେ । ସୁହାଣୀ-ଉପାଖ୍ୟାନରେ ଅଛି ଯେ ଉଦ୍ଧାଳକ ନାମକ ଗଣକ ସୁହାଣୀର କୋଷ୍ଠୀ ବିଗ୍ଭର କରି ଫଳାଫଳ ନିର୍ଣ୍ଣୟ କରିଥିଲେ । (ସ୍ୱ୫ପୃ)

ସାରଳା ଦାସ ଜ୍ୟୋତିଷ-ଶାସ୍ତ୍ରରେ ବିଶ୍ୱାସ ସ୍ଥାପନ କରିଅଛନ୍ତି । ଜ୍ୟୋତିଷଶାସ୍ତ୍ରର ଫଳାଫଳ ଯେ ସତ୍ୟ ତାହା ସେ ଦର୍ଶାଇଅଛନ୍ତି । କେତେକ

ଉଦାହରଣରୁ ତାହା ପ୍ରତିପାଦିତ ହୁଏ । ଗଣକ ହରିସାହୁଙ୍କୁ କହିଥିଲି ଯେ, ସୁହାଣୀ ଭାଗ୍ୟବତୀ ହେବ; କିନ୍ତୁ ବିବାହ କାଳରେ ମୃତ୍ୟୁ ବରଣ କରିବ । (ସ୍ୱ୫ପୃ) କବି କହନ୍ତି ଯେ, ସୁହାଣୀ କନ୍ୟାର ବିବାହ ଯୁଧିଷ୍ଠିରଙ୍କ ସହ ହେଲି ଏବଂ ବର-କନ୍ୟାଙ୍କର ହସ୍ତଗଣ୍ଠି ପଡ଼ିବାବେଳେ ଯମଙ୍କ ଦୂତମାନେ ତାହାର ପ୍ରାଣ ନେବାପାଇଁ ଉପଗତ ହେଲେ । (ସ୍ୱ୭ପୃ) ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କର ରାଶି-ନକ୍ଷତ୍ର କୃତ୍ତିକା-ବୃଷ ଥିଲି । ସମାନ ରାଶିନକ୍ଷତ୍ର ଯୋଗୁ ଉଭୟଙ୍କର ମିଳନ ଶୁଭଙ୍କର ହେବ ବୋଲି ବ୍ୟାସଦେବ ନିର୍ଣ୍ଣୟ କରିଥିଲେ । (ଆ୩୯ପୃ) ବାସ୍ତବକ୍ଷେତ୍ରରେ ଏହା ସତ୍ୟ ହୋଇଥିଲି ବୋଲି ସାରଳା ଦାସ ଦର୍ଶାଇଛନ୍ତି । ଧୃତରାଷ୍ଟ୍ର ଓ ଗାନ୍ଧାରୀ ଜୀବନରେ ବହୁ ସୌଭାଗ୍ୟ ଭୋଗ କରିଥିଲେ । ଶେଷରେ ଉଭୟେ ଏକସମୟରେ ବନାଗ୍ନିରେ ଦଗ୍ଧ ହୋଇ ନିହତ ହୋଇଥିଲେ । (ଆଶ୍ରମ୫୫-୫୭ପୃ) ଗାନ୍ଧାରୀ ବୈଧବ୍ୟ ଭୋଗିନାହାନ୍ତି କି ଧୃତରାଷ୍ଟ୍ର ପତ୍ନୀକଷ୍ଟ ପାଇନାହାନ୍ତି ।

## (ଘ) ତନ୍ତ୍ରବିଦ୍ୟା

ଯେତେ ପ୍ରକାର ଧର୍ମ ବା ଦାର୍ଶନିକ ମତବାଦ ଅଛି, ତାହାର ସାଧନ-ପ୍ରଣାଳୀ ବା ଆଚରଣ ଭାଗ ତନ୍ତ୍ରର ବିଷୟ ଅଟେ । (୯୬) ଭାରତୀୟ ସଂସ୍କୃତିରେ ତନ୍ତ୍ରର ପ୍ରଚଳନ ବହୁ ପ୍ରାଚୀନ । ପାରମ୍ପରିକ ବୌଦ୍ଧଧର୍ମ ହ୍ରାସପ୍ରାପ୍ତ ହେବାପରେ ଶକ୍ତିପୂଜା ଲୋକପ୍ରିୟ ହେବା ସମୟରେ ଓଡ଼ିଶା ତଥା ଭାରତରେ ସପ୍ତମ ଶତାବ୍ଦୀରୁ ତନ୍ତ୍ରର ପ୍ରଭାବ ପରିଲକ୍ଷିତ ହୋଇଥିଲି । (୯୭)

ସାରଳା ଦାସଙ୍କ ମହାଭାରତରେ ତନ୍ତ୍ରର ବହୁ ପ୍ରଭାବ ପରିଦୃଷ୍ଟ ହେଉଥିବାରୁ ମନେ ହୁଏ ଯେ, ପଞ୍ଚଦଶ ଶତାବ୍ଦୀରେ ଉତ୍କଳରେ ତନ୍ତ୍ରବିଦ୍ୟାର ବିଶେଷ ପ୍ରାଧାନ୍ୟ ଲାଭ କରିଥିଲି । ନିମ୍ନ ଆଲୋଚନାରୁ ତାହା ଅବଧାରିତ ହେବ ।

ତାନ୍ତ୍ରିକତାରେ ଇନ୍ଦ୍ରଜାଲ ବା କୁହୁକବିଦ୍ୟାର କଥା ଥିବାରୁ ତାହାକୁ 'ଇନ୍ଦ୍ରଜାଲବିଦ୍ୟା' ଆଖ୍ୟା ଦିଆଯାଏ । (୯୮) 'ଉଲୁକବିଦ୍ୟା' ହିଁ କୁହୁକବିଦ୍ୟା ଅଟେ । (୯୯) ଶାରଳାଙ୍କ ବର୍ଣ୍ଣନାରେ ବହୁ ସ୍ଥଳରେ ଏହି ଉଲ୍ଲୁକବିଦ୍ୟାର କଥା କୁହାଯାଇଅଛି । ସେ କହିଅଛନ୍ତି ଯେ, ହାରାବତୀ କନ୍ୟା ଏହି ବିଦ୍ୟାର ବଳରେ ଲୋକଙ୍କୁ ଅଦୃଶ୍ୟ କରି ଦେଇପାରୁଥିଲେ । ହାରାବତୀ ଅର୍ଜୁନଙ୍କୁ କହିଥିଲେ—

"ଏବେ ମୋ ସଙ୍ଗତେ ଯେବେ କରିବୁ ପୀରତି
କେତେ ଯେବ୍ହେ ଲୁଚ୍ଛଇବ ନ ଦେଖିବ ଏଥି ।
ଏମନ୍ତ ବିଦ୍ୟାଟି ଅଛି ଜାଣ ମୋର ଚହିଁ
ଉଲୁକବିଦ୍ୟା କଲେ ତୋତେ ନ ଦେଖିବ କେହି ।" (୧୦୦)

ପାଣ୍ଡବମାନେ ପ୍ରତ୍ୟେକ ସତ୍ୟ କହି ଅକାଳରେ ଆମ୍ବ ଫଳାଇବା ଏବଂ ଗୌରମୁଖର ହସ୍ତରୁ ଶ୍ରୀକୃଷ୍ଣ ତାହାଙ୍କୁ ହରଣ କରିନେବା ଘଟଣାରେ ଐନ୍ଦ୍ରଜାଲିକ ପ୍ରଭାବ ନିହିତ । (୧୦୧) ମାୟାବତୀ ମଧ୍ୟ ଇନ୍ଦ୍ରଜାଲବିଦ୍ୟା ଅବଗତ ଥିଲେ । ସେ ସୁଭଦ୍ରାଙ୍କୁ କହିଥିଲେ ଯେ, ଉଲୁକବିଦ୍ୟା ଛଡ଼ି ଦ୍ୱାରକୁ ସ୍ପର୍ଶ କଲେ ତାହା ଫିଟିଯିବ ଏବଂ ସେ ସମସ୍ତଙ୍କୁ ଦେଖିପାରିବେ; କିନ୍ତୁ ତାଙ୍କୁ କେହି ଦେଖିପାରିବେ ନାହିଁ । (ମ୧୨୫ପୃ) କବି-ବର୍ଣ୍ଣିତ କାମାକ୍ଷୀ ଦେବୀ ଉଲୁକବିଦ୍ୟା ଜ୍ଞାତ ଥିଲେ ଏବଂ ଭୀମଙ୍କୁ ତାହା ଶିଖାଇଥିଲେ । (ସ୪୯ପୃ) ଦ୍ରୋଣାଚାର୍ଯ୍ୟ ଦୃଷ୍ଟିବିଦ୍ୟା ବଳରେ କୂପରୁ ନାଟ ବାହାରକରି ଆଣିବା, ଛୁନ୍ଦ ଓ କୁଶବଟୁକୁ ଉପରକୁ ଉଠାଇ ନେବା ବର୍ଣ୍ଣନାରେ ଇନ୍ଦ୍ରଜାଲର ପ୍ରଭାବ ଲକ୍ଷ୍ୟ କରାଯାଇପାରେ । (୧୦୨)

ତନ୍ତ୍ରରେ ମନ୍ତ୍ରର କଥା କୁହାଯାଏ । ତେଣୁ ଏହାର ଅନ୍ୟ ନାମ ମନ୍ତ୍ର-ଶାସ୍ତ୍ର । (୧୦୩) ସାରଳା ଦାସ ବହୁସ୍ଥଳରେ ଏହି ମନ୍ତ୍ର କଥା ବର୍ଣ୍ଣନା କରିଅଛନ୍ତି । ମନ୍ତ୍ରପାଠ କରି ହାବିବତୀ ଅର୍ଜ୍ଜୁନଙ୍କୁ ଅଶୀତାଳ ଗଭୀର କୂପ ମଧ୍ୟରୁ ଉପରକୁ ଉଠାଇ ଆଣିପାରିଥିଲେ । (୧୦୪) ଅଶ୍ୱତ୍ଥାମା ମନ୍ତ୍ର ପାଠ କରି କାଇଁଷିକା ଶର ପ୍ରେରଣ କରିଥିଲେ । (ଐ୨୬) କୌରବ ଓ ପାଣ୍ଡବଗଣ ମନ୍ତ୍ର-ଶିକ୍ଷା କରିବା କଥା କବି ଦର୍ଶାଇ ଅଛନ୍ତି । (୧୦୫) ଖାଣ୍ଡବ ବନ ଦହନ ହେବା ପରେ ଅଗ୍ନିଦେବତା ଅର୍ଜ୍ଜୁନଙ୍କୁ ଏପରି ମନ୍ତ୍ର ପ୍ରଦାନ କରିଥିଲେ ଯେ, ତାହାଙ୍କୁ ପାଠ କରି ଶର ନିକ୍ଷେପ କଲେ ଏକ ଶର ଶହେଗୋଟି ଶରରେ ପରିଣତ ହୋଇପାରୁଥିଲା । (ମ୩୬ପୃ)

ତନ୍ତ୍ରରେ ଗୁରୁଙ୍କଠାରୁ ଦୀକ୍ଷାନେବା ସ୍ଥିତି ଉପରେ ଗୁରୁତ୍ୱ ପ୍ରଦାନ କରାଯାଏ । (୧୦୬) ସାରଳା ଦାସଙ୍କ ବର୍ଣ୍ଣନାରେ ଗୁରୁଙ୍କଠାରୁ ଦୀକ୍ଷା ନେବା କଥା ରହିଛି । ଯଥା—

"ଧନୁଗୁରୁ ମନ୍ତ୍ରଗୁରୁ ଦେବ ବିଦ୍ୟାଗୁରୁ
ଶସ୍ତ୍ରଗୁରୁ ଶାସ୍ତ୍ରଗୁରୁ ସର୍ବଦୀକ୍ଷା ଗୁରୁ ।" (୧୦୭)

ତାନ୍ତ୍ରିକତାରେ ସ୍ତ୍ରୀ ଓ ଶକ୍ତି ପ୍ରାଧାନ୍ୟ ଲାଭ କରିବା ଦେଖାଯାଏ । (୧୦୮) ସାରଳା ଦାସ ସ୍ତ୍ରୀଶକ୍ତିର ପ୍ରାଧାନ୍ୟ ଦେଖାଇଛନ୍ତି । ଯେଉଁ ଅସୁରଦୈତ୍ୟଙ୍କୁ

ସ୍ୱୟଂ ଶିବ ବଧ କରିପାରିଲେ ନାହିଁ, ପାର୍ବତୀ ତାହାଙ୍କୁ ଏକାମ୍ର ତୀର୍ଥରେ ବଶୀଭୂତ କଲେ ବୋଲି ବର୍ଣ୍ଣନା କରି କବି ଶକ୍ତିଙ୍କୁ ଶିବଙ୍କଠାରୁ ବଡ଼ କରିଦେଇଛନ୍ତି । (ସ୍ୱ୧୨-୧୪ପୃ) 'ଚଣ୍ଡୀପୁରାଣ'ରେ କବି କହନ୍ତି ଯେ ମହିଷାସୁରକୁ ଦେବତାମାନେ ବଧ କରି ନ ପାରି ଦୁର୍ଗାଙ୍କର ଶରଣାପନ୍ନ ହୋଇଥିଲେ । (ପୃ୫୧-୫୬) 'ଏକାମ୍ର ପୁରାଣ'ରେ ଦେବୀ କୀର୍ତ୍ତି ଓ ବାସ ନାମକ ଦୈତ୍ୟଦ୍ୱୟଙ୍କୁ ପାତାଳକୁ ଚାପି ଦେଇଥିଲେ ବୋଲି କୁହାଯାଇଅଛି । (୧୦୯)

ତନ୍ତ୍ରରେ ଅସାଧ୍ୟ-ସାଧନ, କାମନା-ପୂରଣ, ରୋଗ, ଭୟ ଓ ଦୈବୀ-ଦୁର୍ବିପାକରୁ ରକ୍ଷା ପାଇବାର ବିଧି-ବିଧାନ କଥିତ ହୁଏ । (୧୧୦) ମାରଣ, ମୋହନ, ଉଚ୍ଚାଟନ ଓ ବଶୀକରଣ ଆଦି ବିଷୟ ଏଥିରେ ବର୍ଣ୍ଣନା କରାଯାଏ । (୧୧୧) ତାନ୍ତ୍ରିକ ଷଟ୍‌କର୍ମ ହେଉଛି—ଶାନ୍ତି, ବଶୀକରଣ, ସ୍ତମ୍ଭନ, ବିଦ୍ୱେଷ, ମାରଣ ଓ ଉଚ୍ଚାଟନ । (୧୧୨) ସାରଳା ଦାସଙ୍କ ଲେଖାରେ ରୋଗ ନିବାରଣ ପାଇଁ ଔଷଧାଦି ପ୍ରୟୋଗର ବର୍ଣ୍ଣନା ମିଳେ । ଖାଣ୍ଡବ ବନ ଦହନ ପରେ ଅଗ୍ନି ଅର୍ଜୁନଙ୍କୁ କପାଳରେ ଲଗାଇବା ପାଇଁ ଏପରି ଏକ ଔଷଧ ଦେଇଥିଲେ ଯେ, ତାହାକୁ ବ୍ୟବହାର କଲେ ଜଳ ବା ଅନଳରେ ଲୋକର ପରାଜୟ ହୋଇପାରୁ ନ ଥିଲା । ସେ ବ୍ୟାଧିନାଶକ ଭସ୍ମ, ବଜ୍ରଶର-ନିରୋଧକ ବିଭୂତି, ରୋଗନାଶକ ମଣି ଅର୍ଜୁନଙ୍କୁ ପ୍ରଦାନ କରିଥିଲେ । ଅଗ୍ନି ପୁଣି ତାହାଙ୍କୁ ସ୍ତମ୍ଭନ, ମୋହନ, ବଶ୍ୟ, ଉଚ୍ଚାଟନ ଓ ଅଞ୍ଜନ-ଧାରଣର ବିଧାନ ଶିଖାଇଥିଲେ । (ମ୩୭ପୃ) ମାୟାବତୀ ପାଦୁକା ଔଷଧି, ଅଞ୍ଜନ ବିଦ୍ୟା, ସ୍ତମ୍ଭନ, ମୋହନ, ବଶ୍ୟ-ଉଚ୍ଚାଟନ ଓ ଧରଣି-ଧାରଣ ଅବଗତ ଥିଲେ । (ମ୧୨୫-୧୨୬ପୃ) କବିଙ୍କ କାମାକ୍ଷୀ ଦେବୀ ମଧ୍ୟ ସ୍ତମ୍ଭନ-ମୋହନାଦି ବିଦ୍ୟା ଜାଣିଥିଲେ । ସେ ଆଟିକାଏ ଅନ୍ନ ରାନ୍ଧି ଲକ୍ଷ ଲକ୍ଷ ଲୋକଙ୍କୁ ଭୂରି ଭୋଜନରେ ଆପ୍ୟାୟିତ କରିପାରୁଥିଲେ । (ସ୪୮-୪୯ପୃ) ଦ୍ରୋଣପତ୍ନୀ କୃପୀ ମଧ୍ୟ ହାଣ୍ଡିକ ଭାତରେ ଦ୍ରୁପଦ ରାଜାଙ୍କ ସୈନ୍ୟମାନଙ୍କୁ ସନ୍ତୁଷ୍ଟ କରିଥିଲେ । (ଆ୯୧ପୃ) ଏ ସବୁ ଅସାଧ୍ୟ-ସାଧନର ଏକ ଏକ ଦୃଷ୍ଟାନ୍ତ । ସହଦେବ ସ୍ତମ୍ଭନ, ମୋହନ ଓ ଅଂଜନାଦି ବିଦ୍ୟାରେ ନିପୁଣ ଥିଲେ । (୧୧୩) ସାରଳାଦାସ ବର୍ଣ୍ଣନା କରିଅଛନ୍ତି ଯେ, ରାଧିକାଙ୍କ ଗୃହକୁ ଯିବା ବେଳେ ଶ୍ରୀକୃଷ୍ଣଙ୍କ ମଥା ଫାଟି ରୁଧିର ନିର୍ଗତ ହେଲା । ବ୍ରହ୍ମା କଟାକ୍ଷ ମନ୍ତ୍ରରେ ଫୁଙ୍କି ତାହା ଝାଡ଼ିବାରୁ ସେ ଆଶ୍ୱସ୍ତ ହେଲେ । ବ୍ରହ୍ମା ଯେଉଁ ଅଞ୍ଜନ ଦେଇଥିଲେ ତାହା ଲଗାଇବାରୁ ତାଙ୍କୁ ଅନ୍ଧାର ଘର ବି ଆଲୋକମୟ ଦେଖାଗଲା । ପୁଣି ବ୍ରହ୍ମା ଦେଇଥିବା ଧୂଳି ପକାଇ

ହେବାରୁ ଗୋପାଳଗଣ ନିଦ୍ରାଭିଭୂତ ହୋଇପଡ଼ିଲେ । (ଆ୧୫୧-୧୫୨ପୃ) ଏହି ସବୁ ବର୍ଣ୍ଣନାରେ ତନ୍ତ୍ରଗତ ଅସାଧ୍ୟ-ସାଧନ ଓ ରୋଗ-ଦୂରୀକରଣ କ୍ରିୟାର ପ୍ରଭାବ ପରିଲକ୍ଷିତ ହୁଏ ।

'ରୁଦ୍ରସୁଧାନିଧି'ରେ ସ୍ତମ୍ଭନ, ମୋହନ, ଗୁଟିକ, ଅଞ୍ଜନ, ପାଦୁକ, କୁହୁକ, ମନ୍ତ୍ରୌଷଧି, ଆଗମ, ଯନ୍ତ୍ରମନ୍ତ୍ର, ବଶୀକରଣ, ଦୀକ୍ଷାଗ୍ରହଣ ଆଦି ତନ୍ତ୍ରଶାସ୍ତ୍ର-ସୁଲଭ କଥା ବହୁତ ଦେଖାଯାଏ । (୧୧୪) 'କଳ୍ପଲତା' କାବ୍ୟରେ ସର୍ବେଶ୍ୱର ଯୋଗୀ ନାୟକକୁ ମନ୍ତ୍ରଦୀକ୍ଷା ଓ ବିଭୂତି ପ୍ରଦାନ କରିବା ବର୍ଣ୍ଣନା ପରିଦୃଷ୍ଟ ହୁଏ । (ପୃ୧୯) ଇତିହାସପୃଷ୍ଠାରୁ ଉପଲବ୍ଧ ହୁଏ ଯେ, ପ୍ରାଚୀନ ଯୁଗରେ ତାନ୍ତ୍ରିକ ବୌଦ୍ଧ ଧର୍ମ ଓଡ଼ିଶାରୁ ସୃଷ୍ଟି ହୋଇଥିଲା । (୧୧୫) ପୁଷ୍ପଗିରି ତନ୍ତ୍ରଶିକ୍ଷାର ପ୍ରଧାନ କେନ୍ଦ୍ର ଥିଲା । (୧୧୬) ଦ୍ୱାଦଶ ଶତାବ୍ଦୀ ବେଳକୁ ଉତ୍କଳ ବୌଦ୍ଧତନ୍ତ୍ରର ପ୍ରଧାନ କେନ୍ଦ୍ରରେ ପରିଣତ ହୋଇଯାଇଥିଲା । (୧୧୭)

## (ଙ) ନୃତ୍ୟ ଓ ସଂଗୀତବିଦ୍ୟା

ନୃତ୍ୟ ଓ ସଂଗୀତ ବିଦ୍ୟାକୁ 'ଗନ୍ଧର୍ବବିଦ୍ୟା' କୁହାଯାଏ । ଏହି ବିଦ୍ୟାର ପ୍ରଚଳନ ଭାରତରେ ବହୁ ପ୍ରାଚୀନ । ଅଷ୍ଟାଦଶ ବିଦ୍ୟା ମଧ୍ୟରେ ଏହାର ପରିଗଣନା କରାଯାଏ । (୧୧୮) 'ନାଟ୍ୟ ମନୋରମା' ଗ୍ରନ୍ଥରେ ସଙ୍ଗୀତକୁ ପଞ୍ଚମ ବେଦ ଓ ତ୍ରିବର୍ଗ ଫଳଦାୟିନୀ ବୋଲି ପ୍ରଶଂସା କରାଯାଇଅଛି । (ପୃ୨) 'ଅଭିନୟ ଚନ୍ଦ୍ରିକା' ଅନୁଯାୟୀ ନୃତ୍ୟ ମହାନ୍ ଗୁଣକାରକ ଓ ସର୍ବଜ୍ଞାନଯୁକ୍ତ । ସଙ୍ଗୀତ ଦେବତା ବା ରାଜାଙ୍କ ସମକ୍ଷରେ ପରିବେଷଣ କରାଯିବା ବିଧିସଂଗତ ଅଟେ । (ପୃ୨)

ପଞ୍ଚଦଶ ଶତାବ୍ଦୀରେ ଉତ୍କଳୀୟ ସମାଜରେ ନୃତ୍ୟ ଓ ସଂଗୀତର ପ୍ରଭାବ ଥିଲା । ଏହା ଏକ ବିଶେଷ ଅଧ୍ୟୟନ-ଯୋଗ୍ୟ ବିଷୟ ରୂପରେ ପରିଗଣିତ ହେଉଥିଲା । ପୁରୁଷ ତଥା ନାରୀ ନୃତ୍ୟ ଓ ସଂଗୀତ ଶିକ୍ଷା କରୁଥିବା କଥା କବି-ବର୍ଣ୍ଣିତ କେତେକ ଘଟଣାରୁ ପରିଜ୍ଞାତ ହୁଏ । ହାଡ଼ିବଣି କନ୍ୟା ଜ୍ଞାମାକ୍ଷୀ ଦେବୀଙ୍କ ଆଗରେ ନୃତ୍ୟ କରିବା କଥାରୁ ଜଣାଯାଏ ଯେ ସେ ନୃତ୍ୟବିଦ୍ୟା ଶିକ୍ଷା କରିଥିଲେ । (ବ୧୬୦ପୃ) ଯୁଧିଷ୍ଠିର ଇନ୍ଦ୍ର-ସଭାରେ ଅଧିଷ୍ଠିତ ହେଲେ ବେଳେ ତାଙ୍କ ଆଗରେ ଅପ୍ସରାଗଣ ନୃତ୍ୟ କରିଥିଲେ । (ବ୧୯୬ପୃ) ଦ୍ରୌପଦୀ ବିବାହ (ଆ୩୧୦ପୃ), ଚନ୍ଦ୍ରାବଳୀ-ପରିଣୟ (ମ୨୮୬ପୃ) ଓ ଉଷା-ବିବାହ (ବ୧୮୦ପୃ) କାଳରେ ଗଣିକାମାନେ ନୃତ୍ୟଗୀତ ପରିବେଷଣ କରିଥିଲେ । ଦ୍ରୌପଦୀ

(ଆ୨୫୧ପୃ) ଓ ଭାନୁମତୀ (ଆ୧୧୭ପୃ) ସ୍ୱୟମ୍ବର ସଭାକୁ ଗଲାବେଳେ ତାଙ୍କ ଆଗରେ ନୃତ୍ୟଶୀଳା ରମଣୀଗଣ ନୃତ୍ୟ କରି ଚାଲିଥିଲେ । ରାଜା ଭୂମନ୍ୟୁ ନିଜର କନ୍ୟା ଭାନୁମତୀଙ୍କ ସଙ୍ଗରେ ନୃତ୍ୟବିଦ୍ୟାବିଶାରଦା ନାରୀ ପ୍ରେରଣ କରିଥିଲେ । (ଆ୧୨୨ପୃ) କପିଳା ଗାଈର ବଧ ପରେ ଯେଉଁ ଯଜ୍ଞ ହେଲା ସେଥିରେ ନାରଦ ଓ ଅପ୍ସରାମାନେ ନୃତ୍ୟ କରିଥିଲେ । (ଆ୧୯୧ପୃ) ଯଜ୍ଞ ପରେ ଅର୍ଜୁନଙ୍କର ଅଭିଷେକ ହେଲାବେଳେ ଗଣିକା-ନୃତ୍ୟ ପ୍ରଦର୍ଶିତ ହୋଇଥିଲା । (ଆ୧୯୨ପୃ) ଶ୍ରୀକୃଷ୍ଣଙ୍କ ପୁଷ୍ୟାଭିଷେକ ପ୍ରସଙ୍ଗରେ ଗଣିକାମାନଙ୍କର ନୃତ୍ୟ-ଗୀତର ବର୍ଣ୍ଣନା ମିଳେ । (୧୧୯) ତ୍ରିପୁରାସୁର ବଧ ହେବା ପରେ ଦେବତାମାନଙ୍କ ସହ ସ୍ୱୟଂ ଶିବ ନୃତ୍ୟ କରିଥିଲେ । (ବ୩୨୪-୩୨୫ପୃ) ନହୁଷଙ୍କ ଆଗରେ ଋଷିଗଣ ନୃତ୍ୟରତ ଥିଲେ ବୋଲି କବି କହନ୍ତି । (ବ୭୩ପୃ) ଚନ୍ଦ୍ରାବତୀଙ୍କ ବିବାହକାଳରେ ନାରଦ ନୃତ୍ୟ କରିଥିଲେ ବୋଲି ସାରଳା ଦାସ ଲେଖିଛନ୍ତି । (୧୨୦) କବି ସଂଗୀତାଦି ଗନ୍ଧର୍ବ-ବିଦ୍ୟାକୁ ବେଦ ଆଖ୍ୟା ଦେଇଛନ୍ତି । (ମ୧୯୯ପୃ)

ସାରଳା ଦାସଙ୍କ ସମସାମୟିକ ତଥା ପରବର୍ତ୍ତୀ ଲେଖାରେ ନୃତ୍ୟଗୀତର ବହୁଳ ଚିତ୍ର ଦେଖାଯାଏ । 'ଚଣ୍ଡୀ ପୁରାଣ'ରେ କୁହାଯାଇଅଛି ଯେ, ଚନ୍ଦ୍ରାବତୀ ସ୍ୱୟମ୍ବର ସଭାକୁ ଯାତ୍ରା କଲାବେଳେ ଗଣିକାଗଣ ସଂଗୀତ ପରିବେଷଣ କରୁଥିଲେ । (ପୃ୨୩) 'କଳ୍ପଲତା' କାବ୍ୟରେ ଇନ୍ଦ୍ରସଭାରେ ନୃତ୍ୟଗୀତ ପରିବେଷିତ ହେଉଥିବାର ଦୃଶ୍ୟ-ଚିତ୍ରିତ । (ପୃ୪-୫) 'ଦାଣ୍ଡି ରାମାୟଣ'ରେ ଅଛି ଯେ, ଯମଦଗ୍ନି ଋଷି ସହସ୍ରାର୍ଜ୍ଜୁନଙ୍କୁ ଆତିଥ୍ୟ ପ୍ରଦର୍ଶନ କଲାବେଳେ ନୃତ୍ୟଗୀତର ବନ୍ଦୋବସ୍ତ କରିଥିଲେ । (ଆ୧୦-୧୧ପୃ) 'ପଦ୍ମମାଳୀ' କାବ୍ୟ ବର୍ଣ୍ଣିତ ଇନ୍ଦ୍ରସଭା, ବିବାହଦୃଶ୍ୟ ଓ ମଦନ-ପୂଜା ଚିତ୍ରରେ ନୃତ୍ୟଗୀତର ବର୍ଣ୍ଣନା ଦେଖାଯାଏ । (୧୨୧)

କାବ୍ୟ-କବିତା ଭିନ୍ନ ଶିଳାଲେଖରୁ ମଧ୍ୟ ଓଡ଼ିଶାରେ ପ୍ରାଚୀନ କାଳରେ ନୃତ୍ୟଗୀତର ପରମ୍ପରା ଥିବା କଥା ପ୍ରତିପାଦନ କରାଯାଇପାରେ । ଏଠାରେ ତାହାର କେତେକ ଦୃଷ୍ଟାନ୍ତ ଦିଆଯାଇ ପାରେ । କୋଣାର୍କ ମନ୍ଦିରର ଗାତ୍ରରେ ନୃତ୍ୟରତା ରମଣୀ ଓ ବାଦ୍ୟ-ବାଜଣାର ଛବି ଚିତ୍ରିତ । (୧୨୨) ଲିଙ୍ଗରାଜ ମନ୍ଦିରର ଭିତ୍ତିରେ ଅପ୍ସରାମାନେ ନୃତ୍ୟ କରୁଥିବାର ଚିତ୍ର ପରିଦୃଷ୍ଟ ହୁଏ । (୧୨୩) ରାଣୀଗୁମ୍ଫାରେ ନାରୀମାନଙ୍କର ନୃତ୍ୟ ଓ ବାଦ୍ୟ-ବାଜଣାର ଦୃଶ୍ୟ ଦେଖାଯାଏ । (୧୨୪) କପିଳେନ୍ଦ୍ର ଦେବଙ୍କ କାଳରେ ନିର୍ମିତ ପାପନାଶିନୀ ମନ୍ଦିରଗାତ୍ରରେ ଥିବା ବୃଷଭୋପରି ଶିବଙ୍କ ନୃତ୍ୟର ଛବି ମାଧ୍ୟଯୁଗୀନ ଉତ୍କଳରେ ନୃତ୍ୟଗୀତର ପ୍ରଭାବ ପ୍ରଦର୍ଶନ କରେ । (୧୨୫) ସିଂହାଚଳସ୍ଥ ଲକ୍ଷ୍ମୀ-

ନୃସିଂହ ମନ୍ଦିରର ଏକ ଶିଳାଳିପିରୁ ଜଣାଯାଏ ଯେ, କପିଳେନ୍ଦ୍ରଦେବ ଦେବତାଙ୍କ ସମୀପରେ ନୃତ୍ୟ କରିବା ପାଇଁ ଜଣେ ନର୍ତ୍ତକୀ ନିଯୁକ୍ତ କରିଥିଲେ । ପୁରୁଷୋତ୍ତମ ଦେବ ନୃସିଂହନାଥ ମନ୍ଦିରରେ ସକାଳ ଓ ସଞ୍ଜ ବେଳା ନୃତ୍ୟ କରିବା ନିମିତ୍ତ ସେବାଦାସୀ ନିଯୁକ୍ତ କରିବାର ଉପଲବ୍ଧ ହୁଏ । ସେ ପୁରୀ ମନ୍ଦିରରେ 'ଗୀତ-ଗୋବିନ୍ଦ'ର ଗାନ ଓ ନୃତ୍ୟର ବ୍ୟବସ୍ଥା ମଧ୍ୟ କରିଥିଲେ । (୧୨୬)

(ଚ) ଚିତ୍ରାଙ୍କନବିଦ୍ୟା

ସେ କାଳରେ ଚିତ୍ରାଙ୍କନ ଏକ ବିଶେଷ ବିଦ୍ୟାରୂପରେ ଦେଖାଦେଇ-ଥିବାର ଜଣାଯାଏ । କବିଙ୍କର କବିତ୍ୱ ବର୍ଣ୍ଣନାରୁ ତାହା ପ୍ରତିପାଦିତ ହୁଏ । କବି ଲେଖିଛନ୍ତି ଯେ, ନାରଦ ଦୁର୍ଯୋଧନଙ୍କ କନ୍ୟା ଚନ୍ଦ୍ରାବତୀଙ୍କୁ ଶ୍ରୀକୃଷ୍ଣ-ପୁତ୍ର ଶାମ୍ବଙ୍କର ଚିତ୍ରପଟଟିଏ ଦେଖାଇଥିଲେ । ତାହାକୁ ଦେଖି ଚନ୍ଦ୍ରାବତୀ ଶାମ୍ବଙ୍କ ପ୍ରତି ଆକୃଷ୍ଟ ହେଲେ । (ମ୨୬୦ପୃ) ଦୁର୍ବାସା ଋଷି ତ୍ରିପୁରମୋହିନୀଙ୍କୁ କାର୍ତ୍ତିକ କୁମାରଙ୍କର ଚିତ୍ରପଟ (ବ୨୮୮ପୃ) ଓ ନାରଦ ପ୍ରଦ୍ୟୁମ୍ନଙ୍କର ଚିତ୍ରପଟ (ବ୨୮୯ପୃ) ପ୍ରଦର୍ଶନ କରିଥିଲେ । ସେ କାଳରେ ଲୋକେ ଗୃହର କାନ୍ଥମାନଙ୍କରେ ସୁନ୍ଦର ଚିତ୍ର ବି ଅଙ୍କନ କରୁଥିଲେ । ରାଜା ଶାନ୍ତନୁ କାମବାଣରେ ଅଧୀର ହୋଇ 'ଚିତ୍ରଳିଖନ ପିତୁଳା'କୁ କୋଳ କରିବା ବର୍ଣ୍ଣନାରୁ ଏହା ପ୍ରତିପାଦିତ ହୁଏ । (ଆ୧୨ପୃ) ଦୁର୍ଯୋଧନ ଯେଉଁ ପ୍ରସ୍ତର ଗୃହ ନିର୍ମାଣ କରାଇଥିଲେ ତାହାର କାନ୍ଥରେ ପିତୁଳାମାନ ଅଙ୍କିତ ହୋଇଥିଲା । (ଆ୧୩୩ପୃ)

'ସାହିତ୍ୟ ଦର୍ପଣ'ରେ 'ଶିଳ୍ପିନ୍ୟା' ଶବ୍ଦ ପ୍ରୟୋଗରୁ ସୂଚିତ ହୁଏ ଯେ, ସେ ଯୁଗରେ ଚିତ୍ରକାରିଣୀ ସ୍ତ୍ରୀ ଉତ୍କଳରେ ଥିଲେ । (ପୃ୯୨) ଭୁବନେଶ୍ୱରସ୍ଥ ଶତ୍ରୁଘ୍ନେଶ୍ୱର ମନ୍ଦିରଗାତ୍ରରେ ଥିବା ଶିବ-ବିବାହ ଦୃଶ୍ୟ, ଅନନ୍ତ ବାସୁଦେବ ମନ୍ଦିରର ରାମାୟଣ ଦୃଶ୍ୟ, ବ୍ରହ୍ମେଶ୍ୱର ମନ୍ଦିରର ଶିବ-ପାର୍ବତୀଙ୍କ ବିବାହ ଚିତ୍ର, ପରଶୁରାମ ମନ୍ଦିରସ୍ଥ ଶିବ-ବିବାହ ଦୃଶ୍ୟ, ସ୍ୱର୍ଣ୍ଣ ଜଳେଶ୍ୱର ମନ୍ଦିରର ରାମ-ସୁଗ୍ରୀବଙ୍କ ମିଳନଚିତ୍ର, ଚଉରାଶୀ ଗ୍ରାମସ୍ଥ ବାରାହୀ ମନ୍ଦିରର ରାମାୟଣବର୍ଣ୍ଣିତ ଦୃଶ୍ୟ, କୋଣାର୍କର ସୀତା-ବିବାହ ଛବି, ପୁରୀ ମନ୍ଦିରର ଗରୁଡ଼ସ୍ତମ୍ଭର ପଛପଟେ ଥିବା ଅନନ୍ତଶୟନର ଚିତ୍ର ସେ କାଳର ଉତ୍କଳରେ ଚିତ୍ରାଙ୍କନବିଦ୍ୟାର ପ୍ରତିପତ୍ତି ପ୍ରଦର୍ଶନ କରେ । 'ଗୁପ୍ତ ଇଚ୍ଛାବତୀ' କାବ୍ୟ (ପୃ୩) ଓ କଳ୍ପଲତା କାବ୍ୟରେ (ପୃ୧୮) ଚିତ୍ରପଟର ଉଲ୍ଲେଖ କରାଯାଇଅଛି ।

## (ଛ) ଚିକିତ୍ସାବିଦ୍ୟା

ଆୟୁର୍ବେଦର ପରିଗଣନା ଅଷ୍ଟାଦଶ ବିଦ୍ୟା ମଧ୍ୟରେ ପରିଗଣିତ ହୁଏ । (୧୨୭) ମହାଭାରତ ଯୁଗରେ ଏ ଦେଶରେ କୁଶଳ ବୈଦ୍ୟ ଥିଲେ ଏବଂ ଲୋକେ ଔଷଧର ବ୍ୟବହାର କରୁଥିଲେ । ସଂସ୍କୃତ ମହାଭାରତରେ ଅଷ୍ଟାଙ୍ଗ ଚିକିତ୍ସାରେ (ନାଡ଼ୀ, ମଳ, ମୂତ୍ର, ଜିହ୍ୱା, ନେତ୍ର, ରୂପ, ଶବ୍ଦ, ସ୍ପର୍ଶ) ନିପୁଣ ବୈଦ୍ୟ ତଥା ଔଷଧ-ସେବନର ବିଷୟ ରହିଅଛି । (୧୨୮) ବ୍ରହ୍ମା ସୃଷ୍ଟି ଆରମ୍ଭରେ ଔଷଧିର ବୀଜ ସୃଷ୍ଟି କରିଥିଲେ ବୋଲି ଭାଗବତରେ କୁହାଯାଇଅଛି । (୧୨୯) ଏଥିରୁ ମନେହୁଏ ଯେ ଚିକିତ୍ସା ବିଦ୍ୟାଟି ଭାରତରେ ବହୁ ପ୍ରାଚୀନ ।

ସାରଳା ଦାସଙ୍କ ଯୁଗରେ ଚିକିତ୍ସାବିଦ୍ୟାର ପ୍ରତିପତ୍ତି ଥିବାର ଉପଲବ୍‌ଧି ହୁଏ । କବି ଏହାକୁ ବେଦ ଆଖ୍ୟା ଦେଇଅଛନ୍ତି । ସେ କହିଛନ୍ତି ଯେ ଶିବ ତାଙ୍କର ପଞ୍ଚମୁଖରେ ଆୟୁ, ଜ୍ୟୋତି, ଧନୁ, ଶିଶୁ ଓ ଗନ୍ଧର୍ବ ବେଦ ପାଠ କରନ୍ତି । (ମ୧୯୯ପୃ) ସେ କାଳରେ ଚିକିତ୍ସା ଥିଲା ଏବଂ ବୈଦ୍ୟ ବି ଥିଲେ । ସାରଳା ଦାସ ବର୍ଣ୍ଣନା କରିଛନ୍ତି ଯେ, କୀଚକଙ୍କ ଲାଗି ବୈଦ୍ୟ ଡକାଇ ଔଷଧର ବ୍ୟବସ୍ଥା କରିବାପାଇଁ ମୃଦୁସୂଳୀକୁ ସୁଦେଷ୍ଣା ଆଦେଶ ପ୍ରଦାନ କରିଥିଲେ । (ବି୧୫୮ପୃ) ଚନ୍ଦ୍ରାଙ୍ଗଦଙ୍କ ପ୍ରସଙ୍ଗରେ ମଧ୍ୟ ବୈଦ୍ୟ ଓ ଔଷଧର ଉଲ୍ଲେଖ କରି କରିଛନ୍ତି । (ଆ୨୪ପୃ) ଏତଦ୍‌ଭିନ୍ନ ବହୁ ସ୍ଥଳରେ ସାରଳା ଔଷଧିର କଥା କହି-ଅଛନ୍ତି । ସେ ଲେଖିଛନ୍ତି ଯେ, ଅଶ୍ୱିନୀକୁମାର ହନୁମାନଙ୍କୁ ଔଷଧିର ଶିକ୍ଷା ଦେଇଥିଲେ । (କ ୧୨୭ପୃ) ଶ୍ରୀକୃଷ୍ଣ ମଧ୍ୟ ମହୌଷଧି ବିଷୟ ଶାନ୍ତନୁଙ୍କଠାରୁ ଶିକ୍ଷା କରିଥିଲେ । (୧୩୦) ଧୃତରାଷ୍ଟ୍ର ସଂଜୟଙ୍କଠାରୁ ରସାୟନ ବିଦ୍ୟା ଲାଭ କରିଥିଲେ । (୧୩୧) ଗୋପ୍ୟାନପୁରର ରାଜା କର୍ଣ୍ଣ କେଶରୀଙ୍କୁ ତାଙ୍କର ସ୍ତ୍ରୀ କରଯୁଗ ନାମକ ପିଶାଚୁଣୀଠାରୁ ଔଷଧ ଆଣି ଦେଇଥିଲେ । (୧୩୨)

ସାରଳା ମହାଭାରତରେ ବହୁ ସ୍ଥଳରେ 'ଗୁଟିକା' ଶବ୍ଦର ପ୍ରୟୋଗ ମିଳେ । 'ଗୁଟିକା' ଶବ୍ଦର ଅର୍ଥ 'ବଟିକା' ଓ 'ଗୁଳି' ଅଟେ । ଏଥିରୁ ଚିକିତ୍ସା ବିଦ୍ୟାର ସୂଚନା ମିଳୁଅଛି । କବି କହନ୍ତି ଯେ, ଧୃତରାଷ୍ଟ୍ର 'ଗୁଟିକା' ବିଷୟ ଅବଗତ ଥିଲେ । (ଆ୩୩ପୃ) ଅଗ୍ନି ଅର୍ଜୁନଙ୍କୁ ଗୁଟିକାର ବିଧାନ ବୁଝାଇଥିଲେ । (ମ୩୭ପୃ) ସହଦେବ 'ଗୋଟିକ' ବିଦ୍ୟା ଅବଗତ ଥିଲେ । (୧୩୩)

ପ୍ରାଚୀନ ଓଡ଼ିଶାରେ ଚିକିତ୍ସା ବିଦ୍ୟାର ପ୍ରସାର ହୋଇଥିବା କଥା ଅନ୍ୟାନ୍ୟ ବିଭିନ୍ନ ଲେଖାରୁ ପ୍ରମାଣିତ ହୁଏ । 'ରୁଦ୍ର ସୁଧାନିଧି'ରେ ବ୍ୟାଧି,

ଔଷଧାଦିର ଉଲ୍ଲେଖ ମିଳେ । (ପୃ୧୬) 'ଦାଣ୍ଡି ରାମାୟଣ'ରେ ବୈଦ୍ୟ ଓ ଚିକିତ୍ସାର କଥା ଅଛି । (ଆ୩୦ପୃ) ପ୍ରତାପରୁଦ୍ର ଦେବଙ୍କ ରାଜସଭାରେ ତପନ ସେନ ନାମକ ବୈଦ୍ୟ ଥିଲେ । (୧୩୪) 'ପାଇକ ଖେଦା'ରେ କଥିତ ହୋଇଛି ଯେ, ସେ କାଳରେ ଯୁଦ୍ଧ କ୍ଷେତ୍ରରେ ଔଷଧ-ସଂଗ୍ରହକାରୀ ବ୍ୟକ୍ତି ତଥା ବୈଦ୍ୟ ନିଯୁକ୍ତ ହେଉଥିଲେ । (ପୃ୬୧-୬୪)

ସେ କାଳରେ ଲୋକେ ରୋଗର ନିରାକରଣ ପାଇଁ ଝଡ଼ାଫୁଙ୍କା, ମନ୍ତ୍ର ପ୍ରୟୋଗ ଓ ଦେବାରାଧନା ଉପରେ ନିର୍ଭର କରୁଥିଲେ । କବି ପ୍ରଦର୍ଶନ କରି-ଅଛନ୍ତି ଯେ ଶ୍ରୀକୃଷ୍ଣଙ୍କର କ୍ଷତକୁ ବ୍ରହ୍ମା ଝଡ଼ାଫୁଙ୍କାବଳରେ ଆରୋଗ୍ୟ କରିଦେଇ-ଥିଲେ । (ଆ୧୫୧ପୃ) ବଯୁ ନାମକ କୁମ୍ଭାର ଗଣେଶଙ୍କୁ ପୂଜା କରି କୁଷ୍ଠରୋଗରୁ ମୁକ୍ତ ହୋଇଥିଲେ । (ବ୩୧ପୃ)

ପ୍ରାଚୀନ କାଳରେ ଗୋ-ଚିକିତ୍ସା ମଧ୍ୟ ପ୍ରଚଳିତ ଥିଲା । ସଂସ୍କୃତ ମହା-ଭାରତରେ ଅଛି ଯେ, ସହଦେବ ଗୋରୁମାନେ କିପରି ମାରୋଗ ରହିବେ ତାହାର ଉପାୟ ଜ୍ଞାତ ଥିଲେ । (୧୩୫) ଓଡ଼ିଶାରେ ପଞ୍ଚଦଶ ଶତାବ୍ଦୀରେ ଗୋ-ଚିକିତ୍ସା ଜ୍ଞାତ ଥିବା କଥା ସାରଳାଙ୍କ ମହାଭାରତରୁ ଜଣାଯାଏ । ସହଦେବଙ୍କ ମୁଖରେ କବି ଗୋରୁମାନଙ୍କ ରୋଗର ସୁବିସ୍ତୃତ ବିବରଣୀ ପ୍ରଦାନ କରିଅଛନ୍ତି । (୧୩୬)

ସେ ଯୁଗରେ ଅଶ୍ୱରୋଗର ଚିକିତ୍ସା ବି ଲୋକଙ୍କୁ ଜଣାଥିଲା । କବି ନକୁଳଙ୍କ ମୁଖରେ ଅଶ୍ୱରୋଗମାନଙ୍କର ବିସ୍ତାରିତ ବର୍ଣ୍ଣନା ଦେଇଅଛନ୍ତି । ଯଥା:—

"ନକୁଳ ବୋଇଲେ ଶୁଣ ତୁମ୍ଭେ ମତ୍ସ୍ୟଇନ୍ଦ୍ର,
ଅଶ୍ୱଙ୍କ ଲକ୍ଷଣ ମୁହିଁ ଜାଣଇ ସ୍ୱଚ୍ଛନ୍ଦ ।
ବିକରି ବିକରାଳ ଯେ ଦାନ୍ଦ୍ରେୟା କର୍କଠ
ଅବିକାଚ ସୁଗନ୍ଧି ଯେ କାଙ୍କୁରି ବିକଠ ।
× × × ×
ଏତେକ ଲକ୍ଷଣରେ ହୋ ଅଶ୍ୱଙ୍କର ବ୍ୟାଧି
ମୋର ଦରଶନେ ଏହା ସବୁ ହୁଏ ସାଧି ।" (୧୩୭)

## (ଜ) ଗଣିତବିଦ୍ୟା

ପଞ୍ଚଦଶ ଶତାବ୍ଦୀରେ ଗଣିତବିଦ୍ୟା ଏକ ବିଶେଷ ଶିକ୍ଷାରୂପରେ ବିଦ୍ୟ-ମାନ ଥିଲା ବୋଲି ସାରଳାଙ୍କ ବର୍ଣ୍ଣନାରୁ ଅବଧାରିତ ହୁଏ । କେତେକ ଦୃଷ୍ଟାନ୍ତରୁ

ଏହା ପ୍ରତିପାଦିତ ହେବ । ସ୍ୱୟମ୍ବରସଭାକୁ ଗମନ କଲାବେଳେ ଦ୍ରୌପଦୀ ତାଙ୍କର ମୁଦୁସୁଲିଙ୍କୁ "କୋଟି ସାଗର ଅକ୍ଷୌହିଣୀ" କାହାକୁ କହନ୍ତି ବୋଲି ପଚାରିବାରୁ ମୁଦୁସୁଲି ସଂଖ୍ୟା ଗଣନା କଥା ବିସ୍ତାରିତ ଭାବରେ ବୁଝାଇଥିଲେ । (ଆ୨୫୯ପୃ) ଏଥିରୁ ଜଣାଯାଏ ଯେ ମୁଦୁସୁଲି କେଶିମା ଗଣିତବିଦ୍ୟାରେ ବିଶେଷ ଜ୍ଞାନ ଲାଭ କରିଥିଲେ । ପୁନଶ୍ଚ କବି ବିରାଟ ପର୍ବରେ ଗାଈମାନଙ୍କର ସଂଖ୍ୟା କପରି ଗଣନା କରିବାକୁ ହୁଏ ତାହା ବୁଝାଇଅଛନ୍ତି । (ପୃ୨୮) ଅନେକ ସ୍ଥଳରେ ସାରଳା ଦାସ ଜମିମାପର ବିଧାନ ମଧ୍ୟ ପ୍ରଦାନ କରିଅଛନ୍ତି । (୧୩୮) ବନପର୍ବରେ ଅଛି ଯେ, ରାଜା ଋତୁପର୍ଣ୍ଣ ସଂଖ୍ୟା ବା ଗଣିତବିଦ୍ୟାରେ ପାରଦର୍ଶୀ ଥିଲେ । ସେ ବିଦର୍ଭ ନଗରକୁ ଦମୟନ୍ତୀଙ୍କ ସ୍ୱୟମ୍ବରସଭାକୁ ଗମନ କରୁଥିବାବେଳେ ଗୋଟିଏ ବାହାଡ଼ା ବୃକ୍ଷର ଫଳ ଓ ପତ୍ର ସହଜରେ ଗଣି ଦେଇଥିଲେ । (ବ୨୬୩ପୃ) କବିଙ୍କର ଏହି ସମସ୍ତ ବର୍ଣ୍ଣନା ସେ ଯୁଗରେ ଗଣିତ ବିଦ୍ୟାର ପ୍ରତିପତ୍ତି ପ୍ରତିପାଦନ କରେ ।

## (୯) ଶାସ୍ତ୍ର-ପୁରାଣ

ପୁରାଣର ଅଧ୍ୟୟନ ଭାରତରେ ବହୁ ପ୍ରାଚୀନ । 'ବ୍ରହ୍ମାଣ୍ଡ ପୁରାଣ' ମତରେ ବ୍ରହ୍ମା ସର୍ବଶାସ୍ତ୍ରର ପୂର୍ବରୁ ପୁରାଣ ସୃଷ୍ଟି କରିଥିଲେ । ତାହାପରେ ସେ ବେଦ ପ୍ରକାଶ କଲେ । (୧୩୯) 'ଶତପଥ ବ୍ରାହ୍ମଣ'ରେ ପୁରାଣ ପାଠ କଲେ ଦେବତା ସନ୍ତୁଷ୍ଟ ହୋଇ କାମନା ପୂରଣ କରନ୍ତି ବୋଲି କଥିତ ଅଛି । (୧୪୦) ବ୍ୟାସଦେବ କହନ୍ତି ଯେ, ପୁରାଣ ଜ୍ୟୋତ୍ସ୍ନା-ସଦୃଶ । ତାହାଦ୍ୱାରା ବେଦର ଜ୍ୟୋତି ପ୍ରକାଶିତ ହୁଏ ଏବଂ ମାନବର ବୁଦ୍ଧିରୂପୀ କୁମୁଦିନୀ ବିକାଶ ଲାଭ କରେ । (୧୪୧) ଭାଗବତ ମତରେ ଇତିହାସ ତଥା ପୁରାଣ ପଞ୍ଚମ ବେଦ । (୧୪୨) ନାରଦ ପୁରାଣ କହେ—ପୁରାଣ ଧର୍ମ, ଅର୍ଥ, କାମ ଓ ମୋକ୍ଷର ବୀଜ । (୧୪୩) ଚତୁର୍ଦ୍ଦଶ ବିଦ୍ୟା ମଧ୍ୟରେ ପୁରାଣର ଗଣନା ହୁଏ । (୧୪୪)

ସାରଳା ଦାସଙ୍କ ଯୁଗରେ ଶାସ୍ତ୍ର-ପୁରାଣର ପଠନ-ପାଠନ ଖୁବ୍ ପ୍ରଚଳିତ ଥିଲା । ଏହା ଏକ ବିଶେଷ ଶିକ୍ଷା ରୂପରେ ଦେଖାଦେଇଥିଲା । କବିଙ୍କ କେତେକ ଉକ୍ତିରୁ ଏହା ପ୍ରମାଣିତ ହୁଏ । କୌରବ ଓ ପାଣ୍ଡବମାନେ ଦ୍ରୋଣଙ୍କଠାରୁ 'ସକଳ ଶାସ୍ତ୍ର' ଅଧ୍ୟୟନ କରିଥିଲେ । କବି ତାହାକୁ 'ଶାହାସ୍ତ୍ର ବିଦ୍ୟା' ନାମ ଦେଇଅଛନ୍ତି । (୧୪୫) ପଣ୍ଡୁ ଭୀଷ୍ମଙ୍କଠାରୁ ଅନ୍ୟାନ୍ୟ ବିଦ୍ୟା ମଧ୍ୟରେ ଶାହାସ୍ତ୍ରବିଦ୍ୟା ମଧ୍ୟ ଲାଭ କରିଥିଲେ । (୧୪୬)

କବି କହନ୍ତି ଯେ, ପୁରାଣ-ଶାସ୍ତ୍ର ଶ୍ରବଣ ନ କଲେ ଲୋକ ବଧୀର ହୋଇ-ଯାଏ । (୧୪୭) ଶାସ୍ତ୍ରାଦିର ନିନ୍ଦା କଲେ ଦୁଃଖ ଲାଭ ହୁଏ ବୋଲି ସେତେବେଳେ ଲୋକ-ବିଶ୍ୱାସ ଥିଲା । (୧୪୮) ଯମଦେବତା ହରି ସାହୁଙ୍କୁ (୧୪୯) ଓ ଖ୍ରୀଷ୍ଟ ଯୁଧିଷ୍ଠିରଙ୍କୁ ପୁରାଣ ଶ୍ରବଣ କରିବା ନିମିତ୍ତ ଉପଦେଶ ପ୍ରଦାନ କରିଥିଲେ ।(୧୫୦)

ସାରଳା ଦାସଙ୍କ ମହାଭାରତରେ ବିଭିନ୍ନ ପୁରାଣର ଉଲ୍ଲେଖ ଦେଖାଯାଏ । ଯଥା:—

"ଅଷ୍ଟାଦଶ ପୁରାଣ ଯେ ଶାସ୍ତ୍ର ହିଁ ପ୍ରତ୍ୟକ୍ଷ
ରାମାୟଣ ଚଣ୍ଡୀ ଯୁଦ୍ଧ ଅଟେ ପାଞ୍ଚଲକ୍ଷ ।
ଶ୍ରୀ ବିଷ୍ଣୁ ପୁରାଣ ପୁଣି ମାର୍କଣ୍ଡ ପୁରାଣ
ଗାୟତ୍ରୀ ଶିବ ପୁରାଣ ନାରଦ ପୁରାଣ ।" (୧୫୧)
"ବାମନ ବରାହ ଆଦି କଳକୀ ପୁରାଣ
ନୃସିଂହ ମତ୍ସ୍ୟ ବଉଦ୍ଧ କଳକୀ ଯେ ପୁଣ । (ଦ୍ରୋ ୧୮ପୃ)

ସେ କାଳରେ ମହାଭାରତର ବିଶେଷ ଆଦର ଥିଲା । କବି କହନ୍ତି ଯେ, ଶୁକମୁନି ସମସ୍ତ ପୁରାଣକୁ ଏକ ପାଖରେ ଏବଂ ମହାଭାରତକୁ ଅନ୍ୟ ପାଖରେ ରଖି ଓଜନ କଲେ । ମହାଭାରତ ସବୁଠାରୁ ଅଧିକ ଭାରି ହେଲା । ତେଣୁ ଅଙ୍ଗିରା ଗ୍ରନ୍ଥର ନାମ ରଖିଲେ—ମହାଭାରତ । (ଆ,୩-୪ପୃ) ମୂଳ ମହାଭାରତରେ ବେଦ ଉପନିଷଦ୍ ସହ ମହାଭାରତର ତୁଳନା ହେବା କଥା ଅଛି । ସେଠାରେ ପୁରାଣର କଥା ନାହିଁ । (୧୫୨) ସାରଳା ଦାସ ବହୁସ୍ଥଳରେ ମହାଭାରତର ମହିମା ଗାନ କରିଅଛନ୍ତି । (୧୫୩) ମହାଭାରତ ଶୁଣିଲେ ଓ ବଖାଣିଲେ ପୁଣ୍ୟ ହୁଏ ବୋଲି ତାଙ୍କର ମତ । (୧୫୪)

ମହାଭାରତ ପରି ବିଷ୍ଣୁ ପୁରାଣର ପ୍ରସିଦ୍ଧି ସେ କାଳରେ ଅଧିକ ଥିଲା । ଯମ ହରି ସାହୁଙ୍କୁ ବିଷ୍ଣୁ ପୁରାଣ ପାଠ କରିବା ପାଇଁ ଉପଦେଶ ଦେଇଥିଲେ । (ସ୍ୱ୯ପୃ) 'ବିଷ୍ଣୁ ପୁରାଣ'ର ଉଲ୍ଲେଖ କବି ବହୁ ସ୍ଥଳରେ କରିଛନ୍ତି । (୧୫୫)

ସାରଳା ଦାସଙ୍କ ସମସାମୟିକ ତଥା ପରବର୍ତ୍ତୀ ଲେଖାମାନଙ୍କରେ ପୁରାଣର ପ୍ରସିଦ୍ଧି ଦେଖାଯାଇପାରେ । 'ରୁଦ୍ରସୁଧାନିଧି' ଗ୍ରନ୍ଥରେ ଅଷ୍ଟାଦଶ ପୁରାଣ ଓ ରାମାୟଣର ଉଲ୍ଲେଖ ଅଛି । (ପୃ୧୦୧-୧୦୨) 'ଦାଣ୍ଡି ରାମାୟଣ'ରେ ବଳି ରାଜା ପୁରାଣ ଅଧ୍ୟୟନ କରୁଥିଲେ ବୋଲି କୁହାଯାଇଅଛି । (ଆ୬୩ପୃ) ପଞ୍ଚଦଶ ଶତାବ୍ଦୀରେ ଲିଖିତ 'ଏକାମ୍ର ଚନ୍ଦ୍ରିକା'ର ବିଷୟମାନ ଅଷ୍ଟାଦଶ ମହାପୁରାଣରୁ ସଂଗୃହୀତ ବୋଲି ଜଣାଯାଏ । (୧୫୬) ଏଥିରୁ ସ୍ପଷ୍ଟ ଯେ ସେତେବେଳେ ପୁରାଣର

ଆଦର ସମାଜରେ ଥିଲା । 'ବାଣ୍ଡି ରାମାୟଣ'ରେ ବିଷ୍ଣୁପୁରାଣ ପାଠ କରିବା ପାଇଁ ଉପଦେଶ ଦିଆଯାଇଅଛି । (ଅ୨୧ପୃ) ପରବର୍ତ୍ତୀ ଯୁଗର ଲେଖା 'ବିଚିତ୍ର ଭାରତ'ରେ ମହାଭାରତର ଶ୍ରେଷ୍ଠତା ପ୍ରଦର୍ଶିତ ହୋଇଅଛି । ସେଠାରେ ଯମ ହରିସାହୁଙ୍କୁ ମହାଭାରତ ଶ୍ରବଣ ଓ ପୂଜନର ମହିମା ବୁଝାଇବା କଥା ଅଛି । (୧୫୭)

## ୪. ଶିକ୍ଷାପୀଠ ଓ ଶିକ୍ଷାକେନ୍ଦ୍ର

ବୈଦିକ ଯୁଗରେ ଶିକ୍ଷା ପରିବାରର ସୀମିତ ପରିବେଷ୍ଟନୀ ମଧ୍ୟରେ ଆବଦ୍ଧ ଥିଲା । ସେତେବେଳେ ଗୁରୁଗୃହ ହିଁ ଶିକ୍ଷାର କେନ୍ଦ୍ର ଥିଲା । ଗୁରୁ ନିଜ ଗୃହରେ କେବଳ ନିଜର ପୁତ୍ର, ଭ୍ରାତୃଷ୍ପୁତ୍ରମାନଙ୍କୁ ଧର୍ମଶାସ୍ତ୍ରର ଶିକ୍ଷା ପ୍ରଦାନ କରୁଥିଲେ । ଅଳ୍ପ କେତେକ ବାହାରର ଶିଷ୍ୟ ସେଠାରେ ଅଧ୍ୟୟନ ମଧ୍ୟ କରୁଥିଲେ । (୧୫୮) ଏହା ଫଳରେ କ୍ରମେ ଗୁରୁଗୃହରେ ବାସ କରି ବିଦ୍ୟାଧ୍ୟୟନ କରିବା ରୀତି ପ୍ରଚଳିତ ହେଲା । ମନୁ ଗୁରୁଗୃହରେ ଜୀବନର ପ୍ରଥମ ଚତୁର୍ଥାଂଶ ଅତିବାହିତ କରିବା ନିମିତ୍ତ ଉପଦେଶ ଦେଇଛନ୍ତି । (୧୫୯) ତୈତ୍ତିରୀୟ ଉପନିଷଦ୍‌ର 'ଆଚାର୍ଯ୍ୟ ଅନ୍ତେବାସିନାମ୍' ଉକ୍ତିରୁ ଗୁରୁଗୃହବାସର ସୂଚନା ମିଳେ । (୧୬୦) ଉତଙ୍କ (୧୬୧), ଆରୁଣୀ (୧୬୨), ସତ୍ୟକାମ ଜାବାଳ (୧୬୩) ପ୍ରମୁଖ ପୁରାଣପ୍ରସିଦ୍ଧ ପୁରୁଷମାନେ ଗୁରୁଗୃହରେ ବାସ କରି ବିଦ୍ୟାଶିକ୍ଷା ସମାପନ କରିଥିଲେ । ସେ ଯୁଗରେ ରାଜା-ମହାରାଜାମାନେ ଗୁରୁଙ୍କୁ ସ୍ୱଗୃହରେ ରଖାଇ ନିଜ ପୁତ୍ର-ପୌତ୍ରାଦିଙ୍କର ଶିକ୍ଷା-ବ୍ୟବସ୍ଥା କରାଉଥିଲେ । ସଂସ୍କୃତ ମହାଭାରତରେ ପରିଦୃଷ୍ଟ ହୁଏ ଯେ, ଦ୍ରୋଣାଚାର୍ଯ୍ୟ ଧୃତରାଷ୍ଟ୍ରଙ୍କ ଗୃହରେ ରହି କୌରବ ଓ ପାଣ୍ଡବମାନଙ୍କୁ ଶିକ୍ଷାଦାନ କରୁଥିଲେ । (୧୬୪) ବୌଦ୍ଧଯୁଗରେ ମଠମାନ ପ୍ରତିଷ୍ଠା କରାଗଲା ଏବଂ ସେ ସବୁ ଶିକ୍ଷାକେନ୍ଦ୍ରରେ ପରିଣତ ହେଲା । ବୌଦ୍ଧ ମଠର ପ୍ରଭାବରେ ହିନ୍ଦୁ ମଠ ଦେଖାଦେଲା ଏବଂ ଶିକ୍ଷାପୀଠ ହେଲା । (୧୬୫) ସ୍ଥୂଳତଃ ଗୁରୁଗୃହ, ଧନୀବ୍ୟକ୍ତିଙ୍କ ସ୍ୱଗୃହ ଓ ମଠ ପ୍ରାଚୀନଯୁଗର ଶିକ୍ଷାକେନ୍ଦ୍ର ଥିଲା ।

### (କ) ମଠ

ସାରଳା ଦାସଙ୍କ ଯୁଗରେ ମଠ ଓ ଗୁରୁଗୃହ ଶିକ୍ଷାନୁଷ୍ଠାନ ଥିଲା । ଶାନ୍ଦୀପନି ଯେଉଁଠାରେ ଅଧ୍ୟାପନା କାର୍ଯ୍ୟ କରୁଥିଲେ ତାହା ତାଙ୍କର ନିଜ ଗୃହ ଥିଲା । (୧୬୬) ତାହାକୁ ଏକ ମଠ ବି କୁହାଯାଇପାରେ । ମଠର ଅର୍ଥ ଛାତ୍ରାବାସ ।

ଶିଷ୍ୟଗଣ ଯେଉଁଠି ରହି ଧର୍ମଶିକ୍ଷା ଓ ଶାସ୍ତ୍ରାଲୋଚନା କରନ୍ତି ତାହାର ନାମ ମଠ । ମଠରେ ଆଗୃର୍ଯ୍ୟ ଥାନ୍ତି ଓ ତାଙ୍କ ପାଖରେ ଶିଷ୍ୟବର୍ଗ ରହି ଧର୍ମଶିକ୍ଷା କରିଥାନ୍ତି । (୧୬୭) ଏହି ଦୃଷ୍ଟିରୁ ଦେଖିଲେ ଶାନ୍ଦୀପନିଙ୍କ ଶିକ୍ଷାନୁଷ୍ଠାନକୁ ମଠ ଆଖ୍ୟା ଦିଆ-ଯାଇପାରେ । କାରଣ ଏଠାରେ ଶିଷ୍ୟଗଣ ରହି ବିଦ୍ୟାଶିକ୍ଷା କରୁଥିଲେ । (୧୬୮) ମୁଦ୍ରିତ ସାରଳା ମହାଭାରତରେ ଏହାକୁ ମଠ ଆଖ୍ୟା ଦିଆଯାଇଅଛି ।(ମ୪୦୮ପୃ) ଏତଦ୍‌ଭିନ୍ନ ଦକ୍ଷିଣ ପ୍ରାଚୀ-କୂଳରେ ଗୋଟିଏ ମଠ ଥିବା କଥା କବି ଉଲ୍ଲେଖ କରିଅଛନ୍ତି । (୧୬୯) କବି ନିଜେ ତେନ୍ତୁଳିଆପଦା ଗ୍ରାମ ନିକଟସ୍ଥ 'ମୁନି ଗୋସାଇଁ' ମଠରେ ବାସକରି ଶେଷ ଜୀବନ ଅତିବାହିତ କରିଥିବାର ଜଣାଯାଏ । (୧୭୦) ନାରାୟଣ ନନ୍ଦ ସ୍ୱାମୀଙ୍କ 'ରୁଦ୍ରସୁଧାନିଧି'ରେ ମଠର ଉଲ୍ଲେଖ ପରିଦୃଷ୍ଟ ହୁଏ । (ପୃ୪୩)

ପ୍ରାଚୀନ ଉତ୍କଳରେ ବହୁ ମଠ ଥିବାର ଜଣାଯାଏ । ଭୌମଯୁଗରେ ପୁଷ୍ପଗିରି ବିହାରରେ ମଞ୍ଜୁଶ୍ରୀଙ୍କ ଭଳି ବିଦେଶୀ ଗୁରୁମାନେ ଆସି ଅଧ୍ୟୟନ କରୁଥିଲେ ।(୧୭୧) ପୁଷ୍ପଗିରି ବ୍ୟତୀତ ନଳତିଗିରି, ରତ୍ନଗିରି ଓ ଉଦୟଗିରିରେ ବିରାଟ ବିହାରମାନ ଥିଲା ଏବଂ ସେଠାକୁ ସାଧକଗଣ ଆଗମନ କରୁଥିଲେ ।(୧୭୨) ଶଙ୍କରାଚାର୍ଯ୍ୟ ପୁରୀରେ ମଠ ସ୍ଥାପନ କଲାପରେ ଉତ୍କଳରେ ସଂସ୍କୃତଶିକ୍ଷାର ପୁନରୁତ୍‌ଥାନ ହୋଇଥିଲା । (୧୭୩) ଭୁବନେଶ୍ୱର ଶିଳାଲିପିରୁ ଜଣାଯାଏ ଯେ, ଶୋଭନେଶ୍ୱର ମନ୍ଦିର ନିକଟରେ ରାଜା ବୈଦ୍ୟନାଥ ଏକ ମଠ ସ୍ଥାପନ କରିଥିଲେ । (୧୭୪) ଓଡ଼ିଶାରେ ଏବେ ଯେଉଁ ମଠମାନ ବିଭିନ୍ନ ସ୍ଥାନରେ ଦେଖାଯାଉଅଛି, ସେଗୁଡ଼ିକ ପୂର୍ବେ ବୌଦ୍ଧବିହାରର ଆଦର୍ଶରେ ଗଢ଼ିଉଠିଥିଲା ଏବଂ ଗୋଟିଏ ସଂପ୍ରଦାୟର ବିଦ୍ୟାଶିକ୍ଷା ପାଇଁ ଉଦ୍ଦିଷ୍ଟ ଥିଲା । (୧୭୫)

## (ଖ) ପାଠଶାଳା ଓ ଚାଟଶାଳୀ

ପ୍ରାଥମିକ ଶିକ୍ଷା ପାଇଁ ସେ ଯୁଗରେ ଗ୍ରାମ୍ୟ ପାଠଶାଳା ଓ ଚାଟଶାଳୀ ଥିବାର ଜଣାଯାଏ । ସାରଳା ଦାସ କହିଛନ୍ତି ଯେ ସେ ଗ୍ରାମପାଠଶାଳାରେ ଅଧ୍ୟୟନ କରି ନ ଥିଲେ । (୧୭୬) ଏହି ଉକ୍ତିରୁ ପ୍ରତିପନ୍ନ ହୁଏ ଯେ ସେତେବେଳେ ପ୍ରାଥମିକ ଶିକ୍ଷା ପାଇଁ ଓଡ଼ିଶାରେ ପାଠଶାଳାମାନ ଥିଲା । ଶ୍ରୀକୃଷ୍ଣ-ବଳରାମଙ୍କ ଶିକ୍ଷା-ପ୍ରସଙ୍ଗରେ କବି 'ପାଠମନ୍ଦିର' ତଥା 'ଚାଟଶାଳୀର' ଉଲ୍ଲେଖ କରିଅଛନ୍ତି । (୧୭୭) ରୁଦ୍ରସୁଧାନିଧି (ପୃ୪୭), ଚାଟଇଚ୍ଛାବତୀ (ପୃ୫) ଆଦିରେ ଚାଟଶାଳୀର

ଉଲ୍ଲେଖ ମିଳେ । ସେ କାଳର ଗ୍ରାମୀଣ ଗୃହଶାଳୀ ବା ଗୃହାଳୀ ଆଧୁନିକ କାଳର ଆରମ୍ଭ ପର୍ଯ୍ୟନ୍ତ ତିଷ୍ଠି ରହିଥିଲା ବୋଲି ପଣ୍ଡିତ ନୀଳକଣ୍ଠ ଦାସଙ୍କ ଜୀବନୀରୁ ଉପଲବ୍ଧ ହୁଏ । (୧୭୮)

## (ଗ) ଧନୀଲୋକଙ୍କ ଗୃହ

ଧନାଢ୍ୟ ବ୍ୟକ୍ତିମାନେ ସେ ଯୁଗରେ ନିଜ ଗୃହରେ ଗୁରୁଙ୍କୁ ରଖି ଆପଣାର ପୁଅ ଓ ଭାତୃଷ୍ପୁତ୍ରମାନଙ୍କୁ ଶିକ୍ଷା ଦେଉଥିଲେ । ସାରଳା ଦାସଙ୍କ ବର୍ଣ୍ଣନାରୁ ଏହା ପ୍ରତିପାଦିତ ହୁଏ । କବି କହନ୍ତି ଯେ, ଲୋକେଶ୍ୱର ଗୁରୁ ଖୃଷ୍ଟଙ୍କ ଆଦେଶରେ ଧୃତରାଷ୍ଟ୍ର ଓ ପଣ୍ଡୁଙ୍କୁ ଯୁଦ୍ଧାଦି ବିଦ୍ୟା ଶିକ୍ଷା ଦେଇଥିଲେ । (୧୭୯) କାଶୀପତି ନାମକ ଦ୍ୱିଜ କୌରବ ଓ ପାଣ୍ଡବଙ୍କୁ ପ୍ରଥମେ ଶିକ୍ଷାଦାନ କରିଥିଲେ । (୧୮୦)

## (ଘ) ଆଖଡ଼ା

ସାରଳା ଦାସଙ୍କ ଯୁଗରେ ଯୁଦ୍ଧ ଶିକ୍ଷାର ସ୍ଥଳକୁ 'ଆଖଡ଼ା' କୁହାଯାଉଥିଲା । ତାହା ବନଜଙ୍ଗଲ ମଧ୍ୟରେ ପ୍ରତିଷ୍ଠିତ ହେଉଥିଲା । କୌରବ ଓ ପାଣ୍ଡବ (୧୮୧), ଧୃତରାଷ୍ଟ୍ର-ପଣ୍ଡୁ (୧୮୨) ଓ ଏକଲବ୍ୟ (୧୮୩) ଯେଉଁ ସ୍ଥାନରେ ଯୁଦ୍ଧବିଦ୍ୟା ଅଭ୍ୟାସ କରୁଥିଲେ କବି ସେହି ସ୍ଥାନକୁ 'ଆଖଡ଼ା' ଆଖ୍ୟା ପ୍ରଦାନ କରିଅଛନ୍ତି । କୌରବ ପାଣ୍ଡବଙ୍କ ଆଖଡ଼ା ଇନ୍ଦ୍ରପ୍ରସ୍ଥ ନଗରର ବନ ମଧ୍ୟରେ ଥିଲା । (ଆ୯୦ପୃ) ଧୃତରାଷ୍ଟ୍ର-ପଣ୍ଡୁଙ୍କ ଆଖଡ଼ା ମଧ୍ୟ ଅରଣ୍ୟ ମଧ୍ୟରେ ପ୍ରତିଷ୍ଠା କରାଯାଇଥିଲା । (୧୮୪) କବି ଯୁଦ୍ଧବିଦ୍ୟାଶିକ୍ଷାର ସ୍ଥଳକୁ 'ଆଖଡ଼ା' ବୋଲି ଯାହା କହିଛନ୍ତି, ତାହା ଯଥାର୍ଥପକ୍ଷରେ ଓଡ଼ିଶାର କଥା । 'ଦାଣ୍ଡି ରାମାୟଣ'ରେ ଆଖଡ଼ାର ଉଲ୍ଲେଖ ଦେଖାଯାଏ । (ଆ୭୧ପୃ) 'ପାଇକଖେଦା'ରେ ଯୁଦ୍ଧଶିକ୍ଷାର ସ୍ଥାନକୁ ଆଖଡ଼ା ନାମ ଦିଆଯାଇଛି । (ପୃ୭) ଏବେ ପୁରୀର ପ୍ରତ୍ୟେକ ସାହିରେ ଥିବା ବ୍ୟାୟାମ ଶିକ୍ଷାର ସ୍ଥାନକୁ 'ଆଖଡ଼ାଘର' କୁହାଯାଉଅଛି ।

## (ଙ) ତୀର୍ଥସ୍ଥାନ

ମଧ୍ୟଯୁଗରେ ବ୍ୟକ୍ତିଗତ କର୍ମ ବା ସାମାଜିକ ଅନୁଷ୍ଠାନଠାରୁ ଧର୍ମକୁ ପୃଥକ କରାଯାଇ ପାରୁ ନ ଥିଲା । ପ୍ରାଚୀନ କାଳରେ ପ୍ରତ୍ୟେକ ବିଷୟ ଧାର୍ମିକ ଦୃଷ୍ଟି-

କୋଣରୁ ଦେଖାଯାଉଥିଲା । ଭାରତରେ ପ୍ରାଚୀନ ଯୁଗରେ ଶିକ୍ଷା ଓ ଧର୍ମ ମଧ୍ୟରେ ନିକଟତମ ସଂପର୍କ ବିଦ୍ୟମାନ ଥିଲା । ଫଳରେ ପ୍ରତ୍ୟେକ ତୀର୍ଥସ୍ଥାନ ଶିକ୍ଷା ଓ ସଂସ୍କୃତିର କେନ୍ଦ୍ରରେ ପରିଣତ ହୋଇଥିଲା । (୧୮୫)

ସାରଳା ଦାସଙ୍କ ଯୁଗରେ ତୀର୍ଥସ୍ଥାନ ଶିକ୍ଷାପୀଠରେ ପରିଣତ ହୋଇଥିଲା । ଅର୍ଜ୍ଜୁନଙ୍କ ପୁତ୍ର ନାଗାର୍ଜ୍ଜୁନ ବିଦ୍ୟାଶିକ୍ଷା ପାଇଁ କପିଳାସ ପର୍ବତକୁ ଆଗମନ କରିଥିଲେ ବୋଲି କବି କହନ୍ତି । (ସ୍ୱ୩୩୫-୩୪୦ପୃ) ଦ୍ରୋଣାଗୁରୁ ଚନ୍ଦ୍ରଭାଗା ତୀର୍ଥକୁ ଗମନ କରି ପରଶୁରାମଙ୍କୁ ଭେଟିଥିଲେ । (୧୮୬) ସେହି ପୀଠରେ ପରଶୁରାମ ବାସ କରୁଥିଲେ । ଦ୍ରୋଣଙ୍କ ଯଜୁର୍ବେଦ ଅଧ୍ୟୟନରେ ସନ୍ତୁଷ୍ଟ ହୋଇ ସେ ତାହାଙ୍କୁ ସେଠାରେ ଶାସ୍ତ୍ରାଦିର ଶିକ୍ଷା ପ୍ରଦାନ କରିଥିଲେ । (ଆ୯୭ପୃ)

ସେ କାଳରେ ତୀର୍ଥସ୍ଥାନମାନ ଶିକ୍ଷାକେନ୍ଦ୍ର ଥିବା କଥା ଅନ୍ୟ ଦୃଷ୍ଟାନ୍ତରୁ ସମର୍ଥନ କରାଯାଇପାରେ । କପିଳେନ୍ଦ୍ର ଦେବଙ୍କ କାଳରେ ପୁରୀଧାମ ହିନ୍ଦୁ ଭାରତର ପ୍ରଧାନ ସାଂସ୍କୃତିକ କେନ୍ଦ୍ର ଥିଲା । (୧୮୭) ଏହା ଏକ ଶିକ୍ଷାକେନ୍ଦ୍ର ରୂପରେ ଭାରତର ପ୍ରତ୍ୟେକ ପ୍ରାନ୍ତର ଲୋକଙ୍କୁ ଆକୃଷ୍ଟ କରୁଥିଲା । (୧୮୮) ଭାରତରେ କାଶୀ ଥିଲା ପ୍ରଧାନ ଶିକ୍ଷାକେନ୍ଦ୍ର । ପୁରୁଷୋତ୍ତମ ଦେବଙ୍କ କାଳରେ ଶମ୍ଭୁକର ବାଜପେୟୀଙ୍କ ପୁତ୍ର ବିଦ୍ୟାକର ବାଜପେୟୀ କାଶୀରେ ଅଧ୍ୟୟନ କରିବା ବୃତ୍ତାନ୍ତରୁ ଏହା ପ୍ରତିପାଦିତ ହୁଏ । (୧୮୯)

## (ଚ) ଛାତ୍ର ସଂଖ୍ୟା

ପୂର୍ବେ ଭାରତୀୟ ଶିକ୍ଷା ପୀଠମାନଙ୍କରେ ବହୁ ଛାତ୍ର ଅଧ୍ୟୟନ କରୁଥିବାର ଜଣାଯାଏ । ପ୍ରାଚୀନ କାଳରେ ଶୌନକ ନାମକ ଋଷି ଗୋଟିଏ ଅତି ବୃହତ୍ ବିଦ୍ୟାପୀଠ ପ୍ରସ୍ତୁତ-କରିଥିଲେ । (୧୯୦) ସେଥିରେ ଦଶ-ହଜାର ଶିଷ୍ୟ ଥିଲେ । (୧୯୧) ହୁଏନ୍‌ସାଂଙ୍କ ବିବରଣୀରୁ ଜଣାଯାଏ ଯେ, କନୌଜର ସଂଘାରାମରେ ଦଶ ହଜାର ସନ୍ନ୍ୟାସୀ ଅଧ୍ୟୟନ କରୁଥିଲେ । (୧୯୨)

ଓଡ଼ିଶାର ଶିକ୍ଷାକେନ୍ଦ୍ରମାନଙ୍କରେ ସେତେବେଳେ ବହୁ ଶିଷ୍ୟ ଅଧ୍ୟୟନ କରୁଥିଲେ ବୋଲି ଉପଲବ୍ଧ ହୁଏ । କବି କହନ୍ତି ଶାନ୍ତନୁ ଏକ ହଜାର ଶିଷ୍ୟଙ୍କୁ ଶିକ୍ଷାଦାନ କରୁଥିଲେ । (ମ୪୧୨ପୃ) ଦ୍ରୌପଦୀଙ୍କ ସ୍ୱୟମ୍ବରସଭାକୁ ବଶିଷ୍ଠ ନଅ ହଜାର, ଦୁର୍ବାସା ଏକ ଅୟୁତ, ଭରଦ୍ୱାଜ ଓ ଗୌତମ ଏକ ହଜାର ଲେଖାଏ ଶିଷ୍ୟ ଘେନି ଆଗମନ କରିଥିଲେ । (ଆ୨୭୦ପୃ) ବ୍ରହ୍ମେଶ୍ୱର ଓ ଲିଙ୍ଗରାଜ ମନ୍ଦିର-

ଗାନରେ ଥିବା ଚିତ୍ରରେ ଜଣେ ଗୁରୁ ବହୁ ଶିଷ୍ୟଙ୍କୁ ଉପଦେଶ ପ୍ରଦାନ କରୁଥିବାର ପରିଦୃଷ୍ଟ ହୁଏ । (୧୯୩)

## ୫. ଶିକ୍ଷକ

ପ୍ରାଚୀନ ଲେଖାମାନଙ୍କରୁ ଉପଲବ୍ଧ ହୁଏ ଯେ, ପୂର୍ବେ ଶିକ୍ଷକମାନେ ବ୍ରାହ୍ମଣ ଥିଲେ । ସେମାନେ ଯୋଗ୍ୟ ଓ ଉଦାର ପୁରୁଷ ଥିଲେ । ସ୍ମୃତି ତଥା ପୁରାଣର ବର୍ଣ୍ଣନାରୁ ଜଣାଯାଏ ଯେ, ବ୍ରାହ୍ମଣର ଷଟ୍‌କର୍ମ ମଧ୍ୟରେ ଅଧ୍ୟୟନ ଓ ଅଧ୍ୟାପନା ଅନ୍ୟତମ । (୧୯୪) ମନୁ କହନ୍ତି—ବ୍ରାହ୍ମଣ ବ୍ୟତୀତ ଅନ୍ୟ କେହି ବେଦ ଅଧ୍ୟୟନ ବା ଅଧ୍ୟାପନା କରିପାରିବେ ନାହିଁ । (୧୯୫) ପ୍ରାଚୀନ ଶିକ୍ଷକ-ମାନେ ବହୁବିଦ୍ୟାରେ ନିପୁଣ ହେଉଥିଲେ । ଗୁରୁ ଦ୍ରୋଣ ବେଦ, ବେଦାଙ୍ଗ ତଥା ଅସ୍ତ୍ରବିଦ୍ୟାରେ ପ୍ରବୀଣ ଥିଲେ । (୧୯୬) ନୈମିଷାରଣ୍ୟର କୁଳପତି ଶ୍ରୁତି, ସ୍ମୃତି, ଇତିହାସ ତଥା ଉପନିଷଦ୍‌ରେ ସୁପଣ୍ଡିତ ଥିଲେ । (୧୯୭) ପ୍ରାଚୀନ ଯୁଗର ଗୁରୁମାନେ ଥିଲେ ନିର୍ଲୋଭ ଓ ଉଦାର । ସତ୍ୟକାମ-ଜାବାଳଙ୍କର ପିତା ଅଜ୍ଞାତ ଥିଲେ । ତଥାପି ଗୁରୁ ଗୌତମ ଉଦାରତା ଦେଖାଇ ତାଙ୍କୁ ଶିଷ୍ୟ ରୂପରେ ଗ୍ରହଣ କରିନେଇଥିଲେ । (୧୯୮) ସେ ଯୁଗର ଗୁରୁ ନିଜର ତଥା ଶିଷ୍ୟଙ୍କର କଲ୍ୟାଣ କାମନା କରୁଥିଲେ । (୧୯୯) ଗୁରୁମାନେ ନିର୍ଲୋଭୀ ବି ଥିଲେ । ଉତଙ୍କ ଗୌତମଙ୍କୁ ଗୁରୁଦକ୍ଷିଣା ଗ୍ରହଣ କରିବା ପାଇଁ ବାରମ୍ବାର ଅନୁରୋଧ କଲେ ହେଁ ସେ ନୀରବ ରହିଥିଲେ ଏବଂ ନିଜେ କିଛି ଗ୍ରହିଁ ନଥିଲେ । (୨୦୦) ଉଦ୍ଦାଳକ ଋଷି ତାଙ୍କର ସମସ୍ତ ଧନ ଋତ୍ୱିକମାନଙ୍କୁ ଦାନ କରିଦେଇଥିଲେ । (୨୦୧)

ସାରଳା ମହାଭାରତର ପାଠରୁ ସ୍ମୃତି-ପୁରାଣ ସମକକ୍ଷ ବିବରଣ ଉପଲବ୍ଧ ହୁଏ । ସାରଳା ଦାସ ମଧ୍ୟ ଶିକ୍ଷକଙ୍କ ସମ୍ବନ୍ଧରେ ନାନା ସୂଚନା ପ୍ରଦାନ କରିଯାଇଛନ୍ତି । ନିମ୍ନ ଆଲୋଚନାରୁ ତାହା ପରିଜ୍ଞାତ ହେବ ।

### (କ) ଜାତି

ସାରଳା ଦାସଙ୍କ ପ୍ରଦତ୍ତ ତଥ୍ୟରୁ ଉପଲବ୍ଧ ହେଉଅଛି ଯେ, ବ୍ରାହ୍ମଣ-ମାନେ ହିଁ ସେତେବେଳେ ଶିକ୍ଷକର କାର୍ଯ୍ୟ କରୁଥିଲେ । କବି କହିଛନ୍ତି ଯେ, ଲୋକେଶ୍ୱର ଗୁରୁ ଦ୍ୱିଜ ଜାତିର ଥିଲେ ଓ ସେ ଧୃତରାଷ୍ଟ୍ର-ପଣ୍ଡୁଙ୍କୁ ବିଦ୍ୟାଶିକ୍ଷା

ଦେଇଥିଲେ । (୨୦୨) କୌରବ-ପାଣ୍ଡବଙ୍କ ପାଠଗୁରୁ ଥିଲେ କାଶୀପତି ନାମକ ବ୍ରାହ୍ମଣ । (୨୦୩) ଶ୍ରୀକୃଷ୍ଣ-ବଳରାମଙ୍କ ଗୁରୁ ଥିଲେ ଶାନ୍ତପନ ପଣ୍ଡା । (୨୦୪)

ବ୍ରାହ୍ମଣ ଜାତିର ଲୋକେ ପରମ୍ପରା କ୍ରମେ ଗୁରୁଗିରି କରୁଥିଲେ । ଜଣେ ଗୁରୁ ପୁରୁଷାନୁକ୍ରମିକ ଭାବରେ ଗୋଟିଏ ପରିବାର ସହିତ ସମ୍ପୃକ୍ତ ରହୁଥିଲେ । ଧୃତରାଷ୍ଟ୍ର ଓ ପଣ୍ଡୁ ଯେଉଁ ଲୋକେଶ୍ୱର ଗୁରୁଙ୍କଠାରୁ ବିଦ୍ୟା ଶିକ୍ଷା କରିଥିଲେ । ତାଙ୍କର ଚତୁର୍ଦ୍ଦଶ ପୁରୁଷ ଗୁରୁ ଥିଲେ ଏବଂ ପାରମ୍ପରିକ ଭାବରେ ବ୍ୟାସଦେବଙ୍କ ସେବା କରୁଥିଲେ ବୋଲି କବି ଦର୍ଶାଇ ଅଛନ୍ତି । (ଆ.୩୪ପୃ) ବନମାଳୀ ଦାସଙ୍କ 'ଗୃଟ ଛନ୍ଦାବଳୀ' କାବ୍ୟରେ ବର୍ଣ୍ଣିତ ଗୁରୁ କରୁଣାକର ବି ବ୍ରାହ୍ମଣ ଥିଲେ । (ପୃ୫)

## (ଖ) ଯୋଗ୍ୟତା

ତତ୍କାଳୀନ ଉତ୍କଳର ଶିକ୍ଷକବର୍ଗ ବହୁ ବିଦ୍ୟାରେ ସୁପଣ୍ଡିତ ଥିବାର ଉପଲବ୍ଧ ହୁଏ । ଲୋକେଶ୍ୱର ଗୁରୁ ବେଦ, ତନ୍ତ୍ର ଓ ଯୁଦ୍ଧାଦିବିଦ୍ୟାରେ ସୁନିପୁଣ ଥିଲେ । (୨୦୫) ଧୃତରାଷ୍ଟ୍ର ଓ ପଣ୍ଡୁଙ୍କ ଆଦ୍ୟ ଗୁରୁ ସଞ୍ଜୟ ବହୁ ବିଦ୍ୟାରେ ସୁପଣ୍ଡିତ ଥିବାରୁ ସେମାନଙ୍କୁ ରସାୟନ ବିଦ୍ୟା, ଧାତୁବିଦ୍ୟା, ଧନୁର୍ବିଦ୍ୟା, ଯୋଗ-ବିଦ୍ୟା, ତନ୍ତ୍ରବିଦ୍ୟା, ବେଦ ଓ ଶାସ୍ତ୍ରାଦି ଶିକ୍ଷା ଦେଇ ପାରିଥିଲେ । (୨୦୬) ଗୁରୁ ଶାନ୍ତପନ ବିଭିନ୍ନ ଭାଷା ସାହିତ୍ୟ, ବେଦ, ଜ୍ୟୋତିଷ, କାମଶାସ୍ତ୍ର, ତନ୍ତ୍ର, ଅସ୍ତ୍ର-ପ୍ରୟୋଗ, ଯୁଦ୍ଧାଦି ବିଦ୍ୟାରେ ସୁନିପୁଣ ଥିବାରୁ ଶ୍ରୀକୃଷ୍ଣ-ବଳରାମଙ୍କୁ ସେ ସମସ୍ତ ବିଦ୍ୟା ପ୍ରଦାନ କରି ପାରିଥିଲେ । (ମ୪୦୯-୪୧୦ପୃ) ଗୁରୁ ଦ୍ରୋଣ ବେଦ, ତନ୍ତ୍ର, ମଲ୍ଲବିଦ୍ୟା, ଧନୁର୍ବିଦ୍ୟା, ଅସ୍ତ୍ରଶସ୍ତ୍ରାଦିର ବିଦ୍ୟା, ଜ୍ୟୋତିଷ ଓ ବିଭିନ୍ନ ଶାସ୍ତ୍ର ଜ୍ଞାତ ଥିଲେ । (୨୦୭)

ଇତିହାସ-ପୃଷ୍ଠାରୁ ପରିଜ୍ଞାତ ହୁଏ ଯେ, କପିଳେନ୍ଦ୍ର ଦେବଙ୍କ କାଳରେ ବାସ୍ତବରେ ବହୁ ବିଶିଷ୍ଟ ପଣ୍ଡିତ ଉତ୍କଳରେ ଜନ୍ମଗ୍ରହଣ କରିଥିଲେ । (୨୦୮) ପ୍ରାଚୀନ ଉତ୍କଳରେ ବହୁ ବିଦ୍ୱାନ ବ୍ୟକ୍ତି ଥିଲେ । ବିକ୍ରମଶିଳା ବିହାରରେ ଶାକ୍ୟରକ୍ଷିତ ନାମକ ଜଣେ ଉତ୍କଳବାସୀ ପଣ୍ଡିତ ରହିଥିଲେ । (୨୦୯) ବିଷ୍ଣୁ-ପୁରାଣରେ କୁହାଯାଇଛି ଯେ, ଖ୍ରୀଷ୍ଟ ଜନୈକ କଳିଙ୍ଗବାସୀ ବ୍ରାହ୍ମଣ ପଣ୍ଡିତଙ୍କ-ଠାରୁ ମୁକ୍ତିରହସ୍ୟ ଶିକ୍ଷା କରିଥିଲେ । (୨୧୦) ପ୍ରସିଦ୍ଧ ଆଳଙ୍କାରିକ ବିଶ୍ୱନାଥ କବିରାଜଙ୍କ ପିତା ବହୁଭାଷାବିତ୍ ପଣ୍ଡିତ ଥିଲେ । (୨୧୧) ବହୁ ଉତ୍କଳୀୟ ବିଦ୍ୱାନ

ବ୍ୟକ୍ତି ଓଡ଼ିଶାର ବାହାରେ ଖ୍ୟାତି ଅର୍ଜନ କରିଥିଲେ । ସେମାନେ ହେଲେ— ଶତାନନ୍ଦ ଆଚାର୍ଯ୍ୟ, ବିଶ୍ୱନାଥ କବିରାଜ, ବିଦ୍ୟାକର ମିଶ୍ର ଓ ରାମଚନ୍ଦ୍ର ବାଜପେୟୀ । (୨୧୨)

## (ଗ) ଛାତ୍ରବତ୍ସଳତା

ସାରଳା ଦାସଙ୍କ ଯୁଗରେ ଉତ୍କଳର ଶିକ୍ଷକମାନେ ଛାତ୍ରମାନଙ୍କ ପ୍ରତି ସ୍ନେହଶୀଳ ଥିବାର ଜଣାଯାଏ । କବି-ବର୍ଣ୍ଣିତ କେତେକ ଦୃଶ୍ୟରୁ ଏହା ଅବଧାରିତ ହେବ । ଗୁରୁ ଶାନ୍ତିପନି ଶିଷ୍ୟମାନଙ୍କୁ ପୁତ୍ର ପରି ଦେଖୁଥିଲେ । ଶିଷ୍ୟମାନଙ୍କୁ ସେ ପୁତ୍ର ସମ୍ବୋଧନ କରିଥିବାରୁ ଏହା ପ୍ରତିପାଦିତ ହୁଏ । (ମ୪୧୨ପୃ) ଗୁରୁ ଦ୍ରୋଣ ମଧ୍ୟ ଏକଲବ୍ୟ ତଥା କୌରବ-ପାଣ୍ଡବଙ୍କୁ ପୁତ୍ର ବୋଲି ଜ୍ଞାନ କରୁଥିଲେ । ତେଣୁ ସେ ଏକଲବ୍ୟଙ୍କୁ କହିଥିଲେ—

"ଦ୍ରୋଣ ବୋଇଲେ ଆମ୍ଭର ତୁ ତ ପୁତ୍ର ବାବୁ
ଯାହାଙ୍କୁ ମାଇଲୁ ଆମ୍ଭ ପୁତ୍ର ସେହି ସବୁ ।" (ଆ୧୦୫ପୃ)

ଶାନ୍ତିପନି ସ୍ନେହରେ ଶିଷ୍ୟମାନଙ୍କୁ ବିଦ୍ୟା ଶିକ୍ଷା ଦେଉଥିଲେ ବୋଲି କବି-ବର୍ଣ୍ଣିତ ଉକ୍ତିରୁ ଜଣାଯାଏ । (୨୧୩) ପରଶୁରାମ ଦ୍ରୋଣଙ୍କୁ ସ୍ନେହମିଶ୍ରିତ କଥାରେ ବେଦଗାନ କରିବା ପାଇଁ କହିଥିଲେ । (୨୧୪) ଭାଗ୍ୟବନ୍ତ ଗୁରୁ ଶିଷ୍ୟଙ୍କୁ ପୁତ୍ରଭାବରେ ଦେଖୁଥିଲେ । (୨୧୫) ସ୍ନେହଶୀଳ ଗୁରୁ ଦ୍ରୋଣ କୌରବମାନଙ୍କୁ ଗଣ୍ଡା ନିମିତ୍ତ ପ୍ରେରଣ କରି ବାରଦିନ ପର୍ଯ୍ୟନ୍ତ ବାଟ ଚାହିଁ ରହିଥିଲେ । (୨୧୬)

ଦ୍ରୋଣାଚାର୍ଯ୍ୟ ସର୍ବଦା ଶିଷ୍ୟମାନଙ୍କୁ ସତ୍ ପରାମର୍ଶ ପ୍ରଦାନ କରୁଥିଲେ । ବିଦ୍ୟା ଶିକ୍ଷାର ଶେଷରେ ସେ କୌରବମାନଙ୍କୁ ସତ୍ ପରାମର୍ଶ ଦେଇ କହିଥିଲେ—

"ଯଦ୍ୟପି ତୁମ୍ଭଙ୍କୁ ବିଦ୍ୟା ଶିଖାଇଲୁ ଆମ୍ଭେ
ଭୀମ ଅର୍ଜୁନ ବିବାଦୀ ନ ହୋଇବି କେବେ ।
ତୁମ୍ଭେ ଯେ ଏକ ସୋଦର ନ ହୁଅ ତ ଭିନ୍ନ
ଯୁଧିଷ୍ଠିରଙ୍କି ପୂଜୁଥିବ ପଣ୍ଡୁରୁ ସମାନ ।
ଯୁଧିଷ୍ଠିର ସଙ୍ଗେ ଅପ୍ରୀତି ନ କରିବ କାଳେ
ଏହି ଶ୍ରୀ ସଂପଦ ବାବୁ ନ ରହେ ନଷ୍ଟିଲେ ।" (ଆ୧୦୭ପୃ)

ଦୁର୍ଯ୍ୟୋଧନଙ୍କୁ ଲକ୍ଷ୍ମୀ ତ୍ୟାଗ କରି ଚାଲିଗଲେ । ସେତେବେଳେ ଗୁରୁ ଦ୍ରୋଣ ତାଙ୍କୁ ବାଟ ଦେଖାଇ ବଳରାମଙ୍କର ଶରଣାପନ୍ନ ହେବାକୁ ଉପଦେଶ ଦେଇଥିଲେ ।

"ଦ୍ରୋଣ ବୋଇଲେ ବାବୁରେ ବୁଦ୍ଧି ଏକ ଅଛି
ଭଗତଜନବତ୍ସଳ ଦେବ ଶିରୀବତ୍ସି ।
ଶକୁନି ସହ ଦ୍ୱାରକା କରନ୍ତୁ ପ୍ରୟାଣ
ଆମ୍ଭ ସପକ୍ଷ ଅଟନ୍ତି ଦେବ ଶଙ୍କର୍ଷଣ ।
ତାଙ୍କୁ ଭକ୍ତି କରି ତୁମ୍ଭେ ଯାଇଣ କହନ୍ତେ
ତାଙ୍କ ଅନୁରୋଧେ ଲକ୍ଷ୍ମୀ ଦେବେ ଜଗନ୍ନାଥେ ।" (ଉ୭୧ପୃ)

ପାଣ୍ଡବମାନଙ୍କ ପାଇଁ ତାଙ୍କ କରୁଣାର ଅଭାବ ନଥିଲା । ଜରାସନ୍ଧଦ୍ୱାରା ଭୀମ ନିହତ ହେବାର ସମ୍ବାଦ ପ୍ରାପ୍ତ ହୋଇ ସେ ବିକଳଭାବରେ କ୍ରନ୍ଦନ କରି-ଥିଲେ । (ସ୨୯ପୃ) ପାଣ୍ଡବମାନେ ଜତୁଗୃହରେ ଦଗ୍ଧ ହୋଇଥିବାର ଦୁଃସମ୍ବାଦ ଶ୍ରବଣକରି ସେ ମୂର୍ଚ୍ଛାଗତ ହେଲେ । (ଆ୧୭୨ପୃ) କୌରବଙ୍କ ପକ୍ଷରେ ସେ ଯୁଦ୍ଧ କରିଥିଲେ ହେଁ ଯୁଧିଷ୍ଠିରଙ୍କୁ ଆଶୀର୍ବାଦ କରିଥିଲେ । (ଭୀ୭୧ପୃ)

ଗୁରୁ ଦ୍ରୋଣ ସମଦର୍ଶୀ ବ୍ୟକ୍ତି ଥିଲେ । ତାଙ୍କ ପାଖରେ ଉଚ୍ଚ ନୀଚ, ଧନୀ ଦରିଦ୍ରର ଭେଦଭାବ ନ ଥିଲା । ଏକଲବ୍ୟ ତାଙ୍କ ସମୀପକୁ ଯୁଦ୍ଧବିଦ୍ୟା ଶିକ୍ଷା କରିବାକୁ ଆସିବା ବେଳେ ସେ ତାକୁ ଗ୍ରହଣ କରିବା ନିମିତ୍ତ ଆଦେଶ ପ୍ରଦାନ କରିଥିଲେ । (୨୧୭) ରାଜପୁତ୍ର ଓ କିରାତ ତାଙ୍କ ଦୃଷ୍ଟିରେ ସମାନ ଥିଲେ ।

"ଗୁରୁ ଏକ ବିଦ୍ୟା ଏକ ନାହିଁ ତହିଁ ଭିନ୍ନ
ସେ କିରାତ ତୁମ୍ଭେ ଅଟ ନୃପତି ନନ୍ଦନ ।" (ଆ୧୦୬ପୃ)

ଏଠାରେ ଉଲ୍ଲେଖଯୋଗ୍ୟ ଯେ ମୂଳ ମହାଭାରତରେ ଦ୍ରୋଣଙ୍କଠାରେ ପକ୍ଷପାତିତ୍ୱ ଦୋଷ ଆରୋପିତ । ବ୍ୟାସଦେବଙ୍କ ବର୍ଣ୍ଣନାରେ ଅଛି ଯେ, ଦ୍ରୋଣ ସବୁ ଶିଷ୍ୟଙ୍କୁ ବୃହଦାକାର ପାତ୍ର ଦେଇ ଜଳ ଆଣିବାକୁ ପ୍ରେରଣ କରୁଥିଲେ । ସେ ନିଜ ପୁତ୍ର ଅଶ୍ୱତ୍ଥାମାଙ୍କୁ କମଣ୍ଡଳୁଟିଏ ଦେଇ ପଠାଉଥିଲେ । ଫଳରେ ସେ ସମସ୍ତଙ୍କ ପୂର୍ବରୁ ପିତାଙ୍କ ପାଖରେ ପହଞ୍ଚି ଯାଉଥିଲେ । ସେହି ଅବସରରେ ଦ୍ରୋଣ ତାଙ୍କୁ ଅସ୍ତ୍ରଚାଳନର ବିଶେଷ କୌଶଳ ଶିଖାଇ ଦେଉଥିଲେ । (୨୧୮) ଏକଲବ୍ୟ ନିଷାଦସନ୍ତାନ ଥିବାରୁ ଦ୍ରୋଣ ତାଙ୍କୁ ଶିଷ୍ୟ ରୂପରେ ଗ୍ରହଣ କଲେ ନାହିଁ ବୋଲି ମୂଳ ମହାଭାରତରେ ଅଛି । (୨୧୯) କିନ୍ତୁ ସାରଳା ଦାସ କହନ୍ତି ଯେ, ଜରା ଶବରକୁ ଦ୍ରୋଣ ରଖିବା ପାଇଁ କହିଥିଲେ ହେଁ ଦୁର୍ଯ୍ୟୋଧନ ତାହା କରାଇଦେଲେ ନାହିଁ । (ଆ୧୦୦ପୃ)

## (ଘ) ଲୋଭହୀନତା

ସାରଳାଙ୍କ ଯୁଗର ଶିକ୍ଷକ କପରି ନର୍ଲୋଭ ଥିଲେ, ତାହା ଦେଖିବାର ବିଷୟ । କେତେକ ଉଦାହରଣରୁ ଏହା ଜଣାପିବ । ଶ୍ରୀକୃଷ୍ଣ ବିଦ୍ୟାଶିକ୍ଷା ଶେଷ ହେବା ପରେ ଗୁରୁଙ୍କୁ କହିଲେ—

"ଶ୍ରୀ ହରି କହିଲେ ଶାନ୍ତପନ ଗୁରୁ ଆଗ
ଏବେ ଦକ୍ଷିଣା ଆମ୍ଭଙ୍କୁ ଗୁରୁ ତୁମ୍ଭେ ମାଗ ।" (ମ୪୧୪ପୃ)

କିନ୍ତୁ ଗୁରୁ ଶାନ୍ତପନ ଲୋଭଶୂନ୍ୟ ଥିଲେ । ସେ ସ୍ପଷ୍ଟଭାବରେ ଜଣାଇଲେ ଯେ ତାଙ୍କର ଧନରେ ପ୍ରୟୋଜନ ନାହିଁ । (୨୨୦) ଶାନ୍ତପନଙ୍କ ପରି ଗୁରୁ ଦ୍ରୋଣ ମଧ୍ୟ ଲୋଭଶୂନ୍ୟ ଥିଲେ । ସେ ମଧ୍ୟ ଗୁରୁଦକ୍ଷିଣା ନେବା ପାଇଁ ସମ୍ମତ ହୋଇ ନ ଥିଲେ । ସେ ଗୁରୁଦକ୍ଷିଣାକୁ ଅସ୍ୱୀକାର କରି କହିଥିଲେ—"ଧନଦାନେ ଭୂମିଦାନେ ନାହିଁ ପ୍ରୟୋଜନ ।" (ଆ୧୦୭ପୃ) ପରଶୁରାମ ମଧ୍ୟ ବିନା ଦକ୍ଷିଣାରେ ଦ୍ରୋଣାଚାର୍ଯ୍ୟଙ୍କୁ ଅସ୍ତ୍ରଶସ୍ତ୍ରର ଶିକ୍ଷା ଦେଇଥିଲେ । ସେ ତାଙ୍କୁ ସମସ୍ତ ବିଦ୍ୟା ଦାନ ରୂପରେ ପ୍ରଦାନ କରିଥିଲେ । (୨୨୧) 'ହରିବଂଶ'ରେ ଶାନ୍ତପନ ଗୁରୁଦକ୍ଷଣା ନେବା ପାଇଁ ଅସମ୍ମତ ହେବା କଥା ଅଛି । (ପୃ ୫୮୪)

## (ଙ) ଆୟପନ୍ଥା

ପ୍ରାଚୀନ ଯୁଗରେ ଭାରତୀୟ ଶିକ୍ଷକମାନଙ୍କର ଆୟର ପ୍ରଧାନ ପନ୍ଥା ଥିଲା—ଗୁରୁଦକ୍ଷିଣା ଏବଂ ରାଜା ବା ଧନୀବ୍ୟକ୍ତିଙ୍କ ଦାନ । ଶିଷ୍ୟଗଣ ଶିକ୍ଷାକାଳ ମଧ୍ୟରେ ନିୟମିତ ବା ସାମୟିକ ଭାବରେ ଗୁରୁଙ୍କୁ କିଛି ବେତନ ରୂପରେ ଦେଉ ନ ଥିଲେ । ମନୁଙ୍କ ବର୍ଣ୍ଣନାରୁ ଏହା ସ୍ପଷ୍ଟ । ମନୁ କହନ୍ତି ଶିକ୍ଷା ସମାପ୍ତ ନ ହେବା ଯାଏଁ ଶିଷ୍ୟ ଗୁରୁଙ୍କୁ କିଛି ଦେବ ନାହିଁ । (୨୨୨) ବିଷ୍ଣୁପୁରାଣରେ କୁହାଯାଇଛି ଯେ, ଶିକ୍ଷା ସମାପ୍ତ ହେବା ପରେ ଶିଷ୍ୟ ଗୁରୁଙ୍କୁ ଦକ୍ଷିଣା ଦେବା ଉଚିତ୍ । (୨୨୩) ସେ କାଳରେ ସମାବର୍ତ୍ତନଉତ୍ସବ ପରେ ଶିଷ୍ୟଗଣ ଗୁରୁଙ୍କୁ ଭୂମି, ଗୋରୁ, ଅଶ୍ୱ, ଉପାନହ, ଆସନ, ଅନ୍ନ, ଶାକ, ବସ୍ତ୍ର ଓ ସୁବର୍ଣ୍ଣ ଦାନ କରୁଥିଲେ । (୨୨୪) ରାଜାମାନେ ମଧ୍ୟ ଶିକ୍ଷାର୍ଥୀ ତଥା ଶିକ୍ଷାଦାତାଙ୍କୁ ଦାନ ଦେଉଥିଲେ । ରାମାୟଣରେ ବର୍ଣ୍ଣିତ ଅଛି ଯେ, ଶ୍ରୀରାମ ବନକୁ ଗମନ କଲାବେଳେ ଆଚାର୍ଯ୍ୟ ଓ ବ୍ରହ୍ମଚାରୀମାନଙ୍କୁ ଧନରତ୍ନ ଦାନ କରିଥିଲେ । (୨୨୫) ଇତିହାସରୁ ଜଣାଯାଏ ଯେ ଏହି ବ୍ୟବସ୍ଥା ମୋଗଲ କାଳ ପର୍ଯ୍ୟନ୍ତ ପ୍ରଚଳିତ ଥିଲା । ମୋଗଲ ଯୁଗରେ ଶିଷ୍ୟମାନେ

ନିୟମିତ ବେତନ ପ୍ରଦାନ କରୁ ନ ଥିଲେ । ଅଧିକନ୍ତୁ ଗୁରୁ ସେମାନଙ୍କର ବାସ ଓ ଭୋଜନର ବ୍ୟବସ୍ଥା କରୁଥିଲେ । ଶିକ୍ଷକମାନେ ବିବାହ ଓ ଶୁଦ୍ଧିକ୍ରିୟା ଭଳି ବିଶେଷ ସମୟରେ ରାଜାମାନଙ୍କଠାରୁ ଦାନ ପାଉଥିଲେ । ଏହା ଥିଲା ସେମାନଙ୍କର ପ୍ରଧାନ ଆୟ । ଶିଷ୍ୟମାନେ କେବଳ ଶିକ୍ଷା ଶେଷ ହେବାପରେ ଗୁରୁଦକ୍ଷିଣା ଦେଉଥିଲେ । (୨୨୭)

ପଞ୍ଚଦଶ ଶତାବ୍ଦୀରେ ଏହି ମହାଭାରତୀୟ ଧାରା ଉତ୍କଳରେ ଉଦ୍‌ଘାଟିତ ହୋଇଥିଲା । ସେତେବେଳେ ବି ଉତ୍କଳୀୟ ଶିକ୍ଷକ-ସମାଜର ମୁଖ୍ୟ ଆୟ ଥିଲା— ଗୁରୁଦକ୍ଷିଣା ଓ ଦାନ । ସେ କାଳରେ ଗୁରୁଦକ୍ଷିଣାଦେବା ରୀତି ଥିବାରୁ ଯୁଧିଷ୍ଠିର (ଆ୧୦୭ପୃ), ଶ୍ରୀକୃଷ୍ଣ (ମ୪୧୪ପୃ) ଓ ଏକଲବ୍ୟ (ଆ୧୦୬ପୃ) ଦ୍ରୋଣଙ୍କୁ ଗୁରୁ-ଦକ୍ଷିଣା ନେବା ପାଇଁ ଅନୁରୋଧ କରିଥିଲେ । ଗୁରୁଦକ୍ଷିଣା ନ ଦେଲେ ବିଦ୍ୟା ସିଦ୍ଧ ହୁଏ ନାହିଁ ବୋଲି ଲୋକେ ବିଶ୍ୱାସ କରୁଥିଲେ । ନିମ୍ନ ଉକ୍ତିମାନଙ୍କରୁ ତାହା ସ୍ପଷ୍ଟ ହୁଏ ଯଥା—

"ଗୁରୁ ଦକ୍ଷିଣା ନ ଦେଇ ସାଧନ୍ତି ଯେ ବିଦ୍ୟା
ସେ କି ପ୍ରାପତ ହୁଅଇ ହେବ କି ସେ ଯୋଦ୍ଧା ।" (ଆ୧୦୭ପୃ)
"ଦକ୍ଷିଣା ନ ଦେଲେ ବିଦ୍ୟା ପ୍ରାପତ ନୁହଇ
ଆଜ୍ଞା ଦେଲେ ମୁକ୍ତ ହେବୁ ଦକ୍ଷିଣା ଯେ ଦେଇ ।" (ମ୪୧୪ପୃ)

ସେକାଳରେ ରାଜାମାନେ ଶିକ୍ଷାଦାନରେ ନିଯୁକ୍ତ ଋଷିମାନଙ୍କୁ ଦାନ ଦେଉଥିଲେ । ଧର୍ମଯଜ୍ଞ କାଳରେ ଋଷିମାନେ ଯୁଧିଷ୍ଠିରଙ୍କ ଠାରୁ ବହୁ ଧନରତ୍ନ ଦାନସ୍ୱରୂପ ପ୍ରାପ୍ତହେବା ବର୍ଣ୍ଣନାରୁ ଏହା ପ୍ରତିପାଦିତ ହୁଏ । (ମ୩୩୦ପୃ) ସାରଳାଙ୍କ ଯୁଗରେ ବ୍ରାହ୍ମଣମାନେ ଶିକ୍ଷକର କାର୍ଯ୍ୟ କରୁଥିଲେ । ତେଣୁ କବି ସବୁଠି ବ୍ରାହ୍ମଣମାନଙ୍କୁ ରାଜ୍ୟମାନେ ଦାନ ଦେବା ଏବଂ ସେମାନଙ୍କ ପାଇଁ ଶାସନ ପ୍ରତିଷ୍ଠା କରିବା କଥା ଉଲ୍ଲେଖ କରିଅଛନ୍ତି । ଦ୍ରୌପଦୀଙ୍କ ବିବାହ କାଳରେ (ଆ୩୧୨ପୃ) ଯୁଧିଷ୍ଠିରଙ୍କ ରାଜସୂୟଯଜ୍ଞ ସମୟରେ (ସ୨୮୮ପୃ) ଏବଂ ଧର୍ମଯଜ୍ଞ ବେଳେ (ମ୩୩୦ପୃ) ବ୍ରାହ୍ମଣମାନେ ଦାନ ପାଇବା କଥା କବି ବର୍ଣ୍ଣନା କରିଅଛନ୍ତି । କପିଳା ଗାଈର ବଧ ପରେ ଅର୍ଜୁନ ଯେଉଁ ଯଜ୍ଞ କଲେ ସେତେବେଳେ ଲକ୍ଷେ ବ୍ରାହ୍ମଣ ଶାସନ ପ୍ରତିଷ୍ଠା କରାଯାଇଥିଲା ବୋଲି ସାରଳା ଦାସ କହିଛନ୍ତି । (ଆ୧୯୩ପୃ)

ରାଜାମାନେ ଋଷି ତଥା ତାଙ୍କର ଶିଷ୍ୟମାନଙ୍କୁ ବିବାହାଦି ଉତ୍ସବରେ ନିମନ୍ତ୍ରଣ କରୁଥିଲେ । ସେଥିରୁ ପ୍ରତିପାଦିତ ହୁଏ ଯେ ସେମାନେ ଶିକ୍ଷାର ପୃଷ୍ଠ-ପୋଷକତା କରୁଥିଲେ । ସାରଳା ଦାସ କହିଛନ୍ତି ଯେ ଦ୍ରୌପଦୀଙ୍କ ସ୍ୱୟମ୍ବର ସଭାକୁ ବଶିଷ୍ଠ, ଦୁର୍ବାସା, ଗୌତମ ଓ ଭରଦ୍ୱାଜ ପ୍ରଭୃତି ଋଷିମାନେ ଶିଷ୍ୟମାନଙ୍କ ସହ ନିମନ୍ତ୍ରିତ ହୋଇ ଆସିଥିଲେ । (ଆ୨୭୦ପୃ) ଉତ୍ତରା କନ୍ୟାର ବିବାହ-ବେଳେ ମଧ୍ୟ ମାର୍କଣ୍ଡେୟ ଋଷି ଶିଷ୍ୟଗଣଙ୍କ ସହ ଉପସ୍ଥିତ ଥିଲେ । (ବି୧୮୦ପୃ)

ଇତିହାସରୁ ଉପଲବ୍ଧ ହୁଏ ଯେ ପ୍ରାଚୀନ ଉତ୍କଳରେ ରାଜାମାନେ ଶିକ୍ଷାର ପୃଷ୍ଠପୋଷକତା କରୁଥିଲେ । ଶୁଭକର କେଶରୀଙ୍କ ଏକ ତାମ୍ରଶାସନରୁ ଜଣାଯାଏ ଯେ, ସେ ଦକ୍ଷିଣ ତୋଷାଳୀର ମଠମାନଙ୍କର ଅଭିବୃଦ୍ଧି ପାଇଁ ଆଦେଶ ପ୍ରଦାନ କରିଥିଲେ । (୨୨୭) ରାଜା ବୈଦ୍ୟନାଥ ଶୋଭନେଶ୍ୱର ମନ୍ଦିରର ଚତୁଃପାର୍ଶ୍ୱରେ ମଠମାନ ସ୍ଥାପନ କରିଥିଲେ । (୨୨୮) ନରସିଂହ ଦେବଙ୍କର ଭୁବନେଶ୍ୱର ଶିଳାଲିପିରୁ ଜଣାଯାଏ ଯେ, ସେ ସିଦ୍ଧେଶ୍ୱର ମଠକୁ ଭୂମି ଦାନ କରିଥିଲେ ଏବଂ ତାହାଦ୍ୱାରା ତାପସମାନଙ୍କର ଭୋଜନ-ବ୍ୟବସ୍ଥା କରିବା ପାଇଁ ନିର୍ଦ୍ଦେଶ ଦେଇ-ଥିଲେ । (୨୨୯) କପିଳେନ୍ଦ୍ର ଦେବ ବ୍ରାହ୍ମଣମାନଙ୍କୁ ଶାସନମାନ ଦାନ କରୁଥିଲେ । (୨୩୦) ପୁରୁଷୋତ୍ତମ ଦେବ ବାଲେଶ୍ୱରର ପୋଚେଶ୍ୱର ଭଟ୍ଟ ନାମକ ବ୍ରାହ୍ମଣଙ୍କୁ ଭୂମି ଦାନ କରିଥିଲେ । (୨୩୧)

## ୭. ଛାତ୍ର

ପ୍ରାଚୀନ ଭାରତର ଶିଷ୍ୟଗଣ ଗୁରୁଙ୍କ ପ୍ରତି ଯଥେଷ୍ଟ ଭକ୍ତି ପ୍ରଦର୍ଶନ କରୁଥିଲେ । ତୈତ୍ତିରୀୟ ଉପନିଷଦରେ ଗୁରୁଙ୍କୁ ଦେବତା ରୂପରେ ଦେଖିବା ପାଇଁ (ଆଚାର୍ଯ୍ୟ ଦେବୋ ଭବ) ଉପଦେଶ ଦିଆଯାଇଅଛି । (୨୩୨) ଭାଗବତ ଅନୁସାରେ ହୃଦୟରେ ଜ୍ଞାନ-ପ୍ରଦୀପ ପ୍ରଜ୍ୱଳନ କରୁଥିବା ଗୁରୁ ସାକ୍ଷାତ୍ ଭଗବାନ । (୨୩୩) ବ୍ରହ୍ମବୈବର୍ତ୍ତ ପୁରାଣରେ ଗୁରୁଙ୍କୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ଆଦ୍ୟାପ୍ରକୃତି, ଚନ୍ଦ୍ରମା, ଅଗ୍ନି, ସୂର୍ଯ୍ୟ, ବାୟୁ, ବରୁଣ, ପିତା, ମାତା, ବନ୍ଧୁ ଓ ପରମାତ୍ମା ବୋଲି କୁହାଯାଇଅଛି । (୨୩୪) ସ୍କନ୍ଦପୁରାଣ କହେ—ଗୁରୁଙ୍କୁ ଅବହେଳା କଲେ ଉନ୍ନତିର ପଥ ବିନଷ୍ଟ ହୁଏ । (୨୩୫) ବ୍ରହ୍ମାଣ୍ଡ ପୁରାଣରେ ଅଛି—ଗୁରୁ ଦେବତା ଧର୍ମ ଓ ପରବ୍ରହ୍ମ । (୨୩୬) ରାମାୟଣ ମତରେ ଗୁରୁସେବା କଲେ ସ୍ୱର୍ଗ, ଧନ-ଧାନ୍ୟ ଓ ବିଦ୍ୟା ମିଳେ । (୨୩୭) ବିଷ୍ଣୁପୁରାଣରେ ଶୌଚାଚାର ସହ ଗୁରୁସେବା

କର୍ତ୍ତବ୍ୟ ବୋଲି ଉକ୍ତ । (୨୩୮) ମାର୍କଣ୍ଡେୟ ପୁରାଣ ମତରେ ଗୁରୁ ଦଣ୍ଡାୟମାନ ହେଲେ ଶିଷ୍ୟ ଦଣ୍ଡାୟମାନ ହେବ; ଗୁରୁ ଉପବେଶନ କଲେ ଶିଷ୍ୟ ଉପବେଶନ କରିବ । (୨୩୯) ବ୍ରହ୍ମବୈବର୍ତ୍ତ ପୁରାଣରେ ଅଛି ଯେ ଗୁରୁଙ୍କୁ ଦର୍ଶନମାତ୍ରେ ମଥା-ନତ ନ କଲେ ମାନବ କାଳସୂତ୍ର ନାମକ ନରକରେ ପଡ଼େ । (୨୪୦) ଆରୁଣି, ଉତଙ୍କ ଓ ଉପମନ୍ୟୁ ପ୍ରଭୃତି ସେକାଳର ଶିଷ୍ୟମାନେ ନାନା ଭାବରେ ଗୁରୁସେବା କରିଥିଲେ ବୋଲି ସଂସ୍କୃତ ମହାଭାରତରୁ ଉପଲବ୍ଧ ହୁଏ । (୨୪୧)

## (କ) ଗୁରୁଭକ୍ତି

ଏହି ମହାଭାରତୀୟ ପରମ୍ପରା ପଞ୍ଚଦଶ ଶତାବ୍ଦୀର ଓଡ଼ିଆ ସମାଜ ମଧ୍ୟରେ ଉଦ୍ଭାବିତ ରହିଥିଲା ବୋଲି ସାରଳା ଦାସଙ୍କ ବର୍ଣ୍ଣିତ କେତେକ ଚିତ୍ରରୁ ପ୍ରତି-ପାଦିତ ହୁଏ । ଗୁରୁ ସମସ୍ତପ୍ରକାର ଉନ୍ନତିର ମୂଳ ବୋଲି ସେତେବେଳେ ଲୋକ-ବିଶ୍ୱାସ ଥିଲା । (୨୪୨) କବି କହନ୍ତି ଯେ ଗୁରୁଙ୍କ କଥା ନ ମାନିଲେ ବିଦ୍ୟାଲାଭ ହୁଏନାହିଁ । (୨୪୩) ଗୁରୁଙ୍କୁ ନିନ୍ଦା କଲେ ଲୋକ ମୂର୍ଖ ଓ ଅଜ୍ଞାନୀ ହୁଏ । (ବି୭ପୃ) ଗୁରୁଙ୍କ ପ୍ରତି ବିଶ୍ୱାସଘାତକତା କଲେ ଜୀବନରେ ଅକୀର୍ତ୍ତି ମିଳେ ଓ ମୃତ୍ୟୁପରେ ନରକରେ ପଡ଼ିବାକୁ ହୁଏ । (ଦ୍ରୋ୧୦୨ପୃ) ତାଙ୍କ ପାଖରେ ମିଥ୍ୟା କହିଲେ ମଣିଷ ନରକରେ ପଡ଼େ । (୨୪୪) ଗୁରୁ ଯାହା କହନ୍ତି ତାହା କଦାପି ଅନ୍ୟଥା ହୁଏନାହିଁ । (୨୪୫)

ସେ ଯୁଗରେ ଗୁରୁ ସର୍ବଦା ଶିଷ୍ୟର ନମସ୍ୟ ବୋଲି ବିବେଚନା କରା-ଯାଉଥିଲା । ତେଣୁ ଯୁଧିଷ୍ଠିର ମହାଭାରତ ସମର ଆରମ୍ଭ ହେବା ପୂର୍ବରୁ ଗୁରୁ ଦ୍ରୋଣାଚାର୍ଯ୍ୟଙ୍କୁ ବନ୍ଦନା କରିଥିଲେ । (ଭୀ୭୧ପୃ) ଅର୍ଜୁନ ବନବାସ କରିବାକୁ ଯିବାବେଳେ ଗୁରୁ ଦ୍ରୋଣାଚାର୍ଯ୍ୟଙ୍କୁ ପ୍ରଣାମ କରି ଯାତ୍ରା କରିଥିଲେ । (୨୪୬) ଅଭିମନ୍ୟୁ ଯୁଦ୍ଧାରମ୍ଭ ବେଳେ ଗୋଟିଏ ଶର ପେଷଣ କରି ଦ୍ରୋଣଙ୍କ ପାଦରେ ନମସ୍କାର ଜଣାଇଥିଲେ । (ଦ୍ରୋ୨୧ପୃ) ଶ୍ରୀକୃଷ୍ଣ-ବଳରାମ ସର୍ବଦା ଗୁରୁ ଶାନ୍ତିପନଙ୍କୁ ନମସ୍କାର କରୁଥିଲେ ଓ ବହୁଭାବରେ ପୂଜା କରୁଥିଲେ । (୨୪୭)

ସାରଳାଙ୍କ ପ୍ରଦର୍ଶିତ ଆଦର୍ଶ ହିଁ ଓଡ଼ିଶାର ଆଦର୍ଶ । ବ୍ରହ୍ମେଶ୍ୱର ଓ ଲିଙ୍ଗରାଜ ମନ୍ଦିରର ଗାତ୍ରରେ ଥିବା ଚିତ୍ରରେ ଶିଷ୍ୟଗଣ କରଯୋଡ଼ି ବିନମ୍ରଭାବରେ ଗୁରୁଙ୍କ ସମୀପରେ ଦଣ୍ଡାୟମାନ ହୋଇଥିବାର ଦେଖାଯାଏ । (୨୪୮) 'ରାମବିଭା'

କାବ୍ୟରେ ରାମଚନ୍ଦ୍ର, ଗୁରୁ ବଶିଷ୍ଠଙ୍କୁ ତଳେ ମୁଣ୍ଡ ଲଗାଇ ପ୍ରଣାମ କରିବା କଥା ବର୍ଣ୍ଣିତ । (ପୃ୭)

## (ଖ) ଗୁରୁସେବା

ସାରଳା ଦାସଙ୍କ ଯୁଗରେ ଶିଷ୍ୟମାନେ ଗୁରୁଙ୍କର ସେବା ବିନା ଦ୍ୱିଧାରେ କରୁଥିଲେ । କବିଙ୍କ ବର୍ଣ୍ଣନାରୁ ଏହା ପ୍ରତିପାଦିତ ହୁଏ ।

ଶ୍ରୀକୃଷ୍ଣ-ବଳରାମ ପ୍ରଭୃତି ଶିଷ୍ୟମାନଙ୍କୁ ଗୁରୁ ଶାନ୍ତିପନି ବନସ୍ତରୁ କାଠ ଆଣିବା ନିମିତ୍ତ ଆଦେଶ ଦେଇଥିଲେ ଏବଂ ସେମାନେ ତାହା ପାଳନ କରିଥିଲେ । (ମ୪୦୮ପୃ) ଗୁରୁପତ୍ନୀଙ୍କ ଆଦେଶରେ ଶ୍ରୀକୃଷ୍ଣ ବରୁଣାଳୟ ଓ ଯମାଳୟକୁ ଯାଇ ତାଙ୍କର ମୃତ ପୁତ୍ରମାନଙ୍କୁ ଫେରାଇ ଆଣିଥିଲେ । (୨୪୯) ଦ୍ରୋଣଙ୍କ ପତ୍ନୀ କୃପୀଙ୍କର ଶ୍ରାଦ୍ଧ ପାଇଁ ଗଣ୍ଡାମାଂସ ଆବଶ୍ୟକ ହେବାରୁ କୌରବମାନେ ବନସ୍ତକୁ ଯାଇ ଗଣ୍ଡା ଓ ହରିଣ ନେଇ ଆସିଥିଲେ ।(୨୫୦) ଜବର ଶରରେ କୌରବମାନେ ନିହତ ହୋଇଥିଲେ । ଗୁରୁ ଦ୍ରୋଣ ଆଦେଶ ଦେବାରୁ ଜବ ସେମାନଙ୍କୁ ଜୀବନ୍ୟାସ ଦେଲା । ଗୁରୁଙ୍କ ଆଦେଶରେ ସେ ନିଜର ବାମହସ୍ତର ବୃଦ୍ଧାଙ୍ଗୁଳି ଅକାତରେ କାଟି ସମର୍ପଣ କଲା । (ଆ୧୦୫-୧୦୬ପୃ) ସେ ଦ୍ରୋଣଙ୍କ ସମୀପକୁ ଯୁଦ୍ଧବିଦ୍ୟା ଶିକ୍ଷା କରିବା ପାଇଁ ଯିବାବେଳେ ଗୋଟିଏ ଗଣ୍ଡା ନେଇ ତାଙ୍କ ଆଖଡ଼ାକୁ ଯାଇଥିଲା । (୨୫୧)

ଭକ୍ତକବି ଜଗନ୍ନାଥ ଦାସ ତାଙ୍କର ଦୀକ୍ଷାଗୁରୁ ଶ୍ରୀ ଚୈତନ୍ୟଙ୍କର ସେବା ସ୍ୱହସ୍ତରେ ସଂପାଦନ କରୁଥିବାର ଜଣାଯାଏ । (୨୫୨) 'ହରିବଂଶ'ରେ କୁହାଯାଇଛି ଯେ ଶ୍ରୀକୃଷ୍ଣ-ବଳରାମ ଗୁରୁଙ୍କ ଆଦେଶରେ ବନଭୂମିକୁ ଯାଇ ପୁଷ୍ପ ଚୟନ କରୁଥିଲେ । (ପୃ୫୮୦-୫୮୨) 'ଗୁପ୍ତ ଇଚ୍ଛାବତୀ' କାବ୍ୟରେ ଗୁରୁବ୍ରହ୍ମ ଓ ଇଚ୍ଛାବତୀ ଗୁରୁଙ୍କ ପୂଜା ପାଇଁ ପୁଷ୍ପ ଚୟନ କରୁଥିବା କଥା ଉକ୍ତ । (ପୃ୧୬)

## (ଗ) ସାଧନା

ତପସ୍ୟା ବା ସାଧନା ବଳରେ ଲୋକ ଜ୍ଞାନ ଲାଭ କରେ । ତାହାଦ୍ୱାରା ଅଶୁଦ୍ଧିର ନାଶ ହୋଇ ଶରୀର ତଥା ଇନ୍ଦ୍ରିୟର ସିଦ୍ଧି ଆସେ । (୨୫୩) ତେଣୁ ଭାରତୀୟ ପରମ୍ପରାରେ ତପସ୍ୟାର ସ୍ଥାନ ଯୁଗେ ଯୁଗେ ସ୍ୱୀକୃତ ହୋଇ ଆସିଅଛି ।

'ବ୍ରହ୍ମାଣ୍ଡ ପୁରାଣ'ରେ କୁହାଯାଇଅଛି ଯେ ସ୍ୱୟଂ ନାରାୟଣ ସୃଷ୍ଟି କରିବା ଉଦ୍ଦେଶ୍ୟରେ ତପସ୍ୟାରତ ହୋଇଥିଲେ । (୨୫୪)

ସାରଳା ଯୁଗରେ ତପସ୍ୟା ବା ସାଧନା ହିଁ ସିଦ୍ଧିକାମୀ ପୁରୁଷମାନଙ୍କର ପ୍ରଧାନ ପନ୍ଥା ଥିଲା । କବି ଦର୍ଶାଇ ଅଛନ୍ତି ଯେ, ଗୁରୁ ଦ୍ରୋଣ ବେଦ-ବିଦ୍ୟାର ସାଧନା କରି ପରଶୁରାମଙ୍କୁ ସନ୍ତୁଷ୍ଟ କରି ପାରିଥିଲେ । (ଆ୯୩) ସେ ପ୍ରତ୍ୟହ ବନଭୂମିରେ ଶସ୍ତ୍ର-ପ୍ରୟୋଗର ସାଧନା କରୁଥିଲେ । (୨୫୫) ଅଶ୍ୱତ୍ଥାମା ପନ୍ଦର ବର୍ଷ ଧରି ତପସ୍ୟା କରିଥିଲେ । ତାହା ଫଳରେ ସେ ଅମର ବର ଲାଭକଲେ । (୨୫୬) ରାଜା ଧ୍ରୁପଦ ଅଠର ବର୍ଷ କାଳ ଶିବଙ୍କୁ ସନ୍ତୁଷ୍ଟ କରିବା ପାଇଁ ତପସ୍ୟା କରିଥିଲେ । (ଆ୨୦୪ପୃ) 'ଚଣ୍ଡି ପୁରାଣ'ରେ ଅଛି ଯେ ମହିଷାସୁର ତପସ୍ୟାରେ ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରି ଦେବ-ଯକ୍ଷ-କିନ୍ନରଙ୍କର ଅବାଧ ହେଲେ । (ପୃ୮-୧୧)

## (ଘ) ଗୁରୁଗ୍ରହଣ

ପ୍ରାଚୀନ କାଳରେ ସିଦ୍ଧି ପାଇଁ ଗୁରୁଗ୍ରହଣ କରିବା ଅପରିହାର୍ଯ୍ୟ ଥିଲା । 'ବ୍ରହ୍ମାଣ୍ଡ ପୁରାଣ'ରେ ଅଛି ଯେ, ମହାଦେବୀ ରାଧିକା ଶ୍ରୀକୃଷ୍ଣଙ୍କୁ ଗୁରୁ ଗ୍ରହଣ କରିବାକୁ ଉପଦେଶ ଦେଇଥିଲେ । (ପୃ୩୬) ବାଗ୍‌ଦେବୀ ରାଜା ବୃଷଭାନୁଙ୍କୁ ଗୁରୁ କରି ମନ୍ତ୍ରନେବା ନିମିତ୍ତ ଆଦେଶ ଦେଇଥିଲେ । (ପୃ୭୮)

ଉତ୍କଳର ଶିକ୍ଷା ବ୍ୟବସ୍ଥାରେ ମଧ୍ୟ ଗୁରୁଗ୍ରହଣ ଅପରିହାର୍ଯ୍ୟ ଥିଲା । କବିଙ୍କ କେତେକ ବର୍ଣ୍ଣନାରୁ ତାହା ସ୍ପଷ୍ଟ ହୁଏ । ଏକଲବ୍ୟ ଦ୍ରୋଣାଚାର୍ଯ୍ୟଙ୍କର ମୂର୍ତ୍ତି ସ୍ଥାପନ କରି ଶସ୍ତ୍ରଶିକ୍ଷା କରୁଥିଲେ । ତାହା ଦେଖି ତାହାଙ୍କ ସ୍ତ୍ରୀ ଗୁରୁଗ୍ରହଣର ଆବଶ୍ୟକତା ଦର୍ଶାଇଥିଲେ ।

"ଅକାରଣେ ପାମର ତୁ ଧାଇଁ କମ୍ପା ମରୁ
ଏହା ସାଧୁଅଛୁ କହ କେଉଁ ତୋହର ଗୁରୁ ।
ଗୁରୁ ନ ଥିଲେ ତ ବିଦ୍ୟା ନୁହଇ ପ୍ରାପତ
ମୂର୍ଖ ପାମରରେ ବନେଚର ବନେ ଜାତ ।" (୨୫୭)

ଉତ୍ତମ ଗୁରୁଙ୍କ ସନ୍ଧାନରେ ଶିଷ୍ୟମାନେ ଦୂର ଦେଶକୁ ଯାତ୍ରା କରୁଥିଲେ । ଦ୍ରୋଣାଚାର୍ଯ୍ୟ ପରଶୁରାମଙ୍କ ନିକଟକୁ (୨୫୮), ଶ୍ରୀକୃଷ୍ଣ-ବଳରାମ ଶାନ୍ତପନିଙ୍କ ସମୀପକୁ (ମ୪୦୮ପୃ), ଦୁର୍ଯ୍ୟୋଧନ ବଳରାମଙ୍କ ପାଖକୁ (ଆ୧୦୩ପୃ) ଯାତ୍ରା କରିଥିଲେ ।

ବିଦ୍ୟାଧ୍ୟୟନ ପାଇଁ ଦୂରଦେଶକୁ ଯାତ୍ରା କରିବା କଥା ପ୍ରାଚୀନ ଇତିବୃତ୍ତରୁ ମଧ୍ୟ ଅବଧାରିତ ହୁଏ । ଦ୍ୱାଦଶ ଶତାବ୍ଦୀରେ ସମ୍ଭୁକର ବାଜପେୟୀ ଓ ତଦୀୟ ପୁତ୍ର ବିଦ୍ୟାକର ବାଜପେୟୀ ବିଦ୍ୟାଶିକ୍ଷା ଉଦ୍ଦେଶ୍ୟରେ କାଶୀଧାମକୁ ଯାତ୍ରା କରିଥିବାର ଜଣାଯାଏ । (୨୫୯) 'ଗୃହ ଇଚ୍ଛାବତୀ' କାବ୍ୟରୁ ପରିଜ୍ଞାତ ହୁଏ ଯେ, ନାୟକ ଗୁରୁବ୍ରହ୍ମ ଭୋଜରାଜ୍ୟକୁ ଗମନ କରି କରୁଣାକରଙ୍କୁ ଗୁରୁ ଭାବରେ ଗ୍ରହଣ କରିଥିଲେ । (ପୃଷ୍ଠ-୭)

## ୭. ଅନ୍ୟାନ୍ୟ ଜାତିର ଶିକ୍ଷା

ସାରଳା ଦାସଙ୍କ ମହାଭାରତରୁ ଜଣାଯାଉଅଛି ଯେ, ବ୍ରାହ୍ମଣ ଓ କ୍ଷତ୍ରିୟ ସମାଜ ପରି ଅନ୍ୟାନ୍ୟ ଜାତିମାନଙ୍କରେ ବିଶେଷ ଶିକ୍ଷାଦୀକ୍ଷା ନଥିଲା । ତାହାର ସୂଚନା କବି ଲେଖନୀରେ ନିହିତ ।

### (କ) ଗୋପାଳ ଜାତି

ସେ କାଳର ଗୋପାଳମାନଙ୍କ ମଧ୍ୟରେ ଶିକ୍ଷାଦୀକ୍ଷା ନ ଥିଲା ବୋଲି ଶ୍ରୀକୃଷ୍ଣ ବଳରାମଙ୍କ ମଥୁରା ଦେଶ ବର୍ଣ୍ଣନାରୁ ସୂଚିତ ହୁଏ । ଶାନ୍ତନୁଙ୍କ ଆଗରେ ସେମାନେ କହିଥିଲେ—

"ଗୋପାଳ ଦେଶ ଯେ ହାଦେ ମଥୁରା ଦେଶର
ଶାସ୍ତ୍ର ଯେ ସଙ୍ଗୀତ ନାହିଁ ଅମ୍ଭଙ୍କ ସେ ପୁର ।
କୁସ୍ଥାନ ଦେଶରେ ବାସ କରିଲୁ କୁଜନେ
ବେଦବିଦ୍ୟା ନଶୁଣିଲୁ ଆମ୍ଭେ ବେନି କର୍ଣ୍ଣେ ।" (୨୬୦)

### (ଖ) ଶବର ଜାତି

କବିଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ଶବର ଜାତି ମଧ୍ୟରେ ବେଦ ବିଦ୍ୟାର ଆଦର ନ ଥିଲା । ସାରଳା ଦାସ କହନ୍ତି ଯେ, ଉଡ୍ର ଦେଶର ଚଣ୍ଡାଳମାନେ (୨୬୧) ବ୍ରାହ୍ମଣ-ବିରୋଧୀ ଥିଲେ । ସେମାନେ ବ୍ରାହ୍ମଣମାନଙ୍କ ଉପରେ ଘୋର ଅତ୍ୟାଚାର କରୁଥିଲେ । (ଆ୨୨୩-୨୨୪ପୃ)

ସେମାନଙ୍କ ମଧ୍ୟରେ ଅସ୍ତ୍ରଶସ୍ତ୍ର ବିଦ୍ୟା ପ୍ରଚଳିତ ଥିଲା । କବି ଦର୍ଶାଇ ଅଛନ୍ତି ଯେ, ଶିବପୁରର ଚଣ୍ଡାଳମାନେ ବୀର ଥିଲେ । ସେମାନଙ୍କ ଭୟରେ ବ୍ରାହ୍ମଣମାନେ ସର୍ବଦା ସଂତ୍ରସ୍ତ ହୋଇ ରହୁଥିଲେ । ସେହି ଚଣ୍ଡାଳମାନେ ସର୍ବଦା ବିଜୟୀ ହେଉଥିଲେ ।

"ଉତ୍କଳ ଦେଶରୁ ବାହାର ହୋଇଲେ ଚଣ୍ଡାଳେ
ମାରି ଜିଣୁଅଛନ୍ତି ସେ ରଣେ ସର୍ବକାଳେ । (ଆ୨୨୪ପୃ)

ସେହି ଜାତି ମଧ୍ୟରେ କେହି କେହି ଜ୍ଞାନୀ ବ୍ୟକ୍ତି ବି ଥିଲେ । କବି-ବର୍ଣ୍ଣିତ ସୁଜାଣେଶ୍ୱର ଏହିପରି ଜଣେ ଜ୍ଞାନୀ ପୁରୁଷ । ସେ ମାଂସ ବିକେତା ଥାଇ ମଧ୍ୟ ସଦାଗୃହରେ ଜୀବନ ନିର୍ବାହ କରି ବୈକୁଣ୍ଠଧାମ ପ୍ରାପ୍ତ ହୋଇଥିଲେ । (ସ୍ୱ୯ପୃ) କବି ତାଙ୍କୁ ଜ୍ଞାନୀ ଓ ଯତି ବୋଲି କହନ୍ତି ।

"ସୁଜାଣେଶ୍ୱର ବୋଲିଣ ଏକ ଯତି
ସୁଜାଣ ପୁରୁଷ ସେହି ସଦାଗୃହ ଅତି ।" (ସ୍ୱ୯ପୃ)

### (ଗ) ଶୂଦ୍ର ଓ କୃଷକ

ଶୂଦ୍ର ଓ କୃଷକ ସମାଜ ମଧ୍ୟରେ ଶିକ୍ଷାର ପ୍ରସାର ନ ଥିଲା ବୋଲି କବି-ଲେଖାରୁ ସୂଚିତ ହେଉଅଛି, ସାରଳା ଦାସ ବର୍ଣ୍ଣନା କରିଅଛନ୍ତି ଯେ, କୃଷ୍ଣା ବେଣୀନଦୀ ତୀରସ୍ଥ କାମପୁର ଗ୍ରାମର ମେଳକ ନାମକ ଶୂଦ୍ର ଗ୍ରାମ-ସେବା କରୁ-ଥିଲା । ସେ ଅଜ୍ଞାନ ଥିଲା ଏବଂ କାଠଭଙ୍ଗା ଛଡ଼ା ଅନ୍ୟ କୌଣସି ବିଦ୍ୟା ଜାଣି ନ ଥିଲା । ସେ ଏପରି ମୂର୍ଖ ଯେ, ମଣ୍ଡପରେ ବିରାଜିତ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ମୂର୍ତ୍ତିକୁ ଜାଳେଣି କାଠ ପ୍ରାୟେଁ ହାଣିବାକୁ ଲାଗିଲା । (ଉ୭୫-୭୬ପୃ)

କୃଷକମାନେ ମଧ୍ୟ ସେ ଯୁଗରେ ଶିକ୍ଷାଦୀକ୍ଷାରୁ ବଞ୍ଚିତ ଥିଲେ । ସେମାନେ ଅନ୍ୟର ଜମି ଚୂଷ କରି କାଳ କଟାଉଥିଲେ । କବି କହନ୍ତି, ତପତି ନାମକ କୃଷାଣ ସୁରେଶ୍ୱର ନାମକ ବ୍ରାହ୍ମଣର ଜମିରେ ମୂଲ ଲାଗି ଜୀବିକା ନିର୍ବାହ କରୁଥିଲା । (ସ୍ୱ୨ପୃ) ଅନନ୍ତା ନାମକ ଚଷା ଗ୍ରାମବାସୀଙ୍କ ଜମି ଚୂଷ କରି କାଳାତିପାତ କରୁଥିଲା । (ଉ୭୭ପୃ)

ତପତି ପାଠଶାଠ ପଢ଼ି ନ ଥିଲେ ହେଁ ଜ୍ଞାନୀ ଥିଲା । ନୀତି-ଅନୀତି ସମ୍ବନ୍ଧରେ ତାହାର ଧାରଣା ଥିଲା । ତେଣୁ ସେ ଜମି-ମାଲିକଙ୍କ କ୍ଷେତରୁ ପାଇ-ଥିବା କଙ୍କଣକୁ ଗ୍ରହଣ କରିବା ପାଇଁ ଅସମ୍ମତ ହୋଇଥିଲା ।

"ତପନ୍ତ ବୋଇଲା ଗୋସାଇଁ କହିଲ ଅମୀତ
ତୁମ୍ଭ ଠୋଟାବାଡ଼ି ଏହୁ ଅଟେ ତୁମ୍ଭ ବୃତ୍ତି ।
ତୁମ୍ଭର ଉପର ବଂଶେ କେବଣ ସାଧବ
ଗୃପଣ୍ଡରେ ରଖିଥିବ କଏ ସେ ହଟିବ ।
ମୁହିଁ କୃଷି କରି ସିନା ଜନ୍ମାଇବ କ୍ଷେତ
ଏ ଧନ ନେବାର ମୋର ନ ହୁଅଇ ଉଚିତ ।" (ସ୍ୱ୨ପୃ)

ସେମାନଙ୍କ ମଧ୍ୟରେ କେହି କେହି ତନ୍ତ୍ରବିଦ୍ୟା ଜ୍ଞାତ ଥିଲେ । ଶୂଦ୍ର ରାଜନ ତାହାର ଦୃଷ୍ଟାନ୍ତ । ରାଣି ଗୃହରେ ନିଯୁକ୍ତ ଶୂଦ୍ରକ ରାଜନ ମହାଜାଲ ପାତି ଭୂତଙ୍କୁ ଧରିବା, ଲୁହାକଣ୍ଠାରେ ସେମାନଙ୍କୁ କିଳିବା ଆଦି ବର୍ଣ୍ଣନାରୁ ଜଣାଯାଏ ଯେ ସେ ତାନ୍ତ୍ରିକ ଥିଲା । (ଉ୫୭ପୃ)

## (ଘ) ବୈଶ୍ୟଜାତି

ବୈଶ୍ୟଜାତି ମଧ୍ୟରେ ଶିକ୍ଷାର ଅଭାବ ଥିଲା ବୋଲି କବି-ବର୍ଣ୍ଣିତ ହରି ସାହୁ ବୃତ୍ତାନ୍ତରୁ ସୂଚିତ ହୁଏ । ସେ କାଳର ବୈଶ୍ୟଜାତି ମଧ୍ୟରେ ମିଥ୍ୟାଚାର, ଲୋଭପରାୟଣତା, ପୁରାଣପାଠର ବିମୁଖତା ଥିଲା । ତେଣୁ ଯମ ହରିସାହୁଙ୍କୁ କହିଥିଲେ—

"ଯେତେ ଲାଭ ହେଲେ ମିଥ୍ୟା ନ କହିବ ହାଟେ
ଗୁରିପାଦେ କିଣିନେଇ ବିକ ପାଞ୍ଚପାଦେ ।
× ×
ତ୍ରିକାଳ ସନ୍ଧ୍ୟା କରିବ ନିତି ତିନବେଳ
ଅବସର କ୍ରମେ ଯିବ ଦେବଙ୍କର ଆଳ ।
ବିଷ୍ଣୁ ଅର୍ଚ୍ଚନା କରିବେ ଶାସ୍ତ୍ରର ବିଧାନେ
ବିଷ୍ଣୁ ପୁରାଣ ପଢ଼ିବେ ସଦା ଶୁଚିମନେ ।" (ସ୍ୱ୯ପୃ)

ହରି ସାହୁ ଯେ ସାଧାରଣ-ଜ୍ଞାନ ବିବର୍ଜିତ ଥିଲା ତାହା ଅନ୍ୟ ଏକ ବର୍ଣ୍ଣନାରୁ ସୂଚିତ ହୁଏ । କନ୍ୟା ବିବାହ କାଳରେ ନାହିଁ ବୋଲି ତାକୁ ବିବାହ ନ ଦେବା ଏବଂ ଶେଷରେ ସ୍ୱର୍ଗପଥର ଯାତ୍ରୀ ଯୁଧିଷ୍ଠିରଙ୍କୁ କନ୍ୟା-ଦାନ କରିବା ତାହାର ଜ୍ଞାନ-ହୀନତାର ପରିଚୟ ଦିଏ । (ସ୍ୱ୫-୬ପୃ)

## (ଙ) ଇତରକାଣ୍ଡ

ସେ ଯୁଗରେ ନୀଚ ଜାତିମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ହୋଇ ନଥିଲା । ସେମାନେ ଶାସ୍ତ୍ର-ପୁରାଣ ସମ୍ବନ୍ଧରେ ଅନଭିଜ୍ଞ ଥିଲେ । କବିଙ୍କ ଉଦ୍ଧୃତ ପଦରୁ ତାହା ଅବଧାରିତ ହୁଏ ।

"ତସ୍କର ସଭାରେ ଯେହ୍ନେ ପୌରାଣିକ ହରି
ଦୈତ୍ୟ ସଭାରେ ବିଷ୍ଣୁଙ୍କ ବନ୍ଦନା କି କରି ।"
"ଚଣ୍ଡାଳ ସଭାରେ ଯେହ୍ନେ ହରିବଂଶ ପୋଥି
ପିଶାଚ ସଭରେ କିବା ବ୍ରାହ୍ମଣେ କରନ୍ତି ।" (ଭା୩୭ପୃ)

ପିଶାଚମାନଙ୍କ ମଧ୍ୟରେ କେହି କେହି ଜଡ଼ିବୁଟୀର ବ୍ୟବହାର ଜାଣିଥିବା କଥା କବିଙ୍କ ବର୍ଣ୍ଣନାରୁ ଉପଲବ୍ଧ ହୁଏ । କରଯୁଗ ନାମକ ପିଶାଚୁଣୀ ଗୋଦ୍ୟାନପୁରର ରଜା କର୍ଣ୍ଣକେଶରୀଙ୍କ ରାଣୀ ସାନୁମତୀଙ୍କୁ ଜଡ଼ିବୁଟୀ ଔଷଧ ଦେବା ବୃତ୍ତାନ୍ତରୁ ତାହା ଅବଧାରିତ ହୁଏ । (୨୬୨)

ଉପରୋକ୍ତ ଆଲୋଚନାରୁ ଜଣାଯାଉଅଛି ଯେ, ସେ କାଳରେ ଶିଷ୍ୟମାନେ ଅଳ୍ପବୟସରେ ବିଦ୍ୟାଶିକ୍ଷା ଆରମ୍ଭ କରୁଥିଲେ । ଶିକ୍ଷାରମ୍ଭର କାଳ ପାଞ୍ଚରୁ ପଞ୍ଚଦଶ ବର୍ଷ ପର୍ଯ୍ୟନ୍ତ ଥିଲା । ବିଦ୍ୟାରମ୍ଭ ଶୁଭଦିନ, ଶୁଭଲଗ୍ନରେ କରାଯାଉଥିଲା । ବିଦ୍ୟାରମ୍ଭ ବେଳେ ଗଣେଶ ଓ ଚଣ୍ଡୀଙ୍କର ପୂଜା କରାଯିବା ବିଧି ଥିଲା । ଲେଖାପଢ଼ାର ଉପାଦାନ ଥିଲା—ଖଡ଼ି, ତାଳପତ୍ର ଓ ଲେଖନୀ । ଉଚ୍ଚାରଣ, ଆବୃତ୍ତି ଓ ଅଭ୍ୟାସ ଉପରେ ଜୋର ଦିଆଯାଉଥିଲା । ବିଦ୍ୟାଶିକ୍ଷାପରେ ପରୀକ୍ଷା କରିବା ରୀତି ଥିଲା । ଶିକ୍ଷାପାଇଁ ଗୁରୁ ଗ୍ରହଣ ଅପରିହାର୍ଯ୍ୟ ଥିଲା । ଲୋକେ ଆବଶ୍ୟକ ହେଲେ ବିଦେଶ ଯାଇ ବିଦ୍ୟାଲାଭ କରୁଥିଲେ । ପ୍ରାଇମେରି ଶିକ୍ଷାର ବିଷୟ ଥିଲା—ଅକ୍ଷରଜ୍ଞାନ; ମାତ୍ରା ଓ ଫଳାର ଶିକ୍ଷା; ଶ୍ଳୋକପାଠ, ଅଙ୍କ, ପଣ, ଶୋଧି, ଓଡ଼ାଙ୍କ, ହରଣ, ଗୁଣନ, ଯୋଗ, ବିଯୋଗର ଶିକ୍ଷା; ନାନା ବିଭିନ୍ନଭାଷାର ଜ୍ଞାନ । ଉଚ୍ଚଶିକ୍ଷା ସ୍ତରରେ ଅଧୀତବ୍ୟ ଥିଲା—ବେଦ, ଜ୍ୟୋତିଷ, କାମଶାସ୍ତ୍ର, ତନ୍ତ୍ର, ଅସ୍ତ୍ରଶସ୍ତ୍ରପ୍ରୟୋଗ, ଶିକାରବିଦ୍ୟା, ରସାୟନ ବିଦ୍ୟା ଓ ଧାତୁବିଦ୍ୟା । ଯୁଦ୍ଧାଦି ବିଦ୍ୟା, ଚିତ୍ରାଙ୍କନ, ଜ୍ୟୋତିଷ, ଗଣିତ, ବେଦ-କର୍ମକାଣ୍ଡ, ତନ୍ତ୍ର, ନୃତ୍ୟ-ସଙ୍ଗୀତ, ଶାସ୍ତ୍ର-ପୁରାଣପାଠର ବିଶେଷ ଶିକ୍ଷା ସମାଜରେ ପ୍ରଚଳିତ ଥିଲା । ବ୍ରାହ୍ମଣମାନେ ବୃତ୍ତିପାଇଁ ବେଦ-କର୍ମକାଣ୍ଡ, ରାଜପୁତ୍ରଗଣ ଯୁଦ୍ଧାଦିବିଦ୍ୟା, ଜ୍ୟୋତିଷିଗଣ ଜ୍ୟୋତିଷ ବିଦ୍ୟା, ଗଣିକା-

ଗଣ ନୃତ୍ୟ-ସଙ୍ଗୀତର ବିଶେଷ ଶିକ୍ଷା ଲାଭ କରୁଥିଲେ । ରାଜପୁତ୍ରମାନେ ଯୁଦ୍ଧବିଦ୍ୟା ସହ ବେଦ-ବେଦାଙ୍ଗ, ଛନ୍ଦ, ଜ୍ୟୋତିଷ, ଇତିହାସ, ଆଦି ବହୁବିଧ ବିଦ୍ୟା ପାଠ କରୁଥିଲେ । ନାରୀଜାତି ମଧ୍ୟରେ ଛନ୍ଦ, ନୃତ୍ୟସଙ୍ଗୀତର ପ୍ରସାର ହୋଇଥିଲା । ମଠ, ପାଠଶାଳା ବା ଚଟଶାଳୀ, ତୀର୍ଥସ୍ଥଳ ଓ ଧର୍ମାଚାର୍ଯ୍ୟଙ୍କ ଗୃହ ଶିକ୍ଷାର କେନ୍ଦ୍ର ଥିଲା । ଯୁଦ୍ଧବିଦ୍ୟାର ଶିକ୍ଷାସ୍ଥାନକୁ 'ଆଖଡ଼ା' କୁହାଯାଉଥିଲା । ଗୋଟିଏ ଗୋଟିଏ ଶିକ୍ଷା-କେନ୍ଦ୍ରରେ ବହୁ ଶିଷ୍ୟ ଅଧ୍ୟୟନ କରୁଥିଲେ । ଜଣେ ଜଣେ ଶିକ୍ଷକ ବହୁ ବିଦ୍ୟାର ଅଧ୍ୟାପନା କରିବାପାଇଁ ସମର୍ଥ ଥିଲେ । ବ୍ରାହ୍ମଣ ଜାତିର ଲୋକେ ଶିକ୍ଷକତା କରୁ-ଥିଲେ । ସେମାନେ ବହୁ ବିଦ୍ୟାରେ ସୁପଣ୍ଡିତ ଥିଲେ । ସେ ଯୁଗର ଗୁରୁମାନେ ଥିଲେ—ଉଦାର, ସମଦର୍ଶୀ, ନିର୍ଲୋଭ ଓ ଛାତ୍ରବତ୍ସଳ । ସେ କାଳର ଶିଷ୍ୟମାନେ ଥିଲେ ଗୁରୁଭକ୍ତି-ପରାୟଣ ଓ ଗୁରୁସେବା-ତତ୍ପର ତଥା ସାଧନ-ନିଷ୍ଠ । ଶିକ୍ଷକ-ମାନଙ୍କର ପ୍ରଧାନ ଆୟର ପନ୍ଥା ଥିଲା—ଗୁରୁଦକ୍ଷିଣା ଓ ରାଜାମହାରାଜାମାନଙ୍କ ଦାନ । ଛାତ୍ରମାନେ ଗୁରୁଙ୍କୁ ନିୟମିତ ଭାବରେ କିଛି ଦେଉ ନ ଥିଲେ । ବ୍ରାହ୍ମଣ ଓ କ୍ଷତ୍ରିୟ ସମାଜ ପରି ଶବର, ବୈଶ୍ୟ, ଶୂଦ୍ର, ଗୋପାଳ ଓ ଇତର ଜାତି ମଧ୍ୟରେ ଶିକ୍ଷାର ବିସ୍ତାର ହୋଇ ନ ଥିଲା । ସ୍ଥୂଳତଃ ମହାଭାରତୀୟ ପ୍ରାଚୀନ ଶିକ୍ଷା-ପରମ୍ପରା ପଞ୍ଚଦଶ ଶତକର ଉତ୍କଳରେ ଉଦ୍‌ଭାବିତ ହୋଇଥିଲା ।

---

## ପାଦଟୀକା

(୧) A Catholic Philosophy of Education, Redden and Ryan—P. 21 (୨) About Education, Joad—P. 23 (୩) Education—Its Data and First Principles—P. Nunn —P. 2 (୪) A Modern Philosophy of Education—G. S. Thomson—P. 58 (୫) Groundwork of Educational Theory—Ross—P. 50 (୬) Cambridge Essays on Education—Benson—P. 12 (୭) Introduction to Social Science —G. S. Attabery—P. 224 (୮) Education for a New Society—E. Green—P. 102 (୯) Education and Social Order—B. Russel—P. 28 (୧୦) Social Organisation—R.H. Lowie—P. 194 (୧୧) Outlines of Social Philosophy—J. Mackenjie—P. 107 (୧୨) E.R.E.—Vol V—P. 191 (୧୩) Medieval Indian Culture—Srivastava—P. 109—110 (୧୪) S.G.M.I—A. Pandey—P. 223—224 (୧୫) Medieval Indian Culture—P. 124 (୧୬) S.G.M I—A. Pandey—P.223 (୧୭) Russeau on Education—R. L. Archer—P. 79 (୧୮) E.L.G.U.M—B. Sahay—P.50 (୧୯) Travels of Hioen Thsang—Vol II—S. Beal—P. 135—136 (୨୦) The Principal Upanishadas—S. Radhakrishnan—P. 446 (୨୧) ସା.ମ—ମଧ୍ୟ—ପୃ ୪୦୯ । ମୃ. ପୋ—ମଧ୍ୟ ୨ୟ—ପୃ ୨୭୨କ (୨୨) ଶ୍ରୀନବାଧ ଦୀପିକା—୨ୟ—ପୃ ୩୨୭ । (୨୩) ସା.ମ—ଆଦ୍ୟ—ପୃ ୧୦୧ । ମୃ. ପୋ—ଆଦ୍ୟ ୧ମ —ପୃ ୧୪୪ ଖ ।

(୨୪) "ପୂଜଲେ ଆଖେଡ଼ା ଚଣ୍ଡୀ ଗଣେଶ ବ୍ରାହ୍ମଣ ।"

ସା. ମ—ଆଦ୍ୟ—ପୃ ୧୦୧ ।

"ଗଡନାଥ ଚଣ୍ଡୀପୂଜା କଲେ ବାଦ୍ୟମାନେ ।"

ମୃ. ପୋ—ଆଦ୍ୟ ୧ମ—ପୃ ୧୪୪ ଖ ।

(୨୫) "ପ୍ରଥମରେ ଲେଖିଦେଲେ ତାହାଙ୍କୁ ଶ୍ରୀଫଳା ।"

"ଚିହ୍ନିରନ୍ତୁ କ୍ୟ, ଙ, କ୍ଲ, କ୍ନ ଆଦ୍ୟ ଜାଣ ।" ସା. ମ—ମଧ୍ୟ—ପୃ ୪୦୯ ।

"ଶ୍ରୀଫଳା ଅକ୍ଷର ଲିହ୍ନିଲେ ଦ୍ୱିଜବରେ ।"

ମୃ. ପୋ—ମଧ୍ୟ ୨ୟ—ପୃ ୨୭୨ଖ ଓ ୨୭୩ଖ ।

(ଦ୍ରଷ୍ଟବ୍ୟ : ପୋଥିରେ 'ସିଦ୍ଧିରସ୍ତୁ' ପଦ ନାହିଁ । ଅନ୍ୟାନ୍ୟ ପୋଥିରେ ଅଛି । ଝଙ୍କାର, ୨୩ଶ ବର୍ଷ, ୧ମ ସଂଖ୍ୟା ଦେଖାଯାଇପାରେ ।)

(୨୬) ସ୍ମୃତିଚନ୍ଦ୍ରିକା—ଅଯୋଧ୍ୟା କାଣ୍ଡ—ଦେବଭକ୍ତ—ପୃ ୬୬—୬୭ ।

(୨୭) "ନବଘନେ ଲେଖିଲେ ସେ ତାଳପତ୍ର ଛଟି ।" ସା.ମ.—ମଧ୍ୟ—ପୃ ୪୦୯ ।

"ଏକ ଦିବସେ ସାଧିଲେ ତାଳପତ୍ର କାଟି ।"

ମୃ. ପୋ—ମଧ୍ୟ ୨ୟ—ପୃ ୨୭୨ଖ—୨୭୩ଖ ।

(୨୮) ସା. ମ—ଶଲ୍ୟ—ପୃ ୧୮୬—୧୮୭ । (୨୯) ନୀଳକଣ୍ଠ ଗ୍ରନ୍ଥାବଳୀ—୧ମ ଭାଗ—ମୁଖବନ୍ଧ—ପୃ ୬ । (୩୦) ଉତ୍କଳ-ଗୌରବ ମଧୁସୂଦନ—ନବକିଶୋର ଦାସ ପୃ ୧୨—୧୩ ।

(୩୧) "ଖଡ଼ିପାଠ ଠାରୁ ଧନୁର୍ବିଦ୍ୟା ଯେତେ ଥିଲା ।" ସା. ମ—ମଧ୍ୟ—ପୃ ୪୧୧ ।

(ଦ୍ରଷ୍ଟବ୍ୟ : ପୋଥିରେ 'ଖଡ଼ିପାଠ' ପଦ ନାହିଁ । ଅନ୍ୟାନ୍ୟ ପୋଥିରେ ଏହା ଅଛି । ଏଥିପାଇଁ ଝଙ୍କାର, ୨୩ଶ ବର୍ଷ, ୧ମ ସଂଖ୍ୟାରେ ପ୍ରକାଶିତ ଡକ୍ଟର ବଂଶୀଧର ମହାନ୍ତିଙ୍କ 'ସାରଳା ମହାଭାରତରେ ପ୍ରାଚୀନ ଓଡ଼ିଶାର ଶିକ୍ଷା ପଦ୍ଧତି' ପ୍ରବନ୍ଧ ଦେଖାଯାଇପାରେ ।)

(୩୨) ସା.ମ—ସଭା—ପୃ ୩୧୧ । ମୃ. ପୋ—ସଭା ୨ୟ—ପୃ ୧୮୦କ ।

(୩୩) ଝଙ୍କାର—୨୩ଶ ବର୍ଷ—୧ମ ସଂଖ୍ୟାରେ ପ୍ରକାଶିତ 'ସାରଳା ମହାଭାରତରେ ପ୍ରାଚୀନ ଓଡ଼ିଶାର ଶିକ୍ଷା ପଦ୍ଧତି' ପ୍ରବନ୍ଧ ଦ୍ରଷ୍ଟବ୍ୟ ।

(୩୪) E.R.E—Vol V—P. 140 (୩୫) History of Education—G. S. Counts—P. 3 (୩୬) Hindu Civilisation—PI—R.K. Mukherjee. P. 104 (୩୭) Our Oriental Heritage—W. Durant—P. 407 (୩୮) ସା. ମ—ମଧ୍ୟ—ପୃ ୪୦୪ । ସା. ମ.—ମଧ୍ୟ ୨ୟ—ପୃ ୨୭୨ ଖ—୨୭୩ଖ ।

ପୋଥିପାଠ—"ପ୍ରଥମେ ଲିହ୍ନିଲେ ଦେବ ଶ୍ରୀଫଳା ଅକ୍ଷର
ତାହା ଶିଖିଲେ ଦେବକୀର ବାଳ ।"
"ଚତୁର୍ବେଦ ଆଖ୍ୟାନ କଲେ ଶାସ୍ତ୍ରପଦ
ଭେଦିଲେ ଗୁରୁ ଶିଖାଇଲେ ରାମକୃଷ୍ଣ ବେନ ।"

(୩୯) "ସାଧିଲେ ଶ୍ଳୋକ ସବୁକୁ କିଛି ହିଁ ନ ଜାଣି ।"

ସା. ମ—ମଧ୍ୟ—ପୃ ୪୦୯ ।

"ସାଧିଲେ ଶ୍ଳୋକୋ ପାଠ ପଢ଼ିଲେ ଆଙ୍କନା ।"

ମୃ. ପୋ—ମଧ୍ୟ ୨ୟ—ପୃ ୨୭୨ଖ ।

(୪୦) ସା. ମ—ଆଦ୍ୟ—ପୃ ୯୩ । ମୂ. ପୋ.—ଆଦ୍ୟ ୧ମ—ପୃ ୧୩୫କ ।

ପୋଥିପାଠ—"ମହାମନ୍ତ୍ର ପଣ୍ଡୁର କ ଆମ୍ଭେ ପୂଜା କରବୁ ।
ବେଦ ଆଧାନ ତୁ ଜାଣୁଛିକ ବାବୁ ।
କେ୍ୟାଢର ବେଦ ଉଚ୍ଚାର କଲେ ଭବଷ୍ୟେ
ବ୍ରହ୍ମାଣ୍ଡ କମ୍ପିଲ ସେ ମହାମନ୍ତ୍ର ବାସେ ।"

(୪୧) ସାହିତ୍ୟ ଦର୍ପଣ—ବିଶ୍ୱନାଥ—୩, ୭୩ । (୪୨) ସ୍ମୃତ ଚନ୍ଦ୍ରିକା—ସଂସ୍କାରକାଣ୍ଡ—ଦେବଭଟ୍ଟ—ପୃ ୧୪୯—୧୫୨ ।

(୪୩) "ବାଚୋମାବାସ୍ୟାସ୍ଥମିଢ ସବାନଧାୟୁଃ ।"
"ଶ୍ରାଙ୍କାଣନେ ଗ୍ରେଲ୍କାବଷ୍ଟ୍ରର୍କ ଭୂମିଚଳ ନାଗ୍ନ୍ୟୁପ୍ରାଚେଷ୍ଟ୍ରୁ
ହକ୍ଷସ୍ତ୍ରଗୃହକାଳଂ ।"
(ପାରସ୍କର ଗୃହ୍ୟସୂତ୍ର—ପୃ ୨୮)

(୪୪) ଶ୍ରୀନବାସ ଦୀପିକା—୨ୟ—ପୃ ୩୨୬—୩୨୭ । (୪୫) ସଂ. ମ—ବନ ୨୦—୨—୫ । (୪୬) "ଶ୍ରାବଣ କୃଷ୍ଣ ଚଉଠି ପୁଣି ଗୁରୁବାରେ ।" ସା.ମ—ବିରାଟ—ପୃ ୧୭୯ । (୪୭) ସା. ମ—ଆଦ୍ୟ—ପୃ ୧୦୦ । ମୂ. ପୋ—ଆଦ୍ୟ ୧ମ—ପୃ ୧୪୪ଖ ।

ପୋଥିପାଠ—"ସକାଳ ମଧ୍ୟାହ୍ନ ଆନ ଦୁଇଓଳ ଆଖଡ଼ା
ମଧ୍ୟ ବେଳେ ପାଠ ପଠନ କଘୋଡ଼ା ।"

(୪୮) Kautilya's Arthasastra—R. Shamsastri—P. 10 (୪୯) ମାଳକଣ୍ଠ ଗ୍ରନ୍ଥାବଳୀ—୧ମ—ପୃ ୬ । (୫୦) E.R.E—Vol V—P. 190 (୫୧) ସଂ.ମ—ଆଦ୍ୟ—୧୩୩ ଅ । (୫୨) The Principal Upanishadas—Radhakrishnan—P. 502 । (୫୩) "ମନ୍ତ୍ର ଉଚ୍ଚାରଣ କର ପରୀକ୍ଷା କରବୁ ।" ସା. ମ—ଆଦ୍ୟ—ପୃ ୯୩ ।

(ଦ୍ରଷ୍ଟବ୍ୟ : ପୋଥିରେ 'ପରୀକ୍ଷା' ଶବ୍ଦ ନାହିଁ; କିନ୍ତୁ ବର୍ଣ୍ଣନାରୁ ସ୍ପଷ୍ଟ ଯେ, ପର୍ଶୁରାମ ଦ୍ରୋଣଙ୍କୁ ପରୀକ୍ଷା ହିଁ କରଥିଲେ । ମୂ. ପୋ—ଆଦ୍ୟ ୧ମ—ପୃ ୧୩୫ କ)

(୫୪) ସକଳ ବିଦ୍ୟାମାନ ପରୀକ୍ଷା କରାଇଲେ । ମୂ. ପୋ—ଆଦ୍ୟ ୧ମ—ପୃ ୪୮ କ ଓ ଖ । (୫୫) ସା. ମ—ଆଦ୍ୟ—ପୃ ୧୦୧-୧୦୩ । ମୂ. ପୋ—ଆଦ୍ୟ ୧ମ—ପୃ ୧୪୬ଖ—୧୪୮କ । (୫୬) ସଂ. ମ—ଆଦ୍ୟ ୧୩୧, ୬୯-୭୯ । ୧୩୨—୧-୯ (୫୭) ଈ. ନୌ. ଭ—ପୃ ୧୯୧ । (୫୮) T. H—Vol II—S. Beal—P 135-136. (୫୯) ସଂ. ମ—ଅନୁ ୧୦୪—୧୪୫-୧୪୮ । ଶାନ୍ତ ୫୯—୩୩ (୬୦) ବ. ସୂ ୩, ୬, ୨୮-୨୯ । (୬୧) The Ideal of Education, Abhedananda—

p 4-6. (୬୨) O. O. H—W. Durant—p 442. (୬୩) ସା. ମ—ମଧ୍ୟ—ପୃ୪୦୯ । ମୂ. ପୋ—ମଧ୍ୟ ୨ୟ—୨୭୨ଖ—୨୬୩ଖ ।

(ପୋଥିରେ ଓଡ଼ାଙ୍କ, ଫେଡ଼ାଙ୍କ ଓ ଅଙ୍କନ ବିଦ୍ୟାର ଉଲ୍ଲେଖ ଅଛି । )

(୬୪) ସା. ମ—ମଧ୍ୟ—ପୃ୪୦୯ । ମୂ. ପୋ—ମଧ୍ୟ ୨ୟ—ପୃ୨୬୩ କ ଓ ଖ । (୬୫) Indian System of Writing—Govt. of India—p. 21. (୬୬) O. H. R. J—1959—April—P. 35 (୬୭) ସା. ମ—ମଧ୍ୟ—ପୃ୪୦୯ । (୬୮) ସା. ମ—ଆଦ୍ୟ—ପୃ୩୩—ଗ୍ର. ର । (୬୯) ସା. ମ. ପୃ କ୦—ଆଦ୍ୟ ପୃ୫୦ । (୭୦) ସା. ମ—ବନ—ପୃ୧୨୨ (୭୧) ବି. ପୁ ୩, ୬, ୨୮ । (୭୨) ମୂ. ପୋ—ଅଦ୍ୟ ୧ମ—ପୃ୪୮ଢ ଓ ଖ । (୭୩) War in Ancient India—V.R. Dixitkar—Forward. (୭୪) The Art of War in Ancient India, P. C. Chakrabati—Int. (୭୫) ବି. ପୁ—୩, ୨୭ । ମନୁ ୧୦, ୬୯ (୭୬) ସା. ମ—ଆଦ୍ୟ ପୃ୩୪ । ମୂ. ପୋ—ଆଦ୍ୟ ୧ମ—ପୃ୪୮କ ଓ ଖ । (୭୭) ସା. ମ—ଆଦ୍ୟ—ପୃ୯୦ । ମୂ. ପୋ—ଆଦ୍ୟ ୧ମ—ପୃ୧୩୦ ଖ । (୭୮) ସା. ମ—ଆଦ୍ୟ—ପୃ୧୦୦ । ମୂ. ପୋ—ଆଦ୍ୟ ୧ମ, ପୃ ୧୪୪ଖ (୭୯) ମୂ. ପୋ—ମଧ୍ୟ ୨ୟ—ପୃ୨୭୨ଖ । (୮୦) ସା. ମ—ବନ—ପୃ୪୦୯ (୮୧) ଓ. ଇ—୧ମ—ହରେକୃଷ୍ଣ—ପୃ୨୪୯ (୮୨) ମନୁ ୧, ୧୦୩; ୧୦, ୮୦ (୮୩) ମନୁ ୧୦, ୭୫ । ବି. ପୁ ୩, ୮, ୨୨-୨୩ (୮୪) History of Education, G. S. Counts, p. 3 (୮୫) Education in India, Mudalier—p. 5 (୮୬) ସା. ମ—ଆଦ୍ୟ—ପୃ୯୩ (୮୭) ବି. ଖ—ସ୍ୱର୍ଗ—୧ମ ଗ୍ରନ୍ଥ—ପଦ ୬୦ ଓ ୭୦ (୮୮) ବେଦ—ଭୂମିକା ୧ମ, ଦୁର୍ଗା ଦା —ପୃ୨୧ । (୮୯) P. U. S. Radhakrishnan—p 468 (୯୦) ସଂ. ନା. ବି. ପୃ—ପୃ୨୦୫ । (୯୧) ମୂ. ପୋ—ଆଦ୍ୟ ୧ମ—ପୃ୧୩୫କ (୯୨) ସା. ମ—ଆଦ୍ୟ—ପୃ୧୦୦ । ମୂ. ପୋ—ଆଦ୍ୟ ୧ମ—ପୃ୧୪୪ଖ (୯୩) ସା. ମ—ଆଦ୍ୟ, ପୃ୩୪ । ମୂ. ପୋ, ଆଦ୍ୟ ୧ମ, ୪୮କ ଓ ଖ । (୯୪) ମୂ. ପୋ—ମଧ୍ୟ ୨ୟ—ପୃ୧୩ଖ ଓ ୧୪ କ । (୯୫) ସା. ମ—ମଧ୍ୟ ପୃ୧୫୧ । ମୂ.ପୋ—ମଧ୍ୟ ୧ମ—ପୃ୧୫୫ଖ । (୯୬) ନାଥ ଧର୍ମ ଓ ସାହିତ୍ୟ, ପ୍ରଫୁଲ୍ଲ ଚକ୍ରବର୍ତ୍ତୀ—ପୃ୯୮ । (୯୭) O. H. R. J—Vol. XII—No. 1—p. 5 । (୯୮) ଝଙ୍କାର—୧୦ମ ବର୍ଷ—୧ମ ସଂଖ୍ୟା—ପୃ୧୩୫ । (୯୯) ଶ. ଭ. ବୋ. ଅ—୧ମ—ଗୋପୀନାଥ—ପୃ୧୯୫ (୧୦୦) ସା. ମ—ବନ—ପୃ୧୫୮ । ମ. ପୋ—ବନ ୧ମ—ପୃ୨୫୪କ (୧୦୧) ଏକନ୍—ପୃ୧୬୮-୧୭୫—ଏକନ୍—ପୃ୧୫ଖ ଓ ୧୬କ (୧୦୨) ସା. ମ—ଆଦ୍ୟ—ପୃ୯୯-୧୦୦ । ମୂ. ପୋ—ଆଦ୍ୟ ୧ମ—ପୃ୧୪୩କ ଓ ୧୪୪କ (୧୦୩) ଝଙ୍କାର—୧୦ମ ବର୍ଷ ୧୦ମ ସଂଖ୍ୟା—ପୃ୯୪୧ (୧୦୪) ସା. ମ—ବନ—ପୃ୧୬୩ (୧୦୫) ବେଦଶାସ୍ତ୍ର ମନ୍ତ୍ରେଣ କରନ୍ତି କବିତା । ମୂ. ପୋ—

ଆଦ୍ୟ ୧ମ—ପୃ୧୪୪ଖ । (୧୦୬) ନାଥଧର୍ମ ଓ ସାହିତ୍ୟ—ପୃ୯୮ (୧୦୭) ସା. ମ—ଦ୍ରୋଣ—ପୃ୫୮ । ମୂ. ପୋ—ଆଦ୍ୟ ୧ମ—ପୃ୪୮କ ଓ ଖ ।

(ଭାଗ୍ୟବନ୍ତ ପଣ୍ଡାଙ୍କର ମନ୍ତ୍ରଗୁରୁ ଥିଲେ ବୋଲି ପୋଥିରେ ଅଛି । "ସାର୍ଥକ ବିଦ୍ୟା ଶିଖାଇଲେ ମନ୍ତ୍ରଗୁରୁ")

(୧୦୮) ସିଦ୍ଧ ସାହିତ୍ୟ—ଧର୍ମସାର—ପୃ୧୩୨-୧୩୩ (୧୦୯) O. H. R. J. 1952—July—p. 4-5 (୧୧୦) ଝଙ୍କାର—୧୦ମ ବର୍ଷ—୧ମ ସଂଖ୍ୟା—ପୃ୧୩୫ ଓ ୧୩୮ । (୧୧୧) ନାଥଧର୍ମ ଓ ସାହିତ୍ୟ—ପୃ୯୮ । ସିଦ୍ଧ ସାହିତ୍ୟ—ପୃ୧୧୭-୧୧୮ । (୧୧୨) ଝଙ୍କାର—୧୦ମ ବର୍ଷ—୧ମ ସଂଖ୍ୟା—ପୃ୧୪୦ । (୧୧୩) ମୂ. ପୋ—ବିରାଟ—ପୃ ୨୯ଖ । (୧୧୪) ରୁ. ଟୁ. ନ—ନାରାୟଣନନ୍ଦ—ପୃ ୨୭, ୪୧, ୪୯, ୧୦୧, ୧୦୨, ୧୩୧ । (୧୧୫) ଓ. ସା. ଇ. ପ—୧ମ—ମାଳକଣ୍ଠ—ପୃ ୯୫ । (୧୧୬) A.R.A.B. —K. C. Panigrahi—P. 106 (୧୧୭) S. E. H. N. I—B. P. Majumdar—P. 154 (୧୧୮) ବି. ପୃ—୩, ୭, ୨୮—୨୯ (୧୧୯) ସା. ମ—ମଧ୍ୟ—ପୃ ୧୯୦ । ମୂ. ପୋ—ମଧ୍ୟ ୧ମ—ପୃ୧୬୦କ । (୧୨୦) କଳ୍ପତରୁଙ୍କେ ନାଟ କରନ୍ତି ସ୍ୱଚ୍ଛନ୍ଦେ ନାରଦ । ମ. ପୋ—ମଧ୍ୟ—ପୃ ୨୩୧କ ଓ ଖ । (୧୨୧) ପରମଲା—ନରସିଂହ ସେଣ—ପୃ ୪୮, ୧୫୭, ୨୨୩ । (୧୨୨) କୋଣାର୍କ, କୃପାସିନ୍ଧୁ—ପୃ ୧୨୨, ୧୦୩, ୧୧୩, ୧୨୦, ୧୨୯ । (୧୨୩) History of Orissa—P. I—N. K. Sahoo —P. 268 (୧୨୪) O.H.R.J—Vol XI—No.I—P. 39 (୧୨୫) A.R.A.B—K.C. Panigrahi—P, 140 (୧୨୬) E.O.L.S— K. B, Tripatry—P. 262—263, 287—288, 300—301 (୧୨୭) ବି. ପୃ.—୩୭୭, ୨୮—୨୯ (୧୨୮) ସଂ ମ—ସର୍ଗ ୫, ୯୧ ଓ ୯୨ । (୧୨୯) ଶ୍ରୀମଦ୍ ଭାଗବତ—ଚନ୍ଦ୍ରାମଣି—୪, ୧୭, ୨୪ । (୧୩୦) ଗୁଣ୍ଡିକ ଅଞ୍ଜନ ଯେ ମନ୍ତ୍ର ମହୌଷଧି । ମୂ. ପୋ—ମଧ୍ୟ ୧ମ—ପୃ ୨୦୨ଖ—୨୭୩ଖ । (୧୩୧) ସ୍ଫଟିକର ଅଞ୍ଜନ ରସାୟନ । ମୂ. ପୋ—ଆଦ୍ୟ ୧ମ—ପୃ ୪୨ଖ (୧୩୨) ମୂ. ପୋ—ବନ ୧ମ—ପୃ ୧୧୫ଖ । (୧୩୩) ଗୋଟିକ ଅଞ୍ଜନ ଧାତୁକ ବେଦ ବିଦ୍ୟା ଜାଣିଲେ ସମସ୍ତ ବିଧାନ । ମୂ. ପୋ—ବିରାଟ—ପୃ ୨୯ଖ । (୧୩୪) ପରମଲା—ନରସିଂହ—ଭୂମିକା—ପୃ ୨ । (୧୩୫) ସଂ. ମ—ବିରାଟ—ପୃ ୩୦ଖ । (୧୩୬) ସା. ମ—ବିରାଟ—ପୃ୨୪—୨୫ । ମୂ. ପୋ—ବିରାଟ—ପୃ ୩୦ଖ । (ପୋଥିପାଠ ଗ୍ରନ୍ଥପାଠଠାରୁ ଭିନ୍ନ) (୧୩୭) ସା. ମ—ବିରାଟ—ପୃ ୨୦ । ମୂ. ପୋ—ବିରାଟ—ପୃ ୨୩ଖ । (ଏଠାରେ ମଧ୍ୟ ପୋଥିପାଠ ଭିନ୍ନ) (୧୩୮) ସା. ମ ଶାନ୍ତି—ପୃ ୧ । ମୂ. ପୋ—ଶାନ୍ତି—ପୃ ୧୫୫କ (୧୩୯) ଅ. ପୃ. ଦ—ଜ୍ୱାଳାପ୍ରସାଦ—ପୃ ୧୧ । (୧୪୦) ଏଜନ୍—ପୃ ୩

(୧୪୧) ସଂ. ମ—ଆଦ୍ୟ ୧—୮୬ (୧୪୨) ଶ୍ରୀମଦ୍‌ଭାଗବତ—ଚନ୍ଦ୍ରାମଣି—୧, ୪, ୨୨ । (୧୪୩) ସଂ, ନା—ବ୍ର. ପୁ—ପୃ୪୨୦ (୧୪୪) ବ୍ର. ପୁ—୩, ୬, ୨୮—୨୯ ।

(୧୪୫) ଏସନେକ ସକଳ ସାହାସ୍ତ୍ରମାନ ଶିଖାନ୍ତି ଅଚନ୍ତା ।

ମୃ. ପୋ—ଆଦ୍ୟ ୧ମ—ପୃ ୧୪୪ଖ ।

(୧୪୬) ସର୍ବଶାସ୍ତ୍ରମାନ ଆଉ ଧନୁକର ବନ୍ଧ୍ୟା ।

ମୃ. ପୋ—ଆଦ୍ୟ ୧ମ—ପୃ ୧୪୪ଖ ।

(ଝଙ୍କାର—୨୩ଶ ବର୍ଷ—୧ମ ସଂଖ୍ୟା—ପୃ୪)

(୧୪୭) ସା. ମ—ବିରାଟ—ପୃ ୧୧୯ । (୧୪୮) ଶାସ୍ତ୍ରନନ୍ଦା କଲେ ଦୁଃଖ ପାଇ ସର୍ବ ହନେ । ଏଜନ୍—ପୃ ୭ ।

(୧୪୯) ବିଷ୍ଣୁ ପୁରାଣ ପଢ଼ିବେ ସଦା ଶୁଚମନେ ।

ସା. ମ—ସ୍ୱର୍ଗ—ପୃ ୯ ।

(୧୫୦) ପଣ୍ଡିତ ମୁଖୁ ଶୁଣିବୁ ପୁରାଣର କଥା ।

ସା. ମ—ଶାନ୍ତି—ପୃ ୨ ।

(୧୫୧) ସା. ମ—ଆଦ୍ୟ—ପୃ ୩ । ମୃ. ପୋ—ଆଦ୍ୟ ୧ମ—ପୃ ୪କ । (୧୫୨) ସଂ. ମ—ଆଦି ୧—୨୬୧—୨୬୩ । (୧୫୩) ସା. ମ—ଆଦ୍ୟ—ପୃ ୧୮୦, ୧୯୬, ୧୯୮ । ସଭା—ପୃ ୭୪, ୧୭୯ । (୧୫୪) ମୃ. ପୋ—ମଧ୍ୟ—ପୃ ୧୫୯କ । (୧୫୫) ସା. ମ—ସଭା—ପୃ ୧୫୩—ମଧ୍ୟ—ପୃ ୨୮୯—ବିରାଟ ପୃ—ସ୍ୱର୍ଗ—ପୃ ୮ । (୧୫୬) ଏକାମ୍ର ଚନ୍ଦ୍ରିକା—ପତ୍ର ୧—୨ । (୧୫୭) ବଡ଼ିଶ ଭାରତ—ପତ୍ର ୧୫୦—୧୫୧ । (୧୫୮) Hindu Civilisation—PI—R. K. Mukharjee—P. 104 (୧୫୯) ମନୁ ୪, ୧ । (୧୬୦) ଇ. କୌ. ଉ. ପୃ ୨୧୮ । (୧୬୧) ସଂ.ମ—ଅଶ୍ୱ ୫୬,୬ । (୧୬୨) ଏଜନ୍—ଆଦ୍ୟ ୩—୩୪—୫୫ । (୧୬୩) The Principal Upanishadas—S. Radhakrishnan, P. 407, 412 (୧୬୪) ସଂ. ମ—ଆଦ୍ୟ—୧୩୧ ଅଧ୍ୟାୟ (୧୬୫) Education in India—A. L. Mudalier—P. 9 ।

(୧୬୬) ତାହାଙ୍କ ମଧ୍ୟରେ ପ୍ରବେଶିଲେ ବେନଭାଇ ।

ସା. ମ—ମଧ୍ୟ—ପୃ ୪୦୮ ।

ଧାଇଁ ଯାଇ ଶାନ୍ତିପନ ମନ୍ଦିରେ କହିଲେ ।

ମୃ. ପୋ—ମଧ୍ୟ ୨ୟ—ପୃ ୨୭୨କ ।

(୧୬୭) ପ୍ରାଚୀନ ଉତ୍କଳ—କୃପାସିନ୍ଧୁ—ପୃ ୬୫୦ । (୧୬୮) ମୃ. ପୋ—ମଧ୍ୟ ୨ୟ—ପୃ ୨୭୨ କ ଓ ୨୭୫କ । (୧୬୯) ଦକ୍ଷିଣ ପ୍ରାଚୀ କୂଳରେ ଦେଖିଣ ମଠେକ । ସା. ମ—ବିରାଟ—ପୃ ୪୦ । (୧୭୦) ଓ. ସା. ଇ—୧ମ—ପୂର୍ଣ୍ଣମାନାରାୟଣ—ପୃ ୨୭୫

(୧୭୧) A.R.A.B—K. C. Panigrahi, P. 106 (୧୭୨) ଶ୍ରୀ. ଭ. ଗୀ—ନୀଳକଣ୍ଠ—ଗୀତା ପ୍ରବେଶ—ପୃ ୩୦୪ (୧୭୩) O.H.R.J—Jan—1958—P. 297 (୧୭୪) Inscriptions of Orissa—S. N. Rajguru—V. III—P. II—P. 346 (୧୭୫) ସଂସ୍କୃତ ଓ ସଂସ୍କୃତି—ନୀଳକଣ୍ଠ—ପୃ ୧୨୦—୧୨୨ ।

(୧୭୬) ଗ୍ରାମର ପାଠଶାଳାରେ ପଢ଼ି ନାହିଁ ଭଲେ ।

ସା. ମ—ଦ୍ରୋଣ—ପୃ ୯୨ ।

(୧୭୭) ତାହାଙ୍କ ପାଠ ମଧ୍ୟରେ ପ୍ରବେଶ ହେଲା ଯାଇ ।

ମୂ. ପୋ—ମଧ୍ୟ ୨ୟ—ପୃ ୨୭୨ କ।

ଚଟଶାଳୀ ମଧ୍ୟେ ଗୁରୁ ଦ୍ୱାର ହୋଇ । ସା. ମ—ମଧ୍ୟ—ପୃ ४୧୨ ।

(୧୭୮) ମା. ଗ—ନୀଳକଣ୍ଠ—୧ମ—ପୃ ୫—୬ ।

(୧୭୯) ସା. ମ—ଆଦ୍ୟ—ପୃ ୩୪ । ମୂ. ପୋ—ଆଦ୍ୟ ୧ମ—ପୃ ୪୮କ ଓ ଖ

(୧୮୦) ଏଜନ୍—ପୃ ୯୦ ।

(୧୮୧) ସକାଳ ସଞ୍ଜ ବେଳରେ ଆଖଡ଼ା କରନ୍ତି ।

ସା. ମ—ଆଦ୍ୟ—ପୃ ୧୦୦ ।

ସକାଳ ମଧ୍ୟାହ୍ନ ଆନ ଦୁଇ ଓଳି ଆଖଡ଼ା ।

ମୂ. ପୋ—ଆଦ୍ୟ ୧ମ—ପୃ ୧୪୪ ଖ ।

(୧୮୨) ସା. ମ—ଆଦ୍ୟ—ପୃ ୩୪ । ମୂ. ପୋ—ଆଦ୍ୟ ୧ମ—ପୃ ୪୮କ ।

(୧୮୩) ପଞ୍ଚାଙ୍କୁ ବନ୍ଧେ କରାଇ ଆଖଡ଼ାରେ ବାଣ ।

ସା. ମ—ଆଦ୍ୟ—ପୃ ୧୦୪ ।

(୧୮୪) ମୂ. ପୋ—ଆଦ୍ୟ ୧ମ—ପୃ ୪୮କ ଓ ଖ (୧୮୫) O. H. R. J—Jan 1958—P. 296 (୧୮୬) ମୂ. ପୋ—ଆଦ୍ୟ ୧ମ—ପୃ ୧୩୫କ । ସା. ମ—ଆଦ୍ୟ—ପୃ ୯୩ ।

(ଛାପା ବହିରେ 'ପ୍ରୟାଗ ତୀର୍ଥ'ର ଉଲ୍ଲେଖ ମିଳେ ।)

(୧୮୭) O.H.R.J—Jan—1968—P. 296, 306 (୧୮୮) Ibid—Vol X—No. 4—P. 74 (୧୮୯) Ibid—Oct—1952—P. 193—194 (୧୯୦) ଛ. କୌ. ଉ—ପୃ ୧୯୦ । (୧୯୧) H.C.I.P—Imp. Age—P. 589 (୧୯୨) C. A. I—Beal—Vol. II—P. 215 (୧୯୩) A.R.A.B—K. C. Panigrahi—P. 119 (୧୯୪) ବୃ. ସୂ—୩, ୮, ୨୩ । ମନୁ ୧୦, ୮୦ । (୧୯୫) ମନୁ ୧, ୧୦୩ (୧୯୬) ବୃ. ସୂ.—୧୨୯, ୪୫ (୧୯୭) ଏଜନ୍ ୧୨୯, ୭୩ । (୧୯୮) The Principal Upanishadas—P. 407—412 (୧୯୯) ଛ. କୌ. ଉ—ପୃ ୬୪ । (୨୦୦) ସଂ. ମ—ଆଦ୍ୟ ୩—

୮୯-୯୪ (୨୦୧) ଈ. ନୌ. ଇ—ପୃ ୬୫ । (୨୦୨) ସା, ମ—ଆଦ୍ୟ—ପୃ ୩୮ । (ପୃ. ଙ୍କ) (୨୦୩) ସା. ମ—ଆଦ୍ୟ—ପୃ ୯୦ । ମୃ. ପୋ—ଆଦ୍ୟ ୧ମ—ପୃ ୧୩୦କ । (୨୦୪) ଶାନ୍ତପନ୍ନ ପଣ୍ଡାଙ୍କ ପାଶେ ତାଙ୍କ ଗୃହବାସ । ମୃ. ପୋ—ମଧ୍ୟ ୨ୟ—ପୃ ୭୨ଖ । (୨୦୫) ସା. ମ—ଆଦ୍ୟ—ପୃ ୩୪ । ମୃ. ପୋ—ଆଦ୍ୟ ୧ମ—ପୃ ୪୮କ ଓ ଖ । (୨୦୬) ସା. ମ—ଆଦ୍ୟ—ପୃ ୩୩ । (୨୦୭) ଏକାନ—ପୃ ୯୩—୯୭, ୯୮, ୧୦୦ । ମୃ. ପୋ—ଆଦ୍ୟ ୧ମ—ପୃ ୧୪୪ କ । (୨୦୮) ଓ. ଇ—୧ମ—ହରେକୃଷ୍ଣ—ପୃ ୨୫୪ ୨୫୫ (୨୦୯) S. E. N. I—B. P. Majumdar—P. 154 (୨୧୦) ବି. ପୃ—୩, ୭, ୭-୧୩ (୨୧୧) ସା. ଦ. ବିଶ୍ୱନାଥ—ପୃ ୩୭୦ । (୨୧୨) ନବକାନ୍ତେ—୩ୟ ବର୍ଷ—୧୦ମ ସଂଖ୍ୟା—ପୃ ୭୩୬-୭୪୧ । (୨୧୩) ସ୍ୱେଚ୍ଛେ ଗୁରୁ ଶିଖାଇଲେ ରାମକୃଷ୍ଣ ଦେବ । ମୃ. ପୋ—ମଧ୍ୟ ୨ୟ—ପୃ ୭୨ ଖ (୨୧୪) ବେଦ ଆଧାନ ତୁ ଜାଣୁଛିନ୍ତି ବାବୁ । ମୃ. ପୋ—ଆଦ୍ୟ ୧ମ—ପୃ ୧୩୫ କ । (୨୧୫) ହରଷେଣ ପୁତ୍ରଙ୍କୁ ପ୍ରସନ୍ନ ହୋଇଲେ ଧାଂଗ୍ୟବର । ମୃ. ପୋ—ଆଦ୍ୟ ୧ମ—ପୃ ୪୮ କ ଓ ଖ । (୨୧୬) ମୃ. ପୋ—ଆଦ୍ୟ ୧ମ—ପୃ ୧୫୫ ଖ । (୨୧୭) ମୃ. ପୋ—ଆଦ୍ୟ ୧ମ—ପୃ ୧୪୫ କ । (୨୧୮) ସଂ. ମ—ଆଦ୍ୟ ୧୩୧, ୧୬-୧୭ (୨୧୯) ଏକାନ ୧୩୧—୩୧-୩୨ । (୨୨୦) ସା. ମ—ମଧ୍ୟ—ପୃ ୪୧୪ । ମୃ. ପୋ—ମଧ୍ୟ ୨ୟ—ପୃ ୨୭୬ କ । (୨୨୧) ସା. ମ—ଆଦ୍ୟ—ପୃ ୯୭ । ମୃ. ପୋ—ଆଦ୍ୟ ୧ମ—ପୃ ୧୩୫କ ଓ ଖ । (୨୨୨) ମନୁ ୨, ୨୪୫ । (୨୨୩) ବି. ପୁ ୩, ୯, ୭ (୨୨୪) ମନୁ ୨, ୨୪୬ । (୨୨୫) ସଂ. ରା—ଅଯୋଧ୍ୟା ୩୨, ୧୫-୧୬, ୧୮, ୨୦ । (୨୨୬) E.L.U.G.M.—B. K. Sahay—P. 64 (୨୨୭) ଓ. ଇ. ହରେକୃଷ୍ଣ—୧ମ—ପୃ ୮୬ । (୨୨୮) Inscriptions of Orissa—S. N. Rajaguru—P. 346 (୨୨୯) E.O.L.S—K. Tripathy—P. 64 (୨୩୦) ମାଦଳା ପାଞ୍ଜି, ପ୍ରାଚୀ—ପୃ ୪୪ (୨୩୧) E.O.L.S—P. 284—285 (୨୩୨) ଈ. ନୌ. ଇ.—ପୃ ୩୦୦ । (୨୩୩) ଶ୍ରୀମଦ୍‌ଭାଗବତ, ଚନ୍ଦ୍ରାମଣି ୭, ୧୨ ଓ ୨୬-୨୭ (୨୩୪) ସଂ. ବ୍ର. ବୈ. ପୁ—ପୃ ୭୨ । (୨୩୫) ସଂ. ସ୍କ. ପୁ—ପୃ ୨୧ (୨୩୬) ବ୍ର. ପୁ—ନନ୍ଦକୁମାର (ବଙ୍ଗଳା)—୩, ୨୭ । (୨୩୭) ସଂ. ରା—ଅଯୋଧ୍ୟା ୩୦, ୩୬ । (୨୩୮) ବି. ପୁ—୩, ୨୭ (୨୩୯) ସଂ. ମା. ବ୍ର. ପୁ—ପୃ ୫୩୫ (୨୪୦) ସଂ. ଗ. ବୈ. ପୁ—ପୃ ୨୬ । (୨୪୧) ସଂ. ମ—ଆଦ୍ୟ ୩, ୨୨-୨୩ । ୩, ୮୫, ୧୮ । ୩, ୩୪, ୫୧ । (୨୪୨) ଏହୁ ଯେ ଗୁରୁ ମୋହର ସର୍ବ ସିଦ୍ଧିପ୍ରଦ । ସା. ମ—ଆଦ୍ୟ—ପୃ ୧୦୫ ।

(୨୪୩) ଗୁରୁବଚନ ଯେବେ ନେଷ୍ଟଣ କରଇ ସିସି
ହତମୂର୍ଖ ହୁଅଇ ସେ ଅଣବଦ୍ୟାବାସୀ ।
ମୃ. ପୋ—ମଧ୍ୟ ୧ମ—ପୃ ୮୦କ ।

(୨୪୪) ସା. ମ. ବନ—ପୃ ୧୩୩ । ଦ୍ରୋଣ—୧୩୨ ।

(୨୪୫) ଗୁରୁଙ୍କ ଚରଣ କି କେବେ ଛୁଏ ଆନ । ସା. ମ—ଦ୍ରୋଣ—ପୃ ୧୨୬ ।

(୨୪୬) ସା. ମ—ମଧ୍ୟ—ପୃ ୧୨ । ମୃ. ପୋ—ମଧ୍ୟ ୧ମ—ପୃ ୧୩ଖ ଓ ୧୪କ ।

(୨୪୭) "ବିଦ୍ୟାର ପ୍ରସାଦେ ଆମ୍ଭଙ୍କୁ କରନ୍ତୁ ନମସ୍କାର ।"

"ଜନ୍ମପୂଜା ଯାଇ ବସୁଚଇ ଶାନ୍ତପଣ ।"

ମୃ. ପୋ—ମଧ୍ୟ ୨ୟ—ପୃ ୨୭୪ ଖ ।

(୨୪୮) A.R A.B— K. C. Panigrahi—P. 119 (୨୪୯) ସା. ମ—ମଧ୍ୟ—ପୃ ୪୧୨-୪୧୭ । ମୃ. ପୋ—ମଧ୍ୟ ୨ୟ—ପୃ ୨୭୬ କ । (୨୫୦) ସା. ମ—ଆଦ୍ୟ—ପୃ ୧୦୩ । ମୃ. ପୋ—ଆଦ୍ୟ ୧ମ—ପୃ ୧୫୫ଖ । (୨୫୧) ସା. ମ—ଆଦ୍ୟ—ପୃ ୧୦୦ । ମୃ. ପୋ—ଆଦ୍ୟ ୧ମ—ପୃ ୧୪୫ କ (୨୫୨) ଓ. ସାଇ—ସୂର୍ଯ୍ୟନାରାୟଣ—୧ମ—ପୃ ୫୯୩ (୨୫୩) ପାତଞ୍ଜଳ ଯୋଗଦର୍ଶନ—ପୃ ୯୪ (୨୫୪) ବୃ. ପ—୧, ୫୪ । (୨୫୫) ସା. ମ—ଆଦ୍ୟ—ପୃ ୯୯ (୨୫୬) ଏଜନ୍, ପୃ ୧୦୩, ୧୧୧, ୧୧୨ । (୨୫୭) ସା. ମ—ଆଦ୍ୟ—ପୃ ୧୦୦ । ମୃ. ପୋ—ଆଦ୍ୟ ୧ମ—ପୃ ୧୪୫ଖ । (୨୫୮) ସା. ମ—ଆଦ୍ୟ—ପୃ ୯୩, ୯୭ । ମୃ. ପୋ—ଆଦ୍ୟ ୧ମ—ପୃ ୧୩୫କ (୨୫୯) O.H.R.J—Oct—1953—P. 187-194 (୨୬୦) ସା. ମ—ମଧ୍ୟ—ପୃ ୪୦୯ । ମୃ. ପୋ—ମଧ୍ୟ ୨ୟ—ପୃ ୨୬୨ କ । (୨୬୧) 'ଚଣ୍ଡାଳ' ଅର୍ଥ 'ଶବର' । ଶ. କ. ବୋ. ଅ—ଗୋପୀନାଥ—୧ମ—ପୃ ୪୨୬ । (୨୬୨) ସା. ମ—ବନ—ପୃ ୨୪୦ । ମୃ. ପୋ—ବନ ୧ମ—ପୃ ୧୧୫ ଖ ଓ ୧୧୬ କ ।

(ପୋଥିରେ ପିଶାଚୁଣୀର ନାମ 'କରଯୁଗ' । ମୁଦ୍ରିତ ଗ୍ରନ୍ଥରେ ତାହା 'କରଙ୍କୀ')

---

# ଚତୁର୍ଥ ଅଧ୍ୟାୟ

## ଧର୍ମ

ମାନବଜାତିର ଇତିହାସରେ ଧର୍ମ-ଭାବନା ବହୁ ପ୍ରାଚୀନ । ଧର୍ମାନୁଭୂତି ହସ, କାନ୍ଦ, ପ୍ରେମ ଓ କ୍ଷମା ଭଳି ଏକ ମନୋବୃତ୍ତି । (୧) ଏହା ସାର୍ବଜନୀନ ଏବଂ ସଂସ୍କୃତି, ରାଜନୀତି, ପରିବାର, ଶିକ୍ଷା ତଥା ଅନ୍ୟ ସମସ୍ତ ମାନବୀୟ ଆବଶ୍ୟକତା ସହ ସମ୍ବନ୍ଧାନ୍ୱିତ । (୨) ପ୍ରାଚୀନ କାଳରେ ରାଷ୍ଟ୍ର, ସରକାର ଓ ଧର୍ମ ମଧ୍ୟରେ କୌଣସି ପ୍ରଭେଦ ଦେଖାଯାଉ ନଥିଲା । (୩) ଧର୍ମର ବହୁ ଉପଯୋଗିତା ମଧ୍ୟ ରହିଛି । ତାହା ମାନବ-ପ୍ରାଣରେ ସାମୂହିକ କଲ୍ୟାଣର ଦୃଷ୍ଟିଭଙ୍ଗୀ ସୃଷ୍ଟି କରେ । ସମାଜ-କଲ୍ୟାଣ ସହ ଧର୍ମର ସମନ୍ୱୟ ନ ହେଲେ ମାନବ-ଜୀବନ ଲକ୍ଷ୍ୟହୀନ, ସ୍ଥିତିଶୂନ୍ୟ ଓ ନୀରସ ହୋଇଯାଏ । (୪) ସୁତରାଂ ସାମାଜିକ ଜୀବନର ବିସ୍ତୃତ କ୍ଷେତ୍ରରେ ଧର୍ମ-ଧାରଣାର ବିହଙ୍ଗାବଲୋକନ ଆବଶ୍ୟକ ।

ମଧ୍ୟ ଯୁଗୀନ ଭାରତବର୍ଷରେ ବହୁ ଧର୍ମମତର ପ୍ରଭାବ ଥିଲା । ବୌଦ୍ଧଧର୍ମ ଦ୍ୱାଦଶ ଶତାବ୍ଦୀରୁ ଲୋପ ପାଇ ଯାଇଥିଲେ ହେଁ ପୂର୍ବ ଭାରତରେ ତାହାର ସତ୍ତା ରହିଥିଲା । ଏହି ଯୁଗର ବୌଦ୍ଧମାନେ ପ୍ରାୟଶଃ ବଜ୍ରଯାନୀ ସଂପ୍ରଦାୟ-ଭୁକ୍ତ ଥିଲେ ଏବଂ ରହସ୍ୟମୟୀ କ୍ରିୟା ଓ ଗୁହ୍ୟ ସାଧନାରେ ନିଯୁକ୍ତ ଥିଲେ । (୫) ଜୈନଧର୍ମରେ ବହୁ ଆଗରୁ ନାନା ଶାଖା ଦେଖା ଦେଇଥିଲା । ଏହି ଧର୍ମର ପ୍ରଭାବ କେବଳ ରାଜପୁତାନା ଏବଂ ପଶ୍ଚିମ ଭାରତରେ ସୀମିତ ହୋଇ ରହିଥିଲା । (୬) ବିଜୟନଗର ରାଜ୍ୟର ଉତ୍ଥାନ ସଙ୍ଗେ ସଙ୍ଗେ ଶୈବଧର୍ମର ଉନ୍ନତି ଦେଖା ଦେଇଥିଲା । (୭) ଶୈବମାନଙ୍କ ମଧ୍ୟରେ କାଳକ୍ରମେ ପଶୁପତି, କାପାଳିକ, ବୀରଶୈବ, ଶିବ ସିଦ୍ଧାନ୍ତ ଓ ଲିଙ୍ଗାୟତ ଭଳି ଶାଖାମାନ ବିକାଶ ଲାଭ କରିଥିଲା । ମୁସଲମାନମାନେ ଭାରତକୁ ଆଗମନ କଲାବେଳେ ବୌଦ୍ଧ ବଜ୍ରଯାନ ଶାଖାର ସାଧକ ତଥା ଶୈବ କାପାଳିକ ବିହାର, ଆସାମ ଓ କଳିଙ୍ଗରେ ପୂରି ରହିଥିଲେ । (୮) ବୌଦ୍ଧ, ଜୈନ ଓ ଶୈବ ଧର୍ମ ସହ ବୈଷ୍ଣବ ଧର୍ମ ମଧ୍ୟ ଏହି କାଳରେ ପ୍ରଚଳିତ ଥିଲା । (୯) ବୈଷ୍ଣବମାନଙ୍କ ମଧ୍ୟରେ ଶ୍ରୀ ସଂପ୍ରଦାୟ, ବ୍ରହ୍ମ ସଂପ୍ରଦାୟ, ରୁଦ୍ର ସଂପ୍ରଦାୟ ଓ

ସନକାଦ୍ଧି ସଂପ୍ରଦାୟର ସୃଷ୍ଟି ହୋଇଥିଲା । ଧର୍ମ-ଜଗତରେ ମୂର୍ତ୍ତି ପୂଜା, ନାନା ଦେବଦେବୀ ଉପାସନା ସେ କାଳରେ ପ୍ରଚଳିତ ଥିଲା । କର୍ମକାଣ୍ଡ, ପୂଜାପାଠ, ତୀର୍ଥ-ଉପବାସ ଧର୍ମର ପ୍ରଧାନ ଅଙ୍ଗ ରୂପେ ବିବେଚିତ ହେଉଥିଲା । ବ୍ରାହ୍ମଣମାନେ ଧର୍ମାଧିକାରୀ ଥିଲେ । ସେମାନେ ଜାତିର ନୈତିକ ଓ ଧାର୍ମିକ ଗୁରୁ ରୂପରେ ସମ୍ମାନିତ ହେଉଥିଲେ । ରାମାନନ୍ଦ ଓ କବୀରଙ୍କ ଭକ୍ତ ସନ୍ଥମାନେ ବ୍ରାହ୍ମଣଙ୍କର ଏକାଧିପତ୍ୟ ଓ ଜାତିଭେଦ ପ୍ରଥାର ବିରୁଦ୍ଧରେ ଆନ୍ଦୋଳନ କରୁଥିଲେ । (୧୦) ଏକାଦଶ ଶତାବ୍ଦୀରେ ରାମାନୁଜ; ଚତୁର୍ଦ୍ଦଶ ଶତାବ୍ଦୀରେ ମାଧ୍ୱାଚାର୍ଯ୍ୟ, ଜୟତୀର୍ଥ, ନାମଦେବ; ପଞ୍ଚଦଶ ଶତାବ୍ଦୀରେ ବିଷ୍ଣୁସ୍ୱାମୀ, ରାମାନନ୍ଦ ଓ କବିରଙ୍କ ଭକ୍ତ ମହାତ୍ମାମାନେ ଆବିର୍ଭୂତ ହୋଇ ବୈଷ୍ଣବ-ଭକ୍ତି ଆନ୍ଦୋଳନକୁ ଭାରତରେ ପ୍ରତିଷ୍ଠା କରିଥିଲେ । (୧୧) ମୁସଲମାନ ଧର୍ମ ଉତ୍ତର-ଭାରତର କେତେକ ସ୍ଥାନରେ ତଥା ଦାକ୍ଷିଣାତ୍ୟର ଉପକୂଳବର୍ତ୍ତୀ ଅଞ୍ଚଳରେ ସୀମିତ ହୋଇ ରହିଥିଲା । ପାରମ୍ପରିକ ହିନ୍ଦୁଧର୍ମ ସାରା ଭାରତରେ ବିଦ୍ୟମାନ ଥିଲା । ମଧ୍ୟଯୁଗରେ ହିନ୍ଦୁଧର୍ମର ବିଭିନ୍ନ ଶାଖା, ବୈଷ୍ଣବ, ଶାକ୍ତ, ଶୈବ, ସହଜିଆ ବୌଦ୍ଧ ତଥା ବୌଦ୍ଧଧର୍ମର ଅନ୍ୟ ଶାଖାର ମତବାଦ ଭାରତୀୟ ସମାଜ ଉପରେ ପ୍ରଭାବ ପକାଉଥିଲା । (୧୨) ଏହି କାଳରେ ବୈଷ୍ଣବ ଧର୍ମ ଅତ୍ୟନ୍ତ ଲୋକପ୍ରିୟ ହେବାକୁ ଲାଗିଥିଲା । (୧୩) ଭକ୍ତି ଆନ୍ଦୋଳନ ସୁବିସ୍ତୃତ ହୋଇ ସାରା ଭାରତକୁ ପ୍ରଭାବିତ କରୁଥିଲା । ହିନ୍ଦୁଧର୍ମର ସଂସ୍କାର କରି ମୁସଲମାନମାନଙ୍କ କୁପ୍ରଭାବରୁ ତାହାକୁ ରକ୍ଷା କରିବା ଏହି ଆନ୍ଦୋଳନର ମୁଖ୍ୟ ଲକ୍ଷ୍ୟ ଥିଲା । (୧୪) ମଧ୍ୟଯୁଗରେ ଧର୍ମାଚରଣ ପାଇଁ ଲୋକଙ୍କର ସ୍ୱାଧୀନତା ଥିଲା । ଗୋଟିଏ ପରିବାର ମଧ୍ୟରେ ପିତା କୃଷ୍ଣଙ୍କର, ପୁତ୍ର କାଳୀଙ୍କର, ମାତା ଶିବଙ୍କର ଓ କନ୍ୟା ହନୁମାନଙ୍କର ଆରାଧନା କରିପାରୁଥିଲେ । (୧୫)

ଏହି ସମସ୍ତ ଧର୍ମମତ ଓ ଆନ୍ଦୋଳନ ପଞ୍ଚଦଶ ଶତାବ୍ଦୀର ଉତ୍କଳୀୟ ସମାଜକୁ ପ୍ରଭାବିତ କରୁଥିଲା । ଉତ୍କଳୀୟଙ୍କର ଧର୍ମ-ଧାରଣାରେ କେତେକ ସ୍ୱତନ୍ତ୍ରତା ବି ଦେଖା ଦେଇଥିଲା । ଲୋକଙ୍କ ମଧ୍ୟରେ ଧର୍ମପ୍ରତି ଗଭୀର ଆସ୍ଥା ମଧ୍ୟ ଥିଲା । ନିମ୍ନ ଆଲୋଚନାରୁ ଏହି ଉକ୍ତିମାନଙ୍କର ସତ୍ୟତା ପ୍ରତିପାଦିତ ହେବ ।

## ୧· ବିଭିନ୍ନ ଧର୍ମମତ

ସାରଳା ଦାସଙ୍କ ମହାଭାରତରେ ଧର୍ମସଂପର୍କୀୟ ବହୁ ସୂଚନା ନିହିତ । ବୌଦ୍ଧ, ଜୈନ, ଶୈବ, ଶାକ୍ତ, ସୌର ଓ ଗାଣପତ୍ୟ ଭଳି ବିଭିନ୍ନ ମତବାଦର ପରିପ୍ରକାଶ ସାରଳାଙ୍କ ଲେଖାରେ ଦେଖାଯାଏ । ସେ କାଳରେ ଉତ୍ତର ଭାରତ ଭଳି ଉତ୍କଳରେ ମଧ୍ୟ ନାନା ଧାର୍ମିକ ମତବାଦ ପ୍ରଭାବ ପକାଉଥିଲା । ଉତ୍କଳୀୟ ଜନ-ଜୀବନରେ ଧର୍ମ ଏକ ପ୍ରମୁଖ ସ୍ଥାନ ଲାଭ କରିଥିଲା । ଏଠାରେ ତାହାର ବିଶ୍ଳେଷଣ କରିଯାଇପାରେ ।

### (କ) ବୌଦ୍ଧମତ

ପ୍ରାଚୀନ ଉତ୍କଳରେ ବୌଦ୍ଧଧର୍ମର ଖୁବ୍ ପ୍ରସାର ହୋଇଥିବାର ଜଣାଯାଏ । ବୌଦ୍ଧ ଧର୍ମଗ୍ରନ୍ଥ 'ଦାଠାବଂଶ'ରେ ବୁଦ୍ଧଦେବଙ୍କ ଦନ୍ତ କଳିଙ୍ଗ ଦେଶରେ ପୂଜା ପାଉଥିଲା ବୋଲି କୁହାଯାଇଅଛି । (୧୬) ଉତ୍କଳର ଦୁଇଜଣ ବଣିକ 'ତପୁସା' ଓ 'ଭାଲ୍ଲିକ' ସର୍ବପ୍ରଥମେ ବୁଦ୍ଧଙ୍କର ଶିଷ୍ୟ ହୋଇଥିବାର ଜଣାଯାଏ । (୧୭) ଅଶୋକ କଳିଙ୍ଗର ଜଣେ ସନ୍ନ୍ୟାସୀଙ୍କଠାରୁ ବୌଦ୍ଧଧର୍ମ ଗ୍ରହଣ କରିଥିଲେ । (୧୮) ଅଶୋକ ବୌଦ୍ଧ ହେଲେ ଧୀବରରାଜଙ୍କ କନ୍ୟା କାରୁବାକୀଙ୍କୁ ବିବାହ କରି-ପାରିବେ ବୋଲି କାରୁବାକୀଙ୍କ ଅଭିଭାବକମାନେ ମତ ଦେଇଥିଲେ । ତେଣୁ ସେ ସର୍ବାସ୍ତିବାଦର ଶିକ୍ଷକ ଉପଗୁପ୍ତଙ୍କ ପରାମର୍ଶ ଅନୁସାରେ ବୌଦ୍ଧଧର୍ମ ଗ୍ରହଣ କଲେ ଏବଂ କାରୁବାକୀଙ୍କୁ ବିବାହ କଲେ । (୧୯) ଏହି ବୃତ୍ତାନ୍ତରୁ ଜଣାଯାଏ ଯେ, କଳିଙ୍ଗର ଧୀବର ସଂପ୍ରଦାୟର ଲୋକେ କଳିଙ୍ଗଯୁଦ୍ଧ ପୂର୍ବରୁ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ । ଅଶୋକଙ୍କ ସମୟଠାରୁ କଳିଙ୍ଗ ବୌଦ୍ଧାଚାର୍ଯ୍ୟମାନଙ୍କର କର୍ମସ୍ଥଳ ହେବାକୁ ଲାଗିଲା । (୨୦) ବୌଦ୍ଧଗ୍ରନ୍ଥମାନଙ୍କରେ 'ଓଡ୍ଡିୟାନ୍'ର ବହୁ ଉଲ୍ଲେଖ ମିଳେ । କଳିଙ୍ଗରୁ ବୌଦ୍ଧବଜ୍ରଯାନ ଶାଖା ଉଦ୍‌ଭୂତ ହୋଇଥିବାର ଜଣାଯାଏ । (୨୧) ଖ୍ରୀଷ୍ଟ ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାରେ ବୌଦ୍ଧଧର୍ମର ପ୍ରାଧାନ୍ୟ ଥିଲା । ଗଙ୍ଗବଂଶୀୟ ରାଜା ମଦନ ମହାଦେବଙ୍କ ସମୟରୁ ଏହି ଧର୍ମର ଅଧଃପତନ ଆରବ୍ଧ ହେଲା । (୨୨) ବୈଷ୍ଣବଧର୍ମର ଆବିର୍ଭାବ ହେବା ପରେ ବୌଦ୍ଧଧର୍ମ ଭାରତ ତଥା ଉତ୍କଳରୁ ଲୋପ ପାଇଲା । (୨୩)

ପଞ୍ଚଦଶ ଶତାବ୍ଦୀ ବେଳକୁ ଧର୍ମ ଭାବରେ ବୌଦ୍ଧଧର୍ମ ଉତ୍କଳରେ ପ୍ରବର୍ତ୍ତିତ ନ ଥିଲା । କିନ୍ତୁ ଏହି ଧର୍ମମତର ଗଭୀର ପ୍ରଭାବ ସମାଜ ଉପରେ ରହିଥିଲା ।

ସାରଳା ଦାସଙ୍କ ମହାଭାରତରେ ତେଣୁ ବୌଦ୍ଧଧର୍ମ-ସୁଲଭ ନାନା ଭାବ-ଭାବନା ନିହିତ ଅଛି ।

ବୌଦ୍ଧଧର୍ମରେ ଶୂନ୍ୟବାଦ ଏକ ବିଶିଷ୍ଟ ଦିଗ । ସେମାନେ ଶୂନ୍ୟରୁ ଜଗତର ଉତ୍ପତ୍ତି ପ୍ରଦର୍ଶନ କରନ୍ତି । (୨୪) ସାରଳା ଦାସ ଶୂନ୍ୟରୁ ସୃଥିବୀର ସୃଷ୍ଟି ହୋଇଅଛି ବୋଲି ଦର୍ଶାଇଅଛନ୍ତି ।

"ଆଦ୍ୟରୁ ଶୂନ୍ୟ ହିଁ ଜାତ ଶୂନ୍ୟରୁ ପବନ
ପବନରୁ ଜାତ ଯୋଗପୁରୁଷ ସମାନ ।
ଯୋଗପୁରୁଷରୁ ଜାତ ହେଲେ ଗାୟତ୍ରୀ
ଏହା ତହୁଁ ଉପୁଜିଲା ମହାମନ୍ତ୍ର ଗୁରି ।
ମହାମନ୍ତ୍ରୁଁ ଉପୁଜିଲା ଗୁରିଗୋଟି ବେଦ
ତହୁଁ ଉତପତ୍ତି ହେଲା ସାତଗୋଟି ଛନ୍ଦ ।
ଛନ୍ଦ ତହୁଁ ଉତପତ୍ତି ହେଲା କର୍ମ ଜାଣ
ଏହା ତହୁଁ ଉତପତ୍ତି ହୋଇଲା ନିର୍ଗୁଣ ।
ନିର୍ଗୁଣରୁ ଉତପତ୍ତି ଅଣ୍ଡ ସ୍ୱର୍ଣ୍ଣବର୍ଣ୍ଣ
ଅଣ୍ଡପୁଟ ଗୋଟି ହେଲା ଦେବ ନିରଞ୍ଜନ ।
ନିରଞ୍ଜନରୁ ଉତପତ୍ତି ହୋଇଲା ତପନ
ସେହି ତେଜରୁ ଶକତି ହେଲା ଉତପନ୍ନ ।" (୨୫)

ବୌଦ୍ଧ ମହାଯାନ ପନ୍ଥାର ଶୂନ୍ୟବାଦୀ ଦର୍ଶନ କାଳକ୍ରମେ ସାହିତ୍ୟରେ 'ଅଲେଖ', 'ନିର୍ଗୁଣ', 'ନିରାକାର', 'ଅଣାକାର', 'ନିରଞ୍ଜନ' ଭଳି ଶୂନ୍ୟ-ବୋଧକ ଶବ୍ଦରେ ରୂପ ପାଇଲା । (୨୬) ସାରଳାଙ୍କ ମହାଭାରତରେ ଏତାଦୃଶ ଶୂନ୍ୟବାଚକ ଶବ୍ଦ ବହୁ ସ୍ଥଳରେ ପ୍ରୟୋଗ କରାଯାଇଛି; ଯଥା—

"ଶଙ୍ଖ ତାରଣ ଯେହୁ ଅଶୋକ ଅଲେଖ ।" (୨୭)
"ନିର୍ଗୁଣରୁ ଉତପତ୍ତି ଅଣ୍ଡ ସ୍ୱର୍ଣ୍ଣବର୍ଣ୍ଣ ।" (୨୮)
"ଅଣାକାର ପୁରୁଷର ଦେଖି ଚନ୍ଦ୍ରବର୍ଣ୍ଣ ।" (ଆ ୭୩ ପୃ)
"ନିରାକାର ବୋଧିଲା ତା ଜ୍ୟେଷ୍ଠ ସହୋଦରୀ ।" (ଆ ୭୫ ପୃ)
"ଶଯ୍ୟା ସମୀପେ ବିଜୟ କଲେ ନିରଞ୍ଜନ ।" (୨୯)

ରୁଦ୍ରସୁଧାନିଧିରେ ଅଲେଖ, ଶୂନ୍ୟ, ଅଣାକୃତ, ଅଣଅକ୍ଷର ଭଳି ଶୂନ୍ୟ-ବୋଧକ ଶବ୍ଦମାନ ମିଳେ । (୩୦) ଦାର୍ଣ୍ଣିଗ୍ରାମାୟଣରେ ନିର୍ଗୁଣ ଓ ନିରାକାର ଶବ୍ଦ (ଆ।୨ପୃ), 'ସପ୍ତାଙ୍ଗ ଯୋଗ ସାରଟୀକା'ରେ ଅଲେଖ, ନିରଞ୍ଜନ, ଶୂନ୍ୟ ଓ ମହାଶୂନ୍ୟ ଆଦି ଶବ୍ଦ ରହିଛି । (୩୧)

ବୌଦ୍ଧ ସହଜିଆ ଧର୍ମମତର ପ୍ରଭାବ ପଞ୍ଚଦଶ ଶତକର ଉତ୍କଳରେ ଥିଲା । ସହଜିଆ ଧର୍ମରେ ଯୋଗ-ସାଧନା ଗୁରୁତ୍ୱ ଲାଭ କରେ । ଏହି ମତବାଦ ବୌଦ୍ଧଧର୍ମର ପ୍ରବୃତ୍ତି ଓ ରୂପରଙ୍ଗକୁ ଗ୍ରହଣ କରିଥିଲେ ହେଁ ମୂଳତଃ ଗୋଟିଏ ଯୌଗିକ ସଂପ୍ରଦାୟ । (୩୨) ସାରଳା ବହୁ ସ୍ଥଳରେ ଯୋଗର କଥା କହିଛନ୍ତି । କବି କହନ୍ତି ଯେ, ଅଶ୍ୱତ୍ଥାମା ଅଣାକାରଙ୍କୁ ଚତୁର୍ଦ୍ଦଶ ବର୍ଷକାଳ ଧ୍ୟାନ କରିଥିଲେ । (ଆ୧୧୧ପୃ) ନାଗାର୍ଜ୍ଜୁନ ତୁଳସୀ ଓ ଜଳ ସେବନ କରି ଅଣାକାର ରୁଦ୍ରଙ୍କୁ ଧ୍ୟାନ କରିଥିଲେ । (ସ୩୩୮ପୃ) ଯୋଗକୁ ନିନ୍ଦା କଲେ କରଚ୍ଛେଦ ଦଣ୍ଡ ମିଳେ ବୋଲି ତାଙ୍କର ମତ ।

"ଯୋଗକୁ ନିନ୍ଦା କରିଲେ ହେବ କରଚ୍ଛେଦ
ତପକୁ ନିନ୍ଦା କରିଲେ ନିଶ୍ଚେ ହେବ ବଧ ।" (ବି୭ପୃ)

'ସହଜସୁନ୍ଦରୀ' ଓ 'ଶାବରୀ' ଆଦି କଥାରୁ ସହଜିଆ ବୌଦ୍ଧମତର ଆଭାସ ମିଳେ । (୩୩) ସାରଳା ମହାଭାରତର 'ଖନିକାର ଜନ୍ମ ବୃତ୍ତାନ୍ତ' ପ୍ରସଙ୍ଗରେ ସହଜସୁନ୍ଦରୀଙ୍କ କଥାରେ ରହିଛି । କବି ବର୍ଣ୍ଣନା କରିଅଛନ୍ତି ଯେ, ରାଧାଙ୍କୁ ବଶୀଭୂତ କରିବା ଉଦ୍ଦେଶ୍ୟରେ ବାସୁଦେବ ସ୍ୱର୍ଗରୁ ସହଜସୁନ୍ଦରୀଙ୍କୁ ଆଣିଥିଲେ । ତାଙ୍କର ସାହାଯ୍ୟରେ ରାଧା ଶ୍ରୀକୃଷ୍ଣଙ୍କ ପ୍ରତି ପ୍ରେମାକୃଷ୍ଟ ହେଲେ । ରାଧା ସେହି ସହଜସୁନ୍ଦରୀଙ୍କୁ ଦୂତୀ କରି ଶ୍ରୀକୃଷ୍ଣଙ୍କ ପାଖକୁ ପ୍ରେରଣ କରିଥିଲେ । କାମାତୁର ଶ୍ରୀକୃଷ୍ଣ ତାଙ୍କୁ ରାଧା ବୋଲି ଭାବିଲେ ଓ ତାଙ୍କସହ ରତିକ୍ରୀଡ଼ାରେ ମାତିଲେ । (ଆ୧୫୨ପୃ)

ସହଜଯାନ ଓ ବଜ୍ରଯାନ ଗ୍ରନ୍ଥରେ 'ମହାରସ' ବା 'ମହାସୁଖରସମ୍'ର କଥା ଅଛି । ତାନ୍ତ୍ରିକ ବୌଦ୍ଧଧର୍ମରେ ମହାସୁଖକୁ ବଜ୍ରସତ୍ତ୍ୱର ପ୍ରତୀକ ଓ ପ୍ରଜ୍ଞା-ଉପାୟର ମିଳନ ସ୍ଥଳୀ ବୋଲି କୁହାଯାଇଅଛି । (୩୪) ସାରଳା ଦାସ ଏହି 'ମହାରସ' ବା 'ମହାସୁଖରସ'ର କଥା ମୂଷଳୀ ପର୍ବରେ ବର୍ଣ୍ଣନା କରିଛନ୍ତି । କବି କହନ୍ତି ଯେ, ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ 'କୋକୁଆ' ଉଦ୍ଦେଶ୍ୟରେ ଯେଉଁ ଯଷ୍ଟିକୁ

ଭୁଲାଇ ଫିଙ୍ଗିଦେଲେ, ତାହା ଗୋଟିଏ କଦମ୍ବ ଗଛରେ ଆଘାତ କଲା । ଗଛରୁ କ୍ଷୀରର ଏକ ନଦୀ ବହିଗଲା । ସେ କ୍ଷୀରର ସ୍ୱାଦ ମଧୁର ଅମୃତଠାରୁ ବଳି ସୁମିଷ୍ଟ ଥିଲା । ତାହାକୁ ପାନ କରି ସମସ୍ତେ ନିଦ୍ରାରେ ଅଚେତନ ହେଲେ । (ପୃ୭)

ସହଜଯାନ ଓ ବଜ୍ରଯାନରେ ପିଣ୍ଡ-ବ୍ରହ୍ମାଣ୍ଡବାଦର ବର୍ଣ୍ଣନା ଦେଖାଯାଏ । (୩୫) ସାରଳା ମହାଭାରତରେ ଏହି ପିଣ୍ଡ-ବ୍ରହ୍ମାଣ୍ଡର କଥା ରହିଛି । 'ଭୀମଜନ୍ମ' ପ୍ରସଙ୍ଗରେ ଅଗ୍ନି ପଣ୍ଡୁଙ୍କୁ ପିଣ୍ଡ-ବ୍ରହ୍ମାଣ୍ଡର ତତ୍ତ୍ୱ କହିଥିଲେ । ଯଥା—

"ଦେବତାଏ କାହିଁ ଥାନ୍ତି ଆହେ ମହୀପାଳ
ନିଜ ଶରୀରେ ଦେବତା ବଦନ୍ତି ଅନଳ ।
ତାଙ୍କର ଶିରରେ ବିଜେ କରିଥାନ୍ତି ବ୍ରହ୍ମା
କପାଳ ପଟ୍ଟରେ ନାରାୟଣ ଯେ ମହାତ୍ମା ।
ଚନ୍ଦ୍ର ସୂର୍ଯ୍ୟ ଦେବତା ଯେ ଚକ୍ଷୁ ପୁଣି ବେନି
ନାସିକାରେ ବହିରଇ ପବମାନ ଜ୍ଞାନୀ ।
ଦୁଇଆଡ଼କୁ ଯେ କର୍ଣ୍ଣମୂଳ ସ୍ଥଳ ବେନି
ରୁଦ୍ର ଦେବତା ବସଇ ଭୃଙ୍ଗୀଗଣ ଘେନି ।
ବେନି ଶ୍ରବଣେ ବସଇ ଜାଣ ଚଇତନ
ପଦ୍ମକୁ ଭେଦି ବସଇ ଶୂନ୍ୟ ନିରଞ୍ଜନ ।
ବତିଶଟଗୋଟି ଦନ୍ତ ଯେ ବସେ ବେନି ପାଟି
ଅଗୁଟ ବଜ୍ର ଘେନିଣ ଇନ୍ଦ୍ର ବସଇଟି ।
ଶରୀର ଶିର ଶବଦ ଆଦି ରିତୁ ଜାଣ
ଶୁକ୍ର ବୃହସ୍ପତି ବେନି କପୋଳେ ବସିଣ । (ଆ୨୭ପୃ)

ନାୟିକା ସାହାଯ୍ୟରେ ସାଧନା କରିବା ସହଜଯାନର ଏକ ବିଶିଷ୍ଟତା । (୩୬) ସାରଳା-ବର୍ଣ୍ଣିତ ଭୀମ-କାଳଞ୍ଜୀଙ୍କ ବୃତ୍ତାନ୍ତରେ ଏହାର ପ୍ରଭାବ ସ୍ପଷ୍ଟ । କବି କହନ୍ତି ଯେ, ଭୀମ ଓ କାଳଞ୍ଜୀଙ୍କ ଶୃଙ୍ଗାର ଦୁଇ ଦିନ ଓ ଦୁଇ ରାତି ପର୍ଯ୍ୟନ୍ତ ଚାଲିଥିଲା । ଶେଷରେ କାଳଞ୍ଜୀ କନ୍ୟା ଦେହତ୍ୟାଗ କଲା ଓ ଭୀମସେନ ଶୃଙ୍ଗାର-ସମରରେ ବିଜୟୀ ହେଲେ । (ବ୨୭୨ପୃ)

ବୌଦ୍ଧଧର୍ମ କ୍ରମଶଃ ଓଡ଼ିଶାରେ ଜଗନ୍ନାଥଙ୍କୁ କେନ୍ଦ୍ର କରି ଗଢ଼ି ଉଠୁଥିବା ଓଡ଼ିଶୀ ବୈଷ୍ଣବଧର୍ମର ଅଙ୍ଗୀଭୂତ ହୋଇଯାଇଥିଲା । ଅଷ୍ଟମ ଶତାବ୍ଦୀରେ ବୌଦ୍ଧ ସିଦ୍ଧାଚାର୍ଯ୍ୟ ଇନ୍ଦ୍ରଭୂତି ଜଗନ୍ନାଥଙ୍କୁ ବୁଦ୍ଧ ବୋଲି ପରିକଳ୍ପନା କରିଥିଲେ—

"ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜ୍ଞାନବରାର୍ଚ୍ଚିତମ୍ ।
ସର୍ବବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମଂ ।" (୩୭)

ପୁରୀଧାମର ଜଗନ୍ନାଥ ମନ୍ଦିର ଗାତ୍ରରେ ଥିବା ଦଶାବତାର ଚିତ୍ରରେ ବୁଦ୍ଧଙ୍କ ସ୍ଥାନରେ ଜଗନ୍ନାଥଙ୍କ ମୂର୍ତ୍ତି ଦେଖାଯାଏ । ଏଥିରୁ ପ୍ରତିପାଦିତ ହୁଏ ଯେ, ସାରଳାଙ୍କ ବହୁ ପୂର୍ବରୁ ଉତ୍କଳରେ ଜଗନ୍ନାଥଙ୍କୁ ବୁଦ୍ଧ ରୂପରେ କଳ୍ପନା କରିବାର ପରମ୍ପରା ପ୍ରତିଷ୍ଠିତ ହୋଇ ସାରିଥିଲା ।

ସାରଳା ଦାସ ଏହି ଉତ୍କଳୀୟ ପରମ୍ପରାକୁ ମହାଭାରତରେ ସୁରକ୍ଷିତ କରିଅଛନ୍ତି । ସେ ମଧ୍ୟ ଜଗନ୍ନାଥଙ୍କୁ ବୁଦ୍ଧ ରୂପରେ କଳ୍ପନା କରିଛନ୍ତି । ଯଥା—

"ସଂସାର ଜନଙ୍କୁ ତାରିବା ନିମନ୍ତେ
ବଉଦ୍ଧ ରୂପରେ ବିଜେ ଜଗନ୍ନାଥେ ।" (ମ୩୧୯ପୃ)
"ଏକ ମୂର୍ତ୍ତି ତିନି ରୂପ ଧରି ଦାମୋଦର
ବଉଦ୍ଧ ରୂପରେ ବିଜେ ଶ୍ରୀନୀଳକନ୍ଦର ।" (ମ୩୧୪ପୃ)
"ବଳଭଦ୍ର ସୁଭଦ୍ରା ଏ କୃଷ୍ଣ ତିନି ରୂପ
ବଉଦ୍ଧ ରୂପରେ ହେଲେ ଏମନ୍ତ ସ୍ୱରୂପ ।" (୩୮)

## (ଖ) ଶାକ୍ତମତ

ଭାରତବର୍ଷରେ ଶାକ୍ତଧର୍ମ ବୌଦ୍ଧଧର୍ମ ଅବନତ ଅବସ୍ଥା ପ୍ରାପ୍ତ ହେବା ପରେ ଅର୍ଥାତ୍ ସପ୍ତମ ଶତାବ୍ଦୀଠାରୁ ବିଶେଷ ଲୋକପ୍ରିୟ ହୁଏ । (୩୯) କିନ୍ତୁ ଏହି କାଳର ବହୁ ପୂର୍ବରୁ ଦେବୀଙ୍କର ଶକ୍ତି ଓ ମହିମା ବିଭିନ୍ନ ସାହିତ୍ୟରେ କୀର୍ତ୍ତିତ ହୋଇଥିବାର ପରିଦୃଷ୍ଟ ହୁଏ । କେନୋପନିଷଦରେ ଦେବୀ ହୈମବତୀ ଦେବରାଜ ଇନ୍ଦ୍ରଙ୍କୁ ବ୍ରହ୍ମ ବିଦ୍ୟାର ଉପଦେଶ ପ୍ରଦାନ କରିବା ବିଷୟ ବର୍ଣ୍ଣିତ ହୋଇଅଛି । (୪୦) ସଂସ୍କୃତ ମହାଭାରତରେ କାଳୀ (୪୧), କାତ୍ୟାୟିନୀ (୪୨ ଓ ଚଣ୍ଡୀଙ୍କର (୪୩) ସ୍ତୁତି ପରିଦୃଷ୍ଟ ହୁଏ । ମାର୍କଣ୍ଡେୟ ପୁରାଣରେ ଦେବୀଙ୍କୁ ଦଶଭୁଜା, ମହାକାଳୀ ଓ ମହିଷାସୁରମର୍ଦ୍ଦିନୀ ବୋଲି ସ୍ତୁତି କରାଯାଇଅଛି । (୪୪) ବ୍ରହ୍ମ-

ବୈବର୍ତ୍ତ ପୁରାଣରେ ତାହାଙ୍କୁ ମୂଳ ପ୍ରକୃତି, ପରମାତ୍ମା ଭଗବାନଙ୍କର ଶକ୍ତିରୂପା ଓ ତ୍ରିଲୋକର ଜନନୀ ଆଖ୍ୟା ଦିଆଯାଇଅଛି । (୪୫) ଦେବୀ ଭାଗବତରେ ଦେବୀଙ୍କୁ ଜଗତର କାରଣ, ବୁଦ୍ଧିଦାତ୍ରୀ, କୀର୍ତ୍ତି, ଧୃତି, କାନ୍ତି, ମତି, ରତି ଓ ଶ୍ରଦ୍ଧାରୂପିଣୀ ତଥା ଜଗତ୍-ଜନନୀ ଭାବରେ ସ୍ତୁତି କରାଯାଇଅଛି । (୫୧ପୃ) ଦୁର୍ଗାସପ୍ତଶତୀରେ ଅଛି ଯେ, ଦେବତାମାନେ ପ୍ରତ୍ୟେକେ ନିଜନିଜର ତେଜ ଦାନ କଲେ ଏବଂ ସେହି ତେଜ ନାରୀରୂପ ଧାରଣ କରି ମହିଷାସୁରକୁ ବଧ କଲା । (୪୬) ବାସ୍ତବ ପକ୍ଷରେ ପୌରାଣିକ ଯୁଗରେ ହିନ୍ଦୁଧର୍ମ ଶୈବ, ବୈଷ୍ଣବ, ସୌର, ଶାକ୍ତ ଓ ଗାଣପତ୍ୟ ଆଦି ପାଞ୍ଚଗୋଟି ଭାଗରେ ବିଭକ୍ତ ହୋଇଥିଲା । (୪୭)

ପଞ୍ଚଦଶ ଶତାବ୍ଦୀର ଉତ୍କଳୀୟ ସମାଜରେ ଏହି ପୌରାଣିକ ଶାକ୍ତଧର୍ମର ପ୍ରବଳ ପ୍ରଭାବ ଥିଲା । ସାରଳା ଦାସଙ୍କ ମହାଭାରତରେ ଶାକ୍ତମତର ପ୍ରଭୂତ ପ୍ରଭାବ ଥିବାର ପରିଦୃଷ୍ଟ ହୁଏ । କବି ବହୁସ୍ଥଳରେ ଦେବୀଙ୍କର ବନ୍ଦନା ଓ ସ୍ତୁତି କରିଛନ୍ତି । ସେ ନାନାଭାବରେ ଦେବୀଙ୍କର ମହିମା ପ୍ରଦର୍ଶନ କରିବା ପାଇଁ ଚେଷ୍ଟିତ । ସାରଳା ଦାସ ଦର୍ଶାଇ ଅଛନ୍ତି ଯେ, ସ୍ୱୟଂ ଶିବ ଯେତେବେଳେ ଅସୁରମାନଙ୍କୁ ଦମନ କରିବାପାଇଁ ଅସମର୍ଥ ହୁଅନ୍ତି, ସେତେବେଳେ ସେ ଦେବୀ ପାର୍ବତୀଙ୍କର ଶରଣାପନ୍ନ ହୋଇଥାଆନ୍ତି । କୀର୍ତ୍ତି ଓ ବାସ ନାମକ ଦୁଇଜଣ ଅସୁର ଏକାମ୍ରନାଥଙ୍କୁ ତିନିଯୁଗ ଧରି ସେବା କଲେ । ଫଳରେ ସେମାନେ ହେଲେ ମହାପ୍ରତାପୀ । ସେମାନଙ୍କୁ ନିଧନ କରିବାପାଇଁ ଶିବ ନିଜକୁ ଅକ୍ଷମ ମନେକରି ପାର୍ବତୀଙ୍କର ସାହାଯ୍ୟ ଲୋଡ଼ିଲେ । ପାର୍ବତୀ କୌଶଳରେ ସେ ଅସୁର ଦ୍ୱୟଙ୍କୁ ହତ୍ୟାକଲେ । (୪୮) 'ଏକାମ୍ର ପୁରାଣ'ରେ ପାର୍ବତୀ ଗୋପାଳୁଣୀ ବେଶରେ କୀର୍ତ୍ତି ଓ ବାସ ନାମକ ଅସୁରଙ୍କୁ ନିଧନକରିବା ବୃତ୍ତାନ୍ତ ଅଛି । (୪୯)

ସାରଳା ଦାସଙ୍କ ମତରେ ଦେବୀଙ୍କର ନାମ ବିଭିନ୍ନ । ସର୍ବବିଧ କର୍ମରେ ସେହି ବିଭିନ୍ନ ନାମଗୁଡ଼ିକ ମାନବର ସ୍ମରଣୀୟ । ଦେବୀଭକ୍ତ କବି ଲେଖିଛନ୍ତି—

"ଆପଦ ଖଣ୍ଡିନୀ ମାଗୋ ଦୁର୍ଗତି ତାରିଣୀ
ଆଦି ଅନ୍ତ ମଧ୍ୟେ ତୁହି ଅଟୁ ନା କାରିଣୀ ।
ନାରାୟଣୀଙ୍କୁ ସମରେ ପଶିଲେ ସୁମରି
ଜଳରେ ରକ୍ଷା କରନ୍ତି ଦେବୀ ମାହେଶ୍ୱରୀ ।
ଅଟବୀରେ ରକ୍ଷା ମାଗୋ କର ସର୍ବକାଳେ
ସର୍ବଦା କାଳେ ରଖନ୍ତି ମା ସର୍ବମଙ୍ଗଳେ ।

ଜର ମୃତ୍ୟୁକାଳେ ତାଙ୍କୁ ସ୍ମରୁଥିବ ଗଣ
ଶ୍ଳେଷ୍ମ ବ୍ୟାଧିରେ ସୁମରୁଥିବ ଭଦ୍ରକାଳୀ ।
× × ×
ଷଷ୍ଠୀ ଆରମ୍ଭ କାଳରେ ସ୍ମରିବ ଚାମୁଣ୍ଡା
ଦୁଃସ୍ୱପ୍ନ ହେଲେ ସ୍ମରିବ ସ୍ୱପ୍ନାବତୀ ଖଣ୍ଡା ।
ତର୍କାରମ୍ଭେ ସୁମରିବ ଦେବୀ ଯେ ବାସେଳୀ
ଗୃହେ ପ୍ରବେଶି ସ୍ମରିବ ଦେବୀ ଭଦ୍ରକାଳୀ ।" (ବ୨ପୃ)

ଗାୟତ୍ରୀ ଜପ ଶାକ୍ତଧର୍ମର ସୂଚନା କରେ । ଏହି ଜପରେ ଗାୟତ୍ରୀ ଦେବୀଙ୍କୁ ସ୍ତୁତି କରି ଶକ୍ତି ଭିକ୍ଷା କରାଯାଏ । (୫୦) କବି ମଧ୍ୟ ଗାୟତ୍ରୀ ଦେବୀଙ୍କ କଥା ଉଲ୍ଲେଖ କରିଅଛନ୍ତି । ତାଙ୍କ ମତରେ ଶୂନ୍ୟରୁ ପବନ, ପବନରୁ ଯୋଗ-ପୁରୁଷ ଓ ଯୋଗପୁରୁଷଙ୍କଠାରୁ ଗାୟତ୍ରୀଙ୍କର ଜନ୍ମ ହୁଏ । (ଆ୪ପୃ) କବି ଦେବୀଙ୍କୁ 'ଗାୟତ୍ରୀ' ବୋଲି ସମ୍ବୋଧନ କରିଛନ୍ତି—

"ଜୟ ଜୟ ଜନନୀ ଗୋ ସୁମନ୍ତ ଗାୟତ୍ରୀ ।" (କର୍ଣ୍ଣ୨ପୃ)
"ତୁହି ମାତ ମହାମନ୍ତ ରୂପୀ ଗୋ ଗାୟତ୍ରୀ ।" (ଦ୍ରୋ୧୩୯ପୃ)

ଗାୟତ୍ରୀ ମନ୍ତ୍ରର ଜପ କଥା ମଧ୍ୟ ସାରଳା କେତେକ ସ୍ଥଳରେ ଉଲ୍ଲେଖ କରିଅଛନ୍ତି ।

"ଅଜପା ଗାୟତ୍ରୀ ଏହୁ ମନ୍ତ୍ର ସେହୁ ସାଧି ।" (୫୧)
"ଅଜପା ମହାମନ୍ତ୍ରର ଗାୟତ୍ରୀ କ ସାଧି ।" (୫୨)

ତାନ୍ତ୍ରିକ ଶାକ୍ତଧର୍ମର ପ୍ରଭାବ ପଞ୍ଚଦଶ ଶତାବ୍ଦୀର ଉତ୍କଳରେ ଥିଲା । ସାରଳାଙ୍କ ବର୍ଣ୍ଣନାରୁ ଏହା ଅବଧାରିତ ହୁଏ । ତାନ୍ତ୍ରିକତା ଉଡ୍ଡୀୟାନ ପୀଠରୁ ଜନ୍ମ ହୋଇ କ୍ରମଶଃ ପୂର୍ଣ୍ଣଗିରି, କାମାକ୍ଷା ଓ ଶ୍ରୀହଟ୍ଟ ପ୍ରଭୃତି ପୀଠକୁ ବ୍ୟାପି ଯାଇଥିଲା । (୫୩) ସାରଳାଙ୍କ ଲେଖାରେ ଏହି ତାନ୍ତ୍ରିକ ଶାକ୍ତଧର୍ମର ସୂଚନା ମିଳେ । କାମାକ୍ଷୀ ଦେବୀଙ୍କ ବର୍ଣ୍ଣନା କରି କବି ତାନ୍ତ୍ରିକତାର ପୃଷ୍ଟପୋଷକତା କରିଅଛନ୍ତି । ସେ କାମାକ୍ଷୀ ଦେବୀଙ୍କ ପାଖରେ ନିବେଦନ କରି କହିଛନ୍ତି—ପର-ଦାର ସଙ୍ଗରେ ମୋର ମନ ନ ବଳୁ । (ଆ୧୫୩ପୃ) ତାଙ୍କ ମତରେ କାମକଷ୍ଟରୁ ମୁକ୍ତି ପାଇବାକୁ ହେଲେ କାମାକ୍ଷୀଙ୍କ ନାମ ସ୍ମରଣୀୟ । (ଆ୧୫୩ପୃ) କବିଙ୍କ ବର୍ଣ୍ଣନାରେ 'କାମାକ୍ଷୀବ୍ରତ'ର ଚିତ୍ର ମଧ୍ୟ ନିହିତ । ଏହି ବ୍ରତ ନାରଦଙ୍କ ପରାମର୍ଶ ଅନୁସାରେ ଦେବକୀ ଓ ଯଶୋଦା ପାଳନ କରିଥିଲେ ବୋଲି ସେ ଦର୍ଶାଇଅଛନ୍ତି । (ମ୧୯୧ପୃ) ସାରଳା ଦାସ ନାନା ଭାବରେ କାମାକ୍ଷୀଙ୍କର ମହିମା ପ୍ରଖ୍ୟାପନ

କରିଛନ୍ତି । କବିଙ୍କ କାମାକ୍ଷୀ ଦେବୀ ପ୍ରାତଃକାଳରେ କୁମାରୀ, ମଧ୍ୟାହ୍ନରେ ବୃଦ୍ଧା, ସନ୍ଧ୍ୟାରେ କାମସେଣା, ନିଶାରେ ମୋହିନୀ ଓ ରୁମୁଣ୍ଡା ରୂପ ଧାରଣ କରନ୍ତି । ସେ ପୁଣି କାଳାନ୍ତକ, ଯୁଗାନ୍ତକ, ସ୍ତମ୍ଭନ, ମୋହନ, ବଶୀକରଣ, ଧରଣ, ଧାରଣ ଆଦି ବିଦ୍ୟା ଜାଣନ୍ତି । କାମାକ୍ଷୀ ଦେବୀ ଗୋଟିଏ ପାତ୍ରରୁ ଅନ୍ନ ପରିବେଷଣ କରି ଅଇବୁତ ସଂଖ୍ୟକ ହସ୍ତୀ, ରଥୀ, ଗୃହପଦ୍ମ ସଂଖ୍ୟକ ଅଶ୍ୱାରୋହୀ, ତିନିଲକ୍ଷ ପଦାତିକ ସହ ଭୀମସେନଙ୍କୁ ଭୋଜନରେ ସନ୍ତୁଷ୍ଟ କରିପାରନ୍ତି । କବି ତାଙ୍କୁ ହିଙ୍ଗୁଳା-କନ୍ୟା, କାତ୍ୟାୟିନୀ , ଅପର୍ଣ୍ଣା, ଅନାଦି, ଅଣାକାରପ୍ରିୟା, ନିରଞ୍ଜନୀ, ମହାମାୟା ଓ ମାହେଶ୍ୱରୀ ଆଖ୍ୟାରେ ଭୂଷିତ କରିଛନ୍ତି । (ସ୯୬-୧୦୦ପୃ)

ଖ୍ରୀଷ୍ଟ ଦଶମ ଓ ଏକାଦଶ ଶତାବ୍ଦୀରେ ଚଉଷଠୀ ଯୋଗିନୀଙ୍କର ପୂଜାବିଧି ପ୍ରଚଳିତ ଥିଲା । (୫୪) ଯୋଗିନୀମାନଙ୍କର ଉଲ୍ଲେଖ ତାନ୍ତ୍ରିକ ଶାକ୍ତଧର୍ମର ସୂଚନା ଦିଏ । ସାରଳା ଦାସଙ୍କ ଲେଖାରେ ଯୋଗିନୀମାନଙ୍କର କଥା ଅଛି । ଯଥା—

"ଚୌଷଠୀ ଯୋଗିନୀ ନବକୋଟି କାତ୍ୟାୟିନୀ
ତୁମ୍ଭ ସିନା ଅଟ ମାଗୋ ମହିଷାମର୍ଦ୍ଦିନୀ ।" (ମ୩ପୃ)
"ଏସନ ସମୟେ ବିଜେ ସକଳ ଯୋଗିନୀ
ତେତିଶ କୋଟି ଯେ ନବ କୋଟି କାତ୍ୟାୟିନୀ ।" (ଶ୯୮ପୃ)

ଉତ୍କଳରେ ଶାକ୍ତଧର୍ମର ପ୍ରଭାବ ଏବେ ମଧ୍ୟ ଅଛି । ବର୍ତ୍ତମାନ କାଳରେ ବି ଭୁବନେଶ୍ୱରରେ ମୋହିନୀ, କାପାଳିନୀ ଓ ଗୌରୀ ପୀଠ; ପୁରୀର ବିମଳା ଓ ହରଚଣ୍ଡୀ ପୀଠ; କାକଟପୁରର ମଙ୍ଗଳା ପୀଠ; ଭଦ୍ରଖର ଭଦ୍ରକାଳୀ ପୀଠ; ଝଙ୍କଡ଼ର ସାରଳା ପୀଠ; ମୟୂରଭଞ୍ଜର-ଖିଚଙ୍ଗ ପୀଠ ଓ ଚଉରାଶୀ ଗ୍ରାମର ବାରାହୀ ପୀଠରେ ଶାକ୍ତମତରେ ଦେବୀପୂଜା ହୋଇଥାଏ । (୫୫)

ଏହି ଶାକ୍ତଧର୍ମ ଓଡ଼ିଶାର ନିଜସ୍ୱ ଜଗନ୍ନାଥ ଧର୍ମ ବା ଓଡ଼ିଶୀ ବୈଷ୍ଣବ ଧର୍ମରେ ମିଶିଯାଇଥିଲା । ସାରଳା ଦାସଙ୍କ ମହାଭାରତରେ ତାହାର ସଙ୍କେତ ମିଳେ । କବି କହନ୍ତି ଯେ, ଜଗନ୍ନାଥ ବୁଦ୍ଧ, କଚ୍ଛପ, ମତ୍ସ୍ୟ ଓ ନୃସିଂହାଦି ଅବତାର ଗ୍ରହଣ କରିଥିଲେ । ତାଙ୍କର ସେହି ଅବତାରମାନଙ୍କ ମଧ୍ୟରେ ଗୋଟିଏ ଶକ୍ତିଅବତାର ବି ହୋଇଥିଲା । ଜଗନ୍ନାଥ ମୋହିନୀ ରୂପ ଧାରଣ କରି ସାଗର-ମନ୍ଥନ କାଳରେ ସୁଧା ବଣ୍ଟନ କରିଥିଲେ । ସେ ପୁଣି ମାଳଣୀ କନ୍ୟା ରୂପରେ

ଜନ୍ମ ହୋଇ ତ୍ରୈଲୋଚନ ନାମକ ଦୈତ୍ୟକୁ ନାଶ କରିଥିଲେ । (କା୨ପୃ) ଚଣ୍ଡୀ-ପୁରାଣରେ ବିଷ୍ଣୁ ମାଳତୀ କନ୍ୟାର ରୂପ ଧାରଣ କରି ତ୍ରୈଲୋଚନକୁ ହତ୍ୟା କରିବା ବିଷୟ ଅଛି । (ପୃ୯୧)

ଓଡ଼ିଶାରେ ବୈଷ୍ଣବଧର୍ମ ସହିତ ଶାକ୍ତଧର୍ମ କପରି ସମିଶ୍ରିତ ହୋଇଥିଲା ତାହାର ପ୍ରମାଣ ସାରଳାଙ୍କ ଅନ୍ୟ କେତେକ ଉକ୍ତିରୁ ଅବଧାରିତ ହୁଏ । କବି ବହୁ ସ୍ଥଳରେ ବିଷ୍ଣୁ (ମାଧବ) ଓ ଦେବୀ ଦୁର୍ଗାଙ୍କର ଏକତ୍ୱ ଉଲ୍ଲେଖ କରି ସମନ୍ୱୟର ସଙ୍କେତ ଦେଇଅଛନ୍ତି । ଯଥା—

"ସୁମରଣା କଲେ ମନେ ଶ୍ରୀ ଦୁର୍ଗାମାଧବ
ଆହେ ଚକ୍ରଧର ତୁମ୍ଭେ ସୁଗତି ବାନ୍ଧବ ।" (ବି୯୧ପୃ)
"ଦଧିବାବନ ଆବର ଲକ୍ଷ୍ମୀନାରାୟଣ
ଦୁର୍ଗାମାଧବ ନାମକୁ କରିଲେ ସ୍ମରଣ ।" (ବି୧୮୭ପୃ)

ଦୁର୍ଗା ଓ ମାଧବଙ୍କର ଏକତ୍ୱ ପୂଜା ଓଡ଼ିଶାରେ ଚଳେ । 'ନୀଳାଦ୍ରି ମହୋଦୟ' ଗ୍ରନ୍ଥରେ ଦୁର୍ଗାମାଧବ ପୂଜାର ବିଧାନ ଦେଖାଯାଏ । (୫୭) ଜଗନ୍ନାଥ ମନ୍ଦିରରେ ଜଗନ୍ନାଥଙ୍କ ଭୋଗ ଦେବୀ ବିମଳାଙ୍କୁ ସମର୍ପିତ ହେବା ପରେ 'ମହାପ୍ରସାଦ' ନାମ ପାଏ । ପୁରୀ ଅଞ୍ଚଳର ବ୍ରାହ୍ମଣ ଶାସନ ମାନଙ୍କରେ ଦଶହରା ଦିନ ଗୋପୀନାଥ ଓ ଦୁର୍ଗା ଏକତ୍ର ଏକ ବିମାନ ଆରୋହଣ କରି ଯାତ୍ରା କରନ୍ତି । ସେମାନଙ୍କ ଭୋଗ ମଧ୍ୟ ଏକତ୍ର ହୋଇଥାଏ । ଲୋକେ ଦୁର୍ଗାଙ୍କୁ ଗୋପୀନାଥଙ୍କର ଭଗିନୀ ବୋଲି ବିଶ୍ୱାସ କରନ୍ତି ।

ସାରଳା ଦାସ ଦେବୀଙ୍କୁ କେତେକ ସ୍ଥଳରେ 'ବିଷ୍ଣୁ-ବଲ୍ଲଭୀ' ବୋଲି ସ୍ତୁତି କରିଅଛନ୍ତି । ତାହା ମଧ୍ୟ ଶାକ୍ତ ଓ ବୈଷ୍ଣବ ଧର୍ମର ସମନ୍ୱୟମୂଳକ ସଙ୍କେତ ।

"ଜୟ ଜୟ ସାରଳା ଗୋ ବିଷ୍ଣୁର ବଲ୍ଲଭୀ
ଜୟ ତୁ ସାରଳା ମାଗୋ ପରମ ବୈଷ୍ଣବୀ ।" (ଆ୨୩୮ପୃ)

'ପୁରୁଷୋତ୍ତମ କ୍ଷେତ୍ରଂ ତତ୍ତ୍ୱମ'ରେ ଦେବୀଙ୍କୁ ବିଷ୍ଣୁଙ୍କର ପ୍ରିୟା, ଲକ୍ଷ୍ମୀ ତଥା ଶକ୍ତି ବୋଲି ସ୍ତୁତି କରାଯାଇଅଛି । ଯଥା—

"ଦୁର୍ଗେ ଦେବି ! ନମସ୍ତୁଭ୍ୟଂ ବିଷ୍ଣୁଭକ୍ତିପ୍ରଦାୟିନୀ ।
ବିମଳେ ! କମଳଧିପୁଂ ଦେହି ସର୍ବପ୍ରିୟେଽନଘେ ॥

ଓଂ ଲକ୍ଷ୍ମୀ ସ୍ତ୍ୟଂ ଚ ସାବିତ୍ରୀ ଓଂ ତ୍ୱ ଦେବ ସରସ୍ୱତୀ ।
ସର୍ବରୂପେ ନମସ୍ତୁଭ୍ୟଂ ସର୍ବପାପ ପ୍ରଣାଶିନୀ ॥" (ପୃ୧୮୯)
"ନମସ୍ତେ ମଙ୍ଗଳେ ! ଦେବି ! ସର୍ବମଙ୍ଗଳକାରିଣୀ ।
ବିଷ୍ଣୁଶକ୍ତେ ନମସ୍ତେଽସ୍ତୁ ବଟମୂଳ ନିବାସିନୀ ।" (ପୃ୧୮୮)

ଉତ୍କଳରେ ଜଗନ୍ନାଥଧର୍ମ ସହିତ ଶାକ୍ତ ତଥା ଶୈବଧର୍ମର ସମନ୍ୱୟ ସାଧିତ ହୋଇଥିବା କଥା ମନ୍ଦିର ଗାତ୍ରରୁ ଉପଲବ୍ଧ ହୁଏ । କୋଣାର୍କ ମନ୍ଦିରର ବେଢ଼ା ମଧ୍ୟରେ ଦୁର୍ଗା, ଶିବଲିଙ୍ଗ ଓ ଜଗନ୍ନାଥ ମୂର୍ତ୍ତି ଏକତ୍ର ଥିବାର ଦେଖାଯାଏ । (୫୭) ଭୁବନେଶ୍ୱରର ଅନନ୍ତ ବାସୁଦେବ ମନ୍ଦିରର ଭୋଗମଣ୍ଡପରେ ଜଗନ୍ନାଥ, ଶିବଲିଙ୍ଗ ଓ ଦୁର୍ଗାଙ୍କର ମୂର୍ତ୍ତି ଏକତ୍ର ରହିଅଛି । (୫୮) ସୁଭଦ୍ରା ଓ ଅନନ୍ତ ବାସୁଦେବ ମନ୍ଦିରର ଏକାନଂସ ଦେବୀ ଏକ ଏବଂ ସେମାନେ ଉଭୟେ ଦୁର୍ଗାଙ୍କ ରୂପ ବୋଲି ସ୍ୱୀକୃତ । (୫୯) ବୈଷ୍ଣବଧର୍ମର ପ୍ରଭାବ ଶାକ୍ତଧର୍ମ ଉପରେ ପଡ଼ିବାରୁ 'ଏକାନଂସ ଦେବୀ' 'ସୁଭଦ୍ରା'ରେ ପରିଣତ ହୋଇଥିଲେ । ସୁଭଦ୍ରା ବା ଏକାନଂସ ଦେବୀଙ୍କର ବୈଷ୍ଣବ ଦେବତା ଜଗନ୍ନାଥ-ବଳଭଦ୍ରଙ୍କ ସହ ଅବସ୍ଥାପିତ ହେବା ମାଧ୍ୟଯୁଗୀନ ଉତ୍କଳରେ ବୈଷ୍ଣବଧର୍ମ ଓ ଶାକ୍ତଧର୍ମର ସମନ୍ୱୟ ସୂଚନା କରେ । (୬୦) ଜଗନ୍ନାଥ ଧର୍ମ ତାହାର ଶେଷ ପର୍ଯ୍ୟାୟରେ ହିନ୍ଦୁ, ବୈଷ୍ଣବ, ଶାକ୍ତ ତଥା ଶୈବଧର୍ମକୁ ଏକ ସୂତ୍ରରେ ସମ୍ମିଳିତ କରିଥିଲା । (୬୧)

## (ଗ) ସୌରଧର୍ମ

ଦେବୀଙ୍କୁ କେନ୍ଦ୍ରକରି ଯେପରି ଶାକ୍ତଧର୍ମ ଗଢ଼ି ଉଠିଥିଲା, ସେହିପରି ସୂର୍ଯ୍ୟଙ୍କୁ କେନ୍ଦ୍ରକରି ସୌରଧର୍ମର ସୃଷ୍ଟି ହୋଇଥିଲା । ସୂର୍ଯ୍ୟ ଋକ୍‌ବେଦ ଯୁଗରୁ ଭାରତୀୟ ସମାଜରେ ଦେବତା ରୂପରେ ପୂଜିତ । ଋକ୍‌ବେଦର ଋଷି ତାହାଙ୍କୁ ସ୍ଥାବର ଓ ଜଙ୍ଗମାଦି ପ୍ରତ୍ୟେକ ସୃଷ୍ଟିର ଆତ୍ମା ବୋଲି ସ୍ତୁତି କରିଛନ୍ତି । (୬୨) ଯଜୁର୍ବେଦରେ ସୂର୍ଯ୍ୟଙ୍କୁ ସ୍ତୁତି କରି ଋଷି କହନ୍ତି—

"ସୂର୍ଯ୍ୟୋ ଜ୍ୟୋତିର୍ଜ୍ୟୋତିଃ ସୂର୍ଯ୍ୟ ସ୍ୱାହା ।
ସୂର୍ଯ୍ୟୋ ବର୍ଚ୍ଚୋ ଜ୍ୟୋତିର୍ବର୍ଚ୍ଚଃ ସ୍ୱାହା ।
ଜ୍ୟୋତିଃ ସୂର୍ଯ୍ୟଃ ସୂର୍ଯ୍ୟୋ ଜ୍ୟୋତିଃ ସ୍ୱାହା ।" (୬୩)

ଏଥିରେ ପୁଣି ଉଷା ଓ ସୂର୍ଯ୍ୟଙ୍କର ପ୍ରୀତି କାମନା କରାଯାଇଅଛି । "ସଜୂର୍ଦେବେନ ସବିତ୍ରା ସଜୂରୁଷ ସେନ୍ଦ୍ରବତ୍ୟା ।" (୬୪) ସାମବେଦରେ କଶ୍ୟପଙ୍କ ଔରସରେ

ଅଦିତିଙ୍କ ଗର୍ଭରୁ ବିବସ୍ୱାନ, ଅର୍ଯମା, ପୂଷା, ତ୍ୱଷ୍ଟା, ସବିତା, ଭଗ, ଧାତା, ବିଧାତା, ବରୁଣ, ମିତ୍ର, ଶୁକ୍ର ଓ ଉରୁକ୍ରମ ନାମକ ଦ୍ୱାଦଶାଦିତ୍ୟ ଜନ୍ମ ହୋଇଥିଲେ ବୋଲି ଉକ୍ତ । (୭୫) ବ୍ରହ୍ମାଣ୍ଡ ପୁରାଣରେ ଅଦିତିଙ୍କର ଗର୍ଭରୁ ଅଷ୍ଟାଦଶାତ୍ମା ଦକ୍ଷଧିଇ ଇନ୍ଦ୍ର ଓ ଦ୍ୱାଦଶାତ୍ମା ସୂର୍ଯ୍ୟଙ୍କର (ଆଦିତ୍ୟା ଦ୍ୱାଦଶାତ୍ମାନାଃ) ଆବିର୍ଭାବ ହୋଇଥିଲା ବୋଲି କୁହାଯାଇଅଛି । (୭୬) ଏହି ଦ୍ୱାଦଶ ଆଦିତ୍ୟ ସୂର୍ଯ୍ୟଙ୍କର ବିଭିନ୍ନ ରୂପ । ଏଗୁଡ଼ିକ ସୌରମାନ ବର୍ଷର ପ୍ରତିମାସର ଅଧିଷ୍ଠାତା ଦେବତା । (୭୭) ପୁରାଣ ଯୁଗରେ ସୂର୍ଯ୍ୟଙ୍କର ପ୍ରତିଷ୍ଠା ବୃଦ୍ଧି ଲାଭକଲା । ସେତେବେଳେ ତାଙ୍କୁ ଉପାସ୍ୟ ଦେବତା ରୂପରେ ଗ୍ରହଣକରି ସୌର ସଂପ୍ରଦାୟ ଗଢ଼ିଉଠିଲା । ବୃହଦାରଣ୍ୟକ ଉପନିଷଦରେ ସୂର୍ଯ୍ୟଙ୍କୁ ପ୍ରଧାନ ଦେବତା ଓ ଦ୍ୱାଦଶାଦିତ୍ୟଙ୍କୁ ଅଷ୍ଟବସୁଙ୍କ ମଧ୍ୟରେ ଅନ୍ୟତମ ବୋଲି କୁହାଗଲା । (୬୮) ସଂସ୍କୃତ ମହାଭାରତରେ ସୂର୍ଯ୍ୟଙ୍କର ଅଷ୍ଟୋତ୍ତର ଶତନାମ ପରିକଳ୍ପିତ ହେଲା । (୬୯) ନାରଦ ପୁରାଣରେ ସୂର୍ଯ୍ୟଙ୍କର ଗଣନା ପଞ୍ଚ ଦେବତାଙ୍କ ମଧ୍ୟରେ କରାଗଲା । (୭୦) ମାର୍କଣ୍ଡେୟ ପୁରାଣରେ ତାଙ୍କୁ ବେଦସ୍ୱରୂପ, ଜ୍ୟୋତିର୍ମୟ ପୁରୁଷ, ଜ୍ଞାନର ଆଧାର, ଜଗତବ୍ୟାପି ଓ ଜଗନ୍ନାଥ ବୋଲି ବର୍ଣ୍ଣନା କରାଗଲା । (୭୧) ବ୍ରହ୍ମପୁରାଣରେ କୁହାଗଲା ଯେ, ସୂର୍ଯ୍ୟଙ୍କୁ ପୂଜାକଲେ ରୋଗନାଶ, ବିଦ୍ୟାଲାଭ ଓ ସନ୍ତାନପ୍ରାପ୍ତି ହୁଏ । (୭୨) ସ୍କନ୍ଦ ପୁରାଣ ମତରେ ସେ ହେଲେ ସମସ୍ତ ପ୍ରାଣୀଜଗତର ଉଦ୍‌ଗମସ୍ଥଳ ଓ ବିଶ୍ୱାଧାର । (୭୩) 'ଅଭିନବ ଚିନ୍ତାମଣି' ଗ୍ରନ୍ଥରେ ସୂର୍ଯ୍ୟ ହେଲେ ଆରୋଗ୍ୟଦାତା—"ଆରୋଗ୍ୟଂ ଭାସ୍କରାଦି ଚ୍ଛେଦିତ ପ୍ରାଚୀନା ଶ୍ରୁତିଃ ସ୍ମୃତିଶ୍ଚ ।" (୭୪)

ସାରଳା ଦାସଙ୍କ ଯୁଗରେ ଓଡ଼ିଶାରେ ସୌରଧର୍ମର ପ୍ରଭାବ ଥିଲା । କବି ତେଣୁ ତାଙ୍କର ମହାଭାରତରେ ବହୁ ସ୍ଥଳରେ ସୂର୍ଯ୍ୟଙ୍କର ମହିମା ପ୍ରଖ୍ୟାପନ କରିଅଛନ୍ତି ଏବଂ ସ୍ତୁତି ପ୍ରକାଶ ମଧ୍ୟ କରିଛନ୍ତି । ତାଙ୍କ ମତରେ ସୂର୍ଯ୍ୟ ସ୍ୱୟଂ ଭଗବାନ । ଦ୍ରୌପଦୀଙ୍କ ସ୍ତୁତି ଛଳରେ କବି ସୂର୍ଯ୍ୟଙ୍କୁ ପରଂବ୍ରହ୍ମ, ନାରାୟଣ, ଈଶ୍ୱର, ପରମାନନ୍ଦ, ଗୋପାଳ, ଅନନ୍ତ, ନିରାକାର ଓ ଅନାଦି ଆଖ୍ୟା ପ୍ରଦାନ କରିଅଛନ୍ତି । ସେ ପୁଣି କବିଙ୍କ ଦୃଷ୍ଟିରେ ସୃଷ୍ଟି, ସ୍ଥିତି ଓ ପ୍ରଳୟର ହେତୁ ।

"ତୁ ଦେବ ପରମାନନ୍ଦ ପରଂବ୍ରହ୍ମ ଯୋଗୀ
ବଳବନ୍ତ ପୁରୁଷ ତୁ ଖଳ ମହାଭୋଗୀ ।
ଜୟ ଜୟ ନାରାୟଣ ଭକତ ବତ୍ସଳ
ଏ ମହା ସଙ୍କଟୁ ମତେ ରଖ ହେ ଗୋପାଳ ।"

"ହେ ସ୍ୱାମୀ ସର୍ବ୍ବାବଲ୍ଲଭ ଅନନ୍ତ ଈଶ୍ୱର
ଦିବ୍ୟଚକ୍ଷୁ ତୁ ପୁରୁଷ ଅଟୁ ନିରାକାର ।"
"ତୁ ଦେବ ଭକ୍ତବତ୍ସଳ ଅନନ୍ତ ଅନାଦି
ତୋର ସତ୍ୟ ତୁମ୍ଭ ଦେବ କର ଏବେ ସିଦ୍ଧି ।"
"ତୁମ୍ଭ ଦେବ ଉତପତ୍ତି ପ୍ରଳୟାନ୍ତ କାଶ
ପରମାନନ୍ଦ ନାଥ ତୁ ସବ ଅଧିକାଶ ।" (ବି ୯୩-୯୪)

ସୂର୍ଯ୍ୟଦେବ ସ୍ୱୟଂ ସୃଷ୍ଟିକର୍ତ୍ତା । ତାଙ୍କର ଆଦେଶରେ ବ୍ରହ୍ମା ସଂସାର ସର୍ଜନା କରନ୍ତି । ସୂର୍ଯ୍ୟ ଜୀବଜନ୍ତୁଙ୍କର ଜନ୍ମଦାତା । ତାଙ୍କର ନିର୍ଦ୍ଦେଶରେ ଯମ ଦେବତା ପାପ-ପୁଣ୍ୟ ବିଚାର କରି ଜୀବଗଣଙ୍କୁ ଦଣ୍ଡ ଦିଅନ୍ତି ।

"ସତ୍ୟ ଯୁଗ କରଣ ତୁ ଆଦ୍ୟେ ସୃଷ୍ଟି ସଞ୍ଚ
ବିଧାତା ଅନନ୍ତ ଗୁରୁ ବ୍ରହ୍ମ ଯେ ବିରଞ୍ଚ ।
ଆଜ୍ଞା ଦେଲୁ ସ୍ୱାମୀ ଏହି ପୁରୁଷଙ୍କୁ ତୁହି
ଯାଅ ବେଗେ ତୁମ୍ଭେ ନବ ସୃଷ୍ଟି କ ଭିଆଇ ।"
"ଯାବତ ଜନ ଜନ୍ତୁଙ୍କ ଜନ୍ମକର୍ତ୍ତା ତୁମ୍ଭ
ପ୍ରଜାପତି ପୁରୁଷ ତୁ ତହୁଁ ଆନ ନାହିଁ ।"
"ଜାତ ଅନ୍ତ ଦୁଇରେ ତୁମ୍ଭ ଯେ କରତା
ତୋ ତହୁଁ ଜନ୍ମ ହୋଇଲେ ଶମନ ଦେବତା ।
ତାହାଙ୍କୁ ହକାରି ତୁମ୍ଭ ଆଜ୍ଞା ଦେଲୁ ପ୍ରଭୁ
ପାପ ପୁଣ୍ୟ ବିଚାରି ତୁ ଜୀବେ ଦଣ୍ଡ ଦେବୁ ।" (ସ ୮୮-୮୯ ପୃ)

ସୂର୍ଯ୍ୟ ଦେବତା ଭକ୍ତଙ୍କ ପାଇଁ ଅସୁର ନିଧନ କରନ୍ତି । ସେ ଭକ୍ତକୁ ବାଞ୍ଛିତ ଫଳ ପ୍ରଦାନ ବି କରନ୍ତି । କୋଣାର୍କର ସୃଷ୍ଟି କଥାରେ କବି ଏହା ଦର୍ଶାଇଅଛନ୍ତି । ଗନ୍ଧବତୀ ନଦୀ କୂଳରେ ଥିବା କୋଶଳ ଦେଶର ରାଜା କଣ୍ୟୁ-ବିନ୍ଦୁ ପ୍ରଜାଙ୍କଠାରୁ ବର୍ଷକୁ ଦୁଇ ଥର କର ରାଜସ୍ୱ ଗ୍ରହଣ କରୁଥିଲେ । ଫଳରେ ତଦୀୟ ପ୍ରଜାବର୍ଗ ଦାରିଦ୍ର୍ୟର ଶିକାର ହେଲେ । ରାଜା କଣ୍ୟୁବିନ୍ଦୁ ପ୍ରଜାଙ୍କର ଦାରିଦ୍ର୍ୟ ମୋଚନ କରିବା ଉଦ୍ଦେଶ୍ୟରେ ଅର୍କ ତୀର୍ଥକୁ ଯାଇ ତପସ୍ୟା କଲେ । ସୂର୍ଯ୍ୟ ତାଙ୍କର କଠୋର ତପସ୍ୟାରେ ସନ୍ତୁଷ୍ଟ ହୋଇ କୋଶଳ ରାଜ୍ୟରେ ସାତ ଦିନ କାଳ ସୁବର୍ଣ୍ଣ ବୃଷ୍ଟି କରିବାକୁ ଲାଗିଲେ । ଅର୍କ ନାମକ ଦୈତ୍ୟ କଣ୍ୟୁବିନ୍ଦୁ

ରାଜାଙ୍କର ଶତ୍ରୁତା ଆଚରଣ କଲା । ସୂର୍ଯ୍ୟ ସେହି ଅର୍କଦୈତ୍ୟକୁ ଚନ୍ଦ୍ରଭାଗାର ପଶ୍ଚିମ କୋଣରେ ମାଡ଼ିବସିଲେ । ସେହି ସ୍ଥାନର ନାମ ସେହିଦିନଠାରୁ କୋଣାର୍କ ହେଲା । (୭୫)

କବିଙ୍କ ମତରେ କୋଣାର୍କ ସର୍ବତୀର୍ଥାଶ୍ରୟ । ଏଠାରେ ସ୍ନାନ କରି ପିଣ୍ଡ ଦାନ କଲେ ବହୁ ଜନ୍ମର ପାପ ବିଦୂରିତ ହୁଏ ।

"ଶତକୋଟି ତୀର୍ଥ ଯହିଁ ରହିଛନ୍ତି ସବୁ
ଯାଅ ତହିଁ ସ୍ନାନ କରି ସୂର୍ଯ୍ୟଙ୍କୁ ଦେଖିବୁ ।
× × ×
ଏଠି ସ୍ନାନ କରି ତୁମ୍ଭେ ପିଣ୍ଡ ଦାନ କର
ଅନେକ ଜନ୍ମର ପାପ ହୋଇଯିବ ଦୂର ।" (୭୬)

ସାରଳା ଦାସ ସୂର୍ଯ୍ୟଙ୍କଠାରେ ରୋଗନାଶକାରୀ ଶକ୍ତିର ଆରୋପ କରିଛନ୍ତି । ଶ୍ରୀକୃଷ୍ଣ ଓ ଜାମ୍ବବତୀ ରତିକ୍ରୀଡ଼ା କରୁଥିବା ବେଳେ, ନାରଦଙ୍କ ଉପସ୍ଥିତି ଜଣାଇବାକୁ ଶାମ୍ବ ଗୃହମଧ୍ୟକୁ ପ୍ରବେଶ କଲେ । ଶ୍ରୀକୃଷ୍ଣ ତାହାଙ୍କୁ କୁଷ୍ଠରୋଗ ହେଉ ବୋଲି ଅଭିଶାପ ଦେଲେ । ଶାମ୍ବ ନାରଦଙ୍କ ଉପଦେଶକ୍ରମେ କୋଣାର୍କର ଚନ୍ଦ୍ରଭାଗା ତୀର୍ଥରେ ସୂର୍ଯ୍ୟଙ୍କର ସେବା କରି କୁଷ୍ଠରୋଗରୁ ମୁକ୍ତ ହେଲେ । (ବ ୨୦୭ ପୃ)

କବି ସୂର୍ଯ୍ୟକ୍ଷେତ୍ର କୋଣାର୍କ ଓ ଚନ୍ଦ୍ରଭାଗାର ମହିମା ପ୍ରକାଶ କରିବା ଛଳରେ କହିଛନ୍ତି ଯେ, ଯୁଧିଷ୍ଠିର ବନବାସ କାଳରେ ଏହି ତୀର୍ଥରେ ସ୍ନାନକରି ପିଣ୍ଡ ଦାନ କରିଥିଲେ । (୭୭)

ସାରଳା ଦାସଙ୍କ ବର୍ଣ୍ଣନା ପୁରାଣ-ସମ୍ମତ । ବ୍ରହ୍ମପୁରାଣରେ କୋଣାର୍କକୁ ସୂର୍ଯ୍ୟକ୍ଷେତ୍ର ଏବଂ ସେଠାରେ ସୂର୍ଯ୍ୟଙ୍କୁ କୋଣାଦିତ୍ୟ ନାମ ଦିଆଯାଇଅଛି । (୭୮) କପିଳ ସଂହିତାରେ ଶାମ୍ବ କୁଷ୍ଠରୋଗରେ ଆକ୍ରାନ୍ତ ହୋଇ ମୈତ୍ରେୟ ବନରେ ସୂର୍ଯ୍ୟଙ୍କୁ ତପସ୍ୟା କରିବା ଓ ରୋଗମୁକ୍ତ ହେବା କଥା ଅଛି । (୭୯) ଶାମ୍ବ ପୁରାଣରେ ମଧ୍ୟ ଏତାଦୃଶ ଉପାଖ୍ୟାନ ପରିଦୃଷ୍ଟ ହୁଏ । (୮୦) ଐତିହାସିକ ଡ. ଭ. ମିତ୍ର୍ରଙ୍କ ମତରେ ପୁରାଣ-ବର୍ଣ୍ଣିତ ଶାମ୍ବ ଉପାଖ୍ୟାନ ସିନ୍ଧୁପ୍ରଦେଶର ମୂଳତାନଠାରେ ଥିବା ସୂର୍ଯ୍ୟମନ୍ଦିରର କଥା । (୮୧) କିନ୍ତୁ ମୈତ୍ରେୟବନ ହିଁ କୋଣାର୍କ ବୋଲି ଅନ୍ୟ ଐତିହାସିକମାନେ ପ୍ରମାଣ କରିଅଛନ୍ତି । (୮୨) 'ମାଳାଦ୍ରି ମହୋଦୟଃ' ଗ୍ରନ୍ଥରେ ଅର୍କକ୍ଷେତ୍ରର ପବିତ୍ରତା ଘୋଷିତ ହୋଇଅଛି ।

"ଅର୍କକ୍ଷେତ୍ରେ ରବେଃସ୍ଥି୍ନ
ଚନ୍ଦ୍ରଭାଗା ନଦୀତଟେ ।
ସ୍ନାତ୍ୱା ଯେ ସୂର୍ଯ୍ୟମଣ୍ଡଳଂ
ପଶ୍ୟନ୍ତି ମୂନ ପୁଙ୍ଗବାଃ ।
କ୍ଷୀଣ ପାପାସ୍ତେ ତେ ମର୍ତ୍ତ୍ୟାଃ
କ୍ଷେତ୍ର ଶ୍ରୀ ପୁରୁଷୋତ୍ତମଂ ।" (୮୩)

ଅର୍କକ୍ଷେତ୍ରରେ ପ୍ରଥମେ ଶାମ୍ବ ସୂର୍ଯ୍ୟମନ୍ଦିର ପ୍ରତିଷ୍ଠା କରନ୍ତି । ପରେ ନବମ ଶତାବ୍ଦୀରେ ପୁରନ୍ଦର କେଶରୀ ସେଠାରେ ଅନ୍ୟ ଏକ ମନ୍ଦିର ସ୍ଥାପନ କଲେ । (୮୪) ତ୍ରୟୋଦଶ ଶତାବ୍ଦୀରେ ଗଙ୍ଗବଂଶୀୟ ରାଜା ନରସିଂହଦେବ କୋଣାର୍କ ମନ୍ଦିର ପ୍ରତିଷ୍ଠା କରି ସୂର୍ଯ୍ୟପୂଜାର ସୁବନ୍ଦୋବସ୍ତ କରିଥିଲେ । (୮୫) ଏଥିରୁ ପ୍ରତିପନ୍ନ ହୁଏ ଯେ, ପୌରାଣିକ କାଳରୁ ଉତ୍କଳରେ ସୌରଧର୍ମର ପ୍ରଭାବ ଥିଲା ଏବଂ କୋଣାର୍କ ସୂର୍ଯ୍ୟପୂଜାର କେନ୍ଦ୍ର ରୂପେ ମହାଭାରତୀୟ ପ୍ରତିଷ୍ଠା ଲାଭ କରିଥିଲା । ଏବେ ମଧ୍ୟ ଉତ୍କଳରେ ଶାମ୍ବ-ଦଶମୀ ପାଳିତ ହେଉଅଛି ଏବଂ ସେ ଦିନ ସୂର୍ଯ୍ୟଙ୍କୁ ପୂଜା କରାଯାଉଅଛି ।

## (ଘ) ଶୈବଧର୍ମ

ପୌରାଣିକ ଯୁଗରେ ଶୈବଧର୍ମ ହିନ୍ଦୁଧର୍ମର ଏକ ଶାଖା ଭାବରେ ବିକାଶ ଲାଭ କରେ । ଅଷ୍ଟାଦଶ ପୁରାଣ ମଧ୍ୟରେ ଶୈବ ଓ ଲୈଙ୍ଗ ପୁରାଣର ଗଣନା ଏହାର ପ୍ରମାଣ । ଋକ୍‌ବେଦରେ 'ଶିବ' ବା 'ମହାଦେବ' ନାମ ନାହିଁ । ସେଠାରେ ରୁଦ୍ର ନାମକ ଦେବତାଙ୍କ ନାମ ମିଳେ । ବେଦୋକ୍ତ 'ରୁଦ୍ର' ପୁରାଣରେ 'ଶିବ' ହେଲେ । ହିନ୍ଦୁଧର୍ମରେ ତ୍ରିମୂର୍ତ୍ତିର (ବ୍ରହ୍ମା, ବିଷ୍ଣୁ, ମହେଶ୍ୱର) ଭାବନା ପ୍ରବେଶ କଲା ପରେ 'ଲିଙ୍ଗ' ଦେବତାଙ୍କର ଆବିର୍ଭାବ ହେଲା । (୮୬) ବ୍ରହ୍ମବୈବର୍ତ୍ତ ପୁରାଣରେ ଶିବଙ୍କୁ ଯୋଗୀରୂପରେ ପ୍ରଦର୍ଶନ କରାଯାଇଅଛି । ଭଗବାନ ଶ୍ରୀକୃଷ୍ଣ ତାହାଙ୍କୁ ଦୁର୍ଗାଙ୍କର ପାଣିଗ୍ରହଣ କରିବାପାଇଁ ଅନୁରୋଧ କରିଥିଲେ । କିନ୍ତୁ ସେ ତପସ୍ୟା ଆଚରଣରେ ମନ ବଳାଇ ସଂସାର କଲେ ନାହିଁ । ପୁରାଣ-ମତରେ 'ଶିବ' ଶବ୍ଦର ଉଚ୍ଚାରଣ ପାପନାଶକାରୀ, ମୋକ୍ଷଦାୟକ ଓ ଶୋକାପହାରୀ । (୮୭) ସଂସ୍କୃତ ମହାଭାରତରେ ରୁଦ୍ର, ଶଙ୍କର, ମହାଦେବ, ଶିବ, ବିରୂପାକ୍ଷ, ମହେଶ୍ୱର ଆଦି ନାମ ମିଳେ । (୮୮) ସେଠାରେ ଶିବଙ୍କୁ ବୃଷଭରୂଢ଼, ପିନାକଧାରୀ, ବ୍ୟାଘ୍ରଚ୍ଛାଲପରିହିତ ଓ ନୀଳକଣ୍ଠ

ଆଖ୍ୟା ଦିଆଯାଇଛି । (୮୯) ଗାନ୍ଧାରୀ କୁମାରୀ ଥିବାବେଳେ ଶିବୋପାସନା କରିଥିବା କଥା ମହାଭାରତରେ ବର୍ଣ୍ଣିତ ହୋଇଅଛି । (୯୦)

ସାରଳା ଦାସଙ୍କ ଯୁଗରେ ଉତ୍କଳୀୟ ସମାଜରେ ଶୈବଧର୍ମ ତଥା ଶିବଙ୍କର ଘୋର ପ୍ରଭାବ ରହିଥିଲା । କବି ଲେଖାରେ ଶିବଙ୍କର ବହୁ ସ୍ତୁତି ନିହିତ । ଜବ ସତ୍ୟବତୀଙ୍କ ସ୍ତୁତିଛଳରେ ଶିବଙ୍କୁ ଉମାପତି, ପିନାକଧାରୀ, ଧବଳାଙ୍ଗ, ଅନଙ୍ଗ-ରିପୁ, ମହାଯୋଗୀ ନୀଳକଣ୍ଠ ବୋଲି କହିଛନ୍ତି । (ଆ ୩୨ ପୃ) ସେ ପୁଣି ଅନାକାର, ଆଦିନାଥ, ଇଶାନ, ଗଙ୍ଗାଧର, ବିରୂପାକ୍ଷ, ତ୍ରିଲୋଚନ, ଚିନ୍ତାମଣି, ମହେଶ୍ୱର । (ଆ ୧୧୧ ପୃ), ସଦାନନ୍ଦ, ପରମ ପୁରୁଷ ଓ କୃତ୍ତିବାସ । (ମ ୧୭ ପୃ

କବି ଶିବଙ୍କୁ ସିଦ୍ଧିଦାତା, ଭକ୍ତବତ୍ସଳ, ପାପତାପହାରୀ ରୂପରେ ପ୍ରଦର୍ଶନ କରିଅଛନ୍ତି । ରାଜା ଦ୍ରୁପଦ ଚୌଦବର୍ଷ ପର୍ଯ୍ୟନ୍ତ ରୁଦ୍ରଙ୍କୁ ଧ୍ୟାନ କରି ଦ୍ରୋଣାଚାର୍ଯ୍ୟଙ୍କୁ ଜିଣିବେ ବୋଲି ବର ଲାଭ କରିଥିଲେ । (ଆ ୨୦୪ ପୃ) ନାଗାର୍ଜ୍ଜୁନ କାଶୀ ନଦୀତୀରରେ ବାଲୁକା ଲିଙ୍ଗ ପୂଜାକରି ଅମର ବର ପାଇଥିଲେ । (ସ ୩୩୮ ପୃ) ଜୟଦ୍ରଥ ଶିବଙ୍କୁ ଧ୍ୟାନକରି ଅର୍ଜ୍ଜୁନଙ୍କ ବ୍ୟତୀତ ସମସ୍ତଙ୍କୁ ଜିଣି ପାରିବେ ବୋଲି ବର ଲାଭ କରିଥିଲେ । (ବ ୧୩୩ ପୃ) ବରୁଣ-ପତ୍ନୀଙ୍କୁ ଦୟାକରି ଶିବ ନରେନ୍ଦ୍ର କନ୍ୟାର ଗର୍ଭଦୋଷ ଦୂର କରିଥିଲେ । (ମ ୨୧୩ ପୃ) କବି କହନ୍ତି ଯେ, ଶିବଙ୍କୁ ଦର୍ଶନକଲେ ସର୍ବବିଧ ପାପ ବିଦୂରିତ ହୁଏ ।

"ଗୋହତ୍ୟା ସ୍ତ୍ରୀହତ୍ୟା ବ୍ରହ୍ମହତ୍ୟା ସୁରାପାନ
ତୋର ଦର୍ଶନେ ସକଳ ପାତକ ଦହନ ।
ଯେହୁ ଏକବାର ତୋତେ ନୟନେ ଦେଖିବେ
ସହସ୍ର ଜନ୍ମର ପାପ ଦୂରନ୍ତ ହରିବେ ।" (ଆ ୧୯୩ ପୃ)

ସାରଳା ଦାସ ଶିବଙ୍କର ମହିମା ପ୍ରଦର୍ଶନ କରିବାପାଇଁ ଶିବଦାସ ନାମକ ବ୍ରାହ୍ମଣର ପୁତ୍ର ନର୍ମଳର କଥା ବର୍ଣ୍ଣନା କରିଅଛନ୍ତି । ଭଗବାନ ଶିବ କିପରି ଭକ୍ତବତ୍ସଳ ତାହା ଏହି ଉପାଖ୍ୟାନରେ ପ୍ରଦର୍ଶିତ ହୋଇଅଛି । ବୈତରଣୀ ନଦୀକୂଳରେ ଥିବା ଶିବ ନାମକ ନଗରରେ ଶିବ ଦାସ ନାମକ ବ୍ରାହ୍ମଣ ବାସ କରୁଥିଲା । ତାହାର ପୁତ୍ର ନର୍ମଳ ପ୍ରତ୍ୟହ ନଦୀ କୂଳରେ ଗୋରୁ ଚରାଏ । ନଦୀ ତୀରରେ ମଣ୍ଡଳେଶ ଲିଙ୍ଗ ଅପୂଜା ଦେବତା ରୂପରେ ପ୍ରତିଷ୍ଠିତ ଥିଲେ । ନର୍ମଳ ପ୍ରତ୍ୟହ ସେହି ଲିଙ୍ଗ ଉପରେ ଢେଙ୍କାଟିଏ ରଖେ । ଦିନେ ପିତାଙ୍କ ସହ ବସି ଭାତ

ଖାଉଥିଲାବେଳେ, ତାହାର ମନେପଡ଼ିଲା ଯେ ସେହିଦିନ ଶିବଲିଙ୍ଗ ଉପରେ ଟେକା ରଖିନାହିଁ । ତତ୍‌କ୍ଷଣାତ୍ ସେ ଉଚ୍ଛିଷ୍ଟ ହସ୍ତରେ ଯାଇ ଶିବଲିଙ୍ଗ ଉପରେ ଟେକା ଲଦିଲା । ଶିବ ପ୍ରସନ୍ନ ହୋଇ ସ୍ୱ ଦେହରେ ଦେଖାଦେଲେ ଓ ନିର୍ମଳକୁ ବର ମାଗିବାକୁ କହିଲେ । ନିର୍ମଳ ବର ଛଳରେ ଖଣ୍ଡିଏ ଶୁଷ ଜମି ଭିକ୍ଷାକଲା । ସେହି ଦିନଠାରୁ ବ୍ରାହ୍ମଣେ ଗୃଷକାର୍ଯ୍ୟ କଲେ । (୯୧)

କବି ବର୍ଣ୍ଣାଇଛନ୍ତି ଯେ, ଶିବ ପୁରୁଷକାରର ଆଦର କରନ୍ତି । ଏହି କଥାଟି ସେ ଅର୍ଜ୍ଜୁନଙ୍କର ପାଶୁପତ ଅସ୍ତ୍ରଲାଭ ପ୍ରସଙ୍ଗରେ ବର୍ଣ୍ଣନା କରିଛନ୍ତି । ବନବାସ କାଳରେ ଅର୍ଜ୍ଜୁନ କାଶୀନଦୀ ତୀରରେ ଶିବଙ୍କ ପାଳିତ ଗଣ୍ଡାକୁ ହତ୍ୟା କଲେ । ଶିବଙ୍କସହ ଅର୍ଜ୍ଜୁନଙ୍କର ଯୁଦ୍ଧ ହେଲା ଏବଂ ଶିବ ପରାସ୍ତ ହେଲେ । ଏଥିରେ ଶିବ କୁପିତ ନ ହୋଇ ଅର୍ଜ୍ଜୁନଙ୍କୁ ବର ମାଗିବାକୁ କହିଲେ । ପାର୍ବତୀଙ୍କ ଉପଦେଶକ୍ରମେ ଅର୍ଜ୍ଜୁନ ଶିବଙ୍କଠାରୁ ପାଶୁପତ ଶର ବର ସ୍ୱରୂପ ମାଗିନେଲେ । (ମ ୧୩-୧୫)

ଓଡ଼ିଶାରେ 'ମାଡ଼ଖିଆ ମହାଦେବ' ପ୍ରବଚନ ଚଳେ । ଏହି ପ୍ରବଚନଟି ସାରଳା ଦାସଙ୍କଠାରୁ ଆରମ୍ଭ । ଯୁଦ୍ଧରେ ପରାସ୍ତ ହୋଇ ଶିବ ଅର୍ଜ୍ଜୁନଙ୍କୁ ବର ଦେବାକୁ ପ୍ରସ୍ତୁତ ହେବାର ଦେଖି ପାର୍ବତୀ ପରିହାସରେ କହିଥିଲେ—

"ସଂଗ୍ରାମ କରିଣ ଦେବ ହେଲେ ଅପରାଧୀ
ମାଡ଼ ଖାଇ ସ୍ୱାମୀ ବର ଦେଲେ କସ ସିଦ୍ଧି ।"
"ସଂଗ୍ରାମ ବତ୍ସଳ ଏ ଯେ ସଦା ମତ୍ତ ଭୋଳ
ମାଡ଼ ଖାଇଣ ପ୍ରସନ୍ନ ହୁଅନ୍ତି ସୁଢ଼ଳ ।" (ମ ୧୪ ପୃ)

ଏକାମ୍ର କ୍ଷେତ୍ରର ନାମ କପରି 'କୃତ୍ତିବାସ କ୍ଷେତ୍ର' ହେଲା ତାହା ସାରଳା ଦାସ ବର୍ଣ୍ଣନା କରିଅଛନ୍ତି । କୀର୍ତ୍ତି ଓ ବାସ ନାମକ ଦୁଇ ଜଣ ଅସୁରଙ୍କୁ ପାର୍ବତୀ ପାତାଳକୁ ଚୁପିବା ବେଳେ ସେମାନେ ତାଙ୍କୁ ଅନୁରୋଧ କଲେ ଯେ ସେମାନଙ୍କର ନାମାନୁସାରେ କ୍ଷେତ୍ରର ନାମ ରଖାଯାଉ । ଦେବୀ ସେହି ଅନୁରୋଧ ଅନୁସାରେ ଏକାମ୍ର ତୀର୍ଥର ନାମ 'କୃତ୍ତିବାସ' କ୍ଷେତ୍ର ରଖିଲେ । (ସ୍ୱ ୧୪ ପୃ) ଏହି କ୍ଷେତ୍ରର ମହିମା ପ୍ରଖ୍ୟାପନ କରି କବି ବନ ପର୍ବରେ କହିଛନ୍ତି—

"କୀର୍ତ୍ତିବାସ କ୍ଷେତ୍ର ଯେହୁ ଦେଖିଣ ଆସନ୍ତି
ଅତି ପୁଣ୍ୟ ଧର୍ମ ତାଙ୍କୁ ହୁଅଇ ପ୍ରାପତି ।" (୯୨)

ପ୍ରକୃତ ପକ୍ଷରେ କ୍ଷେତ୍ରର ନାମ କୃତ୍ତିବାସ କ୍ଷେତ୍ର । କାରଣ ସଂସ୍କୃତ ମହାଭାରତରେ ମହାଦେବଙ୍କୁ 'କୃତ୍ତିବାସା' ନାମ ଦିଆଯାଇଛି । (୯୩) ତେଣୁ ଏହି ନାମାନୁସାରେ କ୍ଷେତ୍ରର ନାମ କୃତ୍ତିବାସ ହେବା ସମୀଚୀନ । ଏତଦ୍‌ଭିନ୍ନ ଗଙ୍ଗଗଙ୍ଗ ଦେବଙ୍କ କାଳରେ ଲିଙ୍ଗରାଜ ମନ୍ଦିରସ୍ଥ ଜଗମୋହନର ଭିତର କାନ୍ଥରେ ଲିଖିତ ଅନୁଶାସନରୁ 'କୃତ୍ତିବାସ' ନାମ ମିଳେ । (୯୪) ଏକାମ୍ର ପୁରାଣରେ ପାର୍ବତୀ ଅସୁରଦ୍ୱୟଙ୍କୁ ହତ୍ୟା କରିବା ବୃତ୍ତାନ୍ତ ଅଛି । (୯୫) ସେଥିରେ 'କୃତ୍ତିବାସ' ନାମ ରହିଛି । ଏହି ତୀର୍ଥରେ କୃତ୍ତିବାସଙ୍କ ପ୍ରସାଦରୁ ସର୍ବକାର୍ଯ୍ୟ ସିଦ୍ଧ ହୁଏ ଓ ପାପରାଶି ଦୂରୀଭୂତ ହୁଏ ବୋଲି ପୁରାଣକାର କହନ୍ତି । (୯୬) ଏକାମ୍ର ଚନ୍ଦ୍ରିକାରେ ଏହି କ୍ଷେତ୍ରକୁ ସର୍ବପାପ ହର ଓ କ୍ଷେତ୍ରାଧିପତି ଶିବଙ୍କୁ କୃତ୍ତିବାସ ବୋଲି କଥିତ ହୋଇଅଛି ।

"ତଥା ତ୍ରୈଲୋକ୍ୟକେ ଦେଶେ କୃତ୍ତିବାସ ମହେଶ୍ୱରଃ
ସର୍ବପାପହରଂ ତସ୍ୟ କ୍ଷେତ୍ରଂ ପରମ ଦୁର୍ଲ୍ଲଭମ୍ ।" (୯୭)

କବି କହନ୍ତି ଯେ ଯୁଧିଷ୍ଠିର ତୀର୍ଥଯାତ୍ରା କାଳରେ ଏକାମ୍ର ତୀର୍ଥରେ ଉପଗତ ହୋଇଥିଲେ । ସେ ବିନ୍ଦୁ ସରୋବରରେ ସ୍ନାନ କରି ପ୍ରଭୁ ଲିଙ୍ଗରାଜଙ୍କୁ ଦର୍ଶନ କରିଥିଲେ । କୌଶିକ ଋଷି ତୀର୍ଥର ମାହାତ୍ମ୍ୟ ତାଙ୍କୁ ବୁଝାଇଥିଲେ—

"ତାଙ୍କୁ କହନ୍ତି କୌଶିକ ଏହୁ ମହାତୀର୍ଥ
ବିଜେ କରିଛନ୍ତି ଏଥେ ଏକାମ୍ରର ନାଥ ।"
"ବାବୁ ଏ ଅଟଇ ଯେ ଏକାମ୍ରର ବନ
ପୃଥିବୀ ମଧ୍ୟରେ ଏହି ଅଟେ ଶୁଦ୍ଧ ସ୍ଥାନ ।" (୯୮)

'ଏକାମ୍ର ପୁରାଣ' ତଥା 'କପିଳ ସଂହିତା'ରେ ବିନ୍ଦୁସରୋବରର ମହିମା କୀର୍ତ୍ତିତ ହୋଇଅଛି । (୯୯) 'ନୀଳାଦ୍ରି ମହୋଦୟ' ଗ୍ରନ୍ଥରେ ନୀଳକଣ୍ଠ ତଥା ବିନ୍ଦୁସରୋବରର ପ୍ରଶସ୍ତି ବର୍ଣ୍ଣିତ ।

"ଦୃଷ୍ଟ୍ୱା ତେ ମନୁଜା ଯୋଗ୍ୟା ଶ୍ଚୈକାମ୍ରବନ ଲୋକନେ
ତତ୍ର ଚୈକାମ୍ରବପିନେ ନୀଳକଣ୍ଠଂ ମୁନଶ୍ୱରଃ
ସ୍ନାତ୍ୱା ବିନ୍ଦୁହ୍ରଦେ ରମ୍ୟେ ଦୃଷ୍ଟ୍ୱା ତଂ ଶିବମୁତ୍ତମ୍ ।
ତେ ତ ମର୍ତ୍ତ୍ୟା ସ୍ତଥା ଯୋଗ୍ୟାଃ କୋଣାର୍କ ପରିଲୋକନେ ।" (୧୦୦)
"ଏକାମ୍ର ବିପିନଂ ନାମ କ୍ଷେତ୍ରଂ ପରମପାବନମ୍ ।" (୧୦୧)

କବି କହନ୍ତି ଯେ, ଏହି ତୀର୍ଥରେ ରାବଣ ତପସ୍ୟା କରି ଏକାମ୍ରନାଥଙ୍କ ଠାରୁ ବର ଲାଭ କରିଥିଲା । (ବ ୨୦୪ ପୃ) ରାମଚନ୍ଦ୍ର ଲଙ୍କାରୁ ପ୍ରତ୍ୟାବର୍ତ୍ତନ

କଲାବେଳେ ଏହି ତୀର୍ଥକୁ ଆସିଥିଲେ । ରାମଚନ୍ଦ୍ର ରାମେଶ୍ୱର, ସୁଗ୍ରୀବ ଭୁବନେଶ୍ୱର, ଜାମ୍ବବ କପିଳେଶ୍ୱର, ଶରଭଙ୍ଗ ଈଶାନେଶ୍ୱର, ଅଙ୍ଗଦ ସିଦ୍ଧେଶ୍ୱର, ବ୍ରହ୍ମା ବ୍ରହ୍ମେଶ୍ୱର, ଦକ୍ଷପ୍ରଜାପତି କେତୁଶ୍ୱର ଓ ଯମ ଯମେଶ୍ୱର ଲିଙ୍ଗକୁ ପୂଜା କରିଥିଲେ । (ବ ୨୦୫ ପୃ)

ସାରଳାଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ଭୁବନେଶ୍ୱର ସେ ଯୁଗରେ ପ୍ରାଧାନ୍ୟ ଶୈବ ପୀଠ ଥିଲା ଏବଂ ସେଠାରେ ବହୁ ଶିବ ମନ୍ଦିର ଥିଲା । କବିଙ୍କ ବର୍ଣ୍ଣନାନୁସାରେ ସେଗୁଡ଼ିକ ହେଉଛି—ରାମେଶ୍ୱର, ସୂକ୍ଷ୍ମେଶ୍ୱର, ମୁକ୍ତେଶ୍ୱର, ଭଦ୍ରେଶ୍ୱର, ରୁଦ୍ରେଶ, ନିପ୍ରାନ୍ତକ, ଇନ୍ଦ୍ରେଶ୍ୱର (ବ ୨୦୦ ପୃ), କପିଳେଶ୍ୱର, ଈଶାନେଶ୍ୱର, ସୁରେଶ୍ୱର, ସିଦ୍ଧେଶ୍ୱର, ଖଗେଶ୍ୱର, ବ୍ରହ୍ମେଶ୍ୱର, କେତୁଶ୍ୱର ଓ ଯମେଶ୍ୱର । (ବ ୨୦୫ ପୃ) ଇତିହାସରୁ ଜଣାଯାଏ ଯେ, ମୁକ୍ତେଶ୍ୱର ମନ୍ଦିର ଅଷ୍ଟମ ବା ନବମ ଶତାବ୍ଦୀରେ (୧୦୨), କପିଳେଶ୍ୱର ମନ୍ଦିର କପିଳେନ୍ଦ୍ର ଦେବଙ୍କ କାଳରେ ଅର୍ଥାତ୍ ପଞ୍ଚଦଶ ଶତାବ୍ଦୀରେ । (୧୦୩) ନିର୍ମିତ ହୋଇଥିଲା । ବ୍ରହ୍ମେଶ୍ୱର ମନ୍ଦିର ଦଶମ ବା ଏକାଦଶ ଶତାବ୍ଦୀର କୀର୍ତ୍ତି । (୧୦୪) ଏତଦ୍‌ଭିନ୍ନ ଭୁବନେଶ୍ୱରରେ ପର୍ଶୁରାମେଶ୍ୱର, ଶିଶିରେଶ୍ୱର, ମାର୍କଣ୍ଡେଶ୍ୱର, ମେଘେଶ୍ୱର, କେଦାରେଶ୍ୱର, ହରଚେଶ୍ୱର, ଶତ୍ରୁଘ୍ନେଶ୍ୱର ଓ ଲକ୍ଷ୍ମଣେଶ୍ୱର ମନ୍ଦିରମାନ ଅଛି । (୧୦୫) କବିବର୍ଣ୍ଣିତ କପିଳେଶ୍ୱର ମନ୍ଦିରଟି କେଶରୀବଂଶୀୟ ରାଜାମାନଙ୍କଦ୍ୱାରା ପ୍ରତିଷ୍ଠିତ ଅଷ୍ଟଶମ୍ଭୁଙ୍କ ମଧ୍ୟରୁ ଏକତମ । (୧୦୬) ତେଣୁ ସାରଳାଦାସ ଭୁବନେଶ୍ୱରକୁ ଲିଙ୍ଗମୟ କ୍ଷେତ୍ରରୂପରେ ପ୍ରଦର୍ଶନ କରିବା ଯଥାର୍ଥ । (୧୦୭) ପୁରାଣମାନେ ଏହାର ସମର୍ଥନ କରନ୍ତି । ବ୍ରାହ୍ମ ପୁରାଣରେ କୁହାଯାଇଛି—"ଲିଙ୍ଗକୋଟି ସମାଯୁକ୍ତଂ ବାରଣସ୍ୟା ସମ ଶୁଭମ୍ ।" ଏକାମ୍ର ପୁରାଣରେ କୁହାଯାଇଛି—

"କୋଟିଲିଙ୍ଗୋଦ୍‌ଭବଂ କ୍ଷେତ୍ରଂ ଦେବଭୂମି ସନାତନୀ ।" (୧୦୮)

କବି ଲେଖନୀରୁ ଅବଧାରିତ ହୁଏ ଯେ, ପ୍ରାଚୀନଦୀର କୂଳରେ ଅନେକ ଶିବପୀଠ ଥିଲା । ପ୍ରାଚୀ ନଦୀରେ ସ୍ନାନ କରି ଶମ୍ଭୁପୂଜା ଉଦ୍ଦେଶ୍ୟରେ ଶଚୀ ଦେବୀ ପ୍ରତ୍ୟହ ମର୍ତ୍ତ୍ୟକୁ ଆଗମନ କରୁଥିଲେ ବୋଲି ସାରଳା ଦାସ ବର୍ଣ୍ଣନା କରିଛନ୍ତି । (ସ୍ୱ ୧୨ ପୃ) ସେ ଲେଖିଛନ୍ତି ଯେ, ପ୍ରାଚୀ କୂଳରେ ଗୋକର୍ଣ୍ଣେଶ୍ୱର, ପିଙ୍ଗଳେଶ୍ୱର, ଦୂରେଶ୍ୱର, ଗ୍ରାମେଶ୍ୱର, ନନ୍ଦେଶ୍ୱର, ନାଟକେଶ୍ୱର, ସ୍ୱପ୍ନେଶ୍ୱର ଓ ରୁଦ୍ରେଶ୍ୱର ନାମକ ଅଷ୍ଟଶମ୍ଭୁ ଥିଲେ । (୧୦୯) ପ୍ରାଚୀ ଉପତ୍ୟକାରେ ଅଷ୍ଟମ ବା ନବମ ଶତାବ୍ଦୀରେ ସୋମେଶ୍ୱର, ଅମରେଶ୍ୱର, ଉଗ୍ରେଶ୍ୱର ଓ ନାସିକେଶ୍ୱର ଶିବମନ୍ଦିରମାନ ସ୍ଥାପିତ ହୋଇଥିବା କଥା ଇତିହାସରୁ ଉପଲବ୍ଧ ହୁଏ । (୧୧୦)

ପ୍ରାଚୀ-ଉପତ୍ୟକା ବ୍ୟତୀତ ଉତ୍କଳର ଅନ୍ୟ କେତେକ ସ୍ଥାନରେ ଶିବ ପୂଜିତ ହେଉଥିଲେ । ଢେଙ୍କାନାଳରେ କପିଳାସ ପର୍ବତସ୍ଥ ଶିବ, ପୁରୁଷୋତ୍ତମ ଧାମର ଲୋକନାଥ ଓ ଜମେଶ୍ୱର, ବୈତରଣୀ କୂଳସ୍ଥ ରୁଦ୍ର ଶାସନର ରାମେଶ୍ୱର ଚନ୍ଦ୍ରଭାଗା ନଦୀ କୂଳରେ ବଣେଶ୍ୱର ସେ କାଳରେ ପ୍ରସିଦ୍ଧ ଥିବା କଥା କବି-ଲେଖମାନଙ୍କରୁ ଜଣାଯାଏ ।

"ସାତ ପର୍ବତ ଉପରେ ତହୁଁ ଉଠି ଆସି
ଦେଖିଲେ ତହିଁ ଉପରେ କପିଳାସବାସୀ ।" (ସ୍ୱ୧୧ପୃ)
"ଶ୍ୱେତକ୍ଷଣୀ ମାର୍କଣ୍ଡ ଶ୍ୱେତଗଙ୍ଗା ଅର୍କତୀର୍ଥ
ମଣିକୁଣ୍ଡ ସ୍ୱର୍ଗଦ୍ୱାର ବଟୀ ଲୋକନାଥ । (ବ୍ରା୮୭ପୃ)
"ମାର୍କଣ୍ଡ ବୋଇଲେ ବାବୁ ଏଥି ସ୍ନାନକର
ମୁକ୍ତିଦାତା ଶିବ ଏଥି ନାମ ଜମ୍ବେଶ୍ୱର । (୧୧୧)
"ରାମେଶ୍ୱର ବୋଲି ତହିଁ ଏକ ଲିଙ୍ଗ ଥିଲେ
ଅନନ୍ତ ନାଭି କମଳୁ ସେହି ଫୁଟିଥିଲେ ।" (୧୧୨)
"ଚନ୍ଦ୍ରଭାଗା ନଦୀ ତୀରେ ବଣେଶ୍ୱର ପୂଜ
ଅମର ଲିଙ୍ଗ ଦର୍ଶନେ ବହୁ ତୋଷ ଭଜ ।" (ସ୍ୱ୧୨ପୃ)

ଇତିହାସ-ପୃଷ୍ଠାରୁ ଜଣାଯାଏ ଯେ, ପ୍ରକୃତ ପକ୍ଷରେ ଓଡ଼ିଶାରେ ବହୁ ଶିବ ମନ୍ଦିର ପ୍ରତିଷ୍ଠା କରାଯାଇଥିଲା । କେଶରୀବଂଶୀୟ ରାଜାମାନେ ଶୈବ ଥିଲେ । ସେତେବେଳେ ଶୈବଧର୍ମ ରାଷ୍ଟ୍ରଧର୍ମରେ ପରିଣତ ହୋଇଥିଲା । (୧୧୩) କେଶରୀ ବଂଶୀୟ ରାଜାମାନେ ରାଜ୍ୟର ବିଭିନ୍ନ ସ୍ଥାନରେ ଯେଉଁ ଅଷ୍ଟଶମ୍ଭୁ ସ୍ଥାପନ କରିଥିଲେ, ସେମାନେ ହେଲେ—ଖୋର୍ଦ୍ଧାର ହଟେଶ୍ୱର, ଚନ୍ଦ୍ରଭାଗା ତୀରର ବଟେଶ୍ୱର, ଭୁବନେଶ୍ୱରର ଲିଙ୍ଗରାଜ ଓ କପିଳେଶ୍ୱର, ପୁରୀର ଲୋକେଶ୍ୱର, ସତ୍ୟବାଦୀ ନିକଟରେ ଥିବା ବିରାଳ ଗ୍ରାମର ବାଲୁଙ୍କେଶ୍ୱର ଓ କୋଟ-ଦେଶ ପ୍ରଗନାର ଭୁବନେଶ୍ୱର । (୧୧୪) ବିରଜା କ୍ଷେତ୍ର ଯାଜପୁରରେ ମଧ୍ୟ ଅଷ୍ଟଶମ୍ଭୁ ସ୍ଥାପିତ ହୋଇଥିଲେ । (୧୧୫) ପରବର୍ତ୍ତୀ କାଳରେ ଉତ୍କଳରେ ବହୁ ଶିବ ମନ୍ଦିର ମଧ୍ୟ ପ୍ରତିଷ୍ଠା ହୋଇଅଛି । ନଆଳିର (ପୁରୀଜିଲ୍ଲା) ଶୋଭନେଶ୍ୱର ଓ ଗୃଟେଶ୍ୱର ମନ୍ଦିର ଯଥାକ୍ରମେ ୧୨ଶ ଓ ୧୩ଶ ଶତାବ୍ଦୀରେ ସ୍ଥାପିତ ହୋଇଥିଲା । (୧୧୬) କପିଳେନ୍ଦ୍ର ଦେବଙ୍କ କାଳରେ ପାପନାଶିନୀ ମନ୍ଦିର ଗାତ୍ରରେ ନଟରାଜ

ଶିବଙ୍କର ମୂର୍ତ୍ତି ସ୍ଥାପିତ ହୋଇଥିଲା । (୧୧୭) କେଶରୀବଂଶର ଅବସାନ ପରେ ଶୈବଧର୍ମ ମ୍ଳାନ ହୋଇଯାଇଥିଲା । (୧୧୮) ତଥାପି ଏହି ଧର୍ମର ପ୍ରଭାବ ସମାଜରେ ଉଜ୍ଜୀବିତ ରହିଥିଲା ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଶୈବଧର୍ମ ନାଥଯୋଗୀ ସଂପ୍ରଦାୟ ମାଧ୍ୟମରେ ଭାରତରେ ବିଶେଷ ପ୍ରସାରଲାଭ କରିଥିଲା । ନାଥଯୋଗୀମାନେ ଶିବଙ୍କୁ ଆଦର୍ଶ ରୂପରେ ଗ୍ରହଣ କରି ଯୋଗ-ସାଧନା କରନ୍ତି । ସେମାନେ ଶିବଙ୍କୁ ତାଙ୍କ ସଂପ୍ରଦାୟର ପ୍ରବର୍ତ୍ତକ ଆଦିନାଥ ବୋଲି ମାନନ୍ତି । କିନ୍ତୁ ପ୍ରକୃତପକ୍ଷରେ ଏହି ସଂପ୍ରଦାୟର ପ୍ରଥମ ଗୁରୁ ହେଉଛନ୍ତି—ଗୋରଖନାଥ । ସେ ଯୋଗସାଧନା, ବିଶେଷତଃ ହଠଯୋଗ ଉପରେ ଗୁରୁତ୍ୱ ଦେଉଥିଲେ । ଏକାଦଶ ଓ ଦ୍ୱାଦଶ ଶତାବ୍ଦୀରେ ଭକ୍ତି-ଆନ୍ଦୋଳନର ପ୍ରଭାବ ଦକ୍ଷିଣଭାରତରେ ପ୍ରବଳ ହେଲା । ସେତେବେଳେ ସେଠାର ଶୈବମାନଙ୍କ ମଧ୍ୟରେ ଯୋଗ ସ୍ଥାନରେ ଭକ୍ତି ସ୍ଥାନ ପାଇଲା; କିନ୍ତୁ ଉତ୍ତରଭାରତରେ ଯୋଗସାଧନାର ମହତ୍ତ୍ୱ ପୂର୍ବପର ବିଦ୍ୟମାନ ଥିଲା । (୧୧୯)

ପଞ୍ଚଦଶ ଶତାବ୍ଦୀର ଉତ୍କଳରେ ନାଥପନ୍ଥାର ପ୍ରଭାବ ଥିବାର ଜଣାଯାଏ । ଉତ୍ତରଭାରତର ଯୌଗିକ ପନ୍ଥାର ଆଦର ସେତେବେଳେ ଉତ୍କଳରେ ଥିଲା । ସାରଳା ଦାସଙ୍କ ମହାଭାରତରୁ ଏହାର ସଂକେତ ମିଳେ । କବି ନାଥଯୋଗୀଙ୍କ ଭଳି ଶିବଙ୍କୁ ଆଦିନାଥ ଓ ଯୋଗୀ ବୋଲି ସ୍ତୁତି କରିଅଛନ୍ତି ।

"ଆଦିନାଥ ତୁ ଈଶାନ ଜଗତର ଗୁରୁ
କଳିମଳ ଧ୍ୱଂସିବାକୁ ତୁହି ଚିନ୍ତା କରୁ ।" (ଆ୧୧୦ପୃ)
"ଯୋଗାରୂଢ଼ ପୁରୁଷ ତୁ ନ ଇଚ୍ଛି କିଛୁ
ଯୋଗଲକ୍ଷକୁ କେବଳ ଚେତନ୍ତୁ ତୁ ବାଛୁ ।" (ଆ୧୧୧ପୃ)

କବି କହନ୍ତି ଯେ ରାଜା ଦ୍ରୁପଦ (ଆ୨୦୪ପୃ), ଜୟଦ୍ରଥ (ବ୧୩୩-୧୩୪ପୃ), ରାବଣ (ବ୨୦୪-୨୦୫ପୃ), ନାଗାର୍ଜୁନ (ସ୩୩୮ପୃ) ପ୍ରମୁଖ ଯୋଗ ସାଧନା କରି ଶିବଙ୍କୁ ସନ୍ତୁଷ୍ଟ କରିଥିଲେ ।

ଦକ୍ଷିଣଭାରତ ଭଳି ଉତ୍କଳୀୟ ଶୈବଧର୍ମରେ ଭକ୍ତି ମଧ୍ୟ ସ୍ଥାନ ପାଇଥିଲା। କର୍ତ୍ତି ଓ ବାସ ନାମକ ଅସୁର ଭ୍ରାତାଦ୍ୱୟ ତିନିଯୁଗ ପର୍ଯ୍ୟନ୍ତ ଏକାମ୍ବର-ନାଥଙ୍କର ସେବା କରି ବଳୀଆର ହୋଇଥିଲେ ବୋଲି କବି ଦର୍ଶାଇଅଛନ୍ତି । (ବ୨୦୦ପୃ) ଶିବଦାସର ପୁତ୍ର ନିର୍ମଳ ନିଜର ଭକ୍ତି ଓ ନିଷ୍ଠାବଳରେ ସଫଳ-

କାମ ହୋଇଥିଲା । (୧୨୦) ଅର୍ଜୁନ ଶିବଙ୍କଠାରୁ ଭକ୍ତିବଳରେ ପାଶୁପତ ଅସ୍ତ୍ର ଲାଭ କରିପାରିଥିଲେ । (ମ୧୩-୧୫ପୃ)

ସାରଳା ଦାସ ନାଥ ସଂପ୍ରଦାୟର ପ୍ରବର୍ତ୍ତକ ଗୋରଖନାଥଙ୍କର ନାମ ଗ୍ରହଣ କରିଅଛନ୍ତି । ସେ କହନ୍ତି ଯେ, ନକୁଳ ରାଜସୂୟ ଯଜ୍ଞ କାଳରେ ନିମନ୍ତ୍ରଣ ଦେବାକୁ ଯାଇଥିବାବେଳେ ଗୋରଖନାଥଙ୍କୁ ଭେଟିଥିଲେ । ଗୋରଖନାଥ ସେତେବେଳେ କଦଳୀ ନାମକ ରାଜ୍ୟର ରାଜା ଥିଲେ । ନକୁଳ ତାଙ୍କୁ ଯଜ୍ଞର ନିମନ୍ତ୍ରଣ ପ୍ରଦାନ କରିଥିଲେ । (ସ୨୦୦-୨୦୧ପୃ)

କବି ଗୋରଖନାଥଙ୍କୁ 'ଯୁଗପୁରୁଷ' ଓ 'ଯୋଗେଶ୍ୱର' ଆଖ୍ୟା ପ୍ରଦାନ କରିଛନ୍ତି; ଯଥା—

"ନକୁଳ ବୋଇଲେ ନିର୍ମଳ ଅଟେ ତୁମ୍ଭ ଭାଷା
ଯାଗ-ଯଜ୍ଞେ ଯିବାକୁ ନ ଥାଏ କେବେ ଇଚ୍ଛା ।
ଗୋରେଖ ବୋଇଲେ ଆମ୍ଭେ କୁତୂହଳୀ
ଭ୍ରମଣେ ସର୍ବଦା ଇଚ୍ଛା ବୁଲୁଁ ଖେଳି ଖେଳି ।"
"ପିଣ୍ଡପ୍ରାଣ ଏକ ତତ୍ତ୍ୱ ଅଟେ ଯାହାଙ୍କର
ହେଉ ଜ୍ଞାନ ପୁରୁଷ ସେ ତେଣୁ ଯୋଗେଶ୍ୱର ।"
"ସେହି ଯେ ଅଟନ୍ତି ଯୁଗଯୁଗାନ୍ତ ପୁରୁଷ
ତେଣୁ କରି ମାନବଙ୍କୁ ହୁଅନ୍ତି ଅଦୃଶ୍ୟ ।" (୧୨୧)

ନାଥଯୋଗୀମାନେ ତନ୍ତ୍ର-ସାଧକ ଥିଲେ । କବି ଲେଖିଛନ୍ତି ଯେ ଗୋରଖ-ନାଥ ନକୁଳଙ୍କୁ ତାନ୍ତ୍ରିକ ଷଟ୍‌କର୍ମ ମଧ୍ୟରୁ ସ୍ତମ୍ଭନବିଦ୍ୟା ପ୍ରଦାନ କରିଥିଲେ ।

"ତୁମ୍ଭ ଯଦ୍ୟପି ମାଗିଲୁ ଦେବାକ ପଦାର୍ଥେ
ସ୍ତମ୍ଭନବିଦ୍ୟା ଏକ ଯେ ଦେଲେ ଅବଧୂତେ ।" (ସ୨୦୧ପୃ)

'ଗୋରେଖବୋଧ', 'ଗୋରେଖ ସଂହିତା' (୧୨୨) ବଳରାମ ଦାସଙ୍କ 'ସପ୍ତାଙ୍ଗ ଯୋଗସାର ଟୀକା' (୧୨୩) ଓ 'କଳ୍ପଲତା' କାବ୍ୟରେ (ପୃ୧୮) ଗୋରଖନାଥଙ୍କ ବର୍ଣ୍ଣନା ମିଳେ ।

ଶାକ୍ତଧର୍ମ ପରି ଶୈବଧର୍ମ ମଧ୍ୟ ଜଗନ୍ନାଥଧର୍ମରେ ସମ୍ମିଶ୍ରିତ ହୋଇ-ଥିଲା । ଶାରଳା ମହାଭାରତରେ ଏହାର ସଂକେତ ମିଳେ । କବି ଜଗନ୍ନାଥଙ୍କୁ ବିଷ୍ଣୁ, ସୁଭଦ୍ରାଙ୍କୁ ବ୍ରହ୍ମା ଓ ବଳରାମଙ୍କୁ ଶିବ ବୋଲି ପ୍ରତିପାଦନ କରି ଏହି ସମନ୍ୱୟର ନିର୍ଦ୍ଦେଶ ଦେଇଅଛନ୍ତି; ଯଥା—

"ଜୟ ଜୟ ହେ ନୀଳସୁନ୍ଦର ପୁରୁଷୋତ୍ତମ
ବ୍ରହ୍ମା ରୁଦ୍ର ଅବତାର ତୁମ୍ଭେ ପୂର୍ଣ୍ଣ ବ୍ରହ୍ମ ।" (ମୂ୪୨ପୃ)
"ରାମକୃଷ୍ଣ ସୁଭଦ୍ରା ଯେ ଏ ତିନ ପ୍ରତିମା
ଶ୍ରୀପୁରୁଷୋତ୍ତମେ ବିଜେ ହଳୀ ହର ବ୍ରହ୍ମା ।" (ମୂ୪୯ପୃ)
"ଜୟ ରୁଦ୍ର ଅବତାର ଜୟ ଦେବ ହଳୀ
ଅନନ୍ତ କୋଟି ବ୍ରହ୍ମାଣ୍ଡେ ତୁମ୍ଭେ ଏକା ବଳୀ ।"(ମୂ ୯ପୃ )
"ଦେଖି ଆଶ୍ଚର୍ଯ୍ୟ ହୋଇଲେ ଦ୍ୱିଜ ଶାନ୍ତପନ
ବିରିଞ୍ଚି ରୁଦ୍ର ବିଷ୍ଣୁ ଅଟନ୍ତି ଏ ତେନ ।" (୧୨୪)
"ବିଜୟେ ରାମକୃଷ୍ଣ ସତ୍ଭଦ୍ରରୂପେ ବ୍ରହ୍ମା ।" (୧୨୫)

କବି ମୂଷଳୀ ପର୍ବରେ ଜଗନ୍ନାଥଙ୍କୁ ବିଷ୍ଣୁ, ବଳଭଦ୍ରଙ୍କୁ ଶିବ ବା ଈଶ୍ୱର, ସୁଭଦ୍ରାଙ୍କୁ ବ୍ରହ୍ମା ବୋଲି ଅନ୍ୟତ୍ର ବି କହିଛନ୍ତି । ବିଷ୍ଣୁ କଳିଯୁଗରେ ନୀଳଗିରିରେ ବିଜୟ କରିବା କଥା ଜାଣି ଈଶ୍ୱର ଓ ବ୍ରହ୍ମା ତାଙ୍କ ସଙ୍ଗରେ ରହିବେ ବୋଲି ଇଚ୍ଛା ପ୍ରକାଶ କରିଥିଲେ । ଭଗବାନ ବିଷ୍ଣୁ ସେଥିରେ ସମ୍ମତ ହୋଇଥିଲେ ।

"ଈଶ୍ୱର ବୋଇଲେ ମୁହିଁ ତୁମ୍ଭ ସଙ୍ଗେ ଯିବି
ବଳଭଦ୍ର ରୂପରେ ମୁଁ ପୂଜାକୁ ପାଇବି ।
ବ୍ରହ୍ମା ବୋଇଲେ ମୁଁ କମ୍ପା ରହିଥିବି ଏକା
ତୁମ୍ଭେ ଗଲେ ରହି ମୁହିଁ ଲଭିବି କି ସୁଖ ।" (୧୨୬)

କବି-ପ୍ରଦତ୍ତ ଅନ୍ୟ ଆଲେଖ୍ୟମାନଙ୍କରୁ ଶୈବ ଓ ଜଗନ୍ନାଥଧର୍ମର ମିଳନ ପ୍ରତିପାଦିତ ହୁଏ । ମଧ୍ୟପର୍ବର ନୀଳେନ୍ଦ୍ରବିବାହ ଦୃଶ୍ୟରେ ଅଛି ଯେ, ଶ୍ରୀକୃଷ୍ଣ ଓ ଶିବଙ୍କ ମଧ୍ୟରେ ଯୁଦ୍ଧ ହେଲା । ଯୁଦ୍ଧବିଗ୍ରହ ପରେ ସେମାନେ କୋଳାକୋଳି ହୋଇ ବନ୍ଧୁରେ ପରିଣତ ହେଲେ । (୧୨୭) ମଧ୍ୟପର୍ବରେ ଅଛି ଯେ ଶ୍ରୀକୃଷ୍ଣ ଲକ୍ଷ୍ମୀଙ୍କ ସହ ଶିବ ଓ ପାର୍ବତୀଙ୍କୁ ଦର୍ଶନ କରିବା ପାଇଁ ଯାଇଥିଲେ । । (ପୃ୧୧୩) କବି ପୁରୀରେ ଜଗନ୍ନାଥ ଓ ଶିବ ଉଭୟଙ୍କ ଅଧିଷ୍ଠାନ ପ୍ରଦର୍ଶନ କରିଛନ୍ତି । (୧୨୮)

ସାରଳା ଦାସ ସାହିତ୍ୟରେ ଏହି ସମନ୍ୱୟ ପ୍ରଦର୍ଶନ କରିବାର ବହୁ ପୂର୍ବରୁ ପରମ୍ପରାରେ ଶୈବଧର୍ମ ସହ ବୈଷ୍ଣବଧର୍ମ ତଥା ଜଗନ୍ନାଥଧର୍ମର ସମନ୍ୱୟ ସାଧିତ ହୋଇଥିଲା । ରାଜା ବୈଦ୍ୟନାଥ ଦ୍ୱାଦଶ ଶତାବ୍ଦୀରେ ବିଷ୍ଣୁ ଓ ଶିବ ଉଭୟଙ୍କ ପାଇଁ ଶୋଭନେଶ୍ୱର ମନ୍ଦିର ପ୍ରତିଷ୍ଠା କରିଥିଲେ । ଏହା ମୂଳତଃ ଶିବ

ମନ୍ଦିର ହେଲେହେଁ, ଏହାର ବେଢ଼ା ମଧ୍ୟରେ ବହୁ ବାସୁଦେବମୂର୍ତ୍ତି ଦେଖାଯାନ୍ତି । ମନ୍ଦିରସ୍ଥ ଏକ ଶିଳାଲେଖରେ 'ନମଃ ଶିବାୟ' ଆଦ୍ୟରେ ଓ 'ବିଷ୍ଣୁ ଚକ୍ର' ଶେଷରେ ଥିବାର ପରିଲକ୍ଷିତ ହୁଏ । (୧୨୯) ଭୁବନେଶ୍ୱର ଶିବକ୍ଷେତ୍ର ହେଲେ ହେଁ, ସେଠାରେ ଅନନ୍ତ ବାସୁଦେବ ମନ୍ଦିରରେ (୧୨୭୫ ଖ୍ରୀଷ୍ଟାବ୍ଦରେ ନିର୍ମିତ) ବଳରାମ, ସୁଭଦ୍ରା ଓ ଶ୍ରୀକୃଷ୍ଣ ମୂର୍ତ୍ତି ପ୍ରତିଷ୍ଠିତ ହୋଇଛନ୍ତି । (୧୩୦) ଏହି ମନ୍ଦିରଗାତ୍ରରେ ଜଗନ୍ନାଥ, ଶିବ ଓ ଦୁର୍ଗାଙ୍କର ମୂର୍ତ୍ତି ଏକତ୍ର ପରିଦୃଷ୍ଟ ହୁଏ । (୧୩୧) କୋଣାର୍କର ସୂର୍ଯ୍ୟମନ୍ଦିରରେ ଏକତ୍ର ଦୁର୍ଗା, ଶିବଲିଙ୍ଗ ଓ ଜଗନ୍ନାଥଙ୍କ ମୂର୍ତ୍ତି ମିଳେ । (୧୩୨) ଐତିହାସିକ ଷ୍ଟର୍ଲିଂ କହନ୍ତି—ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଯଥାକ୍ରମେ ବିଷ୍ଣୁ, ଶିବ ଓ ଦୁର୍ଗାଙ୍କର ପ୍ରତୀକ । (୧୩୩)

## (ଙ) ଗାଣପତ୍ୟଧର୍ମ

ପୌରାଣିକ ଯୁଗରେ ଯେଉଁ ପଞ୍ଚଦେବତା ମୁଖ୍ୟ ସ୍ଥାନ ଲାଭକଲେ, ସେମାନଙ୍କ ମଧ୍ୟରେ ଗଣେଶ ଅନ୍ୟତମ । (୧୩୪) ପୁରାଣରେ ଗଣେଶଙ୍କୁ ବିଘ୍ନ-ନାଶନ (୧୩୫) ଓ ଗଣାଧିପତି (୧୩୬) ଆଖ୍ୟା ପ୍ରଦାନ କରାଯାଇଅଛି । ପୁରାଣକାର କହନ୍ତି ଯେ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ଗଣେଶ ରୂପରେ ଆବିର୍ଭୂତ ହୋଇଥିଲେ । ପୁରାଣରେ ତାହାଙ୍କୁ ଲମ୍ବୋଦର, ଗଜାନନ, ଏକଦନ୍ତ ଏବଂ ଶିଶୁ, ଦେବତା ତଥା ସାରା ଜଗତର ଅଗ୍ରପୂଜ୍ୟ ଦେବତା ବୋଲି ସ୍ତୁତି କରାଯାଇ-ଅଛି । (୧୩୭)

ପଞ୍ଚଦଶ ଶତାବ୍ଦୀର ଉତ୍କଳରେ ଗାଣପତ୍ୟ ଧର୍ମର ପ୍ରଭାବ ଥିଲା । କବି ଗଣେଶଙ୍କର ବହୁ ସ୍ତୁତି ପ୍ରଦାନ କରିଥିବାରୁ ଏହା ଅବଧାରିତ ହୁଏ । (୧୩୮) କବି ତାହାଙ୍କୁ ଯୋଗୀଶ୍ରେଷ୍ଠ, ମହାବ୍ରହ୍ମ, ଲୋକେଶ, ସର୍ବଜ୍ଞ, ବିଘ୍ନରାଜ, ମଙ୍ଗଳ-ଦାତା, ଅମଙ୍ଗଳନାଶକାରୀ, ସିଦ୍ଧିଦାତା, ଅଗ୍ରପୂଜ୍ୟ, ଗଜାନନ, ଲମ୍ବୋଦର ଓ ନୃତ୍ୟପ୍ରିୟ ବୋଲି ସ୍ତୁତି କରନ୍ତି । ଯଥା—

"ଜୟ ଜୟ ବିଧିମଙ୍ଗଳ ହେ ବିଘ୍ନରାଜ
ଯାହାର ପ୍ରସନ୍ନେ ସିଦ୍ଧ ହୁଏ ସର୍ବ କାର୍ଯ୍ୟ ।
ଅମଙ୍ଗଳନାଶକାରୀ ଜୟ ଗଜାନନ
ଯୋଗେଶ ପରମାନନ୍ଦ ପାର୍ବତୀନନ୍ଦନ ।
ଶଙ୍ଖ-ଚକ୍ର-ପଦ୍ମଧର ଶ୍ରୀ ବିଧିବାମନ
ମଙ୍ଗଳ ବରଦ ତୁ ସର୍ବଜ୍ଞ ଗଜାନନ ।

ମହାବ୍ରହ୍ମ ଲୋକେଶ ସିନ୍ଦୂରେ ମୁଖ ଶୋଭେ
ଅଗ୍ରପୂଜ୍ୟ ସର୍ବଦା ବନ୍ଦିତ ସର୍ବଦେବେ ।
ଜୟ ଜୟ ଦେବାସୁର ସିଦ୍ଧ ଲମ୍ବୋଦର
ଜୟ ତୁ ଜୟ ତୁ ଦେବ ସର୍ବବିଘ୍ନହର ।'' (୧୩୯)
''ମୂଷିକ ବାହନେ ନୃତ୍ୟରଙ୍ଗେ ସଦା ଖେଳା
ମତ୍ତ ସଂଗୀତେ କରୁ ତୁ ତାଣ୍ଡବର ଲୀଳା ।'' (୧୪୦)

ସାରଳା ଦାସ ଗଣେଶଙ୍କଠାରେ ରୋଗନାଶକାରୀ ଶକ୍ତି ଆରୋପ କରିଛନ୍ତି । ସେ ମଧ୍ୟ ପୁତ୍ରହୀନଙ୍କୁ ପୁତ୍ରଦାନ କରିଥାନ୍ତି । ବସୁ କୁମ୍ଭାର ଉପାଖ୍ୟାନରେ ଏହା ବର୍ଣ୍ଣିତ । ଶିବା ନଦୀକୂଳରେ ବସୁ ନାମକ କୁମ୍ଭାର ଶାଳ ସ୍ଥାପନ କରି ରହିଥିଲା । ସେ ନିଃସନ୍ତାନ ଓ କୁଷ୍ଠରୋଗଗ୍ରସ୍ତ ଥିଲା । ସେ ଗଣେଶଙ୍କର ଅଷ୍ଟଭୁଜବିଶିଷ୍ଟ (୧୪୧) ମୂର୍ତ୍ତି ଗଢ଼ି ପୂଜା କଲେ । ଫଳରେ ବସୁ କୁମ୍ଭାର ରୋଗମୁକ୍ତ ହେଲା । ତାହା ଦେଖି ନଗରର ଅପୁତ୍ରକ ଲୋକମାନେ ଗଣେଶଙ୍କର ସେବାକଲେ ଏବଂ ପୁତ୍ରଲାଭ କଲେ । (ବ୩୦ପୃ)

ମାଧ୍ୟୁଗୀନ ଓଡ଼ିଶାରେ ଗଣେଶ ପୂଜିତ ହେଉଥିବାର ବୃତ୍ତାନ୍ତ ଶିଳାଶିଳ୍ପ ତଥା ଅନ୍ୟାନ୍ୟ ଲେଖାରୁ ଜଣାଯାଏ । ଭୁବନେଶ୍ୱରର ପର୍ଶୁରାମ ମନ୍ଦିରଗାତ୍ରରେ ଶିବ, ପାର୍ବତୀ, କାର୍ତ୍ତିକେୟ ଓ ଦୁର୍ଗାଙ୍କ ସହିତ ଗଣେଶଙ୍କ ମୂର୍ତ୍ତି ଖୋଦିତ ହୋଇଥିବାରୁ ଏହା ପ୍ରତିପାଦିତ ହୁଏ । (୧୪୨) ଗଣେଶପୂଜା ପଞ୍ଚମ ଶତାବ୍ଦୀ ପୂର୍ବରୁ ଓଡ଼ିଶାରେ ପ୍ରଚଳିତ ହୋଇଆସୁଥିବାର ଜଣାଯାଏ । (୧୪୩) ସେ କାଳରେ ଲେଖକମାନେ ଗଣେଶ ବନ୍ଦନା ସହ କାବ୍ୟାରମ୍ଭ କରୁଥିଲେ । 'ଚଣ୍ଡୀପୁରାଣ'ରେ କବି ଗଣେଶ ବନ୍ଦନା ଦେଇ ପାଠାରମ୍ଭ କରିଛନ୍ତି । (ପୃ୨) 'ଏକାମ୍ର ଚନ୍ଦ୍ରିକା'ର ଲେଖକ ମଧ୍ୟ ପ୍ରଥମେ ଗଣେଶଙ୍କ ସ୍ତୁତି ଦେଇ ଲେଖାରମ୍ଭ କରିଅଛନ୍ତି । (୧୪୪) 'ରୁଦ୍ରସୁଧାନିଧି'ରେ ଗଣେଶପୂଜାର ବର୍ଣ୍ଣନା ମଧ୍ୟ ମିଳେ । (୧୪୫)

## (ଚ) ଜୈନ ଧର୍ମ

ଜୈନଧର୍ମର ପ୍ରତିପତ୍ତି ମଧ୍ୟଯୁଗରେ ହ୍ରାସପ୍ରାପ୍ତ ହୋଇଥିଲେ ହେଁ ପୂର୍ଣ୍ଣତଃ ଲୋପ ପାଇ ନ ଥିଲା । ଇତିହାସରୁ ଜଣାଯାଏ ଯେ, ବିଜୟନଗରର ବୈଷ୍ଣବମାନେ ଜୈନମାନଙ୍କ ଉପରେ ଅତ୍ୟାଚାର କରିବାରୁ ସେମାନେ ରାଜା

ବୁକ୍କା ରାୟଙ୍କ ପାଖରେ ଅଭିଯୋଗ କଲେ । ୧୩୬୮ ଖ୍ରୀଷ୍ଟାବ୍ଦରେ ରାଜା ବୁକ୍କା ରାୟ ଉଭୟ ସଂପ୍ରଦାୟକୁ ପରସ୍ପର ମଧ୍ୟରେ ସହଯୋଗ ରଖି ଧର୍ମାନୁସରଣ କରିବା ନିମିତ୍ତ ଆଦେଶ ଦେଇଥିଲେ । ମଧ୍ୟଯୁଗରେ ଗୁଜୁରାଟ ଅଞ୍ଚଳରେ ଏହି ଧର୍ମ ତିଷ୍ଠି ରହିଥିଲା । (୧୪୬) କେତେକ ଜୈନ ଦାର୍ଶନିକ ଓ ପଣ୍ଡିତ ଏହି ଯୁଗରେ ଆବିର୍ଭୂତ ହୋଇ ଜୈନଶାସ୍ତ୍ରମାନଙ୍କ ଉପରେ ପାଣ୍ଡିତ୍ୟପୂର୍ଣ୍ଣ ଓ ଯୁକ୍ତି-ସମ୍ବଳିତ ଟୀକା ରଚନା କରିଥିଲେ । ତାହା ଜୈନଧର୍ମକୁ ଧ୍ୱଂସମୁଖରୁ ରକ୍ଷା କରିଥିଲା । (୧୪୭)

ଉତ୍କଳରେ ପଞ୍ଚଦଶ ଶତାବ୍ଦୀବେଳକୁ ଜୈନଧର୍ମର ପ୍ରଭାବ ଥିଲା । ସାରଳା ଦାସ ଜୈନଧର୍ମର କେତେକ ମତର ଘୋଷଣା କରିଅଛନ୍ତି । ଜୈନଧର୍ମର ଗୋଟିଏ ମତ ଥିଲା—ବାଦବିବାଦ ସହ ସଂଶ୍ଳିଷ୍ଟ ନହେବା । (୧୪୮) ସେମାନେ କାହାର ହସ୍ତରେ ଭୋଜନ ବି କରୁନଥିଲେ । (୧୪୯) ଏହି ଧର୍ମରେ ଚରିତ୍ର ଉପରେ ଖୁବ୍ ପ୍ରାଧାନ୍ୟ ଦିଆଯାଉଥିଲା । (୧୫୦) ସ୍ୱର୍ଗଦେଉଳରେ ଯମ ହରି ସାଧୁଙ୍କୁ ଯେଉଁ ଉପଦେଶମାନ ପ୍ରଦାନ କରିଅଛନ୍ତି, ସେଥିରେ ଜୈନଧର୍ମର ଏହି ମତ-ଗୁଡ଼ିକ ପ୍ରକାଶ ପାଇଅଛି । ଯମ କହିଥିଲେ—

"ହତ୍ୟା ବିବାଦକୁ କେବେ ନ ଯିବେକ ଦେଖି
ବେନଜନ କଳହରେ ନ ହୋଇବେ ସାକ୍ଷୀ ।"
"ଆପଣା ଭାରିଯା ଯାହା କରିବ ରନ୍ଧନ
ତାକୁ ଖାଇ ଦୁଃଖେ ସୁଖେ କାଟୁଥିବ ଦିନ ।"
"ଅତଏବ ତୋ ଜାତିକୁ ଭୁଞ୍ଜି ଛିଆରିବୁ
ପରସ୍ତ୍ରୀ ଖି ରମିବାକୁ ତାଙ୍କୁ ନବାରିବୁ ।"
ଅନ୍ୟ ଜାତି ସ୍ତ୍ରୀ ଖିଙ୍କର ନ ଛୁଇଁବେ ଅଙ୍ଗ
କଦାପି ସେ ନକରିବେ କୁଜନଙ୍କ ସଙ୍ଗ ।" (ସ୍ୱଦପୃ)

ଅପରିଗ୍ରହ ଅର୍ଥାତ୍ ଧନ ସଞ୍ଚୟ ନକରିବା ଓ ସତ୍ୟ ଆଚରଣ କରିବା ଜୈନଧର୍ମର ପଞ୍ଚ ମହାବ୍ରତ ମଧ୍ୟରେ ପରିଗଣିତ ହୁଏ । (୧୫୧) ଯମ ହରିସାଧୁଙ୍କୁ ବେଶୀ ଲାଭ ପାଇଁ ବିଦେଶ ନ ଯିବା ନିମିତ୍ତ ଯେଉଁ ଉପଦେଶ ଦେଇଛନ୍ତି ସେଥିରେ ସଞ୍ଚୟଶୀଳ ନ ହେବାର ଭାବନା ନିହିତ । କବି କହନ୍ତି ଯେ ସୁଜାଣେଶ୍ୱର ନାମକ ଯତି ଯେତିକି ମିଳୁଥିଲା ସେତିକରେ ଚଳୁଥିଲେ; ଅର୍ଥାତ୍ ସେ ସଞ୍ଚୟଶୀଳ

ନଥିଲେ । ଯମ ପୁଣି ହରିସାହୁଙ୍କୁ ମିଥ୍ୟା ନକହିବା ପାଇଁ ଉପଦେଶ ଦେଇ-ଅଛନ୍ତି । ସୁଜାଣେଶ୍ୱର ମିଥ୍ୟା ଓ କପଟତା ଆଚରଣ କରୁନଥିଲେ । (ସ୍ୱ୯ପୃ)

କେହି କେହି ଆଲୋଚକ ଯମଙ୍କ ଉପଦେଶରେ ବୌଦ୍ଧ ଶୀଳାଗ୍ରର ପ୍ରଭାବ ଦେଖାନ୍ତି ।(୧୫୨) କିନ୍ତୁ ଉପରୋକ୍ତ ଆଲୋଚନାରୁ ପ୍ରତିପାଦିତ ହୁଏ ଯେ, ଯମଙ୍କ ବାଣୀରେ ଜୈନଧର୍ମର ଦର୍ଶନ ହିଁ ରୂପ ପାଇଅଛି ।

କବି ଜୈନଧର୍ମ ପ୍ରତି ସଚେତନ ରହି ସୁଜାଣେଶ୍ୱରଙ୍କ ଦେହତ୍ୟାଗର କାଳ ଉଲ୍ଲେଖ କରିଛନ୍ତି । ଏହି ଧର୍ମର ଚତୁର୍ବିଂଶ ତୀର୍ଥଙ୍କର କାର୍ତ୍ତିକମାସ କୃଷ୍ଣପକ୍ଷ ଅମାବାସ୍ୟାରେ ମହାପ୍ରୟାଣ କରିଥିଲେ । (୧୫୩) କବିଙ୍କ ସୁଜାଣେଶ୍ୱର ଯତିଙ୍କର ଦେହତ୍ୟାଗର କାଳ ମଧ୍ୟ ଏହାହିଁ ଅଟେ ।

"ଏ ସମୟେ ପ୍ରାଣତ୍ୟାଗ କଲେ ସେହୁ ଯତି
ପୂର୍ଣ୍ୟମାସ କାର୍ତ୍ତିକରେ ସେ ହିତପାହାନ୍ତି ।
ସେହି ଦିନ ସେ ଶବର ପ୍ରାଣକୁ ଛାଡ଼ିଲା
ଅନ୍ତେ ଯତି ସଙ୍ଗେ ଯାଇ ବୈକୁଣ୍ଠେ ବସିଲା ।" (ସ୍ୱ୯ପୃ)

ଜୈନମାନେ ଭାବନ୍ତି ଯେ, କୃଷି କଲେ ଅହିଂସା ଧର୍ମ ବ୍ୟାଘାତ ପାଏ । ତେଣୁ ସେମାନେ କୃଷିବୃତ୍ତି ନ କରି ବ୍ୟବସାୟ କରନ୍ତି । ସେମାନଙ୍କର ସାହୁ ପଦବୀଟି ଜୈନ-ପ୍ରଭାବର ସୂଚକ । (୧୫୪) କବି-ବର୍ଣ୍ଣିତ ହରିସାହୁ 'ସାହୁ' ଉପାଧିଧାରୀ ଏବଂ ସୁନା ବ୍ୟବସାୟ ତାହାଙ୍କର ବୃତ୍ତି ।

ଜୈନଧର୍ମ ମଧ୍ୟ ବୈଷ୍ଣବଧର୍ମ ସହିତ ସମିଶ୍ରିତ ହୋଇଥିଲା । ସାରଳାଙ୍କ ଯମଦେବତା ହରିସାହୁଙ୍କୁ ବିଷ୍ଣୁ ଅର୍ଚ୍ଚନା କରିବା ଓ ବିଷ୍ଣୁ-ପୁରାଣ ପାଠ କରିବା ପାଇଁ ଉପଦେଶ ଦେବା ବୃତ୍ତାନ୍ତରୁ ଏହି ସମନ୍ୱୟର ସଙ୍କେତ ମିଳେ ।

"ତ୍ରିକାଳ ସନ୍ଧ୍ୟା କରିବେ ନିତି ତିନିବେଳ
ଅବସରକ୍ରମେ ଯିବେ ସର୍ବେ ଦେବଆଳ ।
ବିଷ୍ଣୁ ଅର୍ଚ୍ଚନା କରିବେ ଶାସ୍ତ୍ରର ବିଧାନେ
ବିଷ୍ଣୁ ପୁରାଣ ପଢ଼ିବେ ସଦା ଶୁଚି ମନେ ।" (ସ୍ୱ ୯ପୃ)

ଇତିହାସରୁ ଜଣାଯାଏ ଯେ, ଓଡ଼ିଶାରେ ଜୈନଧର୍ମ ଦିନେ ଲୋକଧର୍ମରେ ପରିଣତ ହୋଇଥିଲା । ନନ୍ଦ ରାଜତ୍ୱର କିଛି କାଳ ପୂର୍ବରୁ ଏହା ଉତ୍କଳରେ ପ୍ରବେଶ କରେ । ଖାରବେଳଙ୍କ କାଳରେ ଏହା ରାଜଧର୍ମରେ ପରିଣତ ହୁଏ । ଚେଦିବଂଶର ରାଜତ୍ୱ ପରେ ବୌଦ୍ଧ ପ୍ରଭାବରେ ଜୈନଧର୍ମ ଉତ୍କଳରୁ ଅନ୍ତର୍ହିତ

ହୁଏ । ତେବେ ବ ଗୋଟିଏ ଲୋକଧର୍ମ ରୂପରେ ଏହାର ସତ୍ତା ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଲକ୍ଷ୍ୟ କରାଯାଇପାରେ । (୧୫୫) ଖଣ୍ଡଗିରି-ଗାତ୍ରରେ ଯେଉଁ ସମସ୍ତ ଜୈନଚିତ୍ର ଓ ଲେଖା ଏବେ ଦେଖାଯାଏ, ତାହା ଭାରତବର୍ଷର ପ୍ରାଚୀନତମ ଜୈନ ନିଦର୍ଶନ । ଓଡ଼ିଶା ଭାରତବର୍ଷର ପ୍ରାଚୀନତମ ଜୈନପୀଠ । (୧୫୬)

## (ଛ) ବୈଷ୍ଣବ ଧର୍ମ

ବୈଷ୍ଣବଧର୍ମର ପ୍ରାଚୀନ ନାମ ଭାଗବତଧର୍ମ । ଏହି ଭାଗବତଧର୍ମର ପ୍ରଧାନ ଉପାସ୍ୟ ଦେବତା ଥିଲେ—ବାସୁଦେବ । ଭାଗବତଧର୍ମ ପ୍ରଥମେ ବୃଷ୍ଣି-ବଂଶୀୟ ସାତ୍ୱତ ନାମକ କ୍ଷତ୍ରିୟ ଜାତିରେ ସୀମିତ ଥିଲା । ବ୍ରାହ୍ମଣ୍ୟଧର୍ମରେ ପ୍ରଚଳିତ ହିଂସା-ପ୍ରଧାନ ଯଜ୍ଞର ବିରୋଧ ଖ୍ରୀଷ୍ଟପୂର୍ବ ୬୦୦ ଅବ୍ଦରେ ବି ହୋଇଥିଲା। ତାହା ପୂର୍ବରୁ ଭାଗବତଧର୍ମ ଥିଲା; କିନ୍ତୁ ପ୍ରସାରଲାଭ କରିପାରିନଥିଲା । ଜୈନ ଓ ବୌଦ୍ଧଧର୍ମର ପ୍ରାବଲ୍ୟ ଦେଖି ବ୍ରାହ୍ମଣମାନେ ଭାଗବତଧର୍ମକୁ ଗ୍ରହଣ କରିନେଲେ ଏବଂ ତାହାକୁ ବୈଷ୍ଣବ ବା ନାରାୟଣ ଧର୍ମ ରୂପରେ ସଂଗଠନ କଲେ । ସଂସ୍କୃତ ମହାଭାରତରେ ବାସୁଦେବଙ୍କୁ ବିଷ୍ଣୁଙ୍କଠାରୁ ଅଭିନ୍ନ ଏବଂ ଶ୍ରୀକୃଷ୍ଣଙ୍କୁ ବୃଷ୍ଣିବଂଶୀୟ ବାସୁଦେବ ବା ବାସୁଦେବଙ୍କର ଅବତାରରୂପରେ ସ୍ୱୀକାର କରାଗଲା । ଏହିଭଳି ପୁରାଣ ମାଧ୍ୟମରେ ସାତ୍ୱତ ଜାତିର କୁଳ-ଦେବତା ବାସୁଦେବ ଲୋକ-ଦେବତାରେ ପରିଣତ ହେଲେ । ଭାଗବତଧର୍ମ କ୍ରମଶଃ ଲୋକ-ଧର୍ମର ରୂପ ଲାଭ କଲା । ଗୁପ୍ତରାଜାମାନଙ୍କ ରାଜତ୍ୱକାଳରେ ଅର୍ଥାତ୍ ୪ର୍ଥ ବା ୫ମ ଶତାବ୍ଦୀରେ ଭାଗବତଧର୍ମ ବୈଷ୍ଣବଧର୍ମରେ ପରିଣତ ହେଲା । (୧୫୭)

ଦକ୍ଷିଣରେ ଆଲବାରପନ୍ଥୀ ଭକ୍ତଗଣ ବିଷ୍ଣୁ, ବାସୁଦେବ ବା ନାରାୟଣ ଅଥବା ତାଙ୍କର ଅବତାର ରାମ ଓ କୃଷ୍ଣଙ୍କ ପ୍ରତି ପ୍ରେମଭାବ ପ୍ରଦର୍ଶନ କରୁଥିଲେ । ସେମାନେ କୃଷ୍ଣ ବା ଗୋପୀମାନଙ୍କର କ୍ରୀଡ଼ା ବର୍ଣ୍ଣନାକରି ବାତ୍ସଲ୍ୟ ତଥା ମଧୁର ରସ ପ୍ରକଟନ କଲେ । ଶ୍ରୀ ରାମାନୁଜାଚାର୍ଯ୍ୟ ୧୧ଶ ଶତାବ୍ଦୀରେ ଆବିର୍ଭୂତ ହୋଇ ଲକ୍ଷ୍ମୀ-ନାରାୟଣଙ୍କୁ ପ୍ରଧାନ ଉପାସ୍ୟ ଦେବତା ରୂପରେ ପ୍ରତିଷ୍ଠା କଲେ । ଦାକ୍ଷିଣାତ୍ୟରେ ବୈଷ୍ଣବଧର୍ମ ମାଧ୍ୱାଚାର୍ଯ୍ୟ, ନିମ୍ବାର୍କ ଓ ବିଷ୍ଣୁସ୍ୱାମୀଙ୍କ ଭଳି ପ୍ରଚାରକ-ମାନଙ୍କ ଚେଷ୍ଟାରେ ୧୦ମ ଠାରୁ ୧୧ଶ ଶତାବ୍ଦୀ ମଧ୍ୟରେ ସୁଦୃଢ଼ ହୁଏ । ଏହା ପ୍ରାୟ ୧୪ଶ ଶତାବ୍ଦୀରେ ଉତ୍ତରଭାରତକୁ ପ୍ରସାର ଲାଭକରେ । ଉତ୍ତରଭାରତରେ ରାମାନନ୍ଦ, କବିର, ତୁଳସୀଦାସ, ବଲ୍ଲଭାଚାର୍ଯ୍ୟ ଓ ଶ୍ରୀନିବାସାଚାର୍ଯ୍ୟ ପ୍ରଭୃତିଙ୍କ

ମାଧ୍ୟମରେ ଏହି ଧର୍ମ ଲୋକପ୍ରିୟ ହୋଇଉଠେ । ରାମାନନ୍ଦ ସୀତାରାମ ଉପାସନା ପ୍ରବର୍ତ୍ତନ କରନ୍ତି । (୧୫୮)

ସାରଳା ଦାସଙ୍କ ଯୁଗରେ ବୈଷ୍ଣବଧର୍ମର ପ୍ରଭାବ ଥିଲା । ବୈଷ୍ଣବ ସହଜିଆ ପନ୍ଥାରେ ରାଧାକୃଷ୍ଣଙ୍କର ରତିବିଳାସ ସ୍ଥାନ ଲାଭ କରେ । (୧୫୮) ସାରଳା ଦାସ 'ଖିଲ୍ୟକାର ଜନ୍ମ' ପ୍ରସଙ୍ଗରେ ରାଧାକୃଷ୍ଣଙ୍କର ରତିବିଳାସ ବର୍ଣ୍ଣନା କରିଅଛନ୍ତି । କବି କହନ୍ତି ଯେ, ରାଧା ପ୍ରଥମେ ଶ୍ରୀକୃଷ୍ଣଙ୍କର ପ୍ରେମକୁ ପ୍ରତ୍ୟାଖ୍ୟାନ କଲେ । ଶ୍ରୀକୃଷ୍ଣ ବ୍ରହ୍ମାଙ୍କଠାରୁ ଲୌହ ଅସ୍ତ୍ର ଖଣ୍ଡିଏ ପାଇ, କାନ୍ଥ ଖୋଳି ରାଧାଙ୍କ ଶୟନକକ୍ଷରେ ପ୍ରବେଶ କଲେ । ସେଠାରେ ଉଭୟଙ୍କର ମିଳନ ହେଲା । (ଆ୧୫୨ପୃ)

ବୈଷ୍ଣବଧର୍ମର ପରକୀୟା ପ୍ରେମର ପ୍ରତିପତ୍ତି ଦେଖାଯାଏ । (୧୫୯) ରାଧାଙ୍କ ସହ କୃଷ୍ଣଙ୍କର ମିଳନ ପରକୀୟା ପ୍ରେମର ଏକ ଦୃଷ୍ଟାନ୍ତ । କବି ଲେଖିଛନ୍ତି ଯେ, ରାଧିକାଙ୍କ ସ୍ୱାମୀ ଚନ୍ଦ୍ରସେଣାଙ୍କ ଉପରେ ଶ୍ରୀକୃଷ୍ଣ ନିଦ୍ରାଧୂଳି ପ୍ରକ୍ଷେପ କଲେ ଏବଂ ସେ ନିଦ୍ରାଭିଭୂତ ହେଲେ । ଏହି ଅବସରରେ ଶ୍ରୀକୃଷ୍ଣ ତାଙ୍କର ପତ୍ନୀ ରାଧାଙ୍କ ସହ ପ୍ରଣୟ କଲେ । (ଆ୧୫୨ପୃ) ସାରଳାଙ୍କ ବର୍ଣ୍ଣନାରେ ପରକୀୟା ପ୍ରେମର ଅନ୍ୟତମ ଦୃଷ୍ଟାନ୍ତ ହେଉଛି—ଶ୍ରୀକୃଷ୍ଣଙ୍କ ସହ ସହଜସୁନ୍ଦରୀଙ୍କର ରତିଲୀଳା । ରାଧାଙ୍କ ପ୍ରୀତିଲାଭ କରି ନ ପାରି ଶ୍ରୀକୃଷ୍ଣ ସ୍ୱର୍ଗସୁନ୍ଦରୀଙ୍କୁ (ସହଜସୁନ୍ଦରୀ) ଆଣିଲେ । ସେ ତନ୍ତ୍ରାଦି ବିଦ୍ୟାବଳରେ ରାଧାଙ୍କୁ ବଶୀଭୂତ କଲେ । ରାଧା ଶ୍ରୀକୃଷ୍ଣଙ୍କ ପ୍ରେମରେ ଆକୃଷ୍ଟ ହେଲେ ଏବଂ ସହଜସୁନ୍ଦରୀଙ୍କୁ ଦୂତୀ ସ୍ୱରୂପ ଶ୍ରୀକୃଷ୍ଣଙ୍କ ପାଖକୁ ପ୍ରେରଣ କଲେ । ସେତେବେଳେ ଶ୍ରୀକୃଷ୍ଣ ପରଦାରାସକ୍ତ ହୋଇ ମାଧବୀ ଲତାର ତଳେ ଅପେକ୍ଷା କରୁଥିଲେ । ସେ ସହଜସୁନ୍ଦରୀଙ୍କୁ ରାଧା ଭାବି ତାଙ୍କ ସହ ରତିକ୍ରୀଡ଼ାରେ ମାତିଲେ । (ଆ୧୫୩ପୃ)

ସାରଳା ଦାସ ପରକୀୟା ପ୍ରେମର ଚିତ୍ର ଦେଇଥିଲେ ହେଁ, ତାଙ୍କର ବର୍ଣ୍ଣନାରୁ ପ୍ରତିପାଦିତ ହୁଏ ଯେ ସହଜିଆ ବୈଷ୍ଣବଧର୍ମର ପରକୀୟା ପ୍ରେମ ଓ ରାଧାକୃଷ୍ଣ ରତିକ୍ରୀଡ଼ାମୂଳକ ଭାବ-ଭାବନା ଉତ୍କଳରେ ଆଦର ପାଉ ନ ଥିଲା । ତେଣୁ ସେ ଶ୍ରୀକୃଷ୍ଣଙ୍କ ମୁଖରେ ପରଦାରା ହରଣର ଘୋର ନିନ୍ଦା ପ୍ରକାଶ କରି-ଅଛନ୍ତି ।

"ପୋଡ଼ୁ ପୋଡ଼ୁ ପରଦାର ଆଜଠାରୁ ନୋହୁ
ଯେ କରିବ ପରଦାର ପ୍ରାଣ ଛାର ଯାଉ ।
ପରଦାର ହରଣରେ ଏସନ ଅବସ୍ଥା
ଖେଳରସେ ଭୁଆଇଲି ମୁଁ ଏସନ କଥା ।
ଏବେ ସେ ଜାଣିଲି ପରଦାରର ଏ ଭେଦ
ପରଦାର ଭୋଗ ହୁଏ ଏସନ ପ୍ରମାଦ ।
ନାରାୟଣ ହିଁ ବିରସ ହୋଇଲେ ଏସନେ
ପରସ୍ତ୍ରୀ ହରଣରେ ନ ପଶିବେ ଜନେ ।"
"କାମାକ୍ଷୀ ସୁମର ନରେ କାମକଷ୍ଟ ଫିଟୁ
ପରଦାରକୁ ସଂହର ସଂସାର ନ ଲୁଟୁ ।"
"ଖଣ୍ଡିଲି ଜଗମୋହନ ପୁରୁଷର ଦର୍ପ
ଉପୁଜଇ ପରଦାର କଲେ ସର୍ବ ପାପ ।
କ୍ଷଣିକ ସୁଖ ସେ ପରଦାର ରସରଙ୍ଗ
କ୍ଷଣକ ଭିତରେ ସର୍ବ ବପୁ ହୁଏ ଭଙ୍ଗ ।
କାମାକ୍ଷୀ ଦେବୀ ଚରଣ ସେବା ମୋର ନିତି
ନ ବଳୁ ମୋ ଚିତ୍ତେ ପରଦାର ସଙ୍ଗ ପ୍ରୀତି ।
ପରଦାର ସଙ୍ଗ କଷ୍ଟ ଅଟଇ ଏମନ୍ତ
ସର୍ବଦା କାତର ଚିତ୍ତ ଦୁଃଖ ହେତୁ ମାତ୍ର ।" (ଆ।୧୫୩ପୃ)

ଭ୍ରଷ୍ଟ ସହଜିଆ ସାଧକଙ୍କର ବ୍ୟଭିଚାର କଥା କବି ଦର୍ଶାଇଛନ୍ତି ଏବଂ ତାହାର ପ୍ରତିରୋଧ ପାଇଁ ଶ୍ରୀକୃଷ୍ଣଙ୍କର ଅନୁଶୋଚନା ପ୍ରକାଶ କରିଛନ୍ତି । ଅଧିକନ୍ତୁ ସେ ଜାତିକୁ ଏହି ପାପର ଫଳାଫଳ ବିଷମୟ ବୋଲି ଦର୍ଶାଇ ସତର୍କ କରିଦେଇ-ଅଛନ୍ତି । ତେଣୁ କୁହାଯାଇ ପାରେ ଯେ, ସାରଳା ଦାସ ସମାଜ-ଜୀବନକୁ ବ୍ୟଭିଚାରଗ୍ରସ୍ତ ଅଧୋପତନରୁ ରକ୍ଷା କରିବା ପାଇଁ ନୂତନ ଆଭିମୁଖ୍ୟ ଆଣି ସମାଜରେ ସଂଯମର ଆଦର୍ଶ ପ୍ରତିଷ୍ଠା କରିଅଛନ୍ତି । (୧୬୦)

ବିରାଟ ପର୍ବରେ ରାଧାଙ୍କ କଥା ଅଛି । ସେଠାରେ କବି ଲେଖିଛନ୍ତି ଯେ, ବୃଷଭାନୁସୁତା ରାଧା ଶ୍ରୀକୃଷ୍ଣଙ୍କ ପ୍ରେମ ପ୍ରତି ବିମୁଖ ଥିଲେ । ଶ୍ରୀକୃଷ୍ଣ ବହୁ ଧନରତ୍ନ ତାଙ୍କ ପାଖକୁ ପଠାଇଲେ । ରାଧା ସେ ସବୁ ପ୍ରତ୍ୟାଖ୍ୟାନ କଲେ । ଶ୍ରୀକୃଷ୍ଣ ନିରାଶ ହୋଇ ଦେହ ତ୍ୟାଗ କରିବେ ବୋଲି ସ୍ଥିର କଲେ । ବ୍ରହ୍ମା ଗୋଟିଏ ବିରହ

ବଂଶୀ ଶ୍ରୀକୃଷ୍ଣଙ୍କୁ ପ୍ରଦାନ କଲେ । ସେହି ମୋହନ ବଂଶୀରେ ସ୍ୱର ତୋଳିବାରୁ ରାଧା ଶ୍ରୀକୃଷ୍ଣଙ୍କ ପ୍ରତି ଆକୃଷ୍ଟ ହେଲେ ଏବଂ ରାଧାକୃଷ୍ଣଙ୍କର ମିଳନ ସମ୍ଭବ ହେଲା । (ବି୧୨୪ପୃ) ଏହି ବର୍ଣ୍ଣନାରେ ଶ୍ରୀକୃଷ୍ଣ ଜଣେ ସାଧାରଣ ପ୍ରେମିକ ଓ ରାଧା ଜଣେ ସାଧାରଣ ପ୍ରେମିକା ମାତ୍ର ।

ସାରଳା ଦାସ ରାଧାକୃଷ୍ଣଙ୍କ ଲୀଳା ବର୍ଣ୍ଣନା କରିଥିଲେ ହେଁ, ରାଧାଙ୍କର ସ୍ତୁତି ସେ କରିନାହାନ୍ତି କି ରାଧାକୃଷ୍ଣ ଯୁଗଳ ମୂର୍ତ୍ତିର କଥା କହିନାହାନ୍ତି । ଦୁର୍ଗା, ଲକ୍ଷ୍ମୀ ବା ସରସ୍ୱତୀଙ୍କ ଭଳି ରାଧା କବିଙ୍କ ଲେଖାରେ ଦେବୀପର୍ଯ୍ୟାୟଭୁକ୍ତ ନୁହନ୍ତି । ଅଧିକନ୍ତୁ କବି ପରଦାରାସକ୍ତ ଶ୍ରୀକୃଷ୍ଣଙ୍କୁ ପାପୀ ବୋଲି ଦର୍ଶାଇଛନ୍ତି । ଗୋପୀ-ମାନଙ୍କ ସହ ବଳାତ୍କାର ରମଣ କରିବାରୁ ତାଙ୍କୁ ପାପ ଲାଗିଲା ଏବଂ ତା ଫଳରେ ତାଙ୍କର ପିଣ୍ଡ ଦଗ୍‌ଧ ହେଲାନାହିଁ ବୋଲି କବିଙ୍କର ମତ ।

"ଶୁଣଇ ଅର୍ଜୁନ ଏହା ହୋଇଲା କେସନ
ପାପୀଲୋକ ପିଣ୍ଡ ସିନା ନୁହଇ ଦହନ ।"
"ଗୋଷ୍ଠେ ଥିଲା ବେଳେ ପୁଣି ବଳା ଛନ୍ଦ ମାରି
ବଳାତ୍କାରେ ହରିଥିଲେ ଗୋପୀଗଣ ଧରି ।
ଜୀବ ଥିବା ଯାଏ ଯାହାଙ୍କୁ ପାପ ନ ଲାଗିଲା
ମରଣ ପରେ ଏ ପିଣ୍ଡେ କଳଙ୍କ ରହିଲା ।" (ମୂ୧୯ପୃ)

ଏଥିରୁ ଅବଧାରିତ ହୁଏ ଯେ, ସାରଳାଙ୍କ ଯୁଗରେ ରାଧିକାଭକ୍ତି ଓଡ଼ିଆ ସମାଜରେ ପ୍ରତିଷ୍ଠା ପାଇ ନ ଥିଲା । ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ମତରେ ବୈଷ୍ଣବୀୟ କଥା ବା ସାହିତ୍ୟରେ ପ୍ରେମମୟ ରାଧାକୃଷ୍ଣଙ୍କର ଯେଉଁ ରସାଶ୍ରିତ ବର୍ଣ୍ଣନା ଦେଖାଯାଏ, ଯୁଗଳ ମୂର୍ତ୍ତିର ବର୍ଣ୍ଣନା କରାଯାଏ ତାହା ସାରଳା ମହା-ଭାରତରେ ନାହିଁ । (୧୬୧) ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ରାଧାଭକ୍ତି ଓଡ଼ିଶାରେ ପ୍ରବେଶ କରି ନ ଥିବା କଥା ଅନ୍ୟ ସୂତ୍ରରୁ ବି ଅବଧାରିତ ହୁଏ । ପ୍ରାଚୀନ ଗୋପୀନାଥ ମୂର୍ତ୍ତି ସମୀପରେ କୁତ୍ରାପି ରାଧା ମୂର୍ତ୍ତି ଦେଖାଯାଏ ନାହିଁ । ଧର୍ମଶାଳାର ଗୋପୀନାଥ, କୋଣାର୍କ ଚକ ଉପରେ ଥିବା ଗୋପୀନାଥ, ରାଜରାଣୀ ମନ୍ଦିରର ଶ୍ରୀକୃଷ୍ଣଙ୍କ ପାଖରେ ରାଧାମୂର୍ତ୍ତି ନାହିଁ । କାଞ୍ଚିରୁ ଯେଉଁ ଶ୍ରୀକୃଷ୍ଣମୂର୍ତ୍ତି ପୁରୁଷୋତ୍ତମ ଦେବ ଆଣିଥିଲେ ସେଥିରେ ରାଧା ନ ଥିଲେ । ଶ୍ରୀ ଚୈତନ୍ୟ ବାରବାଟୀ ଦୁର୍ଗରେ ସାକ୍ଷୀ ଗୋପୀନାଥଙ୍କ ସହିତ ରାଧା ମୂର୍ତ୍ତି ଦେଖି ନ ଥିଲେ । (୧୬୨) ପୁରୀର ଜଗନ୍ନାଥ ମନ୍ଦିରସ୍ଥ ବଟକୃଷ୍ଣ, ହରି ସହଦେବ, ଅନନ୍ତ ବାସୁଦେବ

ପ୍ରଭୃତି କୃଷ୍ଣ ମନ୍ଦିରମାନଙ୍କରେ ରାଧା ନାହାନ୍ତି । କୌଣସି ପ୍ରାଚୀନ ମନ୍ଦିରରେ ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତି ପୂଜା ପାଉଥିବାର ପରିଦୃଷ୍ଟ ହୁଏ ନାହିଁ । (୧୬୩)

ସେ କାଳରେ ସ୍ୱକୀୟା ଭକ୍ତିଧାରା ହିଁ ଉତ୍କଳୀୟ ସମାଜରେ ପ୍ରାଧାନ୍ୟ ଲାଭ କରିଥିଲା । କବି ସର୍ବତ୍ର ଶ୍ରୀକୃଷ୍ଣଙ୍କ ବର୍ଣ୍ଣନାରେ ତାଙ୍କର ସ୍ୱକୀୟା ପତ୍ନୀ ଅଷ୍ଟପାଟବଂଶୀଙ୍କ ଉଲ୍ଲେଖ କରିଅଛନ୍ତି । ଦ୍ୱାରକାରେ ଅର୍ଜୁନ ଯେତେବେଳେ ଉପସ୍ଥିତ ହେଲେ, ସେତେବେଳେ ଅଷ୍ଟପାଟବଂଶୀମାନେ ତାଙ୍କୁ ଅର୍ଘ୍ୟ ପ୍ରଦାନ କରିଥିଲେ ଓ ଭୋଜନାଦି ପରିବେଷଣ କରିଥିଲେ । (୧୬୪) କବି ଜଗନ୍ନାଥଙ୍କୁ ରୁକ୍ମଣୀ, ଜାମ୍ବବତୀ, ସତ୍ୟଭାମା, ଲକ୍ଷ୍ମୀ, ମାଳତୀ, ତୁଳସୀ ଓ କାଳନ୍ଦୀ ପ୍ରଭୃତିଙ୍କ ସ୍ୱାମୀ ରୂପରେ ସ୍ତୁତି କରି ସ୍ୱକୀୟାଭକ୍ତିର ପରମ୍ପରା ପ୍ରତିଷ୍ଠା କରିଅଛନ୍ତି ।

"ଜୟ ରୁକ୍ମଣୀବଲ୍ଲଭ ଜୟ ଜଗନ୍ନାଥ ।
ଜୟ ଜୟ ଜାମ୍ବବତୀ ଦେବୀ ପ୍ରାଣନାଥ ।
ଜୟ ଜୟ ସତ୍ୟଭାମା ହୃଦୟ ବଲ୍ଲଭ
ଜୟ ଜୟ ପଦ୍ମନାଭ ଯାଦବ ମାଧବ ।
ଜୟ ଜଗମୋହନ ତୁଳସୀର ପତି
ଜୟ ଜୟ ତୁଳସୀର ବଲ୍ଲଭ ଶ୍ରୀପତି ।"
"ଜୟ ଜୟ ମାଳତୀର ବଲ୍ଲଭ ମାଧବ
ଜୟ ଜୟ କାଳନ୍ଦୀର ବଲ୍ଲଭ ଯେ ଦେବ ।" (ମ୧୩୦ପୃ)

ସାରଳା ଦାସ ଜଗନ୍ନାଥଙ୍କୁ ଲକ୍ଷ୍ମୀପତି ଭାବରେ ମୁଖ୍ୟତଃ ପ୍ରତିଷ୍ଠା କରିଅଛନ୍ତି । ଲକ୍ଷ୍ମୀ ଶ୍ରୀକୃଷ୍ଣଙ୍କର ପ୍ରଧାନ ନାୟିକା ରୂପରେ କବି-ଲେଖମାରେ ସ୍ଥାନ ପାଇଅଛନ୍ତି । ଲକ୍ଷ୍ମୀଙ୍କୁ ନେଇ ଶ୍ରୀକୃଷ୍ଣ ଶିବଙ୍କ ଗୃହକୁ ଯାତ୍ରା କରିଥିଲେ ବୋଲି କବି ବର୍ଣ୍ଣନା କରିଅଛନ୍ତି । (ମ ୧୧୩ପୃ) ସେ ବହୁ ସ୍ଥଳରେ ଜଗନ୍ନାଥଙ୍କୁ 'କମଳାପତି' ବା 'ଲକ୍ଷ୍ମୀପତି' ରୂପରେ ସ୍ତୁତି କରିଛନ୍ତି । ଯଥା—

"ଭାରତୀବଲ୍ଲଭ ସେହି ରମାପ୍ରାଣବନ୍ଧୁ ।" (ଖ୍ରୀ୩ପୃ)
"କମଳାର ବଲ୍ଲଭ ସେ କରୁଣାବତ୍ସଳ ।" (ମ୪୧୭ପୃ)
"ଭକତ ବାନ୍ଧବ ତୁମ୍ଭେ କମଳା ବଲ୍ଲଭ ।" (ମୂ୨୪ପୃ)
"ଜୟ ପ୍ରଭୁ ଲକ୍ଷ୍ମୀପତି ଦୁଷ୍ଟନସୂଦନ ।" (ଝ୨ପୃ)

'ନୀଳାଦ୍ରି ମହୋଦୟଃ' ଗ୍ରନ୍ଥରେ ଦୋଳୋତ୍ସବ ବର୍ଣ୍ଣନାକ୍ରମରେ ଲକ୍ଷ୍ମୀଙ୍କ କଥାକ୍ୱଁ ଉକ୍ତି—"ପ୍ରତ୍ୟଙ୍ଗ କମଳା ଦେବ୍ୟାଂ ବିଶ୍ୱଧାତ୍ରୀମତଃ ପରଂ ।" (୧୬୫) କୃଷ୍ଣାଭିଷେକ ବିଧି ବର୍ଣ୍ଣନାରେ ଲକ୍ଷ୍ମୀଙ୍କୁ ଭଗବାନଙ୍କର ପ୍ରିୟା ବୋଲି କୁହାଯାଇ-ଅଛି । ଏଠାରେ ରୁକ୍ମଣୀଙ୍କର ନାମ ବି ଅଛି ।

"ଏଷା ଚ ମତ୍ପ୍ରିୟା ଲକ୍ଷ୍ମୀ ସର୍ବଦା ମଦ୍ଧୃଦି ସ୍ଥିତା ।
ଜାତା ସ୍ତ୍ରୀ ରୁକ୍ମଣୀ ନାମ୍ନୀ ସା ସନ୍ଦ୍ରାନ୍ତି ନବୋଧତେ ।" (୧୬୬)

ରାଧାକୃଷ୍ଣ ଉପାସନା ପରିବର୍ତ୍ତେ ସେ ଯୁଗରେ ଲକ୍ଷ୍ମୀ ନାରାୟଣଙ୍କ ଯୁଗଳ ଉପାସନା ଓଡ଼ିଶାରେ ପ୍ରଚଳିତ ଥିଲା । ରାମାନୁଜାଚାର୍ଯ୍ୟଙ୍କ ପ୍ରବର୍ତ୍ତିତ ଲକ୍ଷ୍ମୀ-ନାରାୟଣ ଉପାସନାର ସଙ୍କେତ କବି-ବର୍ଣ୍ଣିତ ବହୁ ପଂକ୍ତିରେ ନିହିତ । ଯଥା—

"ଲକ୍ଷ୍ମୀନାରାୟଣ ଜନ୍ମ ହୋନ୍ତି ପୁନଃ ପୁନଃ
ତେବେ ଯାଇ ଦାନବଙ୍କ ହୋଇବ ନିଧନ ।" (ସ୧୯୦)
"ଦଧିବାମନ ଆବର ଲକ୍ଷ୍ମୀ ନାରାୟଣ
ଦୁର୍ଗାମାଧବ ନାମକୁ କରିଲେ ସ୍ମରଣ ।" (ବ୧୮୬ପୃ)
"ମହାଲକ୍ଷ୍ମୀ ନାରାୟଣ ଆସିବାର ଜାଣି
ବୃଷଭ ପିଠିରେ ବିଜେ କଲେ ଶୂଳପାଣି ।" (ମ୧୧୪ପୃ)
"ଲକ୍ଷ୍ମୀନାରାୟଣ ବିଜେ ସମୁଦ୍ର ମନ୍ଥନରୁ
ସେହିରୂପେ ଦିଶଇ ବାସବର ସ୍ତ୍ରୀରୁ । (ମ୧୩୮ପୃ)

ସ୍କନ୍ଦପୁରାଣରେ (ଉତ୍କଳଖଣ୍ଡ) ଦୋଳୋତ୍ସବ ପ୍ରସଙ୍ଗରେ ଲକ୍ଷ୍ମୀ ଓ ଗୋବିନ୍ଦଙ୍କ ଏକତ୍ର ଦୋଳାରୋହଣ କରିବା କଥା କୁହାଯାଇଛି । (୧୬୭) "ଲକ୍ଷ୍ମୀ ପୁରାଣ"ରେ ଲକ୍ଷ୍ମୀନାରାୟଣଙ୍କ ଏକତ୍ର ଉଲ୍ଲେଖ ଦେଖାଯାଏ । (ପୃ୮)

ଓଡ଼ିଶାରେ କୃଷ୍ଣ ଗୋପୀନାଥ ରୂପରେ ବହୁ ଦିନରୁ ପୂଜିତ ହୋଇ ଆସୁଅଛନ୍ତି । ସାରଳା ମହାଭାରତରେ ଏହି ଗୋପୀନାଥ ଉପାସନାର ସଙ୍କେତ ମିଳେ । ସାରଳା ଦାସ ଶ୍ରୀକୃଷ୍ଣ ଓ ଗୋପୀମାନଙ୍କ ମଧୁର ଲୀଳାର ଉଲ୍ଲେଖ କେତେକ ସ୍ଥଳରେ କରିଥିବାର ଦେଖାଯାଏ । ନିମ୍ନ ବର୍ଣ୍ଣନାରେ ଗୋପୀମାନଙ୍କ ସହ ଶ୍ରୀକୃଷ୍ଣଙ୍କର ଲୀଳା-ଖେଳାର ସୂଚନା ନିହିତ ।

"ଧାବଂଶ ବୋଇଲେ ଆଗୋ ଶୁଣ ବାଇ ଦେଇ
ନଷ୍ଟପୁରୁଷକୁ ଖୋଜ ବୃନ୍ଦାବନେ ଯାଇ ।
ତାଙ୍କୁ ତରେ ଚୂଳ ହସ୍ତରେ ଧରଛ ବଇଁଶୀ
କଦମ୍ବ ମୂଳେ ଗୋପୀଙ୍କୁ ନ ଗ୍ଭଡ଼ନ୍ତ ବସି ।" (ମ୧୧୫ପୃ)
"ବସୁଦେବ ଘରେ କୃଷ୍ଣ ବଳରାମ ରୂପ
ଜନ୍ମ ହୋଇ ବେନଭାଇ ଚଳିଗଲେ ଗୋପେ ।
ଲୀଳା ବିନୋଦେ କଂସକୁ କରିଲ ସଂହାର
ଗୋପୀଙ୍କ ସହିତ କ୍ରୀଡ଼ା କଲ ଦାମୋଦର ।" (ଆ୨ପୃ)
"ବୋଇଲେ ହେ ନାଥ ତୁମ୍ଭେ ଅଟ ମାୟାଧର
ପରଘରବୁଲା ନାମ ଗୋପୀ ଚିତ୍ତଚୋର ।"(ଆ୩୩ପୃ)

ଓଡ଼ିଶାରେ ଗୋପୀନାଥ ଉପାସନା ୧୪ଶ ଶତାବ୍ଦୀରୁ ସୃଷ୍ଟି ଓ ସମାଜରେ ସ୍ୱୀକୃତ ଲାଭ କରିଥିବାର ଜଣାଯାଏ । ଏହି କାଳରେ ପୁରୀ ଗୋବର୍ଦ୍ଧନ ପୀଠର ପୀଠାଧିଶ ଶ୍ରୀଧର ସ୍ୱାମୀଙ୍କ ପ୍ରଣୀତ 'ଭାବାର୍ଥଦୀପିକା'ର ଟୀକା ବହୁଳ ଭାବରେ ପ୍ରଚଳିତ ହେଲା । ତାହା ଫଳରେ ଉତ୍କଳରେ ଗୋପୀନାଥ ଉପାସନା ପ୍ରାଧାନ୍ୟ ଲାଭ କଲା । (୧୬୮) ବାଲେଶ୍ୱର ଜିଲ୍ଲାରୁ ଆରମ୍ଭକରି ପୁରୀ ଜିଲ୍ଲା ପର୍ଯ୍ୟନ୍ତ ଥିବା ଗ୍ରାମମାନଙ୍କରେ ରାଧାବର୍ଜିତ କୃଷ୍ଣମୂର୍ତ୍ତିମାନ ଦେଖାଯାନ୍ତି । ସେମାନଙ୍କୁ ଲୋକେ ଗୋପୀନାଥ ବୋଲି କହୁଥାନ୍ତି । (୧୬୯) ସ୍କନ୍ଦ ପୁରାଣରେ ଦୋଳୋତ୍ସବ ବର୍ଣ୍ଣନା ସ୍ଥଳେ ଲକ୍ଷ୍ମୀ-ଗୋବିନ୍ଦଙ୍କ ସଙ୍ଗେ ଗୋପୀମାନଙ୍କ ଉଲ୍ଲେଖ ମଧ୍ୟ ନାହିଁ । (୧୭୦) ଭାଗବତରେ ଶ୍ରୀକୃଷ୍ଣ ଓ ଗୋପୀମାନଙ୍କର କ୍ରୀଡ଼ା ବିଷୟ ରହିଅଛି । (୧୭୧)

ସାରଳା ଦାସଙ୍କ ଯୁଗରେ ବାସୁଦେବ ଉପାସନା ମଧ୍ୟ ପ୍ରଚଳିତ ଥିଲା । କବି ଶ୍ରୀକୃଷ୍ଣଙ୍କୁ ବାସୁଦେବଙ୍କ ଅବତାର ତଥା ସ୍ୱୟଂ ବାସୁଦେବ ବୋଲି ବର୍ଣ୍ଣନା କରିଅଛନ୍ତି ।

"ବିନସ୍ୱଭାବ ବର୍ଣ୍ଣଣ କହେ ଖଳକାର
ବାସୁଦେବ ଗୋପପୁରେ ହୋଇ ଅବତାର ।" (ଆ୧୫୨ପୃ)
ସମସ୍ୟା ନ ଦେଇ କଣ୍ଟୁ କୌରବ ରାଜନ
ବସିଲା ଯାଇଣ ବାସୁଦେବ ସୀମସ୍ଥାନ ।" (ଉ୭୦ପୃ)
"ଭଗବାନ ବାସୁଦେବ ଅପୂର୍ବ ମୂରତି
ଏ ମହାଭାରତ ଯୁଦ୍ଧ ରଚିଲେ ଶ୍ରୀପତି । (ଦ୍ରୋ୭୦ପୃ)

"ସୁଭଦ୍ରେସ୍ତ୍ରା ତ୍ରୌପଦୀ କ୍ଷନ୍ତ ଏକ ସମଯୋଗେ
ବାସୁଦେବ ଧନଞ୍ଜୟ ବସିଛନ୍ତି ଆଗେ ।" (ଉ୧୪ପୃ)

ବାସୁଦେବ ଉପାସନା ବା ଭାଗବତ ସଂସ୍କୃତି ସପ୍ତମ ଶତାବ୍ଦୀଠାରୁ ଓଡ଼ିଶାରେ ପ୍ରଭାବ ପକାଇଥିଲା । 'ଓଡ଼ିଶା ରାଜ୍ୟ ସଂଗ୍ରହାଳୟ'ରେ ଥିବା 'କାଳୀୟଦମନ' ଶିଳ୍ପରୁ ଏହା ପ୍ରମାଣିତ ହୁଏ । ବିନ୍ଦୁସାଗର ପୁଷ୍କରିଣୀର ପୂର୍ବପଶ୍ଚିମ କାନ୍ଥରେ ସଙ୍କର୍ଷଣ ଓ ବାସୁଦେବଙ୍କ ଶିଳ୍ପମାନ ଦେଖାଯାଏ । ଏ ସମସ୍ତ ସପ୍ତମ ବା ଅଷ୍ଟମ ଶତାବ୍ଦୀର ଶିଳ୍ପ ଅଟେ । ଭୁବନେଶ୍ୱରର ଅନନ୍ତବାସୁଦେବ ମନ୍ଦିରରେ ବାସୁଦେବ, ସଙ୍କର୍ଷଣ ଓ ଏକାନଂଶା ଦେବୀଙ୍କର ମୂର୍ତ୍ତି ପ୍ରତିଷ୍ଠିତ । ଏହା ତ୍ରୟୋଦଶ ଶତାବ୍ଦୀର ସୃଷ୍ଟି । ତ୍ରୟୋଦଶ ଶତାବ୍ଦୀ ବେଳକୁ ବାସୁଦେବ ସଂସ୍କୃତି ଓଡ଼ିଶାରେ ପ୍ରତିଷ୍ଠା ପାଇ ସାରିଥିଲା ବୋଲି କୁହାଯାଇପାରେ । (୧୭୨) 'ଏକାମ୍ର ଚନ୍ଦ୍ରିକା'ରେ ବାସୁଦେବଙ୍କ ମହିମା କୀର୍ତ୍ତିତ ହୋଇଅଛି ।

"ଅନନ୍ତ ବାସୁଦେବାଖ୍ୟ ଯେ ଯଜନ୍ତି ସମାହିତାଃ
ସଦାହଂ ସୁଳଭସ୍ତେଷାଂ ପୂରୟାମି ମନୋରଥମ୍ ।" (୧୭୩)

ବିଷ୍ଣୁ ତଥା ଶ୍ରୀକୃଷ୍ଣଙ୍କୁ 'ମାଧବ' ରୂପରେ ଓଡ଼ିଶାରେ ଉପାସନା କରାଯାଉଥିବାର ଜଣାଯାଏ । ପ୍ରାଚୀ ନଦୀର ଉଭୟ କୂଳରେ ଥିବା ଗ୍ରାମମାନଙ୍କରେ କେତେକ ଚତୁର୍ଭୁଜଯୁକ୍ତ ବିଷ୍ଣୁ ମୂର୍ତ୍ତି ଦେଖାଯାନ୍ତି । ଏହି ବିଷ୍ଣୁ ମୂର୍ତ୍ତିଗୁଡ଼ିକ ଖ୍ରୀଷ୍ଟ ୮୦୦ ଅବ୍ଦଠାରୁ ୧୨୦୦ ଅବ୍ଦ ମଧ୍ୟରେ ସ୍ଥାପିତ ହୋଇଥିବାର ଜଣାଯାଏ । ଶୋଭନେଶ୍ୱର ମନ୍ଦିରର ବେଢ଼ା ମଧ୍ୟରେ ଏହିଭଳି ଦଶ ଗୋଟି ମୂର୍ତ୍ତି ଦେଖାଯାଏ । ଏହି ମୂର୍ତ୍ତିଗୁଡ଼ିକୁ ଲୋକେ 'ମାଧବ' ବୋଲି କହନ୍ତି । (୧୭୪) ସାରଳାଦାସଙ୍କ ଯୁଗରେ ବିଷ୍ଣୁ ତଥା କୃଷ୍ଣ ମାଧବ ରୂପରେ ପୂଜା ପାଉଥିଲେ । କବି ବହୁ ସ୍ଥଳରେ ମାଧବଙ୍କର ମୂଲ୍ୟ ପ୍ରଦାନ କରିଥିବାରୁ ଏହା ପ୍ରତିପାଦିତ ହୁଏ । ସେ ମାଧବଙ୍କର ମହିମା ବର୍ଣ୍ଣନା କରି ଲେଖିଛନ୍ତି—

"ମାଧବ ସୁମର ନରେ ସିଦ୍ଧ ହେବ କାମ
ମାଧବ ସ୍ମରଣେ ପ୍ରାପ୍ତ ହୁଏ ସର୍ବଧର୍ମ ।
ମାଧବ ସୁମର ନରେ ଦୁଷ୍କୃତ ଫିଟିବ
ମାଧବଙ୍କ ସ୍ମରଣରେ ପ୍ରମାଣ ନୋହିବ ।" (ମୂ୨୯ପୃ)
"ମାଧବ ସୁମର ନରେ ରୋଗାଦି ନ ପଡ଼ୁ
ମାଧବ ସୁମର ନରେ କାଳଦଣ୍ଡ ଛାଡ଼ୁ ।

ମାଧବ ସୁମର ନରେ ନାନା ଦୁଃଖ ଯାଉ
ମାଧବ ସୁମର ନରେ ସୁସମ୍ପଦ ହେଉ ।” (ସ୍ୱ୧୫ପୃ)

କବି କହନ୍ତି ଯେ, ଜାରା ଶବରର ଅଜା ବସୁ ଶବର ପାଷାଣରୂପୀ ମାଧବଙ୍କର ପୂଜା କରୁଥିଲେ । (ମୂ୧୭ପୃ) ରାଜା ଗାଲମାଧବଙ୍କ ଆଦେଶରେ ବାସୁଦେବ ଦ୍ୱିଜ ଶ୍ରୀକୃଷ୍ଣଙ୍କ ଶବର ସନ୍ଧାନ ନେବାକୁ ଯାଇ ମାଧବଙ୍କର ଦର୍ଶନ କରିଥିଲେ (ମୂ୨୪-୨୬ପୃ) ଗାଲମାଧବ ତାହାଙ୍କୁ ନେଇ ମାଳଗିରି ଶିଖରରେ ସ୍ଥାପନ କଲେ (ମ୨୯ପୃ) ସ୍ୱର୍ଗାରୋହଣ ପର୍ବରେ ଅଛି ଯେ, ଯୁଧିଷ୍ଠିର ପ୍ରାଚୀ ନଦୀରେ ସ୍ନାନ କଲାବେଳେ ମାଧବଙ୍କୁ ଜଳରେ ଦେଖିଲେ ଏବଂ ଉପରକୁ ଆଣିଲେ । ଆକାଶବାଣୀ ଶୁଣି ସେ ମାଧବଙ୍କର ସେହି ମୂର୍ତ୍ତିକୁ ନେଇ ପ୍ରାଚୀ ନଦୀକୂଳରେ ଥିବା ମୃତ୍ତିକାଗିରି ଶିଖରରେ ସ୍ଥାପନ କଲେ । (ମୂ୧୪-୧୫ପୃ)

ଉତ୍କଳରେ ସେ କାଳରେ ରାମୋପାସନା ମଧ୍ୟ ପ୍ରଚଳିତ ଥିଲା । ଶ୍ରୀରାମାନୁଜଙ୍କ ସଂପ୍ରଦାୟରେ ସୀତା-ରାମ ପ୍ରଧାନ ଉପାସ୍ୟ ଦେବତା ରୂପରେ ପରିଣତ ହୋଇଥିଲେ । (୧୭୫) ସାରଳା ଦାସ ବହୁ ସ୍ଥଳରେ ଶ୍ରୀରାମଙ୍କର ସ୍ତୁତି ପ୍ରଦାନ କରିଛନ୍ତି । କବିଙ୍କ ମତରେ ଶ୍ରୀରାମ ବିଷ୍ଣୁଙ୍କର ଅବତାର ଓ ସୀତା ସ୍ୱୟଂ ଲକ୍ଷ୍ମୀ—

“ଏହି ତ ଅଟଇ ସ୍ୱୟଂ ବିଷ୍ଣୁ ଅବତାର
ଏହା ହସ୍ତେ ନାଶ ଯିବେ ସମସ୍ତ ଅସୁର ।” (ଆ୧୯୭ପୃ)
“ରାମଙ୍କୁ ଦେଖି ସନ୍ତୋଷ ସର୍ବ ତପୋଧନ
ପ୍ରତ୍ୟକ୍ଷ ବିଷ୍ଣୁ କରିବେ ମାନବ ନିଧନ ।” (ଆ୧୯୬ପୃ)
“ମୋହର ମରଣ ଜାଣ ହୋଇବ ନିକଟେ
ଏ ଯେ ଜନକ ଦୁହିତା ସ୍ୱୟଂ ଲକ୍ଷ୍ମୀ ଅଟେ ।” (ଆ୧୯୭ପୃ)

ସାରଳା ଦାସ ରାମନାମର ମହିମା ପ୍ରଦର୍ଶନ ଛଳରେ କହନ୍ତି ଯେ ରାମନାମ ତାରଣକର୍ତ୍ତା ଏବଂ ଚତୁର୍ବର୍ଗଦାୟୀ ବ୍ରହ୍ମା ଓ ଶିବ ସେହି ନାମ ଜପ କରିଥାନ୍ତି ।

“ରାମନାମ ବୋଲି ଅଟେ ଯେ ତାରକମନ୍ତ୍ର
ଚଉବର୍ଗ କରଇ ସେ ଜନଙ୍କୁ ପ୍ରାପତ ।”
“ରାମର ନାମରେ ବ୍ରହ୍ମା ଦେହ ଶୁଦ୍ଧ କରି
ହରି ପୁରାରି ଯେ ଅମର ସେ ନାମ ସୁମରି ।” (ଆ୨୬୨ପୃ)

'ଚଣ୍ଡି ପୁରାଣ'ରେ ରାମନାମର ମହିମା ବର୍ଣ୍ଣିତ ଅଛି । (ପୃ୪) ବଳରାମ ଦାସଙ୍କ 'ଦାଣ୍ଡି ରାମାୟଣ'ରେ କୁହାଯାଇଛି ଯେ ସ୍ୱୟଂ ଶିବ ରାମ ନାମ ଜପ କରି ସୁସ୍ଥ ହୋଇଥିଲେ । (୧୭୬)

ଓଡ଼ିଶାରେ ବୈଷ୍ଣବଧର୍ମ ଜଗନ୍ନାଥଧର୍ମରେ ପରିଣତ ହୋଇଥିଲା । ସାରଳା ଦାସଙ୍କ ଲେଖାରେ ଏହାର ଭୂୟସୀ ପରିଚୟ ମିଳେ । କବି ସର୍ବପ୍ରଥମେ ସାହିତ୍ୟରେ ଜଗନ୍ନାଥଙ୍କୁ କୃଷ୍ଣ ବୋଲି କହିଲେ । ସେ ବର୍ଣ୍ଣନା କରିଅଛନ୍ତି ଯେ, ଶ୍ରୀକୃଷ୍ଣଙ୍କର ଶବ ଅଗ୍ନିରେ ଦଗ୍ଧ ହେଲା ନାହିଁ । ତାହାକୁ ଜଳରେ ଭସାଇ ଦିଆଗଲା । ତାହା ସମୁଦ୍ରରେ ଭସି ଆସି ଦାରୁରୂପରେ ରୋହିଣୀ କୁଣ୍ଡରେ ଦେଖା-ଦେଲା । ଇନ୍ଦ୍ରଦ୍ୟୁମ୍ନ ରାଜା ତାହାକୁ ନେଇ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି ଗଠନ କଲେ । ଏପରି ଚିତ୍ର ଅନ୍ୟାନ୍ୟ ପୁରାଣରେ ନାହିଁ । (୧୭୭) ଏହି ବର୍ଣ୍ଣନା ଭିନ୍ନ କବି ବହୁ ସ୍ଥଳରେ ଜଗନ୍ନାଥଙ୍କୁ କୃଷ୍ଣ ବୋଲି କହିଛନ୍ତି; ଯଥା—

"ନୀଳସୁନ୍ଦର ପର୍ବତ କଳ୍ପବଟ ତଳେ
ଦକ୍ଷିଣ କୂଳସ୍ଥଳୀ ଶ୍ରୀ ଦ୍ୱାରକାମଣ୍ଡଳେ
ବିଜୟେ ଶ୍ରୀ ରାମକୃଷ୍ଣ ସୁଭଦ୍ରା ଏ ତିନି
ଗୁରିଲକ୍ଷ ବତିଶ ସହସ୍ର ଦେବ ଘେନି ।" (ଆ୩ପୃ)

ବ୍ରହ୍ମପୁରାଣରେ ଅବନ୍ତୀର ରାଜା ଇନ୍ଦ୍ରଦ୍ୟୁମ୍ନ ପୁରୁଷୋତ୍ତମ ଧାମରେ ମନ୍ଦିର ଗଢ଼ି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ପ୍ରତିଷ୍ଠା କରିବା ବୃତ୍ତାନ୍ତ ଅଛି । ସମୁଦ୍ର କୂଳରେ ଥିବା ଗୋଟିଏ ବୃକ୍ଷର ଗଣ୍ଡିରେ ମୂର୍ତ୍ତି ନିର୍ମିତ ହେଲେ ବୋଲି ପୁରାଣକାର କହିଛନ୍ତି । (୧୭୮) ନାରଦ ପୁରାଣ (୧୭୯) ଓ ସ୍କନ୍ଦ ପୁରାଣରେ (୧୮୦) ଏତାଦୃଶ ବର୍ଣ୍ଣନା ମିଳେ । ସ୍କନ୍ଦ ପୁରାଣରେ ଜଗନ୍ନାଥଙ୍କୁ କୃଷ୍ଣବୋଲି କୁହାଯାଇଅଛି । (୧୮୧)

ଉତ୍କଳରେ ଜଗନ୍ନାଥଙ୍କ ପ୍ରତିଷ୍ଠା ବହୁ ପ୍ରାଚୀନ । ବେଦକାଳରୁ ବୃକ୍ଷରୂପୀ ଜଗନ୍ନାଥ ଏଠାରେ ପୂଜା ପାଉଅଛନ୍ତି । ଋକ୍‌ବେଦର ପରିସମାପ୍ତି କାଳକୁ ଖ୍ରୀଷ୍ଟ ପୂର୍ବ ୧୦୦୦ ବର୍ଷ ବୋଲି ଧରାଯାଏ । ଋକ୍‌ବେଦର କୌଣସି ସୂକ୍ତ ଖ୍ରୀଷ୍ଟପୂର୍ବ ୧୫୦୦ ବର୍ଷ ତଳେ ଲେଖାଯାଇଥିଲା । (୧୮୨) ଏହାର ଦଶମ ମଣ୍ଡଳ ଏକଶହ ପଞ୍ଚାବନ ସୂକ୍ତରେ ସମୁଦ୍ର ବକ୍ଷରେ ଭାସମାନ ଦାରୁବ୍ରହ୍ମଙ୍କର ବର୍ଣ୍ଣନା ମିଳେ । (୧୮୩) ଋକ୍ ବେଦ ସଂହିତାର ପରିଶିଷ୍ଟରେ ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ର ମହୋଦଧି ତୀରରେ ପ୍ରତିଷ୍ଠିତ ଥିବା କଥା କୁହାଯାଇଅଛି ।

"ଯେନ ଦେବୋ ଜଗନ୍ନାଥ ପରଂ ପାରଂ ମହୋଦଧେଃ
ବଳଭଦ୍ର ସୁଭଦ୍ରା ଚ ତେନ ମାମନୁତଂ କୁଧି ।" (୧୮୪)

ସାରଳା ଦାସ ଜଗନ୍ନାଥଙ୍କୁ ନାରାୟଣ, ମାଧବ, ବାସୁଦେବ, ଭଗବାନ, କୃଷ୍ଣ, ଶ୍ରୀରାମ, କେଶବ, ହରି, ଗୋବିନ୍ଦ, ଜଗତକାରଣ, ସୃଷ୍ଟିକର୍ତ୍ତା, ମୁକ୍ତିଦାତା, ପୁରୁଷୋତ୍ତମ, ବନମାଳୀ, ପରମବ୍ରହ୍ମ ଆଦି ନାମରେ ସ୍ତୁତି କରିଅଛନ୍ତି । (୧୮୫) 'ପୁରୁଷୋତ୍ତମ କ୍ଷେତ୍ର ତତ୍ତ୍ୱମ' ଗ୍ରନ୍ଥରେ ଜଗନ୍ନାଥଙ୍କୁ ପୂର୍ଣ୍ଣବ୍ରହ୍ମ ବୋଲି କୁହାଯାଇଅଛି । ଜଗନ୍ନାଥଙ୍କୁ ଦର୍ଶନ କଲେ ସାଯୁଜ୍ୟ ମୁକ୍ତି ମିଳେ ବୋଲି ଏହି ଗ୍ରନ୍ଥରେ ଉକ୍ତ ହୋଇଅଛି ।

"ସମୁଦ୍ରସ୍ୟୋତ୍ତରେ ତୀରେ ଅସ୍ତି ଶ୍ରୀପୁରୁଷୋତ୍ତମେ ।
ପୂର୍ଣ୍ଣାନନ୍ଦମୟଂ ବ୍ରହ୍ମ ଦାରୁବ୍ୟାଦ୍ୟାଶରୀରଭୂତ ॥" (୧୮୬)
"ନୀଳାଚଳେ ଜଗନ୍ନାଥଂ ଯେ ପଶ୍ୟନ୍ତି ଚ ମାନବାଃ ।
ତେଽପି ଯାନ୍ତି ସାଯୁଜ୍ୟତାଂ ଯାନ୍ତି ନାତ୍ର କାର୍ଯ୍ୟାବିଚାରଣା ॥"
(୧୮୭)

ବ୍ରହ୍ମପୁରାଣରେ ଜଗନ୍ନାଥ ପୁରୁଷୋତ୍ତମ, ବାସୁଦେବ ଓ ପରମାତ୍ମା । (୧୮୮) ସ୍କନ୍ଦ ପୁରାଣରେ ସେ ନାରାୟଣ, ବ୍ରହ୍ମସ୍ୱରୂପ ଓ ଭଗବାନ । (୧୮୯) ରାମବିଭା କାବ୍ୟର କବି ଅର୍ଜୁନ ଦାସ ତାଙ୍କୁ ପରମବ୍ରହ୍ମ ବୋଲି କହନ୍ତି । (ପୃ୧)

ସାରଳ ଦାସ ଜଗନ୍ନାଥଙ୍କୁ ସମସ୍ତ ଅବତାରର ମୂଳ ବୋଲି ଦର୍ଶାଇ ଅଛନ୍ତି । କବିଙ୍କ ମତରେ ଜଗନ୍ନାଥ ହିଁ ଭିନ୍ନ ଭିନ୍ନ ଯୁଗରେ ଭିନ୍ନ ଭିନ୍ନ ରୂପ ଧାରଣ କରନ୍ତି । ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ବାମନ, ପର୍ଶୁରାମ, ବୁଦ୍ଧ, କଳ୍କୀ ଓ ଶ୍ରୀରାମାଦି ଅବତାର ଜଗନ୍ନାଥଙ୍କ ଠାରୁ ଜାତ । (୧୯୦) ପଞ୍ଚସଖା ଯୁଗର ସାହିତ୍ୟରେ ଜଗନ୍ନାଥଙ୍କୁ ସମସ୍ତ ଅବତାରର ମୂଳ ବା ଅବତାରୀ ରୂପରେ ଗ୍ରହଣ କରାଯାଇଛି । (୧୯୧)

ଓଡ଼ିଶାର ଜଗନ୍ନାଥ ଧର୍ମରେ ସ୍ୱକୀୟା ଭକ୍ତି ହିଁ ମୁଖ୍ୟ । କବି ଜଗନ୍ନାଥଙ୍କୁ 'ଲକ୍ଷ୍ମୀପତି' ବୋଲି ସ୍ତୁତି କରି ଏହାର ସଂକେତ ଦେଇଅଛନ୍ତି । (୧୯୨) ଅନେକ ସ୍ଥଳରେ କବି ତାଙ୍କୁ 'ତୁଳସୀ-ବଲ୍ଲଭ' ଆଖ୍ୟା ଦେଇ ସ୍ୱକୀୟା ଭକ୍ତିର ପୋଷକତା କରିଛନ୍ତି; ଯଥା—

"ତୁଳସୀର ବଲ୍ଲଭ ଯେ ଦେବ ଦେବଙ୍କ ପାଦେ
ମୁଁ ଶୁଦ୍ରମୁନି ଶାରଳା ଦାସ ପାଦ ବନ୍ଦେ ।" (ଆ୨୫ପୃ)

"ତୁଳସୀ ବଲ୍ଲଭ ଥାଉ ମମ ହୃଦଗତେ
ଶୂଦ୍ରମୁନି ସାରଳା ଯେ କହଇ ଭାରତେ ।" (ଦ୍ରୋ୧୨୩ପୃ)

କବିଙ୍କ ପ୍ରଦତ୍ତ ତଥ୍ୟରେ ଅଛି ଯେ, ଜଗନ୍ନାଥ ନାରକାସୁରକୁ ହତ୍ୟାକରି ତାହାର ଅନ୍ତଃପୁରରେ ବନ୍ଦିନୀ ହୋଇଥିବା ଷୋଳ ସହସ୍ର ରାଜକନ୍ୟାଙ୍କୁ ମୁକ୍ତ ଦେଲେ । ସେ ସେମାନଙ୍କୁ ଯଥାବିଧିରେ ବିବାହ କଲେ । (୧୯୩) ଭାଗବତର ଶ୍ରୀକୃଷ୍ଣଙ୍କ ଷୋଳ ସହସ୍ର ଗୋପନାରୀ ସାରଳାଙ୍କ ବର୍ଣ୍ଣନାରେ ଷୋଳସହସ୍ର ରାଜକନ୍ୟାରେ ପରିଣତ ହୋଇଛନ୍ତି । ଭାଗବତରେ ବର୍ଣ୍ଣିତ ଗୋପୀ ଓ ଶ୍ରୀକୃଷ୍ଣଙ୍କର ପରକୀୟା ପ୍ରେମ ସାରଳାଙ୍କ ଲେଖନୀରେ ସ୍ୱକୀୟା ପ୍ରେମରେ ପରିଣତ ହୋଇଅଛି । କବି ସ୍ୱକୀୟା ପ୍ରେମର ଯେଉଁ ଆଦର୍ଶ ପ୍ରତିଷ୍ଠା କଲେ ତାହା ପର-ବର୍ତ୍ତୀ କାଳରେ ପଞ୍ଚସଖାଙ୍କର ଓଡ଼ିଶୀ ବୈଷ୍ଣବଧର୍ମରେ ପ୍ରାଧାନ୍ୟ ଲଭ କଲା । ପଞ୍ଚସଖା ଯୁଗର କବି ବଳରାମ ଦାସଙ୍କ 'ବିରାଟ ଗୀତା' ଓ ଅଚ୍ୟୁତାନନ୍ଦଙ୍କ 'ଛୟାଳିଶ ପଟଳ'ରେ ସ୍ୱକୀୟା ପ୍ରେମର ମହିମା ପ୍ରଦର୍ଶିତ ହୋଇଅଛି । (୧୯୪) ବିବାହିତା ପତ୍ନୀର ନିତ୍ୟ ପ୍ରେମରସ ବା ପ୍ରେମଲୁଗା ସ୍ୱକୀୟା ପ୍ରୀତି ଓଡ଼ିଆ ବୈଷ୍ଣବମାନଙ୍କ ମଧ୍ୟରେ ଦେଖି ଚୈତନ୍ୟ ଦେବ ତାହାକୁ ଆଦର କରିଥିବାର ଜଣାଯାଏ । (୧୯୫)

ସାରଳା ଦାସ ଜଗନ୍ନାଥ ଦେବଙ୍କର ଲୀଳାସ୍ଥଳୀ ପୁରୁଷୋତ୍ତମ ଧାମର ପ୍ରଶସ୍ତି ଗାନ ମଧ୍ୟ କରିଅଛନ୍ତି । ସେ ପୁରୀ ଧାମରେ ଥିବା ପଞ୍ଚତୀର୍ଥର ନାମ ବହୁ ସ୍ଥଳରେ ଗ୍ରହଣ କରିଛନ୍ତି ଏବଂ କହିଛନ୍ତି ଯେ, ଏହି ତୀର୍ଥରେ ସ୍ନାନ କଲେ ବିଷ୍ଣୁ-ଲୋକ ମିଳେ ତଥା କୋଟି କୋଟି ତୀର୍ଥସ୍ନାନର ଫଳ ଲଭନ୍ତି । କବିଙ୍କ ମତରେ ଏହି ତୀର୍ଥ ତୀର୍ଥମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅଟେ । (ବ୨୧୧ପୃ) ପୁରୁଷୋତ୍ତମ ଧାମର ମହିମା ପ୍ରଦର୍ଶନ ଛଳରେ କବି ଲେଖିଛନ୍ତି ଯେ ଯୁଧିଷ୍ଠିର ବନବାସ କାଳରେ ଏହି ଧାମକୁ ଆସିଥିଲେ । (ବ୨୧୧ପୃ) ଉଦ୍‌ଯୋଗ ପର୍ବରେ ପୁରୁଷୋତ୍ତମ ଧାମ ଏବଂ ତନ୍ମଧ୍ୟସ୍ଥ ତୀର୍ଥମାନଙ୍କର ପ୍ରଶସ୍ତି କବି ଉଲ୍ଲେଖ କରିଛନ୍ତି—

"ଜମ୍ବୁଦ୍ୱୀପ ଦକ୍ଷିଣରେ ଅଟେ ମହୋଦଧି
ଯମନିକ ତୀର୍ଥ ମାନ କଳ୍ପବଟ ଭେଦି ।
ଜୟ ତୁ ପ୍ରସନ୍ନ ନାଥ ଉଦେ ନୀଳଗିରି
ଯାର ଜ୍ୟୋସ୍ନା ଲାଗିଅଛି ବ୍ରହ୍ମାଣ୍ଡ ଆବୋରି ।
ଗୃରିଲକ୍ଷ ବତିଶ ଯେ ହସ୍ତ ଅଟେ କଳା
ତହିଁ ମାଡ଼ି ବସିଅଛି ଦେବ ବନମାଳୀ ।

ଶ୍ୱେତଗଙ୍ଗା ସହିତରେ ରୋହିଣୀର କୁଣ୍ଡ
ଯମେଶ୍ୱର ଲିଙ୍ଗ ପୁଣି ବିଜେ ମାର୍କଣ୍ଡ ।
ଗୁପ୍ତ ଗଙ୍ଗା ଯମୁନା ଯେ ବହେ ସରସ୍ୱତୀ
କୋଟି ତୀର୍ଥରେ ପୁଷ୍କର ଅଟେ ବଶବର୍ତ୍ତୀ ।
ବିଜୟ ଶ୍ରୀ ରାମକୃଷ୍ଣ ସତ୍ୟଭଦ୍ର ବ୍ରହ୍ମା
ଦୋଷ ଉପେକ୍ଷିଣ ଗୁଣ ଘେନବା ମହାତ୍ମା ।" (ପୃ୪୦୦ପୃ)

ପରବର୍ତ୍ତୀ କାଳରେ ଓଡ଼ିଶୀ ବୈଷ୍ଣବ କବିଗଣ ଏହି ଆଦର୍ଶକୁ ଅନୁସରଣ କରି ପୁରୁଷୋତ୍ତମ ଧାମକୁ ପୁରୁଷୋତ୍ତମଙ୍କର ପ୍ରକାଶସ୍ଥଳୀ ଓ ନିତ୍ୟ-ସ୍ଥଳୀ ବୋଲି ପ୍ରଦର୍ଶନ କଲେ । ବଳରାମ ଦାସ 'ବେଦାନ୍ତସାର ଗୁପ୍ତଗୀତା' ଓ ଜଗନ୍ନାଥ ଦାସ 'ଷୋଳ ଚଉପଦୀ'ରେ ପୁରୁଷୋତ୍ତମ ଧାମର ଶ୍ରେଷ୍ଠତ୍ୱ ପ୍ରଦର୍ଶନ କରିଥିବାର ଦେଖାଯାଏ । (୧୯୬) 'ନୀଳାଦ୍ରି ମହୋଦୟଃ' ଗ୍ରନ୍ଥରେ ପୁରୁଷୋତ୍ତମ ଧାମର ଶ୍ରେଷ୍ଠତ୍ୱ ପ୍ରଦର୍ଶିତ ହୋଇଅଛି; ଯଥା—

"ଶୃଣୁଧ୍ୱଂ ମୁନୟଃ ସର୍ବେ ସଂଯତାତ୍ମାନ ଏବ ହି
ତୀର୍ଥାନାଂ କ୍ଷେତ୍ରବରାଣାଂ ମଧ୍ୟେ ଶ୍ରୀ ପୁରୁଷୋତ୍ତମଃ ।
ଗୁହ୍ୟଃ ସର୍ବତମୋ ଧ୍ୱଂସୀ ସର୍ବ ପୁଣ୍ୟଫଳପ୍ରଦଃ
ଅସ୍ତି ଶନ୍ତପ୍ରଦଂଶ୍ଚୈବ ନୀଳ ଭୂଧର ଭୂଷିତଃ ।" (ପୃ୨)

ଇତିହାସରୁ ଜଣାଯାଏ ଯେ, ବୈଷ୍ଣବଧର୍ମ ଓଡ଼ିଶାରେ ଖ୍ରୀଷ୍ଟ ଚତୁର୍ଥ ବା ପଞ୍ଚମ ଶତାବ୍ଦୀରୁ ପ୍ରସାର ଲାଭ କଲା । ବିଷ୍ଣୁ ଉପାସନାର ସର୍ବପ୍ରଥମ ପ୍ରମାଣ ମାଠର ଓ ବାଶିଷ୍ଠ ବଂଶର ରାଜାମାନଙ୍କ ଦ୍ୱାରା ପ୍ରଦତ୍ତ ଚତୁର୍ଥ ବା ପଞ୍ଚମ ଶତକର ତାମ୍ରପଟ୍ଟ ସନନ୍ଦରୁ ମିଳେ । ଭୌମବଂଶୀୟ ଶେଷ ରାଜାମାନେ ମଧ୍ୟ ବୈଷ୍ଣବ ଥିଲେ । (୧୯୭) ଦ୍ୱାଦଶ ଶତାବ୍ଦୀ ବେଳକୁ ବୈଷ୍ଣବଧର୍ମ ଓଡ଼ିଶାରେ ଲୋକପ୍ରିୟ ହେବାକୁ ଲାଗିଲା ଏବଂ ତାହାର ପ୍ରତିଦ୍ୱନ୍ଦୀ ଶୈବଧର୍ମ ଉପରେ ପ୍ରଭାବ ବିସ୍ତାର କଲା । (୧୯୮)

## ୨ । ଧର୍ମବିଶ୍ୱାସ

ଭାରତୀୟ ସମାଜ ବିଶେଷଭାବେ ଧର୍ମ-ନିୟନ୍ତ୍ରିତ । ଶାସ୍ତ୍ର ଓ ପୁରାଣରେ ସର୍ବତ୍ର ଧର୍ମର ବାଣୀ ଉଦ୍‌ଘୋଷିତ । ସଂସ୍କୃତ ମହାଭାରତରେ ଉକ୍ତ ଅଛି— "ଯତୋଧର୍ମ ସ୍ତତୋଜୟଃ" । ଅର୍ଥାତ୍ ଧର୍ମରୁ ହିଁ ଜୟ ହୁଏ । (୧୯୯) ପୁଣି ଧର୍ମ

ମଧ୍ୟ ବିପଦରୁ ଉଦ୍ଧାର କରେ । (୨୦୦) ରାମାୟଣରେ ଅଛି—"ଧର୍ମ ହି ପରମୋ-ଲୋକେ ।" ଅର୍ଥାତ୍ ସଂସାରରେ ଧର୍ମ ହିଁ ସର୍ବୋତ୍ତମ ବସ୍ତୁ । (୨୦୧) ବ୍ରହ୍ମ-ବୈବର୍ତ୍ତପୁରାଣ ମତରେ ଧର୍ମଠାରୁ ବଳି ପ୍ରିୟ ବନ୍ଧୁ ବା ଧନ ନାହିଁ (୨୦୨) ଉପନିଷଦରେ ଗୁରୁ ଶିଷ୍ୟକୁ ଧର୍ମ ଆଚରଣ କରିବା ପାଇଁ ଉପଦେଶ ଦେଇ କହିଛନ୍ତି—"ଧର୍ମଚର୍ଯ୍ୟଧର୍ମାନ୍ନ ପ୍ରମଦିତବ୍ୟମ୍ ।" (୨୦୩) ଗୀତାରେ ଭଗବାନ ଶ୍ରୀକୃଷ୍ଣ କହନ୍ତି—"ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋଭୟାତ୍ ।" ଅର୍ଥାତ୍ ଧର୍ମ ସ୍ୱଳ୍ପ ହେଲେ ହେଁ ବିରାଟ ଭୟରୁ ତାହା ପରିତ୍ରାଣ କରେ । (୨୦୪)

ସାରଳା ଦାସଙ୍କ କାଳରେ ଏହି ପାରମ୍ପରିକ ଧର୍ମ-ବିଶ୍ୱାସ ଓ ଧର୍ମନିଷ୍ଠା ସମାଜକୁ ନିୟନ୍ତ୍ରଣ କରୁଥିଲା । ତେଣୁ ସେ ଯୁଧିଷ୍ଠିର ଓ ଧର୍ମବକ ଉପାଖ୍ୟାନରେ କହିଛନ୍ତି—ଧର୍ମହୀନ ହେବା ବିଶ୍ୱାସଘାତକତା । ତାହା ଗୋହତ୍ୟା ଓ ବ୍ରହ୍ମହତ୍ୟା ଭଳି ଦୋଷାବହ । (ବ୧୦୨ପୃ) କବିଙ୍କ ମତରେ ଧର୍ମ ସବୁଠାରୁ ଶ୍ରେଷ୍ଠବସ୍ତୁ, ସଂସାରର ନିୟାମକ, ବିପଦରୁ ତ୍ରାଣକାରୀ ଏବଂ ଐଶ୍ୱର୍ଯ୍ୟର ମୂଳ ।

"ଯୁଗେ ଯୁଗେ ଧର୍ମେ ଲକ୍ଷ୍ମୀ ବର୍ଦ୍ଧିତରେ ବାହୁ
ଧର୍ମେ ଚଳଇରେ ଭ୍ରାତ ଚରାଚର ସବୁ ।
ଧର୍ମେ ଥିଲେ ହିଂସା ନାଶ ନାହିଁଟି ପ୍ରାଣୀର
ଧର୍ମ ହିଁ କରି ପାରଇ ବିପଦରୁ ପାର ।"
"ଅଧର୍ମୀ ଲୋକର ଧର୍ମ ସଦା କରୁଥିବା
ସେହି ନାଶ ଯିବ ଆମ୍ଭେ ଧର୍ମରେ ତରିବା ।" (ଆ୧୪୭ପୃ)

ସେତେବେଳେ ଧର୍ମପାଳନ ସମାଜରେ ମୁଖ୍ୟ ସ୍ଥାନ ଲାଭ କରୁଥିଲା । ଧୌମ୍ୟ ପୁରୋହିତ ତେଣୁ ଯୁଧିଷ୍ଠିରଙ୍କୁ ଅଜ୍ଞାତବାସର ପ୍ରାରମ୍ଭରେ ଧର୍ମରକ୍ଷା କରିବା ପାଇଁ ଉପଦେଶ ଦେଇଥିଲେ ।

"ଧର୍ମାଧର୍ମ ସବୁବେଳେ ତୁମ୍ଭେ ପାଳୁଥିବ
ସତ୍ୟରୁ କଞ୍ଚିତ ମାତ୍ର ବିମୁଖ ନୋହିବ ।" (ବି୩ପୃ)

ଉତ୍କଳରେ ମଧ୍ୟଯୁଗରେ ଧର୍ମଚେତନା ସୁଦୃଢ଼ ଥିଲା । ତା ଫଳରେ ମୁସଲମାନ ଧର୍ମ ବଙ୍ଗଦେଶରେ ଯେପରି ଧ୍ୱଂସକାରୀ ପ୍ରଭାବ ପକାଇଥିଲା, ସେହିପରି ପ୍ରଭାବ ଓଡ଼ିଶାରେ ପକାଇ ପାରିଲା ନାହିଁ । ଓଡ଼ିଶାରେ ସମାଜ, ସଂସ୍କୃତି ଓ ଧର୍ମ ଜଗନ୍ନାଥଙ୍କୁ କେନ୍ଦ୍ରକରି ଏପରି ସୁଦୃଢ଼ ହୋଇଥିଲା ଯେ, ମୁସଲମାନ ଧର୍ମ ତାହାକୁ ଆଦୌ ପ୍ରଭାବିତ କରିପାରି ନ ଥିଲା । (୨୦୫)

## ୩. ସାରଳାଙ୍କ ଧର୍ମ

ସାରଳା ଦାସ ତାଙ୍କ ମହାଭାରତରେ ଶିବ, କୃଷ୍ଣ, ଜଗନ୍ନାଥ, ଶ୍ରୀରାମ, ସୂର୍ଯ୍ୟ, ଗଣେଶ, ପାର୍ବତୀ, ଲକ୍ଷ୍ମୀ, ନୃସିଂହ, ମାଧବ, ବାସୁଦେବ, ଦୁର୍ଗା ଓ ଅଗ୍ନି ପ୍ରଭୃତି ବହୁ ଦେବ-ଦେବୀଙ୍କର ସ୍ତୁତି ପ୍ରକାଶ କରିଅଛନ୍ତି । ପ୍ରକୃତ ପକ୍ଷରେ ସେ କେଉଁ ଧର୍ମ ସଂପ୍ରଦାୟ ଭୁକ୍ତ ଥିଲେ, ତାହା ଆଲୋଚନାର ଯୋଗ୍ୟ ।

କବିଙ୍କ ବର୍ଣ୍ଣନାରୁ ଉପଲବ୍ଧ ହୁଏ ଯେ ସେ ଦେବୀଭକ୍ତ ଓ ଶାକ୍ତ ଥିଲେ । କାରଣ ସେ ବହୁ ସ୍ଥଳରେ ଦେବୀଙ୍କର ସ୍ତୁତିଗାନ କରିଅଛନ୍ତି । (୨୦୬) କବି ନିଜକୁ ସାରଳା ଠାକୁରାଣୀଙ୍କର ପୁତ୍ର ରୂପରେ ସର୍ବତ୍ର ପରିଚିତ କରାଇଅଛନ୍ତି । ଯଥା—

"ମୁହିଁ ତୋ ପୁତ୍ର ସାରଳା ଦାସ ବୋଲାଇଲି
ଅବଶ୍ୟ ପାଇବି ମୁହିଁ ଯାହା ବାଞ୍ଛିଥିଲି ।" (ଆ୧୫୪ପୃ)
"ସାରଳା ଚଣ୍ଡୀ ଅଟଇ ସାକ୍ଷାତେ ଭୈରବୀ
ତାହାର ପୁତ୍ର ମୁହିଁ ସାରଳା ଦାସ କବି ।" (ଆ୩ପୃ)
"ଶୁଦ୍ରମୁନି ସାରଳା ଦାସ ଦେବୀପୁତ୍ର ପୁଣ ।" (୨୦୭)

କବି ଦେବୀଙ୍କୁ କାମାକ୍ଷୀ, ପିଙ୍ଗଳା, ମହାମାୟୀ, ସର୍ବମଙ୍ଗଳା, ବିଶ୍ୱରୂପୀ ମାତଙ୍ଗିନୀ, ନାରାୟଣୀ, ହିଙ୍ଗୁଳା, କାତ୍ୟାୟନୀ, ଗାୟତ୍ରୀ ଆଦି ରୂପରେ ସ୍ତୁତି କରିଅଛନ୍ତି । (ଦ୍ରୋ୧୩୯ପୃ) ଆଦ୍ୟପର୍ବରେ ଦେବୀ କବି-ଲେଖନୀରେ ମାହେଶ୍ୱରୀ, ଯୋଗେଶ୍ୱରୀ, ପରମ ବୈଷ୍ଣବୀ, ଚଣ୍ଡୀ, ଭୈରବୀ ଓ ଶାକମ୍ଭରୀ । (ଆ୩ପୃ) ସଭା ପର୍ବରେ ଅଛି ଯେ ଦେବୀ ଅନାଦି ଶକ୍ତି, ପାର୍ବତୀ, ପିଙ୍ଗଳାକ୍ଷୀ, ଅପର୍ଣ୍ଣା । (ପୃ୨୨୪-୨୨୫)

ସାରଳା ଦାସ ଦେବୀଙ୍କର ମହିମା ପ୍ରଦର୍ଶନ କରିଅଛନ୍ତି । କବି କହିଛନ୍ତି ଯେ, ଦେବୀ ବାଞ୍ଛିତ ଫଳ ପ୍ରଦାନ କରନ୍ତି, ମଙ୍ଗଳ କରନ୍ତି, ତାଙ୍କର ବାଣୀ ଅନ୍ୟଥା ହୁଏ ନାହିଁ ଓ ସେ କାବ୍ୟରସ-ବିନୋଦିନୀ ।

"ମହା ଯୋଗେଶ୍ୱରୀ ସେହି ପରମ ବୈଷ୍ଣବୀ
ପ୍ରତ୍ୟକ୍ଷ ବରଦାୟିନୀ ପରମା ସାଧବୀ ।
ବାଞ୍ଛା ଫଳକୁ ସେ ଦେବୀ ସାର୍ଥକ କରଇ
ପାଷାଣଗାର ତା ବାକ୍ୟ କେବେ ନ ଛୁଟଇ ।

ସର୍ବମଙ୍ଗଳା ରୂପିଣୀ ମାତ ମଉଖେଳା
ଗ୍ରନ୍ଥର ରସ ଦେନଇ ହୋଇ କୁତୁହଳା ।" (୨୦୮)

ଦେବୀ ଗୀତରସର କପରି ଆଦର କରନ୍ତି, ତାହା ଅନ୍ୟ ବର୍ଣ୍ଣନାରେ ମଧ୍ୟ କହିଛ । ଯଥା—

"ଦେବୀଙ୍କ ବାମ ପାଖେ ଅଛଇ ଏକ ଭୂମି
ଲଙ୍ଗଳ ପୁରାଇ ମୁଁ ଚଷୁଥିଲି ଜମି
ଜାଣନ୍ତି ସାଧୁମାନେ ଚଷାଙ୍କ ଚରିତ
ନାନା ବନ୍ଧରେ ମୁଁ ଗାଉଥିଲି ଗୀତ
ଶୁଣିଣ ସନ୍ତୋଷ ଯେ ହୋଇଲେ ଆଦ୍ୟମାତ
ମୋତେ ଗଇ ଆଜ୍ଞା ଦେଲେକ ତୁରିତ ।
ତାଙ୍କ ଆଜ୍ଞା ଦେଲେ ମୋତେ ଦେବୀ ଅନନ୍ତାଇ
ତୋହର ଗୀତକୁ ସରଧା ପାଇଲି ହିଁ ମୁହିଁ ।" (୨୦୯)

କିମ୍ବଦନ୍ତୀରୁ ଜଣାଯାଏ ଯେ ଦେବୀ ସଙ୍ଗୀତପ୍ରିୟା ଥିଲେ । ସାରଳା ଦାସ ହଳ କରୁଥିବା ସମୟରେ ଗୀତ ଗାଉଥିଲେ । ହଠାତ୍ ପଦ ବିସ୍ମୃତ ହେଲେ । ଗୀତ ବନ୍ଦ ହେବା ପୂର୍ବରୁ ଦେବୀ ଆବିର୍ଭୂତ ହେଲେ ଏବଂ ଗୀତ ପୁଣି ଗାଇବାକୁ କହିଲେ । କବିଙ୍କ ସଂଗୀତ ତାଙ୍କୁ ଭଲ ଲଗେ ବୋଲି ଦେବୀ କହିଥିଲେ । (୨୧୦)

କବି କହନ୍ତି ଯେ ସେ ଦେବୀଙ୍କ ଆଦେଶରେ ଗ୍ରନ୍ଥ ରଚନା କରିଥିଲେ । ଦେବୀ ତାଙ୍କୁ ପଦ କହି ଦେଉଥିଲେ ଏବଂ ସେ ଲେଖୁଥିଲେ । କବି ନିଜକୁ ମୂର୍ଖ ଓ ଅପଣ୍ଡିତ ବୋଲି ସତତ କହିଛନ୍ତି । ଚଣ୍ଡିଙ୍କ ପ୍ରସାଦରୁ ଦିବ୍ୟଜ୍ଞାନ ଲାଭ କରି ସେ ମହାଭାରତ ଭଳି ବିରାଟ ଗ୍ରନ୍ଥ ଲେଖିବାକୁ ସମର୍ଥ ହୋଇଥିଲେ ବୋଲି ବହୁ ସ୍ଥଳରେ ପ୍ରକାଶ କରିଅଛନ୍ତି ।

"ସିଦ୍ଧସମ୍ଭବମା ଦେବୀ ଝଙ୍କଡ଼ ମଣ୍ଡଣୀ
ଶ୍ରୀ ସାରଳା ଚଣ୍ଡୀ ନାମ ଧରି ନାରାୟଣୀ ।
× × ×
ନୁହଇ ପଣ୍ଡିତ ମୁଁ ନ ଜାଣେ ଶାସ୍ତ୍ରବାଟ
ନ ପଢ଼ିଲି ବିଦ୍ୟା ମୁହିଁ ନୋହି କେବେ ଗୁଣ୍ଠ ।

ମୋହର ହୃଦରେ ପୂର୍ବ କର୍ମର ଅଭ୍ୟାସେ
ନାରାୟଣୀ ଆଜ୍ଞାରେ ମୁଁ ହୃଦପଦ୍ମେ ଘୋଷେ ।
× ×
ସେ ଦେବୀ ଲକ୍ଷ୍ମୀ ସର୍ବଦା ନାମ ହୃଦଗତ
ବଦନ୍ତି ସାରଳା ଦାସ ମୂର୍ଖ ଅପଣ୍ଡିତ ।" (ବ ୧୫ ପୃ)
"ନ ପଢ଼ି ପଣ୍ଡିତ ମୁହିଁ ଆଜ୍ଞା ପରମାଣେ
ଭାରତର ଅର୍ଥେ ରଚିଲି ସାରଳା ପ୍ରସନ୍ନେ ।
ସେ ଯାହା କହଇ ମୁହିଁ ଲିହଇ ସେ ମତ
ମୂର୍ଖ ହୋଇ ଲେଖଇ ମୁଁ ନୁହଇ ପଣ୍ଡିତ ।" (ଆ ୩୧୩ ପୃ)
"ଏହା ଶୁଣିଣ ମୁଁ ହୋଇଲି ପରଚଣ୍ଡ
ଆଜ୍ଞା ଦେଲେ ଗାଇବୁ ତୁ ଗୀତ ଅଂରଖଣ୍ଡ ।" (୨୧୧)

କମ୍ବଦନ୍ତୀରୁ ପ୍ରକାଶ ପାଏ—ଦେବୀ କବିଙ୍କୁ ମହାଭାରତ ରଚନା କରିବା ପାଇଁ ବର ପ୍ରଦାନ କରିଥିଲେ । ସେ କବିଙ୍କୁ କହିଥିଲେ—"ତୁ ଖେଡା ଓ ଲେଖନ ଧରି କଳ୍ପବଟ ମୂଳରେ ବସ । ଯାହା ଉପରୁ ଶୁଭିବ ତାହା ଲେଖ ।" ସାରଳା ଦାସ ସେହିଭଳି ଭାବରେ ମହାଭାରତ ରଚନା କରିଥିଲେ । (୨୧୨) 'ଚଣ୍ଡୀପୁରାଣ'ରେ କବି କହନ୍ତି ଯେ ଦେବୀ ତାଙ୍କୁ ସ୍ୱପ୍ନରେ ଦେଖାଦେଇ ମହାଭାରତର କଥାମାନ କହି ଦେଉଥିଲେ ଏବଂ ସେ ତାହା ଲେଖୁଥିଲେ । (ପୃ ୨୯)

ସାରଳା ଦାସ ଦେବୀଙ୍କର ମହିମା ପ୍ରଦର୍ଶନ କରିବା ଛଳରେ ତାଙ୍କଠାରେ କେତେକ ବିଶେଷତ୍ୱ ଆରୋପ କରନ୍ତି । କବିଙ୍କ ଦୃଷ୍ଟିରେ ଦେବୀ ଜ୍ଞାନଦାୟିନୀ ସରସ୍ୱତୀ । "ବନ୍ଦଇ ମୁଁ କୃପାଜଳ ମହାଋଷି ପୁତ୍ରୀ
ସତ୍ୟଯୁଗେ ନର୍ମଦା ତୋ ନାମ ସରସ୍ୱତୀ ।
କଳି କାଳ ଧ୍ୱଂସିନୀ ଗୋ ଝଙ୍କଡ଼ବାସିନୀ
ଜନ୍ମେ ଜନ୍ମେ ମୁଁ ତୋ ଦାସ ଗୋ ଜନନୀ ।" (ଖ୍ରୀ ୨ ପୃ)
"ବାକ୍ୟଦେବୀ ଦୁର୍ଗା ସେ ବଲ୍ଲଭ ଯାହାର
ତାହାଙ୍କ କ ଅଶକ୍ୟ ଅଟଇ ଅଗୋଚର ।" (୨୧୩)

କବି ଦେବୀଙ୍କୁ ସରସ୍ୱତୀ ବା ବାକ୍‌ଦେବୀ ବୋଲି ଯାହା କହିଛନ୍ତି ତାହା ଯଥାର୍ଥ । 'ଦୁର୍ଗା ସପ୍ତଶତୀ'ରେ ଦେବୀଙ୍କୁ "ମହାବିଦ୍ୟା ମହାବାଣୀ ଭାରତୀ ବାକ୍ ସରସ୍ୱତୀ" ଆଖ୍ୟା ଦିଆଯାଇଅଛି । (୨୧୪) 'ଚଣ୍ଡୀପୁରାଣ'ରେ ସାରଳା ଦାସ ଦେବୀଙ୍କୁ ସରସ୍ୱତୀ ତଥା ନର୍ମଦା ବୋଲି କହନ୍ତି—

"ନାମ ତାଙ୍କର ନର୍ମଦା ଦେବୀ ସରସ୍ୱତୀ
ଶାସ୍ତ୍ରରେ ବର୍ଣ୍ଣିତା ସେହୁ ସର୍ବଦା ଉତ୍ପନ୍ତି ।" (ପୃ ୪)

ସାରଳା ଦାସ ଶାକ୍ତ ତାନ୍ତ୍ରିକ ଥିଲେ ବୋଲି ଅବଧାରିତ ହୁଏ । ତାହାର କେତେକ ସୂଚନା ତାଙ୍କ ମହାଭାରତରୁ ମିଳେ । ତନ୍ତ୍ରରେ ମାତୃଭାବର ପ୍ରାଧାନ୍ୟ ଥାଏ । (୨୧୫) କବି ତାଙ୍କର ବିଭିନ୍ନ ଗ୍ରନ୍ଥରେ ଯେତେ ସ୍ତୁତି ଦେଇଛନ୍ତି ସେ ସବୁ ମଧ୍ୟରେ ଦେବୀଙ୍କ ଉଲ୍ଲେଖ ଅଧିକ । ଅଧିକାଂଶ ଭଣିତରେ କବି ଦେବୀଙ୍କ କଥା ହିଁ କହିଅଛନ୍ତି । ଏତଦ୍‌ଭିନ୍ନ ସେ ସର୍ବଦା ଦେବୀଙ୍କୁ ମାତା ବୋଲି ସମ୍ବୋଧନ କରନ୍ତି ।

"ଜୟ ତୁ ଜୟ ତୁ ମାଗୋ ଶ୍ରୀଚଣ୍ଡୀ ସାରଳା
ତୁମ୍ଭେ ଯାହାକୁ ପ୍ରସନ୍ନ ହେଉ ଗୋ ମଙ୍ଗଳା ।
ତାହାର ଦୁଃଖ କ୍ଷଣେକେ ହୋଇଯାଏ ଦୂର
ଶୂଦ୍ରମୁନି ସାରଳା ଦାସ ତୋ କୋଯ୍ପର ।" (ମ ୩୬ ପୃ)

ଶାକ୍ତ ତନ୍ତ୍ରରେ ସପ୍ତମାତୃକାଙ୍କର ଉଲ୍ଲେଖ ଦେଖାଯାଏ । (୨୧୬) କବି ସପ୍ତମାତୃକାଙ୍କ କଥା କହନ୍ତି । ବନ ପର୍ବରେ ଅଛି ଯେ ଆଠଜଣ କୁମାରୀ ମାଘସ୍ନାନ ସାରି ନଦୀର କୂଳରେ ଖେଳୁଥିଲେ । ଶିବ ସେମାନଙ୍କୁ ଅଷ୍ଟ ଅପ୍‌ସରା ରୂପରେ ଜନ୍ମ ହେବାପାଇଁ ବର ଦେଇଥିଲେ । ସେମାନଙ୍କ ନାମ ହେଲା—ରମ୍ଭା, ଉର୍ବଶୀ, ମେନକା, ଚିତ୍ରରେଖା, କାମସେଣା, ମଦନକା ଓ ଅମ୍ବିକା । (୨୧୭) ବିଭିନ୍ନ ଦେବୀଙ୍କ ନାମ ମଧ୍ୟରେ ସପ୍ତମାତୃକାଙ୍କ ନାମ ଦେଖାଯାଏ ।

"ଜଳରେ ରକ୍ଷା କରନ୍ତୁ ଦେବୀ ମାହେଶ୍ୱରୀ ।"
"ବାତୋଦୟ କାଳେ ବାରାହୀକି ସୁମରିବ ।"
"ଚକ୍ରର ସଂଯୋଗ କାଳେ ଇନ୍ଦ୍ରାଣୀ ଭଜିବ ।"
"କ୍ଷତି ଆରମ୍ଭ କାଳରେ ସ୍ମରିବ ଚାମୁଣ୍ଡା ।" (ବ ୨ ପୃ)
"ମହାଯୋଗେଶ୍ୱରୀ ସେହି ପରମା ବୈଷ୍ଣବୀ ।" (୨୧୮)
"ଭଇରବୀ ଏକାଦଶ କୋଟି ଯେ ରୁଦ୍ରାଣୀ
ଅର୍ବୁଦେକ କୌମାରୀ ଯେ ଲକ୍ଷେକ ଇନ୍ଦ୍ରାଣୀ ।" (ଶ ୧୮ ପୃ)

ତନ୍ତ୍ର ସାଧନାରେ କାଳୀ-କାଳ, ଭୈରବୀ-ଭୈରବଙ୍କ ଦେଖାଯାଏ । (୨୧୯) ସାରଳା ଦାସ ଲେଖିଛନ୍ତି—"ବିପଦ କାଳରେ କାଳିକାଙ୍କୁ ସୁମରିବ ।" (ବ ୨ ପୃ) ସେ ଦେବୀଙ୍କୁ 'ଭୈରବୀ' ଆଖ୍ୟା ଦେଇ ଲେଖିଛନ୍ତି—

"ସାରଳା ଚଣ୍ଡୀ ଅଟଇ ସାକ୍ଷାତେ ଭୈରବୀ ।" (ଆ ୩ ପୃ) କବି 'ଚଣ୍ଡୀ ପୁରାଣ'ରେ କାଳୀ ତଥା ଭୈରବୀଙ୍କ ଉଲ୍ଲେଖ କରିଅଛନ୍ତି ।

"କଙ୍କାଳୀ ବେତାଳୀ କାଳୀ କାଳରାତ୍ରୀ ଦେବୀ ।"

"ମହା କାତ୍ୟାୟିନୀ ମାତେ। ଭୈରବୀ ବିପୁରା ।" (ପୃ ୫୫)

ସାରଳା ଦାସ ଥିଲେ ତାନ୍ତ୍ରିକ ଯୋଗୀ । ତନ୍ତ୍ରରେ ଯୋଗ ଓ ଶରୀର-ସାଧନା ସ୍ଥାନ ଲାଭ କରେ । ବହୁ ପ୍ରାଚୀନ କାଳରୁ ତନ୍ତ୍ର ଏକ ଶରୀର-ସାଧନା ରୂପରେ ଦେଖା ଦେଇଥିଲା । ସାରଳା ଦାସ ଏହି ଯୋଗ ଓ ଶରୀର-ସାଧନାର କଥା କହିଛନ୍ତି । ତାଙ୍କର ଆରାଧ୍ୟ ଦେବୀ ସାରଳା ଠାକୁରାଣୀ ଯୋଗେଶ୍ୱରୀ— "ମହା ଯୋଗେଶ୍ୱରୀ ସେ ପରମ ବୈଷ୍ଣବୀ ।" (୨୨୦) ଅଶ୍ୱତ୍ଥାମାଙ୍କ ତପସ୍ୟାରେ କବି ଶରୀର-ସାଧନା ଓ ଯୋଗର କଥା ବର୍ଣ୍ଣନା କରନ୍ତି ।

"କାହାର ନାମକୁ ସେହି ନ ଧଇଲା ମନେ
ଶୂନ୍ୟକୁ ଲକ୍ଷ୍ୟ କରଣ ଚାହିଁଁ ଇ ଗଗନେ ।
ବୋଧଇ ସେ ଅଣାକାର ସାଧେ ବ୍ରହ୍ମଜ୍ଞାନ
ଏମନ୍ତ ଚଉଦ ବର୍ଷ ରହିଥାଇ ଧ୍ୟାନ ।
ପବନକୁ ନିରବଧି ସେ ଟେକଇ ଉଜାଣି
ଏକାଦଶ ଇନ୍ଦ୍ରିୟକୁ ଏକ କରି ଆଣି ।" (ଆ ୧୧୧ ପୃ)

ସାରଳା ଦାସ ସିଦ୍ଧ ସାଧକ ଥାଇ ଯୋଗବଳରେ ସ୍ୱଇଚ୍ଛାରେ ଦେହତ୍ୟାଗ କରିଥିବାର ଜଣାଯାଏ । (୨୨୧) ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଅନୁମାନ କରନ୍ତି ଯେ ସେ କୋଣାର୍କଠାରେ ଯୋଗ-ସାଧନା କରୁଥିଲେ । (୨୨୨)

କବିଙ୍କ ତନ୍ତ୍ରସାଧନାରେ ଇନ୍ଦ୍ରିୟ ସେବା ବା ଯୌନଚର୍ଯ୍ୟାର ସ୍ଥାନ ନ ଥିଲା । ବାମମାର୍ଗୀ ତାନ୍ତ୍ରିକମାନେ ଶିବ-ପାର୍ବତୀଙ୍କୁ ଯୁଗନଦ୍ଧ ରୂପରେ ବନ୍ଦନା କରନ୍ତି । (୨୨୩) ସାରଳା ଦାସ ଏପରି ବନ୍ଦନାରେ ଦୋଷ ବା ପାପ ଦେଖିଛନ୍ତି । ତେଣୁ ସେ କହନ୍ତି ଯେ, ପୂର୍ବଜନ୍ମରେ ଏପରି ଚିତ୍ର ଦେଇ ସେ ଅଭିଶାପ ପାଇଥିଲେ ।

"କଇଳାସେ ଦ୍ୱାରପାଳ ନାମ ମୋର ନନ୍ଦୀ
ଶାସ୍ତ୍ରର ଆଗମେ ହର ଗଉରୀଙ୍କୁ ବନ୍ଦୀ ।
ଯେଉଁ ରୂପେ ସ୍ତ୍ରୀ ପୁରୁଷ କ୍ରୀଡ଼ାର ବିଧାନ
ମାତା ପିତାଙ୍କ ସଙ୍ଗମ କରନ୍ତେ ବର୍ଣ୍ଣନ ।
ଶୁଣି ବୃଷଭରାଜ ମୋତେ ହୋଇ ଅତି କୋପ
ନିଷ୍ଠୁର ଭାବରେ ତହୁଁ ଦେଲେ ମୋତେ ଶାପ ।" (୨୨୪)

କବି ଶାକ୍ତ ଥିଲେ ହେଁ ଅନ୍ୟାନ୍ୟ ଧର୍ମ ପ୍ରତି ଆଦରଭାବ ପୋଷଣ କରୁଥିଲେ । ମିଳନ-ଧର୍ମୀ ଉଦାର ଜଗନ୍ନାଥ-ସଂସ୍କୃତିର ସେ ଥିଲେ ଯଥାର୍ଥ ସେବକ । ସେ ପ୍ରତ୍ୟେକ ଦେବ-ଦେବୀଙ୍କ ପ୍ରତି ସମାନ ସମ୍ମାନ ଓ ଭକ୍ତି ପ୍ରଦର୍ଶନ କରୁଥିଲେ । ସୌର, ଶୈବ, ଗାଣପତ୍ୟ, ବୈଷ୍ଣବ ମତବାଦ ପ୍ରତି ତାଙ୍କର ଶ୍ରଦ୍ଧା ଭାବ ଥିଲା । ସେ ସୂର୍ଯ୍ୟ, ଶିବ, ଗଣେଶ ଓ ଜଗନ୍ନାଥଙ୍କର ଜୟଗାନ ସମସ୍ୱରରେ କରି ଧାର୍ମିକ ଉଦାରତାର ଆଦର୍ଶ ପ୍ରତିଷ୍ଠା କରିଛନ୍ତି । କବି ଲେଖମାରେ ନିମ୍ନୋକ୍ତ ସ୍ତୁତିମାନଙ୍କରୁ ଏହା ସ୍ପଷ୍ଟ ।

"ନମୋ ନମୋ କମଳଲୋଚନ କର ତାର
ତ୍ରିଜଗ୍ଧ ବନ୍ଦନ୍ତି ନାମ ବନ୍ଧୁ ତ ଭାସ୍କର ।" (୨୨୫)
"ଜୟ ଜୟ ଦେବାସୁର ସିଦ୍ଧ ଲମ୍ବୋଦର
ଜୟ ତୁ ଜୟ ତୁ ଦେବ ସର୍ବ ବିଘ୍ନ ହର ।" (୨୨୭)
"ନମସ୍ତେ ଶ୍ରୀ ତ୍ରିଲୋଚନ ନମୋ ମହାଦେବ
ନମସ୍ତେ ହେ ବିରୂପାକ୍ଷ ନମୋ ସଦାଶିବ ।" (ସ ୧୨୩ ପୃ)
"ଜୟ ଜୟ ଜଗନ୍ନାଥ ଜୟ ଦେବ ହରି
ଶ୍ରୀ ଜଗନ୍ନାଥ ସୁମରି ନରେ ଯିବେ ତରି ।" (ମ ୧୭୪ପୃ )

ଉକ୍ତ ଆଲୋଚନାରୁ ପ୍ରତିପାଦିତ ହେଉଅଛି ଯେ, ପଞ୍ଚଦଶ ଶତାବ୍ଦୀର ଉତ୍କଳରେ ଶୈବ, ଶାକ୍ତ, ବୌଦ୍ଧ, ଜୈନ, ଗାଣପତ୍ୟ, ସୌର ଓ ବୈଷ୍ଣବ ଧର୍ମର ପ୍ରଭାବ ଥିଲା । ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମର ପ୍ରଭାବ ସର୍ବାଧିକ ଥିଲା । ଓଡ଼ିଶାର ବୈଷ୍ଣବ ଧର୍ମ ଜଗନ୍ନାଥଙ୍କୁ କେନ୍ଦ୍ର କରି ଗଢ଼ି ଉଠିଥିଲା । ଜଗନ୍ନାଥ ଧର୍ମ ସବୁ ମତବାଦକୁ ନିଜର କରି ପୁଷ୍କଳ ହୋଇ ଉଠିଥିଲା । ଜଗନ୍ନାଥ ଧର୍ମରେ ପରକୀୟା ଓ ରାଧାଭାବ ନଥିଲା । ଏଥିରେ ସ୍ୱକୀୟା ପ୍ରେମ ହିଁ ମୁଖ୍ୟ ଥିଲା । ଜଗନ୍ନାଥ ଧର୍ମରେ ଉଦାର ଓ ସହିଷ୍ଣୁ ଭାବ ଥିଲା । ଲୋକେ ଶିବ, ଗଣେଶ, ରାମ, ଶ୍ରୀକୃଷ୍ଣ, ବିଷ୍ଣୁ, ଲକ୍ଷ୍ମୀ, ସରସ୍ୱତୀ ଓ ଦୁର୍ଗାଙ୍କୁ ମାନୁଥିଲେ । ଓଡ଼ିଶାରେ ଧର୍ମଗତ ମତାନ୍ଧତା ଦେଖାଯାଉଥିଲା । ଲକ୍ଷ୍ମୀ ଓ ଦୁର୍ଗା ଦେବୀ ଭାବରେ, ଜଗନ୍ନାଥ ଓ ଶିବ ଦେବତା ଭାବରେ ଅଧିକ ଲୋକପ୍ରିୟ ଥିଲେ । ଲୋକଙ୍କ ମଧ୍ୟରେ ଧର୍ମ ବିଶ୍ୱାସ ଦୃଢ଼ ଥିଲା । ଯୋଗ ଓ ତନ୍ତ୍ରର ପ୍ରଭାବ ଧର୍ମ ଜଗତରେ ପ୍ରବଳ ଥିଲା । ସାରଳା ଦାସ ତାନ୍ତ୍ରିକ, ଯୋଗୀ ଓ ଶାକ୍ତ ଥିଲେ । ଅନ୍ୟ ମତବାଦ ପ୍ରତି ତାଙ୍କର ଶ୍ରଦ୍ଧା ଥିଲା । ସେ ଯଥାର୍ଥ ପକ୍ଷରେ ଥିଲେ ସଂମିଶ୍ରଣଧର୍ମୀ ଉଦାର ଜଗନ୍ନାଥ ଧର୍ମର ସାଧକ ।

———

# ପାଦଟୀକା

(୧) Religion and Society—Radhakrishnan—P. 40 (୨) An Introductory Sociology—Kimball young—P. 284 (୩) J.I.H—Vol XLV—P, III, 1967, Dec—P. 673 (୪) Contemporary Religions and Thoughts—T. S. Kepler—P. 22-23 (୫) ଭା. ସଂ. ଅ. ଇ. ଇ—ଶ୍ରୀ ସତ୍ୟଦେବ—ପୃ ୧୯୪ (୬) S.G.M.I—A.B. Pandey—P. 207 (୭) H. C. I. P—Vol VI—P. 556 (୮) S. G. M. I—A. B. Pandey—P. 207 (୯) ଭା. ସଂ. ଅ. ଉ. ଇ—ପୃ ୪୯୭ (୧୦) ଭା. ଆ. ଇ.—ଶ୍ରୀକୃଷ୍ଣ ପଣ୍ଡାଭକ୍ତ—ପୃ ୧୪୧ (୧୧) H.C.I.P.—Vol VI—P, 546 (୧୨) Ibid—P. 547 (୧୩) S. G. M. I—P. 215 (୧୪) The Sultauate of Delhi—A.L. Srivastava—P. 346 (୧୫) ଭା. ଆ. ଇ—ପୃ ୧୪୧ (୧୬) ପା. ନ, ସଂକୃତାସ୍ଥନ—ପୃ ୧୫୧ (୧୭) ଉ. ଇ—କୃପାସିନ୍ଧୁ—ପୃ ୧୮ (୧୮) ଏକନ୍—ପୃ ୨୪ (୧୯) ଚକ୍ରଧର ମହାପାତ୍ର—ନବଜୀବନ—୧୬ଶ ବର୍ଷ—୩ୟ ସଂଖ୍ୟା—ପୃ ୧୫୯ । (୨୦) ଓଡ଼ିଶାରେ ବୌଦ୍ଧଧର୍ମ—ବଂଶୀଧର—ଭୂମିକା—ପୃ ୧ । (୨୧) ଜ. ମ. ଉ. ତ—ସୂର୍ଯ୍ୟନାରାୟଣ—ପୃ ୧୩ । (୨୨) ଓଡ଼ିଶାରେ ବୌଦ୍ଧଧର୍ମ—ପୃ ୬୦ । (୨୩) ସତ୍ୟବାଦୀ—୧୩୨୩-୨୪ ସାଲ—୫ମ-୬ମ ସଂଖ୍ୟା—ପୃ ୧୭୭ । (୨୪) ନା. ସଂ. ଇ. ଦ. ସା. ପ୍ର—କଲ୍ୟାଣୀ ମଲ୍ଲିକ—ପୃ ୩୪୦ । (୨୫) ସା. ମ—ଆଦ୍ୟ—ପୃ ୪ । ମୂ. ପୋ—ଆଦ୍ୟ ୧ମ—ପୃ ୫ କ (୨୬) ଓଡ଼ିଶାରେ ବୌଦ୍ଧଧର୍ମ—ପୃ ୬୪ । (୨୭) ସା. ମ—ବନ—ପୃ ୬୭ । ମୂ. ପୋ—ବନ ୧ମ—ପୃ ୯୯ କ । (୨୮) ସା. ମ—ଆଦ୍ୟ—ପୃ ୪ । ମୂ. ପୋ—ଆଦ୍ୟ ୧ମ—ପୃ ୫ କ । (୨୯) ଏକନ୍—ପୃ ୫୭ । ଏକନ୍—ପୃ ୫ କ । (୩୦) ରୁ. ସୁ. କ—ନାରାୟଣାନନ୍ଦ—ପୃ ୫, ୬, ୨୭, ୪୦ । (୩୧) ଓ. ନା. ସଂ. ସା—ବଂଶୀଧର—ପୃ ୩୧୪, ୩୧୬, ୩୨୫ । (୩୨) Obscure Religious cults—S. B. Dasgupta—Int—P. XXXIV (୩୩) Obscure Religious cults—P. 120 (୩୪) ଝଙ୍କାର—୨୧ଶ ବର୍ଷ—୯ମ ସଂଖ୍ୟା—ପୃ ୯୧୭ । (୩୫) ଏକନ୍ (୩୬) ଏକନ୍—ପୃ ୯୧୮ । (୩୭) ଓଡ଼ିଶାରେ ବୌଦ୍ଧଧର୍ମ—ବଂଶୀଧର—ପୃ ୫୦ । (୩୮) ସା. ମ—ବନ—ପୃ ୨୨୭ । ମୂ. ପୋ—ବନ ୨ୟ—ପୃ ୬୨ ଖ ।

"କଳିଯୁଗ ଗୁଣିଲକ୍ଷ ବତିଶ ସହସ୍ର ବରଷ ପର୍ଯ୍ୟନ୍ତେ
ବୌଦ୍ଧ ରୂପେ ପୂଜା ପାଇବେ ନୀଳସୁନ୍ଦର ପର୍ବତେ ।"

(ପୋଥିପାଠ)

(୩୯) O.H.R.J—Vol XI—No 4. 1963—P. 273 (୪୦) ଈ. ନୌ. ଭ—ପୃ ୫୭-୬୩ । (୪୧) ସଂ. ମ—ମୌଷଳ ୩, ୧ । (୪୨) ସଂ. ମ—ହରିବଂଶ—ବିଷ୍ଣୁ ପର୍ବ—୧୬୬ ଅଧ୍ୟାୟ । (୪୩) ଏଜନ୍—୧୬୮ ଅ—(୪୪) ସଂ. ମା. ବ୍ର. ପୁ—ପୃ ୧୮୩ (୪୫) ସଂ. ବ୍ର. ବୈ. ପୁ—ପୃ ୨୫ । (୪୬) ଦୁର୍ଗାସପ୍ତଶତୀ ୨, ୧୦-୧୮ । (୪୭) କୋଣାର୍କ—କୃପାସିନ୍ଧୁ—ପୃ ୨୮ । (୪୮) ସା. ମ—ବନ—ପୃ ୨୦୦-୨୦୨ । ସ୍ୱର୍ଗ—ପୃ ୧୩-୧୪ ।

(ବନ ପର୍ବରେ ଅସୁରଙ୍କ ନାମ—କୀର୍ତ୍ତି ଓ ବାସ ସ୍ୱର୍ଗ ପର୍ବରେ—

(୪୯) O.H.R.J—1952 July—P. 4-5 (୫୦) ସାରଳା ସ୍ମରଣିକା—ଚ. ପ୍ର. ଦ—ପୃ ୬୦-୬୧ । (୫୧) ମୃ. ପୋ—ବନ ୧ମ—ପୃ ୯୯ କ । (୫୨) ଏଜନ୍ ପୃ ୬୭ କ (୫୩) ଝଙ୍କାର, ୨୧ଶ ବର୍ଷ, ୯ମ ସଂଖ୍ୟା—ପୃ ୯୨୦ । (୫୪) ଏଜନ୍—ପୃ ୯୨୧ । (୫୫) O.H.R.J—Vol XI—No. 4, 1963—P. 373 (୫୬) ମାଳାଦ୍ର ମହୋଦଧି—୨୮ ଅ—ପୃ ୨୦୮ (୫୭) କୋଣାର୍କ, କୃପାସିନ୍ଧୁ—ପୃ୧୬୪ (୫୮) O. H. R, J—Vol -XI—1963, No· 4—P. 280 (୫୯) Ibid—P. 277 (୬୦) Ibid—P, 280 (୬୧) A R. A. B.—K. C. Panigrahi—P. 256 (୬୨) Rigveda—Vol I—H. H. Wilson, Int—P. XXVI (୬୩) ପ. ସଂ—ଦୁର୍ଗାଦାସ—୮ମ ସଂଖ୍ୟା—ପୃ ୨୩୭ । (୬୪) ଏଜନ୍—ପୃ ୨୪୦ । (୬୫) ସା.ସଂ.—ଦୁର୍ଗାଦାସ—୧୧ଶ ସଂଖ୍ୟା ପୃ ୨୬୬ (୬୬) ବ୍ରହ୍ମାଣ୍ଡ ପୁରାଣ ୨, ୬୯—ପୃ ୩୬ । (୬୭) Rigveda—Vol I—Wilson—Int—P. XXVI (୬୮) ଉପନିଷଦଅଙ୍କ—କଲ୍ୟାଣ—ପୃ ୪୮୨ (୬୯) ସଂ. ମ—ବନ ୩,—୧୬-୨୮ । (୭୦) ସଂ. ନା. ବ. ପୁ—ପୃ୩୫୧ (୭୧) ଦଂ. ନା. ବ୍ର. ପୁ.—ପୃ ୧୯୧ । (୭୨) ଏଜନ୍—ପୃ ୩୨୧ । (୭୩) ସଂ. ସ୍କ. ପୁ—ପୃ ୧୪୭ । (୭୪) ଅଭିନବ ଚନ୍ଦ୍ରାମଣି—୧ମ—ପୃ ୨୩ । (୭୫) ସା. ମ—ସଭା—ପୃ ୮୭-୮୯ । ବନ—ପୃ ୨୦୫-୨୦୬ ।

(୭୬) ସା. ମ.—ବନ—ପୃ ୨୦୮ । ପାଠ ଭିନ୍ନ ହେଲେହେଁ ପୋଥିରେ ଏହି ମର୍ମରେ ବର୍ଣ୍ଣନା ମିଳେ । ଯଥା:—

"ଅଶେଷ କୋଟି ତୀର୍ଥ କଜସ୍ତେ ତହିଁ ସବୁ
ଚନ୍ଦ୍ରଭାଗା ତୀର୍ଥେ ବଟନ୍ତି ନାରାୟଣ ସେବକୁ ।"

(ମୃ. ପୋ—ବନ ୨ୟ—ପୃ ୭୪ ଖ)

"ମକର ମାସରେ ଯେହୁ ଚନ୍ଦ୍ରଭାଗାରେ ଦଅଇ ପିଣ୍ଡଦାନ
ଦ୍ୱାଦଶ ପୁରୁଷେ ପିତୃଲୋକେ ପାନ୍ତି ସ୍ୱର୍ଗସ୍ଥାନ ।"

(ମୃ. ପୋ—ବନ ୨ୟ—ପୃ ୭୩ କ)

(୭୭) ସା. ମ—ବନ—ପୃ ୨୦୮ । ମୂ.ପୋ—ବନ ୨ୟ—ପୃ ୭୨ କ ।

"ମହୋଦଧିରେ ସ୍ନାନ କରି ଚନ୍ଦ୍ରଭାଗାରେ ହାହ୍ନି ।
ବିରଞ୍ଚି ନାରାୟଣର ବଦନ ଦେଖଇ ଯାଇ ।"

(ଏଠାରେ 'ହାହ୍ନି' ଶବ୍ଦଟି ନିରର୍ଥକ । ଶବ୍ଦଟି 'ଗାହ୍ନି' ହେବ । 'ଗାହ୍ନି'ର ଅର୍ଥ ସ୍ନାନ କରିବା ହୋଇପାରେ )

(୭୮) ସଂ. ମା—ବ୍ର. ପୃ, କଲ୍ୟାଣ—ପୃ ୩୨୦ । (୭୯) Immortal India—J. H. Dave—P. 108 (୮୦) କୋଣାର୍କ—କୃପାସିନ୍ଧୁ—ପୃ ୫-୬ (୮୧) J. I. H—1968 August—P. 209 (୮୨) କୋଣାର୍କ—କୃପାସିନ୍ଧୁ, ପୃ ୨୨ । (୮୩) ନୀଳାଦ୍ରି ମହୋଦୟ—୧ମ ଅ—ପୃ ୩ । (୮୪) କୋଣାର୍କ—ପୃ ୭୩-୧୧୪ । (୮୫) ଓ. ଇ. ୧ମ—ହରେକୃଷ୍ଣ—ପୃ ୨୩୨ । କୋଣାର୍କ—କୃପାସିନ୍ଧୁ, —ପୃ ୧୧୪ । (୮୬) Rigveda—Vol I—Wilson—Int—P. XXIV-XXV (୮୭) ସଂ. ବ୍ର. ବୈ. ପୁ.—ପୃ ୩୦-୩୨ ।

(୮୮) "ଶଙ୍କରେଽବ୍ୟକ୍ତଯୋନୟେ ।" ଶ୍ରୀ. ମ, ଅନୁ ୧୪, ୧ ।
"ରୁଦ୍ରଭକ୍ତ୍ୟା ତୁ କୃଷ୍ଣେନ ।" ଏକନ୍ ୧୪, ୩ ।
"ଶ୍ରୀବଦତ୍ତ ବରାନ୍ ।" ଏକନ୍ ୧୪, ୮୧ ।
"ଅପ୍ରସାଦ୍ୟ ବିରୂପାକ୍ଷଂ ।" ଏକନ୍ ୧୪, ୧୨୩ ।
"ମହେଶ୍ୱର ବଚନାଦ ।" ଏକନ୍ ୧୮, ୧୮୬ ।

(୮୯) ଏକନ୍—ସଭା ୪୬—୧୩-୧୫ । (୯୦) ଏକନ୍—ଆଦ ୧୧୦, ୯ । (୯୧) ସା. ମ—ମଧ୍ଯ—ପୃ ୧୪ । ମୂ. ପୋ.—ମଧ୍ଯ ୧ମ—ପୃ ୧୮କ । (୯୨) ସା. ମ—ବନ—ପୃ ୨୦୨ ।

(ଦ୍ରଷ୍ଟବ୍ୟ—ବନ ପର୍ବରେ ତୀର୍ଥର ନାମ 'କୀର୍ତ୍ତିବାସ' । ସ୍ୱର୍ଗାରୋହଣ ପର୍ବରେ ତୀର୍ଥର ନାମ (କୀର୍ତ୍ତି କୃତ୍ତିବାସ ।)

(୯୩) ସଂ. ମ—ସଭା ୪୬—୧୩, ୧୫ (୯୪) O.H.R.J—1952 July P. 1 & 7 (୯୫) Ibid—P. 4-5 (୯୬) ଏକାମ୍ର ପୁରାଣ ପୋଥି, ପତ୍ର ୧୫ ଖ । (୯୭) ଏକାମ୍ର ଚନ୍ଦ୍ରିକା ପୋଥି—ପତ୍ର ୨ଖ । (୯୮) ସା. ମ—ବନ—ପୃ ୨୦୦ । ସ୍ୱର୍ଗ ପୃ ୧୨ । (୯୯) ଏକାମ୍ର ଚନ୍ଦ୍ରିକା ପୋଥି—ପତ୍ର ୧୧ ଓ ୧୪ (୧୦୦) ନୀଳାଦ୍ରି ମହୋଦୟ —୧ମ ଅଧ୍ୟାୟ (୧୦୧) ଏକନ୍—୩ୟ ଅଧ୍ୟାୟ—ପୃ ୨୧ । (୧୦୨) ଓ. ଇ— ହରେକୃଷ୍ଣ—୧ମ—ପୃ ୨୨୪ (୧୦୩) ଏକନ୍—ପୃ ୨୨୪ (୧୦୪) ଏକନ୍—ପୃ ୨୨୬ (୧୦୫) ଏକନ୍—ପୃ ୨୨୨ (୧୦୬) କୋଣାର୍କ—କୃପାସିନ୍ଧୁ—ପୃ-୪୫-୪୬ ।

(୧୦୭) "ସକଳ ଲିଙ୍ଗ ଅଛନ୍ତି ଏହି ତୀର୍ଥଠାବେ ।"
ସା. ମ—ବନ—ପୃ ୨୦୫ ।

(୧୦୮) ଏକାମ୍ର ଚନ୍ଦ୍ରିକା ପୋଥି—ପତ୍ର ୨ । (୧୦୯) ସା. ମ—ମୃଷଲୀ—ପୃ ୩୬-୩୭ । (୧୧୦) ଓ. ଇ—୧ମ—ହରେକୃଷ୍ଣ—ପୃ ୨୨୪ । (୧୧୧) ସା. ମ—ବନ—ପୃ ୨୦୮ । ମୂ. ପୋ—ବନ ୨ୟ—ପୃ ୭୫ ଖ ।

ଦ୍ରଷ୍ଟବ୍ୟ—ପୋଥିରେ ଜମ୍ବେଶ୍ୱର ନାମ ନାହିଁ । କିନ୍ତୁ ଯମନକ ତୀର୍ଥର ଲିଙ୍ଗଙ୍କର ଉଲ୍ଲେଖ ଅଛି । ସ୍କନ୍ଦ ପୁରାଣରେ ଯମେଶ୍ୱର ଲିଙ୍ଗଙ୍କ ଉଲ୍ଲେଖ ମିଳେ ।

(ସଂ. ସ୍କ. ପୁ – ପୃ ୨୫୪)

(୧୧୨) ସା. ମ—ନ—ପୃ ୨୮୩ । ମୂ. ପୋ—ବନ ୨ୟ—ପୃ ୧୭୪ଙ ।

ଦ୍ରଷ୍ଟବ୍ୟ—ପୋଥିରେ ଲିଙ୍ଗଙ୍କ ନାମ "ପ୍ରାଣେଶ୍ୱର" ।

(୧୧୩) ଉ. ଇ—କୃପାସିନ୍ଧୁ—ପୃ ୬୧ ଓ ୭୯ । (୧୧୪) କୋଣାର୍କ—କୃପାସିନ୍ଧୁ ପୃ ୪୫-୪୬ (୧୧୫) History of Orissa—Vol I—N· K· Sahoo—P. 288 (୧୧୬) ଓ. ଇ—୧ମ—ହରେକୃଷ୍ଣ—ପୃ ୨୨୩ । (୧୧୭) A. R. A. B, K. C. Panigrahi—P· 140 (୧୧୮) ଉ. ଇ—କୃପାସିନ୍ଧୁ—ପୃ ୯୦ । (୧୧୯) ଭ. ସଂ ଅ· ଉ. ଇ—ଶ୍ରୀ ସତ୍ୟକେତୁ—ପୃ ୪୯୫-୪୯୬ । (୧୨୦) ସା. ମ—ମଧ୍ୟ—ପୃ ୧୪ । ମୂ. ପୋ.—ମଧ୍ୟ ୧ମ—ପୃ ୧୭ କ ଓ ୧୮ କ । (୧୨୧) ସା. ମ—ସଭା ପୃ ୨୦୦ ( ମୂ. ପୋ—ମଧ୍ୟ—ପୃ ୨୭୩ ଖ ରେ ଗୋରଖନାଥଙ୍କ ବର୍ଣ୍ଣନା ଅଛି ।)

ଯଥା—"ଯୋଗେଶ୍ୱର ପୁରୁଷ ସେ ଏମନ୍ତ ଭିଆଇଲ ।
ଗୋରେକ୍ଷ ବୋଲି ବ୍ରହ୍ମାଏ ଅଙ୍ଗରୁ ଜାତ କଲ ।"

(୧୨୨) ଓ. ନା· ସଂ. ନା. ସା—ବଂଶୀଧର—ପୃ ୨୭୪-୨୮୨ । (୧୨୩) ଏଜନ୍—ପୃ ୩୧୫ । (୧୨୪) ମୂ. ପୋ—ମଧ୍ୟ ୨ୟ—ପୃ ୨୭୪ଖ ।

"ବଗ୍ଧରଇ ରୁଦ୍ର ବିଷ୍ଣୁ ଅଟଇ ଏ ବେନ ।"

(୧୨୫) ମୂ. ପୋ– ଆଦ୍ୟ ୧ମ । ମୂ. ପୋ—ବନ ୨ୟ । ପୃ ୭୭ ଖ । (୧୨୬) ସା. ମ—ମୃଷଲୀ—ପୃ ୩୮-୩୯ । (୧୨୭) ସା. ମ—ମଧ୍ୟ—ପୃ ୨୩୫-୨୩୬ । (୧୨୮) ସା. ମ—ବନ—ପୃ ୨୦୮-୨୦୯ । ମୂ. ପୋ—ବନ ୨ୟ—ପୃ ୭୫ ଖ । (୧୨୯) Inscriptions of Orissa—S. N. Rajguru—Vol II—Part II P. 347, 349 (୧୩୦) O.H.R.J—Vol X—No. 4—1962—P. 71 (୧୩୧) Ibid—Vol XI—No. 4, 1963—P. 280 (୧୩୨) କୋଣାର୍କ—କୃପାସିନ୍ଧୁ—ପୃ ୧୭୪ । (୧୩୩) O.H.R.J—Vol X—1963, No. 4—P· 280 (୧୩୪) ସଂ. ନା. ବ. ପୁ—ପୃ ୩୫୧ । (୧୩୫) ସଂ. ପ. ପୁ—କଲ୍ୟାଣ—ପୃ ୧୮୭ । ସଂ. ମ—ଆଦ ୧—୭୮ । (୧୩୬) ସଂ. ପ. ପୁ—ପୃ ୧୭୦ । (୧୩୭) ସଂ. ମ. ବୈ· ପୁ—ପୃ ୨୫୩ । (୧୩୮) ସା· ମ—ଆଦ୍ୟ—ପୃ ୩ । ସଭା—ପୃ ୨ । ବିରାଟ—ପୃ ୨ । ଉଦ୍ୟୋଗ—ପୃ ୨ । ସ୍ୱର୍ଗ—ପୃ ୨-୩ । (୧୩୯) ସା. ମ—ଆଦ୍ୟ—ପୃ ୩ ।

ପଞ୍ଚପଲ୍ଲୀ ପୋଥି –ସଭ୍ଯ—ପୃ ୧-୬ । (୧୪୦) ସା·ମ—ଗ୍ରନ୍ଥ—ପୃ ୬ । (୧୪୧) ପୂର୍ଣ୍ଣ ବିମଳା ମନ୍ଦିର ଆଗରେ ଅଷ୍ଟଭୁଜ ବିଶିଷ୍ଟ ଗଣେଶ ଅଛନ୍ତି । (୧୪୬) ଓ. ଇ – ୧ମ—ହରେକୃଷ୍ଣ—ପୃ ୨୨୧ । (୧୪୩) O.H.R.J—1959 July—P. 139 । (୧୪୪) ଏକାମ୍ର ଚନ୍ଦ୍ରିକା ପୋଥି—ପତ୍ର ନ· ୬ । (୧୪୫) ରୁ. ସ. ନ—ନାରାୟଣାନନ୍ଦ—ପୃ ୫୭, ୧୦୦ । (୧୪୬, A History of India—K. Shastre—P.427 । (୧୪୭) S.G.M.I—A. Pandey—P· 207 । (୧୪୮) ଓଡ଼ିଶା ଓ ଜୈନଧର୍ମ—ଲକ୍ଷ୍ମୀନାରାୟଣ—ପୃ ୨୧ । (୧୪୯) ଏଜନ୍—ପୃ ୨୨ (୧୫୦) ଏଜନ୍—ପୃ ୨୫ । (୧୫୧) ଓଡ଼ିଶା ଓ ଜୈନଧର୍ମ—ପୃ ୧୩୧ (୧୫୨) ମାଟିର ମହାକବି ସାରଳା ଦାସ, ମାୟାଧର—ପୃ ୭ (୧୫୩) ଓଡ଼ିଶା ଓ ଜୈନଧର୍ମ—ପୃ ୧୦୭ (୧୫୪) ଏଜନ୍—ପୃ ୨୧ (୧୫୫) ହ.ଇ. କୃପାସିନ୍ଧୁ, ପୃ ୫୦—୬୦ (୧୫୬) ଓଡ଼ିଶା ଓ ଜୈନଧର୍ମ – ପୃ ୬ (୧୫୭) ହିନ୍ଦୀ ସାହିତ୍ୟ କୋଷ, ଧୀରେନ୍ଦ୍ର ବର୍ମା—ପୃ ୫୩୭ – ୫୪୦ । (୧୫୮) Obscure Religious Cults, Dasgupta, Int—P. XXIIX. (୧୫୯) Ibid—P. 144 (୧୬୦) ଓ. ସା. ଆ. ସୁରେନ୍ଦ୍ର—ପୃ ୫ (୧୬୧) ସାରଳା ଚରିତ, ମୃତ୍ୟୁଞ୍ଜୟ—ପୃ ୯ (୧୬୨) ସତ୍ୟବାଦୀ, ୧୩୨୩ ସାଲ, ୩ୟ, ୪ର୍ଥ ସଙ୍ଖ୍ୟା—ପୃ ୮୭ (୧୬୩) ଓ. ସା. ଇ, ୧ମ—ପୃ ୪୨୫ (୧୬୪) ସା.ମ, ମଧ୍ୟ—ପୃ ୧୧୦ ଓ ୧୧୩ (୧୬୫) ନୀଳାଦ୍ରି-ମହୋଦୟ—ପୃ ୨୪୭ (୧୬୬) ଏଜନ୍—ପୃ ୨୮୨ (୧୬୭) ଯ. ସ୍କ. ପୁ—ପୃ ୨୯୭ । (୧୬୮) ପଞ୍ଚମଳା, ନରସିଂହ, ଭୂମିକା—ପୃ ୨୯ (୧୬୯) ଓ. ଇ, ହରେକୃଷ୍ଣ, ୧ମ—ପୃ ୨୩୯ – ୨୪୦ (୧୭୦) ସ°. ସ୍କ. ପୁ—ପୃ ୨୯୭ (୧୭୧) ଶ୍ରୀ ଭାଗବତ ସୁଧାସାର, ଗୀତାପ୍ରେସ ୧୦, ୨୨, ୬—୭ । (୧୭୨) O·H.R.J, Vol. XI No 4, 1963, —P. 258 (୧୭୩) ଏକାମ୍ର ଚନ୍ଦ୍ରିକା ପୋଥି, ପତ୍ର ୧୪ । (୧୭୪) O.H.R.J, Vol XI, 1963, No 4—P· 258 (୧୭୫) ହିନ୍ଦୀ ସାହିତ୍ୟ କୋଷ—ପୃ ୫୩୮—୫୪୦ । (୧୭୬) ଦା. ର, ବଳରାମ, ଆଦ୍ୟ—ପୃ ୪ (୧୭୭) ସା. ମ, ମୂଷଳୀ—ପୃ ୨୦ ପୃ ୩୭—୪୧ । (୧୭୮) ସ°. ମା. ବ୍ର. ପୁ—ପୃ ୩୪୭—୩୬୧ (୧୭୯) ସ°. ନା. ବ. ପୁ, ପୃ । (୧୮୦) ସ°. ସ୍କ. ପୁ—ପୃ ୨୩୯—୨୮୪ (୧୮୧) ଏଜନ୍—ପୃ ୨୫୭ (୧୮୨) H.C.I.P, Vol I, Preface—P. 28 (୧୮୩) ବୈଦିକ ପ୍ରାର୍ଥନା, କେଦାରନାଥ—ପୃ ୩୪—୩୫ । (୮୪) ଅଷ୍ଟାଦଶ ମହାପୁରାଣ, ଜ୍ୱାଳାପ୍ରସାଦ, ଉପୋଦ୍‌ଘାତ—ପୃ ୧୭ (୧୮୫) ସା. ମ, ମୂଷଳୀ—ପୃ ୨୫—୩୪ । (ଏହି ସମସ୍ତ ବର୍ଣ୍ଣନା ପୋଥିସବୁ ସ୍ୱରୂପତଃ ସମାନ ନ ହେଲେ ମଧ୍ୟ ପୋଥିରେ ଜଗନ୍ନାଥଙ୍କୁ ବିଭିନ୍ନ ନାମରେ ସ୍ତୁତି କରାଯାଇଅଛି । ମୂଲ୍‌ଗାଁ ପୋଥିର ପାଣ୍ଡବବଧ ପାଇଁ ଅଶ୍ୱତ୍ଥାମାର କାର୍ତ୍ତିକ ଶର ପ୍ରୟୋଗ ଓ ପରୀକ୍ଷିତଙ୍କ ଜୀବନଦାନ ବିଷୟ ଦୁଇଟି ଦ୍ରଷ୍ଟବ୍ୟ) ।

(୧୮୬) ପୃ. କ୍ଷେ. ଚ—ପୃ ୧୦୧ (୧୮୭) ଏକନ—ପୃ ୧୦୨ (୧୮୮) ସଂ. ମା. ବ୍. ପୁ—ପୃ ୩୬୦ (୧୮୯) ସଂ. ସ୍କ. ପ—ପୃ ୨୫୮—୨୬୦ (୧୯୦) ସା. ମ, ଐଷିକ—ପୃ ୧, ୩୨, ୩୪ । (୧୯୧) ଅଭିମନ୍ୟୁ ସାମନ୍ତ ସିଂହାର, ଗୌରୀକୁମାର—ପୃ ୪୩ (୧୯୨) ସା.ମ, ସଭା—ପୃ ୯୪ (୧୯୩) ସା.ମ, ମଧ୍ୟ—ପୃ ୧୮୩, ୧୮୮—୧୮୯ (୧୯୪) ଓ. ସା. ଇ.ପ, ୧ମ, ନୀଳକଣ୍ଠ—ପୃ ୧୩୮—୧୪୦ (୧୯୫) ଏକନ—ପୃ ୧୪୨ (୧୯୬) ଓ.ସା.ଇ. ୧ମ, ସୂର୍ଯ୍ୟନାରାୟଣ—ପୃ ୪୩୯—୪୪୦ (୧୯୭) O.H.R.J. Vol XI, 1963, No. 4—P. 257—258 (୧୯୮) Ibid—P. 259 (୧୯୯) ସଂ.ମ, ଗ୍ରୀଷ୍ମ ୨୧, ୧୧ (୨୦୦) ଏକନ, ହଦ ୪୨, ୨୫ (୨୦୧) ସଂ.ସ, ଅଯୋଧ୍ୟା ୨୧, ୪୧ (୨୦୨) ସଂ.ବ୍.ବୈ.ପୁ—ପୃ ୫୦୧ (୨୦୩) ଇ.କୌ.ହ—ପୃ ୨୯୮ (୨୦୪) ଶ୍ରୀମଦ୍ ଭଗବଦଗୀତା, ନୀଳକଣ୍ଠ—ପୃ ୪୮ । (୨୦୫) Historical Essys, K. R. Quanungo—P. 11. (୨୦୬) ସା.ମ, ଆଦ୍ୟ—ପୃ ୮,୬୫,୧୦୬,୧୨୩ । ସଭା—ପୃ ୩ । ବ—ପୃ ୨ । ମ—ପୃ ୩, ୪୦ ।

ଗଦା—ପୃ ୨ । ମୂଷଳୀ—ପୃ ୨ । ନାରୀ—ପୃ ୨ । କର୍ଣ୍ଣ—ପୃ ୨ । ଦ୍ରୋଣ—ପୃ ୧୩୯ । (୨୦୭) ମୂ.ପୋ. ବନ ୧ମ—ପୃ ୧କ (୨୦୮) ସା.ମ, ଆଦ୍ୟ—ପୃ ୩ । ମୂ. ପୋ, ଆଦ୍ୟ ୧ମ—ପୃ ୩ଖ (୨୦୯) ମୂ.ପୋ, ମଧ୍ୟ ୧ମ—ପୃ ୧୬୦କ ଓ ୧୬୦ଖ (୨୧୦) ଶା.ଚ, ମୃତ୍ୟୁଞ୍ଜୟ—ପୃ ୧୨ (୨୧୧) ମୂ.ପୋ, ମଧ୍ୟ ୧ମ—ପୃ ୧୬୧ଖ (୨୧୨) ଶା ଚ, ମୃତ୍ୟୁଞ୍ଜୟ ପୃ—୧୬ (୨୧୩) ମୂ.ପୋ, ମଧ୍ୟ ୨ୟ—ପୃ ୨୭୨ଖ—୨୭୩ଖ (୨୧୪)ଦୁର୍ଗାଚରଣ୍ଣଚାମ୍—ପୃ ୧୦,୨୯୪ (୨୧୫) ଝଙ୍କାର, ୧୦ମ ବର୍ଷ, ୧୦ମ ସଂଖ୍ୟା—ପୃ ୯୪୦ (୨୧୬) ଝଙ୍କାର, ୨୧ଶ ବର୍ଷ, ୯ମ ପୃ ୯୨୪ (୨୧୭) ସା.ମ, ବନ—ପୃ ୨୧୫ । ମୂ.ପୋ, ବନ ୨ୟ—ପୃ ୮୫କ । (୨୧୮) ସା ମ, ଆଦ୍ୟ—ପୃ ୩ । ମୂ.ପୋ, ଆଦ୍ୟ ୧ମ—ପୃ ୩ଖ । (୨୧୯) ଶ୍ରୀମଦ୍ ଭଗବତଗୀତା, ନୀଳକଣ୍ଠ, ଗୀତାପ୍ରବେଶ—ପୃ ୮୦୨ (୨୨୦) ମୂ.ପୋ, ଆଦ୍ୟ ୧ମ—ପୃ ୩ଖ (୨୨୧) ଓ.ଭା.ସା, ନୀଳକଣ୍ଠ—ପୃ ୧୩୪ (୨୨୨) ଶା.ଚ, ମୃତ୍ୟୁଞ୍ଜୟ—ପୃ ୩୩ (୨୨୩) ଓ.ସା.ଇ.ପ, ୧ମ, ନୀଳକଣ୍ଠ—ପୃ ୧୮୪ । (୨୨୪) ସା.ମ, ସ୍ୱର୍ଗ—ପୃ ୧୦ ।

ଦ୍ରଷ୍ଟବ୍ୟ—ପଣ୍ଡିତ ମୃତ୍ୟୁଞ୍ଜୟ ଏହାକୁ ପ୍ରକ୍ଷିପ୍ତ ବୋଲି କହନ୍ତି । କିନ୍ତୁ ପଣ୍ଡିତ ନୀଳକଣ୍ଠ ଏହା ସାରଳା ମହାଭାରତରେ ଅଛି ବୋଲି ଦର୍ଶାଇଛନ୍ତି । ଏଥିପାଇଁ 'ସାରଳା ଚରିତ'ର ୨୦ ପୃଷ୍ଠା ଓ 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମ', ୨ୟ ଭାଗର ପୃ ୮୪—୮୫ପୃଷ୍ଠା ଦେଖାଯାଇପାରେ ।) (୨୨୫) ମୂ.ପୋ, ବନ ୧ମ—ପୃ ୭୨ଖ । (୨୨୬) ସା.ମ, ଆଦ୍ୟ—ପୃ ୩ । ପ.ପୋ, ସଭା—ପୃ ୧କ—୨ଖ ।

———

# ପଞ୍ଚମ ଅଧ୍ୟାୟ

## କୃଷି

ମାନବ ସଭ୍ୟତାର ପ୍ରାକ୍‌କାଳରୁ କୃଷି ହିଁ ପ୍ରଧାନ ଉପଜୀବ୍ୟ । ଯେଉଁ-ବେଳେ ଶିକାରଜୀବୀ ଆଦି ମାନବ ଜାତି ଉତ୍ତର-ପର୍ତ୍ତୁଗାଲ ଅଞ୍ଚଳରୁ ଆଫ୍ରିକା ମହାଦେଶ, ଭୂମଧ୍ୟସାଗରୀୟ ଉପତ୍ୟକା ଓ ଏସିଆ ମହାଦେଶ ଅଭିମୁଖରେ ବିସ୍ତାର ଲାଭ କରୁଥିଲା ସେତେବେଳେ କୃଷି ଓ ପଶୁପାଳନ ତାହାର ପ୍ରଧାନ ଅବଲମ୍ବନ ଥିଲା । (୧)

ବହୁ ପ୍ରାଚୀନ କାଳରୁ କୃଷି ଭାରତ-ବାସୀଙ୍କର ପ୍ରଧାନ ବୃତ୍ତି ହୋଇ-ଆସିଅଛି । ମହେନ୍‌-ଜୋ-ଦାରୋ ଓ ହରପ୍ପା ଯୁଗରେ ସମାଜର ଅର୍ଥନୀତି କୃଷିକୁ କେନ୍ଦ୍ର କରି ଗଢ଼ି ଉଠିଥିଲା । (୨) ବେଦ ଯୁଗରେ କୃଷି ଆର୍ଯ୍ୟମାନଙ୍କର ମୁଖ୍ୟ ଜୀବିକା ଥିଲା । ଋକ୍ ବେଦରେ ମୁନି ତେଣୁ ପ୍ରାର୍ଥନା କରିଛନ୍ତି—"ବଳୀବର୍ଦ୍ଦ ସୁଖ ବହନ କରୁ । ମନୁଷ୍ୟମାନେ ସୁଖରେ କୃଷିକାର୍ଯ୍ୟ କରନ୍ତୁ ।" (୩) ଶ୍ରୀ ସୂକ୍ତମ୍‌ରେ ଋଷି, ଗୋ, ଦୁଗ୍‌ଧ, ଯବ ଓ ବ୍ରୀହି କାମନା କରିଛନ୍ତି । (୪) ଯଜୁ-ର୍ବେଦରେ ମୁନିଙ୍କ ଅଭିଳାଷ ହେଉଛି—"କୃଷି ଶସ୍ୟଯୁକ୍ତ ହେଉ ।" (୫)

ପଠାଣ ରାଜାମାନଙ୍କ ରାଜତ୍ୱକାଳରେ ଉତ୍ତର ଭାରତରେ କୃଷିର ବହୁ ବିକାଶ ହୋଇଥିଲା । ସେତେବେଳେ ମଧ୍ୟ କୃଷକଗଣ କୃଷି କ୍ଷେତ୍ରରେ ସତତ ନିଯୁକ୍ତ ଥିଲେ ଏବଂ ଆନନ୍ଦରେ ରହିଥିଲେ । କୃଷିର ତତ୍ତ୍ୱାବଧାନ ପାଇଁ ସୁଲତାନ ଲୋକ ନିଯୁକ୍ତ କରୁଥିଲେ । ସାଧାରଣତଃ ଉତ୍ପନ୍ନ ଦ୍ରବ୍ୟର ଏକ ତୃତୀୟାଂଶ କର ରୂପରେ ଗ୍ରହଣ କରାଯାଉଥିଲା । ଫିରୋଜ ତୋଗଲକଙ୍କ ଅମଳରେ କୃଷିକର ହ୍ରାସ ପାଇଥିଲା । ସେ ଜମିଜମାର ବିସ୍ତୃତ ବନ୍ଦୋବସ୍ତ କରିବା ଫଳରେ କୃଷିର ବିଶେଷ ଉନ୍ନତି ହୋଇଥିଲା । ଦୁର୍ଭିକ୍ଷ ତଥା ମରୁଡ଼ି ସମୟରେ ସୁଲତାନମାନେ କୃଷକକୁ ସାହାଯ୍ୟ ପ୍ରଦାନ କରୁଥିଲେ । ସେ ଯୁଗରେ କୃଷିର ଉନ୍ନତି ପାଇଁ ଶାସକବର୍ଗଙ୍କର ପୂରା ଧ୍ୟାନ ରହିଥିଲା । (୬)

ଇବନ ବାତୁତାଙ୍କ ବିବରଣୀରୁ ଜଣାଯାଏ ଯେ, ସେ ଯୁଗରେ ବର୍ଷକୁ ଦୁଇଥର ଶସ୍ୟ ଜାତ ହେଉଥିଲା । ଶରତ କାଳରେ ଛ ପ୍ରକାର ଓ ବସନ୍ତ

ଋତୁରେ ଗୁରି ପ୍ରକାରର ଫସଲ ଉତ୍ପନ୍ନ କରାଯାଉଥିଲା । ବହୁବିଧ ଫଳ ଓ ପନି-ପରିବା ମଧ୍ୟ ଉତ୍ପାଦିତ ହେଉଥିଲା । (୭) ଆଦ୍ୟ ମଧ୍ୟଯୁଗରେ ଉତ୍ତର ଭାରତରେ ଏତେ ଶସ୍ୟ ଉତ୍ପନ୍ନ ହେଉଥିଲା ଯେ, ତାହା ଦେଶର ଆବଶ୍ୟକତାକୁ ପୂରଣ କରିବା ସଙ୍ଗେ ସଙ୍ଗେ ବିଦେଶକୁ ମଧ୍ୟ ପ୍ରେରିତ ହୋଇପାରୁଥିଲା । ସହର ତଥା ଗ୍ରାମାଞ୍ଚଳରେ ବହୁ ଶିଳ୍ପ ପ୍ରଚଳିତ ଥିଲେ ହେଁ, ଅଧିକାଂଶ ଲୋକ କୃଷିକୁ ବୃତ୍ତି ଭାବରେ ଗ୍ରହଣ କରି ଜୀବିକା ନିର୍ବାହ କରୁଥିଲେ । (୮)

ସପ୍ତମ ଶତାବ୍ଦୀଠାରୁ ସପ୍ତଦଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଦକ୍ଷିଣ ଭାରତରେ କୃଷି ଲୋକଙ୍କର ପ୍ରଧାନ ବୃତ୍ତି ଥିଲା । ଦାକ୍ଷିଣାତ୍ୟର ଅଧିକାଂଶ ଲୋକ ଗ୍ରାମାଞ୍ଚଳରେ ବାସକରି କୃଷିକୁ ମୁଖ୍ୟ ଜୀବିକା ରୂପରେ ଗ୍ରହଣ କରି-ଥିଲେ । ଜମିର ମାଲିକ ସମ୍ମାନ ଲାଭ କରୁଥିଲେ । ପ୍ରତ୍ୟେକ ବ୍ୟକ୍ତି କିଛି ନା କିଛି ଭୂସଂପତ୍ତିର ମାଲିକ ହେବାପାଇଁ ଲାଳାୟିତ ହେଉଥିଲେ । ସେ ଯୁଗରେ ଗ୍ରାମ ଥିଲା କୃଷକମାନଙ୍କର ଅଧ୍ୟୁଷିତ ଭୂମି ଓ ସମାଜ ଥିଲା ଭୂମିମାଲିକ ମାନଙ୍କର ସମାଜ । (୯)

ଉତ୍ତର ଭାରତ ତଥା ଦକ୍ଷିଣ ଭାରତ ଭଳି ମଧ୍ୟଯୁଗରେ ଉତ୍କଳ ମଧ୍ୟ କୃଷିପ୍ରଧାନ ଅଞ୍ଚଳ ଥିଲା । ସାରଳା ଦାସଙ୍କ ମହାଭାରତରେ କୃଷିପ୍ରଧାନ ଉତ୍କଳର ଚିତ୍ର ଦେଖାଯାଏ । ସେହି ଚିତ୍ରରୁ ପଞ୍ଚଦଶ ଶତାବ୍ଦୀରେ ଓଡ଼ିଶାରେ କୃଷିର କିପରି ବ୍ୟବସ୍ଥା ଥିଲା, ତାହା ଅବଧାରିତ ହୁଏ । ନିମ୍ନ ଆଲୋଚନାରୁ ତାହା ସ୍ପଷ୍ଟ ହେବ ।

## ୧ । କୃଷିବୃତ୍ତିର ପ୍ରାଧାନ୍ୟ

ଭାରତୀୟ ପରମ୍ପରାରେ କୃଷି ବୃତ୍ତି ଭାବରେ ପ୍ରାଧାନ୍ୟ ଲାଭ କରିଅଛି । ସଂସ୍କୃତ ମହାଭାରତରେ ଅଛି ଯେ, କୃଷିକର୍ମରେ ନିଯୁକ୍ତ ବୈଶ୍ୟର ଦେହରେ ଲକ୍ଷ୍ମୀ ବାସ କରନ୍ତି । (୧୦) ଶୁକ୍ରନୀତିରେ ଏହାକୁ ଉତ୍ତମ ବୃତ୍ତି ବୋଲି କୁହା-ଯାଇଅଛି । (୧୧)ପୁରାଣ ମତରେ ସ୍ୱୟଂ ବ୍ରହ୍ମା ହିଁ ଏହାର ସ୍ରଷ୍ଟା । (୧୨) ପ୍ରାଚୀନ କାଳରେ ପଶୁପାଳନ ଓ ବାଣିଜ୍ୟ ସହିତ କୃଷିକୁ 'ବାର୍ତ୍ତା' ଆଖ୍ୟା ଦିଆ-ଯାଇଥିଲା । (୧୩) ସେ ଯୁଗରେ କୃଷି ଥିଲା ବୈଶ୍ୟଙ୍କ ବୃତ୍ତି । (୧୪) କେବଳ ଆପଦ କାଳରେ ବ୍ରାହ୍ମଣ, କ୍ଷତ୍ରିୟ ଓ ଶୂଦ୍ର କୃଷି କରିପାରନ୍ତି ବୋଲି ମତ ଧାର୍ଯ୍ୟ କରାଯାଇଥିଲା । (୧୫)

ସାରଳା ଦାସଙ୍କ ଯୁଗରେ ବର୍ଣ୍ଣ-ନିର୍ବିଶେଷରେ ଲୋକେ କୃଷିକର୍ମରେ ରତ ଥିବାର ଜଣାଯାଏ । କବି-ଲେଖମାରେ ତାହାର ପରିଚୟ ମିଳିଥାଏ ।

## (କ) ବ୍ରାହ୍ମଣ ଜାତି

ମନୁଙ୍କ ମତରେ ବ୍ରାହ୍ମଣର ଜୀବିକା ହେଉଛି—ଯାଜନ ବା ଯଜ୍ଞ କରାଇବା, ଅଧ୍ୟାପନ ଓ ବିଶୁଦ୍ଧ ଜାତିରୁ ଦାନ ଗ୍ରହଣ । (୧୬) ଯଦି ବ୍ରାହ୍ମଣ ତାହାର ଏହି ସ୍ୱାଭାବିକ ବୃତ୍ତିରେ ଜୀବିକାର୍ଜ୍ଜନ କରି ନ ପାରେ ତେବେ କ୍ଷତ୍ରିୟ-ବୃତ୍ତି (ଗ୍ରାମ-ନଗରାଦି ରକ୍ଷା) ଗ୍ରହଣ କରିପାରେ । ସେଥିରେ ଜୀବିକାର୍ଜ୍ଜନ ସମ୍ଭବ ନ ହେଲେ ସେ ବୈଶ୍ୟବୃତ୍ତିକୁ ଜୀବିକା ରୂପରେ ଗ୍ରହଣ କରିପାରେ ବୋଲି ମନୁଙ୍କର ମତ । (୧୭) ପରାଶର କହନ୍ତି ଯେ, ଯଦି ବ୍ରାହ୍ମଣ କୃଷିକୁ ବୃତ୍ତି ରୂପରେ ଗ୍ରହଣ କରେ ତେବେ ତାହାକୁ ସେହି କାର୍ଯ୍ୟ ଅନ୍ୟ ଲୋକଦ୍ୱାରା କରାଇବାକୁ ହେବ । ସେ ନିଜେ କୃଷକାମ କରିବ ନାହିଁ । (୧୮)

ସାରଳା ଦାସଙ୍କ କାଳରେ ବ୍ରାହ୍ମଣମାନେ କୃଷିକୁ ଜୀବିକା ରୂପରେ ଗ୍ରହଣ କରୁଥିଲେ । ଏହି ସଂପର୍କରେ କବି ଗୋଟିଏ ସୁନ୍ଦର ଉପାଖ୍ୟାନ ସୃଷ୍ଟି କରିଛନ୍ତି । ବୈତରଣୀ ନଦୀ କୂଳରେ ଶିବ ନାମକ ନଗରରେ ଶିବା ନାମକ ବ୍ରାହ୍ମଣ ବାସ କରୁଥିଲା । ତାହାର ପୁତ୍ର ନିର୍ମଳ ଗୋରୁ ଚରାଏ । ସେ ପ୍ରତିଦିନ ଗୋଟିଏ ଅପୂଜା ଶିବଲିଙ୍ଗ ଉପରେ ଢେଳା ଲଦେ । ଦିନେ ପିତା-ପୁତ୍ର ଧାନ କ୍ଷେତ ମଧ୍ୟରେ ବସି ଏକତ୍ର ଭୋଜନ କରୁଥିଲେ । ନିର୍ମଳର ସ୍ମରଣ ହେଲା ଯେ ସେ ସେହିଦିନ ଢେଳା ଲିଙ୍ଗଙ୍କ ଉପରେ ଦେଇନାହିଁ । ନିର୍ମଳ ଉଚ୍ଛିଷ୍ଟ ହସ୍ତରେ ଢେଳା ଲଦିବାକୁ ଉଦ୍ୟତ ହୁଅନ୍ତେ ଶିବ ସ୍ୱଦେହରେ ଦର୍ଶନ ଦେଲେ ଓ ବର ମାଗିବାକୁ କହିଲେ । ବ୍ରାହ୍ମଣ ବାଳକ ବରରୂପରେ ଖଣ୍ଡିଏ ଭୂମି ମାଗିଲା ଏବଂ ଶିବ ତଥାସ୍ତୁ କହି ଅନ୍ତର୍ଦ୍ଧାନ ହେଲେ । ସେହି ଦିନଠାରୁ ବ୍ରାହ୍ମଣମାନେ ବେଦମନ୍ତ୍ର ତ୍ୟାଗକରି କୃଷିକୁ ଜୀବିକା ରୂପରେ ଗ୍ରହଣ କଲେ ।

"ବାଳୁତପୁତ୍ର ମାଗିଲା ଯାହା ପୂର୍ବଃ ସର
ତେଣୁ ଅଛନ୍ତି ବ୍ରାହ୍ମଣେ ସିନା କୃଷିକାର ।
ସେ ବ୍ରାହ୍ମଣେ ହୋଇଲେ ଯେତେକ ସନ୍ତତ
ବେଦମନ୍ତ୍ର ଛାଡ଼ି ସେହି କୃଷିରେ ବଞ୍ଚନ୍ତି ।" (୧୯)

ସେ କାଳରେ ବ୍ରାହ୍ମଣମାନେ କୃଷକାର୍ଯ୍ୟକୁ ବୃତ୍ତି ଭାବରେ ଗ୍ରହଣ କରି- ଥିଲେ ହେଁ, ନିଜ ହାତରେ ହଳ କରୁ ନଥିଲେ । ପରାଶରଙ୍କ ବ୍ୟବସ୍ଥା ଅନୁସାରେ ସେମାନେ ଲୋକ ନିଯୁକ୍ତ କରି କୃଷିକାର୍ଯ୍ୟ ଚଳାଉଥିଲେ । କବି-ବର୍ଣ୍ଣିତ ସୁରେଶ୍ୱର ବ୍ରାହ୍ମଣର ଉପାଖ୍ୟାନରୁ ଏହା ପ୍ରତିପାଦିତ ହୁଏ । ସୁରେଶ୍ୱର ପଣ୍ଡା ତପତି ନାମକ କୃଷାଣ ଦ୍ୱାରା କୃଷକାମ ଚଳାଉଥିଲା ।

"ଏଥିଅନ୍ତେ ବୈତରଣୀ ନାମେ ନଦୀକୂଳେ
ବେଦପୁର ବୋଲି ନଗ୍ର ଅଛି ସେହି ସ୍ଥଳେ ।
ସେ ନଗ୍ରରେ ସୁରେଶ୍ୱର ବୋଲିଣ ବ୍ରାହ୍ମଣ
କୃଷି କର୍ମ କରି କରେ ଜୀବିକା ପୋଷଣ ।
ତପତି ନାମରେ ଥିଲା ତାହାର କୃଷାଣ
ଲଙ୍ଗଳ ଘେନିଣ ଭୂମି କରଇ କର୍ଷଣ ।" (ସ୍ୱ ୨ ପୃ)

ତପତି କୃଷାଣର ବୃତ୍ତାନ୍ତରୁ ଜଣାଯାଏ ଯେ, ଏହିଭଳି ପର ଜମିରେ ମୂଲ ଲାଗୁଥିବା କୃଷକ ଉତ୍ପନ୍ନ ଦ୍ରବ୍ୟରୁ ଭାଗ ପାଉ ନ ଥିଲେ । ସେମାନେ କେବଳ ମାଲିକଠାରୁ ଅନ୍ନ, ବସ୍ତ୍ର ଓ ବରତନ (ବେତନ) ପାଉଥିଲେ । ଭୂମି ଉପରେ ସେମାନଙ୍କର କୌଣସି ଅଧିକାର ନ ଥିଲା । ଭୂମି ଥିଲା ସଂପୂର୍ଣ୍ଣଭାବରେ ମାଲିକର । ତପତିର ଉକ୍ତିରୁ ଏହା ସ୍ପଷ୍ଟ ।

"ବାରଚନା ବରତନେ ମୁଁ ସିନା କାରେଣୀ
ରାଜା ଗ୍ରାମୁରେ ଗୁହାରି କରିବ ଏ କ୍ଷଣି ।"
"କୃଷାଣ ବୋଇଲା କରି ପାରିବ କି ପାରି
ଅନ୍ନବସ୍ତ୍ର ବରତନେ ସିନା ଅଧିକାର ।
ଯେ ଭୂମିରୁ ଯେଉଁ ସବୁ ଉପୁଜାତ ହୁଏ
ଏହାଙ୍କର ସିନା ସେହି ବିଭ ନରରାୟେ ।" (୨୦)

ସେ କାଳରେ ଭୂମି-ମାଲିକ କୃଷକଙ୍କ ପ୍ରତି ଉତ୍ତମ ବ୍ୟବହାର କରୁ- ଥିଲେ । ସୁରେଶ୍ୱର-ତପତି ଉପାଖ୍ୟାନରୁ ତାହା ଉପଲବ୍ଧ ହୁଏ । ସୁରେଶ୍ୱରଙ୍କ ଜମିରେ ଅର୍କବୁଦା ଖୋଳିବାବେଳେ ତପତି ରତ୍ନଚୂଡ଼ି ପାଇଲା । ସୁରେଶ୍ୱର କୃଷାଣକୁ ତାହା ନେବାପାଇଁ ବାରମ୍ବାର କହିଲେ । ସେ ତାହା ଗ୍ରହଣ ନ କରିବାରୁ ବ୍ରାହ୍ମଣ ରାଜଦ୍ୱାରରେ ଅଭିଯୋଗ କଲେ । କୃଷକଗଣ ମଧ୍ୟ ନିର୍ଲୋଭ

ଓ ସାଧୁ ଥିଲେ । ତପନ୍ତ ସୁନାଚୂଡ଼ ନେବାକୁ ଅସ୍ୱୀକାର କରିବା କଥାରୁ ଏହା ପ୍ରତିପାଦିତ ହୁଏ । (ସ୍ୱ ୩ ପୃ)

ବଳରାମ ଦାସ 'ଦାଣ୍ଡି ରାମାୟଣ'ରେ ଅଛି ଯେ ସନ୍ଥ ପଣ୍ଡା ନାମକ ବ୍ରାହ୍ମଣ 'ବାଡ଼ବୃତ୍ତି'କୁ ଜୀବିକା କରି ବାସ କରୁଥିଲା । (୨୧) ଓଡ଼ିଆ ପ୍ରବଚନରେ ଅଛି—"ବ୍ରାହ୍ମଣ ଗୃହ ବେକରେ ଫାଶ ।" ଏହି ପ୍ରବଚନରୁ ସୂଚିତ ହୁଏ ଯେ, ବ୍ରାହ୍ମଣମାନେ ରଯୁତ ବା ମୂଲିଆଙ୍କ ଦ୍ୱାରା ଗୃହକାମ କରାନ୍ତି ଏବଂ ତାହା ଫଳରେ ଲାଭବାନ ହୋଇପାରନ୍ତି ନାହିଁ । (୨୨)

## (ଖ) କ୍ଷତ୍ରିୟ ଜାତି

ପ୍ରାଚୀନ କାଳରେ ଅସ୍ତ୍ରଶସ୍ତ୍ରଧାରଣ ଓ ପ୍ରଜାରକ୍ଷଣ କ୍ଷତ୍ରିୟମାନଙ୍କର ଜୀବିକା ଥିଲା । (୨୩) ଆପଦ କାଳରେ ସେମାନେ ମଧ୍ୟ ବୈଶ୍ୟବୃତ୍ତି କୃଷିକୁ ଜୀବିକା ରୂପରେ ଗ୍ରହଣ କରିପାରୁଥିଲେ । (୨୪)

ପଞ୍ଚଦଶ ଶତାବ୍ଦୀରେ କ୍ଷତ୍ରିୟମାନେ କୃଷିକୁ ଜୀବିକା ରୂପରେ ଗ୍ରହଣ କରିଥିବାର ଜଣାଯାଏ । କବି କହନ୍ତି ଯେ ଦଶରଥସେନ ରାଜା କୃଷି କରି ତାହାଙ୍କର ସୈନ୍ୟସାମନ୍ତଙ୍କୁ ବାରବର୍ଷ କାଳ ଭରଣ ପୋଷଣ କରିଥିଲେ । (ସାମ,ସ ୧୪୨ ପୃ) ବିରାଟ ରାଜା ତାଙ୍କର ପାତ୍ର, ମନ୍ତ୍ରୀ, ଯୋଦ୍ଧା ଓ ସାମନ୍ତଗଣଙ୍କୁ ଶତେହ ମାଣ ଲେଖାଏଁ ଭୂମି ପ୍ରଦାନ କରିଥିଲେ । ସେମାନେ ଗୃହବାସ କରି ଚଳାଚଳ ହେଉଥିଲେ ।

"ଜଣକରେ ଶତମାଣ ବରତନ ଭୂମି
ଏତେକ କଥା କରଇ ମତ୍ସ୍ୟଦେଶ ସ୍ୱାମୀ ।"
"ଅମନାତ୍ୟ ପାତ୍ର ଯୋଦ୍ଧା ହେଉନ୍ତୁ ପଦାତି
ସମସ୍ତ ସାମନ୍ତମାନେ କୃଷିକର୍ମେ ବର୍ତ୍ତୀ ।" (ବି୨୯ପୃ)

ଇତିହାସରୁ ଉପଲବ୍ଧ ହୁଏ ଯେ, ସୂର୍ଯ୍ୟବଂଶୀୟ ଓ ଗଙ୍ଗବଂଶୀୟ ରାଜାମାନଙ୍କ ଅମଳରେ ଉତ୍କଳର ପାଇକମାନେ ଶାନ୍ତିକାଳରେ ଗୃହ ଓ ଯୁଦ୍ଧକାଳରେ ଯୁଦ୍ଧ କରୁଥିଲେ ।

## (ଗ) ଶୂଦ୍ର ଜାତି

ଭାରତୀୟ ପରମ୍ପରା ଅନୁସାରେ ଶୂଦ୍ର ଜାତିର କୌଳିକ କର୍ମ ହେଉଛି—ଦ୍ୱିଜାତିର (ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ) ସେବା । (୨୬) ପରାଶର କହନ୍ତି ଯେ

ଶୂଦ୍ର କୃଷି, ବାଣିଜ୍ୟ ଓ ଶିଳ୍ପକୁ ମଧ୍ଧ ବୃତ୍ତି ରୂପରେ ଗ୍ରହଣ କରିପାରେ । (୨୭) କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ଶୂଦ୍ର ଜାତିର କୃଷିକର୍ମ ବିଷୟ ଉଲ୍ଲେଖ କରା ଯାଇଅଛି ।

ସାରଳା ଦାସଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ସେ କାଳରେ ଓଡ଼ିଶାରେ ଶୂଦ୍ରମାନେ କୃଷିକର୍ମଦ୍ୱାରା ଜୀବିକାର୍ଜ୍ଜନ କରୁଥିଲେ । ଅନନ୍ତା ନାମକ ବ୍ୟକ୍ତି ଗ୍ରାମବାସୀଙ୍କର ଜମି ଚାଷକରି କାଳାତିପାତ କରୁଥିଲା । (ଉ ୭୬ ପୃ) ଅନନ୍ତା ଜାତିରେ ଶୂଦ୍ର ଥିଲା ।

"ଅନନ୍ତା ଶୂଦ୍ରର ଆଗେ କହେ ସବୁ କଥା
ଚାରି ଲୋଡ଼ିଲେ ସମ୍ପଦ ଦିଅନ୍ତି ଦେବତା ।"
"ଅନନ୍ତ ଶୂଦ୍ର ମରନ୍ତେ ସରିଲା ଦୁର୍ଗତି
କାଞ୍ଚନଗିରେ ହୋଇଲା ସେ ରାଜଚକ୍ରବର୍ତ୍ତୀ ।" (ଉ ୭୬-୭୭ ପୃ)

ଯମଦେବତା ଯାଜପୁରର ହରିସାହୁଙ୍କୁ ଉପଦେଶ ଦେବାବେଳେ ଶୂଦ୍ର ପାପରୁ ଉଦ୍ଧାର ପାଇବା ପାଇଁ କୃଷି କରିପାରେ ବୋଲି ଦର୍ଶାଇଥିଲେ ।

"ଶୂଦ୍ର ପାପ କଲେ ପୁଣି କରିବ ସେ କୃଷି
ବୈଶ୍ୟ ପାପ କଲେ ମୁକ୍ତ ବାଟ ତ ନ ଦିଶି ।" (ସ୍ୱ ୧୦ ପୃ)

ସାରଳା ଦାସ ନିଜେ ଶୂଦ୍ର ଜାତିର ଲୋକ ଥିଲେ ବୋଲି ବହୁ ସ୍ଥଳରେ କହନ୍ତି । (୨୮) ସେ ମଧ୍ୟ କୃଷି କରୁଥିବାର ଜଣାଯାଏ ।

"ଦେବୀଙ୍କ ବାମ ପାଖେ ଅଛଇ ଏକ ଭୂମି
ଲଙ୍ଗଳ ପୁରାଇ ମୁଁ ଚଷୁଥିଲି ଜମି ।
ଯାଆନ୍ତି ସାଧୁମାନେ ଚଣ୍ଡୀଙ୍କ ଚରିତ
ନାନାବନ୍ଧରେ ମୁଁ ଗାଉଥିଲି ଗୀତ ।" (୨୯)

ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଉତ୍କଳମାନଙ୍କୁ ଶୂଦ୍ର ବୋଲି କହିଛନ୍ତି । ସେମାନଙ୍କର ପ୍ରଧାନ ବୃତ୍ତି ଥିଲା ଚାଷ କାର୍ଯ୍ୟ । (୩୦)

## ୨ । କେତେକ ରୀତିନୀତି

ସାରଳା ଦାସଙ୍କ ମହାଭାରତରେ ସଞ୍ଜା ଓ କରର ପରିମାଣ, ଜମିମାପ, କୃଷି-ଉପକରଣ, ଜଳସେଚନ, ଗୋଚରରକ୍ଷା, କୃଷକପ୍ରତି ସହାନୁଭୂତି, କୃଷିପ୍ରତି ରାଜାଙ୍କର ସତର୍କ ଦୃଷ୍ଟି, ଶସ୍ୟାଦିର ସଞ୍ଚୟ ଆଦି ବିଷୟରେ କେତେକ ବର୍ଣ୍ଣନା

ମିଳେ । ସେ ଯୁଗରେ କୃଷିକ୍ଷେତ୍ରରେ ପ୍ରଚଳିତ ଥିବା ରୀତିନୀତିର ପରିଚୟ ସେହି ବର୍ଣ୍ଣନାମାନଙ୍କରୁ ଉପଲବ୍ଧ ହୁଏ । ନିମ୍ନ ଆଲୋଚନାରୁ ତାହା ଜଣାଯିବ ।

## (କ) ସଞ୍ଜା ଓ କାଉ

ପ୍ରାଚୀନ ଭାରତରେ ରାଜା କୃଷକଠାରୁ ଉତ୍ପାଦନର ଷଡ଼ଭାଗ ସଞ୍ଜା ସ୍ୱରୂପ ଗ୍ରହଣ କରୁଥିବାର ଜଣାଯାଏ । ରାମାୟଣରେ କଥିତ ହୋଇଅଛି ଯେ, ରାଜା ଉତ୍ପାଦନର ଷଡ଼ଭାଗ ଗ୍ରହଣ କରି ପ୍ରଜାପାଳନ କରିବା କର୍ତ୍ତବ୍ୟ । (୩୧) ସଂସ୍କୃତ ମହାଭାରତ (୩୨) ଓ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ (୩୩) ଏହି ଷଡ଼ଭାଗ ସଞ୍ଜାର ଉଲ୍ଲେଖ ମିଳେ । ଆଲ୍‌ବିରୁଣୀଙ୍କ ବିବରଣୀରୁ ଜଣାଯାଏ ଯେ, ତାଙ୍କ କାଳରେ କୃଷକମାନେ ଏକ ଷଷ୍ଠାଂଶ ରାଜାଙ୍କୁ ପ୍ରଦାନ କରୁଥିଲେ । (୩୪) କିନ୍ତୁ ସେ ଯୁଗରେ ମଧ୍ୟ ରାଜଭାଗ ଓ ସଞ୍ଜାର ସ୍ଥିରତା ନ ଥିଲା । କୌଟିଲ୍ୟ କହନ୍ତି ଯେ ରାଜା ସଞ୍ଜା ରୂପରେ ଏକ ଚତୁର୍ଥାଂଶ ମଧ୍ୟ ଦାବୀ କରି ପାରନ୍ତି । (୩୫) ମନୁଙ୍କ ମତରେ ରାଜା ଷଷ୍ଠାଂଶ, ଅଷ୍ଟମାଂଶ ବା ଦ୍ୱାଦଶାଂଶ ଗ୍ରହଣ କରିବା ଉଚିତ । (୩୬)

ସାରଳା ଦାସଙ୍କ ଯୁଗରେ ରାଜାମାନେ ପ୍ରଜାମାନଙ୍କଠାରୁ ଅଧିକ ପରିମାଣରେ ସଞ୍ଜା ଗ୍ରହଣ କରୁ ନ ଥିଲେ । ଶୁଦ୍ଧ ମହାରାଜା ପ୍ରଜାମାନଙ୍କଠାରୁ ଅଳ୍ପ ପରିମାଣରେ ସଞ୍ଜା ଗ୍ରହଣ କରୁଥିବାରୁ ତାଙ୍କ ରାଜ୍ୟର ପ୍ରଜାମାନେ ସର୍ବଦା ସୁଖୀ ଥିଲେ । ତାଙ୍କ ଶାସନରେ ଦାରିଦ୍ର୍ୟ ଦେଖା ନ ଥିଲା ।

"ତା ରାଜ୍ୟେ ପରଜାଗଣ ସଦା ମହା ସୁଖୀ
ସମସ୍ତେ ତ ଧନବନ୍ତ ଜଣେ ନାହିଁ ଦୁଃଖୀ ।" (ଖ୍ର୮୨ପୃ)

ସେ କାଳର ଉତ୍କଳରେ ରାଜଭାଗର ପରିମାଣରେ କୌଣସି ସ୍ଥିରତା ନ ଥିଲା । କବି ଭିନ୍ନ ଭିନ୍ନ ସ୍ଥଳରେ ବିଭିନ୍ନ ପରିମାଣ ସଞ୍ଜାର ଉଲ୍ଲେଖ କରିଯାଇ ଅଛନ୍ତି । ଦୁର୍ଯୋଧନ ଉତ୍ପନ୍ନ ଦ୍ରବ୍ୟର ଅଶୀଭାଗ ପ୍ରଜାଙ୍କୁ ଦେଇ ନିଜେ ବିଂଶ ଭାଗ ସଞ୍ଜା ରୂପରେ ଗ୍ରହଣ କରୁଥିଲେ ବୋଲି ସେ ଦର୍ଶାଇ ଅଛନ୍ତି ।

"ପୃଥିବୀରେ ଯେତେ ଶସ୍ୟ ଉପୁଜାନ୍ତି ପ୍ରଜା
ବାଣ୍ଟିକେ ବିଂଶଭାଗେ ସେ ଦେଉଥାନ୍ତି ସଞ୍ଜା ।" (ଆ୨୦୧ପୃ)

ରାଜା ନହୁଷ ଅସ୍ତ୍ରକାର ପୁରୁଷମାନଙ୍କୁ ଆଠଭାଗ ମାତ୍ର ସଞ୍ଜା ସ୍ୱରୂପ ଗ୍ରହଣ କରିବା ପାଇଁ ଆଦେଶ ଦେଇଥିଲେ ।

"ଅଷ୍ଟୋତ୍ତର ଶତଭାଗ କରିବ କୃଷି
ରାଜା ନେବେ ଆଠଭାଗ ପ୍ରଜାନେବେ ଅଶୀ ।
ଦୁହିଁଙ୍କ ଭାଗରୁ ବଂଶ ଭାଗ ଯେ ରଖିବ
ସେ ଭାଗକେ ନେଇ କ୍ଷେତେ ବହନ ବୁଣିବ ।" (ବ୭୦ପୃ)

ସାରଳା ଦାସଙ୍କ କାଳରେ କର ଶସ୍ୟାକାରରେ ଆଦାୟ କରାଯାଉଥିଲା । ବାଟିକ ଜମିରୁ ଗୃହ ପୌଟି ସଞ୍ଜା ଗ୍ରହଣ କରିବା ପାଇଁ ଯୁଧିଷ୍ଠିର ଦୋଷିତଙ୍କୁ ଉପଦେଶ ଦେଇଥିଲେ ।

"ବିଂଶତ ଦଣ୍ଡ ଯେବେ ହେଲ ଏକ ବାଟି
ଏଥିରୁ ଘେନବୁ ସଞ୍ଜା ପାଞ୍ଚ ଯେ ପଉଟି ।
ଗୃହ ପଉଟି ଆଣିବୁ ଆପଣା ଭଣ୍ଡାରେ
ପଉଟିଏ ଖାଜ ଥିବ ପୁଣି ସେ ଗ୍ରାମରେ ।" (ସ୍ୱ୨ପୃ)

ପ୍ରଜା ଶସ୍ୟାକାରରେ କର ନ ଦେଇ ସୁବର୍ଣ୍ଣ ଆକାରରେ କର ଦେଇ ପାରୁଥିଲେ । ଏହି ପରିମାଣ ସେ ଯୁଗରେ କେତେ ଥିଲା ତାହା କବି-ଲେଖମାରୁ ସଠିକ ଭାବରେ ଜଣାଯାଏ ନାହିଁ । ତେବେ କର ପରିମାଣ ଯେ ଅଧିକ ନ ଥିଲା ତାହା କବିଙ୍କ ବର୍ଣ୍ଣନାରୁ ଉପଲବ୍ଧ ହୁଏ । ରାଜା ନହୁଷ ଶବ୍ଦେ ମାଣ ଜମିରୁ (ପାଞ୍ଚବାଟି) ଏକ ଟଙ୍କା ସୁନା କର ସ୍ୱରୂପ ଗ୍ରହଣ କରୁଥିଲେ ବୋଲି କବି କହନ୍ତି । (୩୭) ନଳରାଜା ମାଣେ ଭୂମିରୁ ଏକ ଟଙ୍କା କର ନେଉଥିଲେ । (୩୮) କଣସୁବନ୍ଦ ରାଜା ମଧ ମାଣେ ଜମିରୁ ଏକଟଙ୍କା କର ସ୍ୱରୂପ ଗ୍ରହଣ କରୁଥିଲେ । (୩୯) ଭୀଷ୍ମ ବାଟିକରେ ଏକଟଙ୍କା କର ନେବାକୁ ଯୁଧିଷ୍ଠିରଙ୍କୁ ଉପଦେଶ ଦେଇଥିଲେ । (୪୦) କୃତଶେଖର ରାଜା ବାଟିକରୁ ପାଞ୍ଚଟଙ୍କା ସୁନା କର ସ୍ୱରୂପ ଗ୍ରହଣ କରୁଥିଲେ । (୪୧)

ଏକ ଟଙ୍କାର ମୂଲ୍ୟ ପନ୍ଦର ଅଣା । (୪୨) ସେହି ହିସାବରେ ନଳ ଓ କଣ୍ସୁବନ୍ଦଙ୍କ କରର ପରିମାଣ ତିନଅଣା ତିନ ପଇସା, ନହୁଷଙ୍କ କର ପରିମାଣ ଦୁଇ ପାହୁଲ ହେଉଅଛି । ମାଦଳା ପାଞ୍ଜିରେ ରାଜକେଶରୀଙ୍କ କାଳରେ କର ମାଣ ପ୍ରତି ଏକ କାହାଣ ଥିଲା ବୋଲି ଉକ୍ତ ହୋଇଅଛି । (୪୩) ଏକ କାହାଣ କଉଡ଼ି ଟଙ୍କାରେ ଚାରିଅଣା ସହ ସମାନ । (୪୪) ତେଣୁ ଅନୁମିତ ହୁଏ ଯେ ସେତେବେଳେ କର ମାଣପ୍ରତି ପ୍ରାୟ ଚାରିଅଣା ଥିଲା । ଏହା ପ୍ରାୟ କୃତଶେଖର ରାଜାଙ୍କ ରାଜସ୍ୱ ପରିମାଣ ସଙ୍ଗେ ସମାନ ।

ସେ କାଳରେ ରାଜସ୍ୱ ବର୍ଷକୁ ଥରେ ମାତ୍ର ଆଦାୟ କରାଯିବାର ବିଧି ଥିଲା । ଏଥିରୁ ଅଧିକ ଆଦାୟ କଲେ ରାଜା ନିନ୍ଦିତ ଓ ପାପଭାଗୀ ହେଉଥିଲେ । ପ୍ରଜାମାନେ ଦାରିଦ୍ର୍ୟର ଶୀକାର ହୋଇ ପଡ଼ୁଥିଲେ । କଣ୍ଠୁରିବନ୍ଦ୍ର ରାଜା ଦୁଇଥର କର ଆଦାୟ କରିବାରୁ ତାଙ୍କର ପ୍ରଜାଗଣ ଦରିଦ୍ର ହୋଇ ଯାଇଥିଲେ ।

"ମାଣେ ଭୂମିକ ତିନାଏ କର ଦ୍ୟନ୍ତି ଗୃଷୀ ।
ବରଷେ ପର୍ଯ୍ୟନ୍ତ ରାଜା ନଏ ଦୁଇରାଶି ।
ଏପରି ଅର୍ଥ ନେବାରୁ ସେହି ନରନାଥ
ସୁଖ ତେଜି ପ୍ରଜାମାନେ ଦରିଦ୍ର ସମସ୍ତ ।" (ବ୨୦୫ପୃ)

ଇତିହାସରୁ ଜଣାଯାଏ ଯେ, ଗଙ୍ଗ ଓ ସୂର୍ଯ୍ୟବଂଶର ରାଜତ୍ୱ କାଳରେ ଶସ୍ୟ ବା କଉଡ଼ି ଆକାରରେ କର ଆଦାୟ କରାଯାଉଥିଲା । (୪୫) ଭୂମିର ଉତ୍ପାଦନକୁ ବିଗ୍ଭର କରି ଓଡ଼ିଶାର ପ୍ରଜାପାଳକ ଗଜପତି ରାଜାଗଣ ପ୍ରଜାମାନଙ୍କ ଉପରେ କରଧାର୍ଯ୍ୟ କରୁଥିଲେ । ରାଜା ଅନଙ୍ଗଭୀମ ଏହି ମର୍ମରେ ସାମନ୍ତ ରାଜାମାନଙ୍କୁ ଆଦେଶ ଦେଇଥିଲେ—"ପୁଷ୍ଟି ନଷ୍ଟି ଦେଖି କର ଘେନି ପରଜାଙ୍କୁ ପାଳନ କରି ସୁଖେ ସ୍ୱର୍ଗକୁ ଯିବ ।" (୪୬)

## (ଖ) ଜମିମାପ ଓ ଭୂବନ୍ଦୋବସ୍ତ

ସେ କାଳରେ ରାଜାମାନେ ଭୂମିର ଜରୀବ କରାଉଥିଲେ ଏବଂ ତଦନୁଯାୟୀ କରଧାର୍ଯ୍ୟ କରୁଥିଲେ । ଜମିର ପରିମାଣ ବାଟି, ମାଣ ଓ ଗୁଣ୍ଠରେ ନିରୂପିତ ହେଉଥିଲା । ଯୁଧିଷ୍ଠିର ପରୀକ୍ଷିତଙ୍କୁ ଅଭିଷେକ ସମୟରେ ଦେଇଥିବା ଉପଦେଶ, ଭୀଷ୍ମ ଯୁଧିଷ୍ଠିରଙ୍କୁ ଦେଇଥିବା ପରାମର୍ଶ ତଥା ଦୁର୍ଯ୍ୟୋଧନଙ୍କ ରାଜ୍ୟାଭିଷେକ ବର୍ଣ୍ଣନାରୁ ଏହା ଅବଧାରିତ ହୁଏ । ଯଥା:—

"ଆପଣାର ଶ୍ରୀକରରେ ମାପିଲେ ଯୁଧିଷ୍ଠି
ବାରଦଣ୍ଡ ହୋଇଲା ଯେ ସେହି ନଳକାଠି ।
ଦୀର୍ଘ ଚଉଦ ହୋଇବ ପ୍ରସ୍ଥ ହେବ ବଂଶ
ଏକେକ ହୋଇଲେ ହେବ ଏକ ବାଟି ଦୃଷ ।" (ସ୍ୱ୨ପୃ)
"ବଂଶ ହାତରେ କରିବୁ ଏକ ନଳକାଠି
ପଞ୍ଚବଂଶ ଗୁଣ୍ଠେ ମାଣ ବଂଶ ମାଣେ ବାଟି ।" (୪୭)
"ଆପଣା କର ପ୍ରମାଣେ କାଠି ଦେଲେ କାଟି
ପଞ୍ଚବଂଶ ହାତେ ଉଆଇଲେ ନଳକାଠି ।" (୪୮)

ଏଠାରେ ଉଲ୍ଲେଖଯୋଗ୍ୟ ଯେ ସାରଳା ଦାସ ନଳର ଯେଉଁ ବିଭିନ୍ନ ମାପ ବର୍ଣ୍ଣନା କରିଅଛନ୍ତି ତାହା ସଠିକ ନୁହେଁ । କାରଣ ଲୀଳାବତୀ ସୂତ୍ର ଅନୁସାରେ ନଳକ ବାର ହାତ ଅଟେ । (୪୯) ଆଧୁନିକ ମାପରେ ନଳକ ଦଶଫୁଟ ଆଠଇଞ୍ଚ ଧରାଯାଏ । (୫୦) କବିଙ୍କ ଉପରଲିଖିତ ଉକ୍ତି ଅନୁସାରେ ନଳକ ବାର ଦଣ୍ଡ ବା ଅଠଚାଳିଶ ହାତ; କୋଡ଼ିଏ ହାତ ବା ପଚିଶ ହାତ । କବିଙ୍କ ବର୍ଣ୍ଣନାରୁ କେବଳ ଅବଧାରିତ ହୁଏ ଯେ ସେ କାଳରେ ବିଭିନ୍ନ ମାପ ପ୍ରଚଳିତ ଥିଲା । ଆଧୁନିକ ଯୁଗରେ ମଧ୍ୟ ନଳମାପ ସର୍ବତ୍ର ସମାନ ନୁହେଁ । ପୁରୀ ରାହାଙ୍ଗ ପ୍ରଗଣାର ନଳମାପ କଟକରେ ପ୍ରଚଳିତ ନଳମାପଠାରୁ ପୃଥକ୍ ଅଟେ । (୫୧)

ଇତିହାସରୁ ଉପଲବ୍ଧ ହୁଏ ଯେ, ଅନଙ୍ଗଭୀମ ଦେବଙ୍କ କାଳରେ ସମଗ୍ର ଉତ୍କଳ ସାମ୍ରାଜ୍ୟର ଭୂ ବନ୍ଦୋବସ୍ତ ନଳ ସାହାଯ୍ୟରେ କରାଯାଇଥିଲା । (୫୨) ମାଦଳା ପାଞ୍ଜିରେ ଅନଙ୍ଗଭୀମ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ନଳ କରିଥିବା କଥା ରହିଛି । (୫୩) ପୁରୁଷୋତ୍ତମ ଦେବଙ୍କ କାଳର ତାମ୍ରପଟା ସନନ୍ଦ-ମାନଙ୍କରେ ବାଟିର ଉଲ୍ଲେଖ ମିଳେ । (୫୪)

## (ଗ) କୃଷି ଉପକରଣ

ବଳଦ, ହଳ ଓ ଲଙ୍ଗଳଦ୍ୱାରା କୃଷିକାମ କରିବା ଭାରତରେ ବହୁ ପ୍ରାଚୀନ ରୀତି । ଋକ୍ ବେଦରେ ହଳର ବହୁ ଉଲ୍ଲେଖ ଅଛି । ସେଥିରୁ ଜଣାଯାଏ ଯେ ବେଦଯୁଗରେ ବଡ଼ ବଡ଼ ହଳ ଥିଲା ଏବଂ ଚବିଶ ଗୋଟି ବଳଦଙ୍କ ସାହାଯ୍ୟରେ ତାହା ପରିଚାଳିତ ହେଉଥିଲା । (୫୫) ପାଣିନିଙ୍କ ଅଷ୍ଟାଧ୍ୟାୟୀରେ ହଳ, ହଳଯୁକ୍ତି, ହଳି (ଏକପ୍ରକାର ବୃହତ୍ ହଳ) ଶବ୍ଦର ପ୍ରୟୋଗ ଦେଖାଯାଏ । (୫୬) ପାତଞ୍ଜଳଙ୍କ ମହାଭାଷ୍ୟରେ ସୀର (ହଳ ବା ଲଙ୍ଗଳ), ଲଙ୍ଗଳଗ୍ରାହ (ସାଧାରଣ କୃଷକ) ଶବ୍ଦ ନିହିତ । (୫୭) କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ହଳ ଓ ବଳଦର ଉଲ୍ଲେଖ ମିଳେ । (୫୮) ସଂସ୍କୃତ ରାମାୟଣରେ ବଳଦ (୫୯) ଓ ଲଙ୍ଗଳର (୬୦) କଥା ଅଛି । ପରାଶର ସ୍ମୃତିରେ ଆଠଗୋଟି ବଳଦଯୁକ୍ତ ହଳକୁ ଧର୍ମହଳ, ଛଅଗୋଟି ବଳଦଯୁକ୍ତ ହଳକୁ ବୃତ୍ତିକ ଆଖ୍ୟା ଦିଆଯାଇଅଛି । ସେଥିରୁ ଜଣାଯାଏ ଯେ ସେ କାଳରେ କାଷ୍ଠନିର୍ମିତ ହଳ ବ୍ୟବହାର କରାଯାଉଥିଲା (୬୧)

ପଞ୍ଚଦଶ ଶତାବ୍ଦୀରେ ଓଡ଼ିଶାରେ କୃଷିକାର୍ଯ୍ୟ ପୂର୍ବବତ୍ ହଳ, ବଳଦ ଓ ଲଙ୍ଗଳ ସାହାଯ୍ୟରେ ସଂପାଦିତ ହେଉଥିଲା । କବି-ଲେଖମାନରେ ଏହାର ପରିଚୟ ମିଳିଥାଏ । ଶୂଦ୍ରକ ରାଜାଙ୍କ ହଳ, ଲଙ୍ଗଳ ଓ ବଳଦ ନେଇ ଭୃଙ୍ଗଭଦ୍ରା ନଦୀକୂଳରେ ଗଶିଗୃଷ କରିଥିଲେ ବୋଲି ସାରଳା ଦାସ ବର୍ଣ୍ଣନା କରିଛନ୍ତି ।

"ଲଙ୍ଗଳ ଗୃରିଗୋଟିକୁ ଯୋଗୁଇ ଘେନିଲା
କୃଷିକାଶଙ୍କୁ ଲଗାଇ ବାହୁଡ଼ି ଅଇଲା ।"
"ହଳ ଗୁଡ଼ି ସର୍ବେ କେଶ ବାସ ଅସମ୍ଭାଳେ
ଭୂତ ପରାୟେ ନାଚଲେ ଅତି କୁତୂହଳେ ।
ବଳଦ ପଳାଇଗଲେ ଯୁଆଳି କି ଘର୍ଗି
ଉଅନ୍ତି କୃଷାଣମାନେ ପାଇ ଭୂତସଙ୍ଗୀ ।"(ଉ୫୨ପୃ)

କିମ୍ବଦନ୍ତୀରୁ ଜଣାଯାଏ ଯେ, ସାରଳା ଦାସ ନିଜେ ହଳ କରୁଥିଲେ ଏବଂ ବଳଦଙ୍କ ପ୍ରୋତ୍ସାହନ ପାଇଁ ଗୀତ ଗାଉଥିଲେ । (୬୨) ତାଙ୍କର ବର୍ଣ୍ଣନାରେ କିମ୍ବଦନ୍ତୀର ଅନୁରୂପ ଶବ୍ଦମିଳେ ।

"ଦେବୀଙ୍କ ବାମପାଖେ ଅଛଇ ଏକ ଭୂମି
ଲଙ୍ଗଳ ପୁରାଇ ମୁଁ ଚଷୁଥିଲି ଜମି
ପ୍ରାନ୍ତେ ସାଧୁମାନେ ଚଷାଙ୍କ ଚରିତ
ନାନାବନ୍ଧରେ ମୁଁ ଗାଉଥିଲି ଗିତ ।" (୬୩)

ବଳରାମ ଦାସଙ୍କ 'ଦାଣ୍ଡି ରାମାୟଣ'ରେ ବଳଦଙ୍କ ଦ୍ୱାରା ଗୃଷ କରା-ଯାଉଥିବା କଥା କୁହାଯାଇଅଛି । (୬୪) ଓଡ଼ିଶାରେ ପ୍ରଚଳିତ 'ଚଷାଗୀତ'ରେ ହଳ, ଲଙ୍ଗଳ ଓ ବଳଦଙ୍କ ଶବ୍ଦ ମିଳେ । ଯଥା—

"ରାତି ଅଧରାରୁ ଯୋଚି ମୁଁ ଦେଲି ହଳ
ବିଲକୁ ଯାଉ ଯାଉ ପହଣ୍ଡେ ହେଲା ବେଳରେ ।
ଲଙ୍ଗଳ ଫାଳ ଦେଇରେ କଣ୍ଟିରେ ଦେଲି ହାତ
ପଛକୁ ଅନାଇଲି ଆସୁ ତ ଅଛି ଭାତ ।
ଭାତ ତ ଆସୁଅଛିରେ ତୋରାଣୀ କାହିଁ ନାହିଁ
ହଡ଼ାକୁ ପେଲି ପେଲିରେ ଦେହେ ମୋ ଜ୍ଞାନ ନାହିଁ । (୬୫)

କୋଡ଼ ଓ କୋଦାଳ କୃଷିର ଅନ୍ୟତମ ଉପକରଣଥିଲା । ତପନ୍ତ ନାମକ କୃଷାଣ ସୁରେଶ୍ୱର ପଣ୍ଡାଙ୍କ ଜମିରେ କୋଡ଼-କୋଦାଳ ସାହାଯ୍ୟରେ କାର୍ଯ୍ୟ କରୁଥିବାର ଏକ ଚିତ୍ର କବି ପରିବେଷଣ କରିଅଛନ୍ତି ।

"ତପନ୍ତ ନାମରେ ଥିଲା ତାହାର କୃଷାଣ
ଲଙ୍ଗଳ ଘେନିଣ ଭୂମି କରଇ କର୍ଷଣ ।
ଲଙ୍ଗଳ ପିଠାନ୍ତେ ପଣ୍ଡା ଦେଲେକ କୋଦାଳ
ବୋଇଲେ କ୍ଷେତ୍ରରେ ତଠ କର ସମତୁଲ ।"
"ହାତେଣ୍ଟେ ପାଷାଣେ ଯାଇ ଲାଗିଲାକ କୋଡ଼
ପାଷାଣ କାଟି ହଅନ୍ତେ ପାଏ ଚନ୍ଦ୍ରଚୂଡ଼ ।" (ସ୍ୱ୨ପୃ)

## (ଘ) ଶସ୍ୟାଦିର ମାପ

ଉତ୍କଳରେ ଶସ୍ୟର ମାପ ପାଇଁ ମାଣ, ନଉତି, ପୌଟି ଆଦିର ବ୍ୟବହାର କରାଯାଉଥିଲା । କବିଙ୍କ ବର୍ଣ୍ଣନାରେ ଏହି ସମସ୍ତ ମାପ ପାତ୍ରର ଉଲ୍ଲେଖ ଦେଖାଯାଏ । ଯଥା —

"ପରଷନ୍ତି ଆଟିକାକ ଅନ୍ନ ଗୋସାମଣୀ
ଯେସନେକ ନଉତିରୁ ଦେଉଅଛୁ ଆଣି ।" (୭୬)
"ହାଟରେ ନିରମାଣ ଭୂମି ଏକ ବାଟି
ବାଟିକେ ଦେବେ ଯେ ତଣ୍ଡୁଳ ଏକ ଯେ ପଉଟି ।" (୭୭)
"ଦୁଇ ମାଣ ଦୁଇ ବୋଡ଼ ହୁଅଇ ଆହାର
ତିନ ମାଣ ତିନ ବୋଡ଼ ବଞ୍ଚଇ ଆମ୍ଭର ।" (ଉ୭୭ପୃ)

ଓଡ଼ିଶାରେ ଏବେ ବି ମାଣ, ନୌତି ଓ ପୌଟି ଆଦି ଚଳେ । ପୌଟିକର ପରିମାଣ ଗ୍ରାମ୍ୟ ନୌତି ବା ଗୌଣି ବୋଲି ଧରାଯାଏ । ନରସିଂହ ଦେବଙ୍କ (୧ମ) କାଳର ଲିଙ୍ଗରାଜ ମନ୍ଦିରରେ ଉତ୍କୀର୍ଣ୍ଣ ହୋଇଥିବା ଶିଳା ଲେଖରେ ପୌଟିରେ ଧାନ ମାପ ହେବାର ଉଲ୍ଲେଖ ଦେଖାଯାଏ । (୭୮)

## (ଙ) ଜଳସେଚନ

ପ୍ରାଚୀନ ଭାରତରେ ଜଳସେଚନ ପାଇଁ ବ୍ୟବସ୍ଥା ଥିବାର ଉପଲବ୍ଧି ହୁଏ । ଋକ୍‌ବେଦ ଯୁଗରେ କେନାଲଦ୍ୱାରା ଜଳସେଚନ କରାଯାଉଥିଲା । (୭୯)

ସଂସ୍କୃତ ମହାଭାରତରେ ରାଜ୍ୟର ପ୍ରତ୍ୟେକ ପ୍ରାନ୍ତରେ ପୁଷ୍କରିଣୀ ଖନନ କରାଯିବା ବର୍ଣ୍ଣନା ମିଳେ । (୭୦) ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ କାଳରେ ଜଳସେଚନ ରାଜାଙ୍କ କର୍ତ୍ତବ୍ୟ ମଧ୍ୟରେ ପରିଗଣିତ ହେଉଥିଲା । ସେ ଯୁଗରେ ନିର୍ମିତ କେନାଲର ଭଗ୍ନାବଶେଷ ଅଦ୍ୟାପି ପରିଦୃଷ୍ଟ ହୁଏ (୭୧) କୁଶାଣବଂଶର ରାଜତ୍ୱ କାଳରେ ମଧ୍ୟ କେନାଲଦ୍ୱାରା ଜଳସେଚନ ପାଇଁ କୃତ୍ରିମ ଜଳଭଣ୍ଡାର ମାନ ଖୋଦିତ ହେଉଥିଲା । (୭୨) ମେବାରର ରାଣା ରାଜସିଂହ ଜଳସେଚନ ପାଇଁ ଯେଉଁ କୃତ୍ରିମ ଜଳଭଣ୍ଡାର ଖୋଦନ କରାଇଥିଲେ ଏବେ ବି ତାହାର ଚିହ୍ନ ଦେଖାଯାଏ । (୭୩) ମଧ୍ୟଯୁଗରେ ଜଳସେଚନ ପାଇଁ ଦକ୍ଷିଣ ଭାରତରେ ନଦୀବନ୍ଧ, ନାଳ ଓ ବୃହତ୍ ପୁଷ୍କରିଣୀମାନଙ୍କର ବନ୍ଦୋବସ୍ତ କରାଯାଉଥିବାର ଜଣାଯାଏ । (୭୪)

ଉତ୍କଳରେ ସେ ଯୁଗରେ ଜଳସେଚନର ବ୍ୟବସ୍ଥା ହେଉଥିବାର ଜଣାଯାଏ । ସାରଳାଙ୍କ ଲେଖାମାରେ ଏହାର କେତେକ ପରିଚୟ ମିଳେ । ଅଙ୍ଗ ଦେଶର ରାଜା ଲୋମପାଦ ରାଜ୍ୟରେ ବୃଷ୍ଟି ନ ହେବାରୁ ନଦୀରୁ ଝଣା ବା ନାଳ ଖୋଳାଇଥିଲେ ବୋଲି କବି ଲେଖିଛନ୍ତି ।

"ନଦୀରୁ ଖଣା ଖୋଳାଇ ଆଣିଲା ନୃପତି
ବୁଲାଇଲା ଜଳ ତାର ରାଜ୍ୟେ ପ୍ରତି ପ୍ରତି ।" (ବ୨୩୨ପୃ)

କରମଣ୍ଡଳ ଦେଶର ରାଜା କୃତଶେଖର ନିଜ ଗଡ଼ର ଗୁର ପାଖରେ ଯମୁନାରୁ ଧାର କାଟି ଆଣି ସୁଗଭୀର ଖଣା ବା ନାଳ ଖନନ କରାଇଥିଲେ ।

"ଆବର କଥାଏ ତହିଁ କରିଛୁ ଶ୍ରବଣ
ଗଡ଼ ଗୁରପାଖେ ଝଣା ଖୋଳାଇଛୁ ଜାଣ ।
ସାତ ତାଳ ଯେ ଗଭୀର ଥଳକୂଳ ନାହିଁ
ଯମୁନା ନଦୀରୁ ଧାର ବୁହାଇଛୁ ତହିଁ ।" (୭୫)

ସେ କାଳରେ ଜଳସେଚନ ପାଇଁ ପୁଷ୍କରିଣୀ ମଧ୍ୟ ଖନନ କରାଯାଉଥିଲା । କବି ବନ ପର୍ବରେ ଅନ୍ଧକ ନାମକ ସରୋବର ଥିବା କଥା ଉଲ୍ଲେଖ କରିଛନ୍ତି ।

"ଅନ୍ଧକ ସରୋବର ସୁଦେବ ଗିରିତଳ
ପନ୍ଦର କୋଶ ବିସ୍ତାରେ ରହିଅଛି ଜଳ ।" (ବ୧୦୧ପୃ)

ଓଡ଼ିଶାର ରାଜାମାନେ କୃଷିର ସୁବିଧା ପାଇଁ ନାଳ ବା କେନାଲ ଖୋଦନ କରାଉ ଥିବାର ଜଣାଯାଏ । ନନ୍ଦବଂଶୀୟ ରାଜା ନନ୍ଦବର୍ଦ୍ଧନ କୃଷି ତଥା ବାଣିଜ୍ୟର ସୁବିଧା ନିମିତ୍ତ ଓଡ଼ିଶାରେ ଗୋଟିଏ କେନାଲ ଖୋଳାଇଥିଲେ । ନନ୍ଦ

ବର୍ଦ୍ଧନଙ୍କ ରାଜତ୍ୱର ପ୍ରାୟ ତିନିଶହ ବର୍ଷ ପରେ ଐରବଂଶୀୟ ସମ୍ରାଟ ଖାରବେଳ ସେହି କେନାଲକୁ ତନସୁଲିଆଠାରୁ ବୃଦ୍ଧି କରାଇ ନିଜ ରାଜଧାନୀକୁ ନେଇଥିଲେ । ଐତିହାସିକ ମାନେ ଅନୁମାନ କରନ୍ତି ଯେ, ଏହାହିଁ ବର୍ତ୍ତମାନର ଦୟାନଦୀ । (୭୬) ଖାରବେଳଙ୍କ ଶିଳାଲିପିରୁ ଜଣାଯାଏ ଯେ, ତାଙ୍କ କାଳରେ ପୁଷ୍କରିଣୀ ଓ ନାଳ ଖନନ କାର୍ଯ୍ୟରେ ପଞ୍ଚତ୍ରିଂଶ ଲକ୍ଷ ମୁଦ୍ରାର ବିନିଯୋଗ କରାଯାଇଥିଲା । (୭୭) ମାଦଳା ପାଞ୍ଜିରୁ ଉପଲବ୍ଧ ହୁଏ ଯେ, ଉତ୍କଳର ପ୍ରଜାପାଳକ ରାଜାଗଣ ନାଳ, କୂପ ଓ ପୁଷ୍କରିଣୀମାନ ବରାବର ଖନନ କରାଉଥିଲେ । (୭୮)

## (ଚ) ଗୋଚର ରକ୍ଷା

ବଳଦ ସେ କାଳରେ କୃଷି ପାଇଁ ବ୍ୟବହାର କରାଯାଉଥିଲା । ତେଣୁ ଗୋପାଳନ ସମାଜରେ ଅପରିହାର୍ଯ୍ୟ ଥିଲା । ସେମାନଙ୍କ ନିମିତ୍ତ ଚାରଣ ଭୂମିର ଆବଶ୍ୟକତା ରହିଥିଲା । ତେଣୁ ରାଜାମାନେ ଗୋଚର ଓ ଗୋପଥ ରଖିବାର ବ୍ୟବସ୍ଥା କରୁଥିଲେ । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ଗୋଚର ଭୂମିର ବ୍ୟବସ୍ଥା କରିବା ରାଜାଙ୍କର କର୍ତ୍ତବ୍ୟ ବୋଲି କୁହାଯାଇଅଛି । (୭୯)

ସାରଳା ଦାସଙ୍କ ଯୁଗରେ ଗୋଚର ବା ଗୋଦାଣ୍ଡାର ବ୍ୟବସ୍ଥା ଥିଲା । ଭୀଷ୍ମ ଯୁଧିଷ୍ଠିରଙ୍କୁ ଏହାର ବ୍ୟବସ୍ଥା କରିବାପାଇଁ ଉପଦେଶ ଦେଇଥିଲେ ।

"କୃଷି କର୍ମକାରି ଜନେ ନ ଛଣ୍ଡିବୁ ଧନ
ଗୋଚର ନିମନ୍ତେ ଛାଡ଼ିଦେବୁ ବହୁ ସ୍ଥାନ ।" (ଶା୨ପୃ)

ରାଜା ଦୁର୍ଯ୍ୟୋଧନ ଗୋଚର ଓ ଗୋଦାଣ୍ଡାରୁ ରାଜସ୍ୱ ନେଉ ନଥିବା କଥା କବି ଦର୍ଶାଇଅଛନ୍ତି ।

"ଗୋଚର ଗୋଦାଣ୍ଡ ଛାଡ଼ି ଉଠିଆ ଯେ ଭୂମି
ତହିଁରୁ କର ଆଦାୟ କଲେ ଦେବ ସ୍ୱାମୀ ।" (ଆ୨୦୧ପୃ)

ଲୋକେ ଗୋଚର ଭୂମିକୁ ଚାଷ କରୁ ନ ଥିଲେ । ଗୋଚରକୁ ଚାଷ କରିବା ପାପ କାର୍ଯ୍ୟ ବୋଲି ସେମାନେ ମନେ କରୁଥିଲେ । ଭୀଷ୍ମଦେବ ଦୁର୍ଯ୍ୟୋଧନଙ୍କୁ ସେହି ମର୍ମରେ ଉପଦେଶ ଦେଇଥିଲେ—

"ଅସୁର ଭୋଗ ଭୂମିରେ ନ କରି ଆଶ୍ରମ
ଗୋଦାଣ୍ଡାକୁ ଚାଷକଲେ ସରେ ସବୁ ଧର୍ମ ।" (୮୦)

କପିଳେନ୍ଦ୍ର ଦେବ ପ୍ରତ୍ୟେକ ଗ୍ରାମରେ ଗୋଚାରଣ ନିମିତ୍ତ ପଡ଼ିଆ ଜମିର ବ୍ୟବସ୍ଥା କରିଥିଲେ । ସେ ସେହି ଜମିରେ କୃଷି କରିବା ଏକାବେଳକେ ବନ୍ଦ କରି ଦେଇଥିଲେ । (୮୧) ଜଗନ୍ନାଥ ମନ୍ଦିରର ଜୟବିଜୟ ଦ୍ୱାରରେ ଥିବା ଏକ ଶିଳାଲିପିରୁ ଜଣାଯାଏ ଯେ, ପୁରୁଷୋତ୍ତମ ଦେବ ଗୋଚାରଣ ପାଇଁ ଉଦ୍ଦିଷ୍ଟ ଥିବା ଜମିକୁ ହରଣ ନ କରିବା ପାଇଁ ନିର୍ଦ୍ଦେଶ ପ୍ରଦାନ କରିଥିଲେ । (୮୨) ଅନଙ୍ଗ-ଭୀମ ଦେବ ରାଜସ୍ୱ ଧାର୍ଯ୍ୟ କଲାବେଳେ ଦଣ୍ଡା ଓ ଗୋପନ୍ଥଙ୍କୁ ସେଥିରୁ ବାଦ ଦେଇଥିଲେ । (୮୩) 'ଦାଣ୍ଡି ରାମାୟଣ'ରେ ଗୋଦଣ୍ଡା ନ ରଖିବା କଳି-କାଳର ଚିହ୍ନ ବୋଲି କୁହାଯାଇଅଛି । (୮୪)

## (ଛ) ଶସ୍ୟାଦିର ସଂଚୟ

ଶସ୍ୟାଦିର ସଞ୍ଚୟ-ରୀତି ଭାରତରେ ପ୍ରାଚୀନ । ଋଗ୍‌ବେଦରୁ ଉପଲବ୍ଧ ହୁଏ ଯେ, ସେତେବେଳେ ଶସ୍ୟାଦି କୋଠିମାନଙ୍କରେ ସଞ୍ଚିତ ହେଉଥିଲା । (୮୫) କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ କୋଷାଗାର, ବାଣିଜ୍ୟାଗାର ଆଦି ସହ ଶସ୍ୟାଗାର ରଖାଯିବା ଏବଂ ତାହାର ତତ୍ତ୍ୱାବଧାନ ପାଇଁ ଲୋକ ନିଯୁକ୍ତ କରିବା ବିଷୟ ଅଛି । (୮୬) ପାତଞ୍ଜଳିଙ୍କ ମହାଭାଷ୍ୟରେ ଶସ୍ୟ କୋଠିରେ ସଂଚିତ ହେବା କଥାର ଉଲ୍ଲେଖ ଦେଖାଯାଏ (୮୭)

ସାରଳା ଦାସ ମଧ୍ୟ କୋଠିରେ ଶସ୍ୟ ସଂଚିତ ହୋଇ ରହିବା କଥା ବର୍ଣ୍ଣନା କରିଛନ୍ତି । ସେ କହନ୍ତି ଯେ, ମଧୁବନ ରାଜ୍ୟର କୋଠିମାନଙ୍କରେ ବହୁ ପୁରୁଣା କାଳରୁ ତଣ୍ଡୁଳ ସଂଚିତ ହୋଇ ରହିଥିଲା ।

"ଏ ମଧୁବନ ରାଜ୍ୟରେ ପୂର୍ବେ ଆମ୍ଭେ ଥିଲୁ
କାଳଦମନ ଭୟରେ ଗୁଡ଼ି ପଳାଇଲୁ ।
ମଧୁବନ ପୂର୍ବ ତାହା ସବୁଥିଲା ସଞ୍ଚ
ତ୍ରେତୟା ଯୁଗରୁ ଏଥେ ଚାଉଳ ଯେ ଅଛି ।
ସୁବର୍ଣ୍ଣରେ ନିର୍ମିତ ଯେ ଶତ ଶତ କୋଠି
ତଣ୍ଡୁଳରେ ପୂରିଅଛି ଘର କେତେ ଗୋଟି ।" (୮୮)

ରାଜା ଭଣ୍ଡାର ଘର କରି ଶସ୍ୟ ସଂଚୟ କରି ରଖୁଥିଲେ । ଗ୍ରାମରେ ମଧ୍ୟ ଶସ୍ୟ ସଂଚିତ ହୋଇ ରହୁଥିଲା । ନିମ୍ନୋକ୍ତରୁ ତାହା ପ୍ରତିପାଦିତ ହୁଏ ।

"ପଞ୍ଚଶତ ଦଣ୍ଡ ଯେବେ ହେଲ ଏକ ବାଟି
ଏଥିରୁ ଢେଉଁବ ସଞ୍ଚା ପାଞ୍ଚ ଯେ ପଡ଼ିଛି ।
ଘର ପଡ଼ିଛି ଆଣିବୁ ଆପଣା ଭଣ୍ଡାରେ
ପଡ଼ିଛିଏ ବଜ ଥିବ ପୁଣି ସେ ଗ୍ରାମରେ ।" (ସ୍ୱ°ପୃ)

'ବାଣ୍ଡି ରାମାୟଣ'ରେ ଧାନ ସଂଚୟର କଥା ଅଛି । ସେଠାରେ ବଶିଷ୍ଠ ରାଜା ଦଶରଥଙ୍କୁ ଧାନ ସଂଚିତ ହୋଇ ରହିଅଛି କି ନାହିଁ ବୋଲି ପ୍ରଶ୍ନ କରିବା କଥା କୁହାଯାଇଅଛି । (୮୯)

## (ଜ) କୃଷକ ଓ ରାଜା

ପ୍ରାଚୀନ ସମାଜରେ କୃଷିକର୍ମରେ ନିଯୁକ୍ତ କୃଷକଜାତି ପ୍ରତି ରାଜାଙ୍କର କର୍ତ୍ତବ୍ୟ ସ୍ୱୀକୃତ ହୋଇଥିଲା । ସେ କାଳରେ ମଣିଷ କୃଷି ଓ ଗୋରକ୍ଷା ଆଦି କାର୍ଯ୍ୟରେ ନିଯୁକ୍ତ ଥାଇ ପ୍ରାଣ-ସଂଶୟରେ ପଡ଼ିଲେ ରାଜା ନିନ୍ଦିତ ହେଉଥିଲେ । (୯୦) କୃଷକଙ୍କୁ ଅଳ୍ପ ସୁଧରେ ଋଣ ଦେଇ ସାହାଯ୍ୟ କରିବା ସେ ଯୁଗରେ ରାଜାଙ୍କର କର୍ତ୍ତବ୍ୟ ଥିଲା । (୯୧) କୌଟିଲ୍ୟ କହନ୍ତି—ରାଜା ସତତ କୃଷକମାନଙ୍କୁ ଦୟା ପ୍ରଦର୍ଶନ କରିବେ । ସେମାନଙ୍କୁ ଅବୈତନିକ ଶ୍ରମ ତଥା ଅର୍ଥଦଣ୍ଡରୁ ରକ୍ଷା କରିବେ । (୯୨)

ସାରଳା ମହାଭାରତ ପାଠକଲେ ଜଣାଯାଏ ଯେ, ଉତ୍କଳର ଶାସକବର୍ଗ କୃଷକ ଜାତି ପ୍ରତି ତାଙ୍କର କର୍ତ୍ତବ୍ୟ ପାଳନ ଦିଗରେ ସତତ ସତର୍କ ରହୁଥିଲେ । ସେମାନଙ୍କ ପ୍ରତି ରାଜାମାନେ ଯଥେଷ୍ଟ ଦୟା ପ୍ରଦର୍ଶନ କରୁଥିଲେ । କୃଷକମାନଙ୍କୁ ଅର୍ଥଦଣ୍ଡ ନ ଦେବା ପାଇଁ ଭୀଷ୍ମ ଯୁଧିଷ୍ଠିରଙ୍କୁ ପରାମର୍ଶ ଦେବା ବୃତ୍ତାନ୍ତରୁ ଏହା ସ୍ପଷ୍ଟ ।

"କୃଷିକାରୀ ଜନଙ୍କୁ କଦାପି ଅର୍ଥେ ନ ଦଣ୍ଡିବୁ
ନିର୍ଦ୍ଦୋଷୀ ଜନଙ୍କୁ ସଦା କ୍ଷମା ଆଚରିବୁ ।"
"କୃଷିକାରୀ ଜନେ ନ ଡଣ୍ଡିବୁ ଧନ
ଗୋଚର ନିମନ୍ତେ ଛାଡ଼ି ଦେବୁ ବହୁ ସ୍ଥାନ ।" (ଶା୨ପୃ)

ବାନପ୍ରସ୍ଥ ଗମନ କଲାବେଳେ ରାଜା ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କୁ କୃଷକଙ୍କ ବିଷୟରେ ସତର୍କ କରାଇଥିଲେ । କୃଷି କର୍ମ କରି ଯେବେ କୃଷକ ଦୁଃଖ ଓ

ଅଭାବର ସମ୍ମୁଖୀନ ହୁଏ, ତେବେ ସେ ରାଜାର ପାଳମାସ୍ମ ବୋଲି ଧୃତରାଷ୍ଟ୍ର ପ୍ରକାଶ କରିଥିଲେ । ସେମାନଙ୍କୁ ସୁଖରେ ରଖିବା ରାଜାର କର୍ତ୍ତବ୍ୟ ବୋଲି ସେ ବୁଝାଇଥିଲେ ।

"କୃଷି କର୍ମ କରି ପ୍ରଜା ହୁଏ ଯେବେ ଦୁଃଖୀ
ସେମାନଙ୍କୁ ପାଳ ରାଜା କରିବଯେ ସୁଖୀ ।" (ଆଶ୍ରମ୪୭ପୃ)

ଯୁଧିଷ୍ଠିର ସ୍ୱର୍ଗାରୋହଣ ପୂର୍ବରୁ ପରୀକ୍ଷିତଙ୍କୁ ରାଜନୀତି ବୁଝାଇବା ବେଳେ କୃଷକଙ୍କ ସଂପର୍କରେ ଉପଦେଶ ପ୍ରଦାନ କରିଥିଲେ । ପ୍ରଜାଙ୍କୁ ସୁସ୍ଥରେ ରଖିବା ଓ କୃଷକଙ୍କୁ ବନ୍ଧନ ଯୋଗାଇଦେବା ରାଜାଙ୍କର କର୍ତ୍ତବ୍ୟ ବୋଲି ଯୁଧିଷ୍ଠିର କହିଥିଲେ ।

"ବାବୁ ରାଜ୍ୟ ପାଳିଲେ ଯେ ପ୍ରଜା ହୋନ୍ତି ସୁସ୍ଥ
ପ୍ରଜା ସୁସ୍ଥ ହେଲେ କୃଷି ଉପୁଜେ ବହୁତ ।"
"ଯେ ଚଷା ବାଟିଏ ଜମି କରିବ କର୍ଷଣ
ତାହାକୁ ଏକ ପଉଟି ଦେବୁ ତୁ ବନ୍ଧନ ।" (ସ୍ୱ୨ପୃ)

### ୩ ଉତ୍ପାଦିତ ଶସ୍ୟ

ପ୍ରାଚୀନ ଭାରତରେ ବହୁବିଧ ଶସ୍ୟ ଉତ୍ପାଦନ କରାଯାଉଥିଲା । ଋକ୍‌ବେଦ କାଳରେ ଧାନଚାଷ ନ ଥିବାର ଜଣାଯାଏ । (୯୩) ସେ ଯୁଗରେ ଯବ, ତୈଳବୀଜ ଓ କାର୍ପାସର ଚାଷ ହେଉଥିଲା । (୯୪) ପାଣିନିଙ୍କ କାଳରେ ଧାନ, ଯବ ଓ ତିଳର ଚାଷ ପ୍ରଚଳିତ ଥିଲା । (୯୫) ପାତଞ୍ଜଳିଙ୍କ ମହାଭାଷ୍ୟରେ ଯବ, ତିଳ, ବରି ମୁଗ, ଆଖୁ ଓ କପାର ଉଲ୍ଲେଖ ମିଳେ । (୯୬) ସଂସ୍କୃତ ମହାଭାରତରେ ଧାନ, ଯବ, ବରି, କୋଳଥ, ସୋରିଷ, ବୁଟ, ମଟର, ମୁଗ, ଗହମ ଓ ତିଳର ନାମ ଦେଖାଯାଏ । (୯୭) ବିଷ୍ଣୁପୁରାଣରେ ଧାନ, ଯବ, ଗହମ, ତିଳ, ଜୁଆର, ମଟର, ବୁଟ, ମୁଗ, ବରି, ମସୁର, ହରଡ଼ ଓ ମକା ଆଦି ଶସ୍ୟର ନାମ ରହିଛି । (୯୮) ପଞ୍ଚଦଶ ଶତାବ୍ଦୀର ଉତ୍କଳରେ ମଧ୍ୟ ବହୁ ଶସ୍ୟ ଉତ୍ପାଦିତ ହେଉଥିଲା ବୋଲି କବି-ଲେଖମାନଙ୍କରୁ ଉପଲବ୍ଧ ହୁଏ ।

#### (କ) ଧାନ

ଓଡ଼ିଶାରେ ସେ କାଳରେ ପ୍ରଭୁତ ପରିମାଣରେ ଧାନଚାଷ କରାଯାଉଥିବାର ଜଣାଯାଏ । କବିଙ୍କ ବର୍ଣ୍ଣନାରେ ଭାତ ଓ ଚାଉଳର ବାହୁ ଉଲ୍ଲେଖ ମିଳେ ।

କବି କହନ୍ତି ଯେ କୁନ୍ତୀ ବନଭୂମିରେ ଭୋଜନପାଇଁ ଭାତ ରାନ୍ଧୁଥିଲେ । (୯୯) ଦ୍ରୋଣଙ୍କ ପତ୍ନୀ କୃପୀ ଭାତ ରାନ୍ଧି ରାଜା ଦ୍ରୁପଦଙ୍କ ସୈନ୍ୟମାନଙ୍କୁ ପରିବେଷଣ କରିଥିଲେ । (୧୦୦) ଦୁର୍ଯୋଧନ ପାଷାଣ-ଗୃହରେ ବନ୍ଦୀ ଗାନ୍ଧାରସେନଙ୍କୁ ପ୍ରତ୍ୟହ ଭାତ ଦେଉଥିଲେ । (୧୦୧) ବସ୍ତୁକର ପଣ୍ଡାଙ୍କ ଘରେ ପ୍ରଭୂତ ଧାନ ଗୃଜୁଳଥିଲା । (ଆ୨୨୧ପୃ) ବସୁ ଶବରର ପୂର୍ବ ଅଗୁରୁ ବୃକ୍ଷର ମୂଳରେ ପ୍ରତିଷ୍ଠିତ ନାରାୟଣଙ୍କୁ ଭାତ ପୂଜା କରୁଥିଲା । (୧୦୨) କାମାକ୍ଷୀ ଦେବୀ ଭୀମ-ସେନଙ୍କୁ ଭୋଜନରେ ଭାତ ଦେଇଥିଲେ । (୧୦୩) ପ୍ରଜାମାନେ ରାଜାଙ୍କୁ ଧାନ ସଞ୍ଜା ସ୍ୱରୂପ ଦେଉଥିଲେ । ସେମାନେ ବାଛିପ୍ରତି ଏକ ପଉଟି ହିସାବରେ ଗୃଜୁଳ ମଧ୍ୟ ଦେଉଥିଲେ । (୧୦୪) ବିରାଟ ପୁରରେ ଭୀମସେନ ଶହେ ପଉଟି ଧାନ ଉଷୁଁଆଇ ମାଲଙ୍କୁ ଭୋଜନ ନିମିତ୍ତ ପ୍ରଦାନ କରିଥିଲେ । (୧୦୫) ବକାସୁର ପାଇଁ ଶଗଡ଼େ ଭାତ ପଠାଯାଇଥିଲା । (ଆ୨୩୭ପୃ)

ମଗଧଦେଶରେ ଅଳ୍ପ ସମୟ ମଧ୍ୟରେ ଧାନ ଫସଲ କରାଯାଇପାରୁଥିଲା ବୋଲି କବି ବିରାଟ ପର୍ବରେ ବର୍ଣ୍ଣନା କରିଅଛନ୍ତି ।

"କାମ୍ୟକ ନାମେ ପର୍ବତ ଅଛେ ମଗଧ ଦେଶେ
କାମ୍ୟକ ନାମରେ ମେଘ ପ୍ରତିଦିନ ବର୍ଷେ ।
ଗୃଳଶ ଦିନରେ ତହିଁ ପାଚଇଟେ ଧାନ
ତହିଁରୁ ଯେ ଉତପତ୍ତି କୃଷିକର୍ମ ମାନ ।" (ବି୨୯ପୃ)

'ମାନସୋଲ୍ଲାସ' ଗ୍ରନ୍ଥରେ କଳିଙ୍ଗର ଗୃଜୁଳକୁ ରାଜଯୋଗ୍ୟ ଭୋଜନ-ସାମଗ୍ରୀ ମଧ୍ୟରେ ପରିଗଣନା କରାଯାଇଥିବାର ଦେଖାଯାଏ (୧୦୬) । 'ରୁଦ୍ର-ସୁଧାନିଧି'ରେ ଧାନପସରା କଥା ଅଛି । (ପୃ୯୬) ଧାନରୋଷର କଥା ଓଡ଼ିଶାରେ ପ୍ରଚଳିତ ଡାକବଚନରେ ରହିଅଛି ।

"ଉଭା ମୁଠି ଆଡ଼ ଦି ମୁଠି,
କଅଁାରି ମଝିରେ ପୋତିବୁ କାଠି,
ବିଲରେ ରଖିବୁ ପାଣି ସମାନ,
ପର୍ବତ ଶିଖରେ କରିବୁ ଧାନ ।" (୧୦୭)

## (ଖ) ମୁଗ ଓ ବିରି

ରବି ଫସଲ ମଧ୍ୟରେ ମୁଗ ଓ ବିରି ସେ କାଳରେ ପ୍ରଧାନ ଥିଲା । କବି ଖାଦ୍ୟପେୟର ବର୍ଣ୍ଣନା ସଙ୍ଗରେ ସର୍ବଥା ମୁଗ ଓ ବିରିର ଉଲ୍ଲେଖ କରନ୍ତି ।

ଦ୍ରୌପଦୀଙ୍କ ବିବାହ ବେଳେ ଯେଉଁ ସବୁ ବ୍ୟଞ୍ଜନ ପରିବେଷଣ କରାଯାଇଥିଲା ତନ୍ମଧ୍ୟରେ ମୁଗ ଅନ୍ୟତମ ଥିଲା । (୧୦୮) ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ କାଳରେ ମୁଗ ଓ ବରିର ଆୟୋଜନ କରାଯାଇଥିଲା । (୧୦୯) ଦ୍ରୋଣ ରାଜା ଦ୍ରୁପଦଙ୍କୁ ଆତିଥ୍ୟ ପ୍ରଦର୍ଶନ କଲାବେଳେ ତାଙ୍କର ହସ୍ତୀ ଓ ଅଶ୍ୱମାନଙ୍କ ପାଇଁ ବରି ଯୋଗାଇ ଦେଇଥିଲେ । (୧୧୦) 'ଲୋକଗୀତ'ରେ ମୁଗ ଓ ବରିର ପ୍ରଭୂତ ଉଲ୍ଲେଖ ମିଳେ । ଯଥା—

"ମୁଗ ଚୂନା କଲି ଲଡ଼ୁ ;
ରାଗ ବେଳରେ ମୋ ପଡ଼ନ୍ତୁ ହାବୁଡ଼େ;
ଗୁଣ୍ଡରେ ଘଙ୍ଗନ୍ତୁ ଖଡ଼ୁ ।" (୧୧୧)
"ବିରି ଡାଲି କଲି ବାସୀ,
ଚଟାଉ ଉପରେ ଚଟା ଦେଇ,
ବୁଢ଼ୀ ହୋଇଗଲା ଆସି ।" (୧୧୨)

## (ଗ) **କପା, ଆଖୁ, ହଳଦୀ**

ସାରଳା ଦାସଙ୍କ ଯୁଗରେ ଓଡ଼ିଶାରେ କପାଚାଷ ହେଉଥିବାର ଜଣାଯାଏ । କବି ସର୍ବତ୍ର ବସ୍ତ୍ର-ବ୍ୟବହାର କଥା କହିଥିବାରୁ ଏହା ଅବଧାରିତ ହେଉଅଛି । କବି କହନ୍ତି ଯେ, ଦୁର୍ଯ୍ୟୋଧନ ପ୍ରସ୍ତର-ଗୃହ ନିର୍ମାଣ କଲାବେଳେ ଲୋକଙ୍କୁ ଶାଢ଼ୀ ପ୍ରଦାନ କରିଥିଲେ । (ଆ୧୩୩ପୃ) ବିରାଟ ରାଜା ଉତ୍ତରା-ପରିଣୟ କାଳରେ ସମସ୍ତଙ୍କୁ ବସ୍ତ୍ର ଦାନ କରିଥିଲେ । (ବି୧୮୪ପୃ) ଶ୍ରୀକୃଷ୍ଣ କୁମାର-ପୂର୍ଣ୍ଣିମୀ ଦିନ ନିଜର ପରିବାରବର୍ଗଙ୍କୁ ନବ ବସ୍ତ୍ର ପିନ୍ଧାଇଥିଲେ । (ମୂ୨ପୃ) ରାଜସୂୟ ଯଜ୍ଞ କାଳରେ ଯୁଧିଷ୍ଠିର ଦୁର୍ଯ୍ୟୋଧନ ଓ ଦୁଃଶାସନ ପ୍ରଭୃତିଙ୍କୁ ବିଭିନ୍ନ ଦାୟିତ୍ୱ ଅର୍ପଣକରି ଶାଢ଼ୀ ପ୍ରଦାନ କରିଥିଲେ । (ସ୨୪୧ପୃ) ସେ କାଳରେ ଲୋକେ ତୁଳାଶେଯ ଓ ମୁଚୁଳି ପରି କାର୍ପାସ-ନିର୍ମିତ ବସ୍ତୁର ବ୍ୟବହାର ମଧ୍ୟ କରୁଥିଲେ । (୧୧୩) ସଭାପର୍ବରେ ଅଛି ଯେ, ଶ୍ରୀକୃଷ୍ଣ ଗୋଟିଏ ଧୋତି ଚିରି ଦେଇ ଭୀମ-ସେନଙ୍କୁ ତଦ୍ରୂପ ଜରାସନ୍ଧଙ୍କୁ ବଧ କରିବା ନିମିତ୍ତ ସୂଚନାରେ କହିଥିଲେ—

"ଧୋତି ଗୋଟି ଦେବ ଧରିଲେ ଶ୍ରୀଭୁଜେ
ଲେଉଟାଇ ବେନି ଫାଳ କଲେ ଦେବରାଜେ ।" (୧୧୪)

ଇତିହାସରୁ ଜଣାଯାଏ ଯେ, ସେତେବେଳେ ଓଡ଼ିଶାରୁ ତୁଳା ବାହାରକୁ ରପ୍ତାନି ମଧ୍ୟ କରାଯାଉଥିଲା । (୧୧୫) ମାଦଳା ପାଞ୍ଜିରେ କପାଖାଇ ଓ ଅରଟର ଉଲ୍ଲେଖ ଦେଖାଯାଏ । (ପୃ୧୦୩) 'ଚର୍ଯ୍ୟାଗୀତି'ରେ କପାଚାଷର କଥା ଅଛି । (୧୧୬) 'ଲୋକଗୀତି'ରେ କପା କ୍ଷେତର ଉଲ୍ଲେଖମିଳେ । (୧୧୭)

ସେତେବେଳେ ଆଖୁ ଚାଷ କରାଯାଉଥିଲା । କବିଙ୍କ ବର୍ଣ୍ଣନାରେ 'ଶାକର'ର ଉଲ୍ଲେଖ ଥିବାରୁ ଏହା ଅବଧାରିତ ହୁଏ । (୧୧୮) କବି କହିଛନ୍ତି ଯେ, ଶଶିକର-ଚନ୍ଦ୍ରୀର ଜାରଜ କନ୍ୟାକୁ ଜମ୍ବୁକ ଆଖୁ ଓ ଆଖୁଗଛର କ୍ଷୀର ଦେଉଥିଲେ ।

"ଆଖୁ ଗଛରୁ ଯେ କ୍ଷୀର ଆଣନ୍ତି ସେ ଧରି
ପ୍ରତି ଦିନ ଦିଅନ୍ତି ସେ ବାଳୀ ତୁଣ୍ଡେ ଭରି ।"
"ଆଖୁ କାକୁଡ଼ି ଆଦି ଯେ ସୁସଞ୍ଚ ପଦାର୍ଥ
ତାହା ଆଣି ଦିଅନ୍ତି ସେ ବାଳକାର ହସ୍ତ ।" (ଆ୧୭୬ପୃ)

ରୁଦ୍ରସୁଧାନିଧିରେ ଆଖୁର ଉଲ୍ଲେଖ ଦେଖାଯାଏ । (ପୃ୧୨୯) ଓଡ଼ ଜାତିର ଲୋକେ ପୂର୍ବେ ବିଶେଷ ଭାବରେ ଆଖୁଚାଷ କରୁଥିଲେ ବୋଲି ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଲେଖିଛନ୍ତି । (୧୧୯) ଲୋକଗୀତରେ ଆଖୁଚାଷର ବର୍ଣ୍ଣନା ମିଳେ ।

"ଆଖୁ ବାଡ଼ିରେ ଜହ୍ନ
ଆଖୁଆ ମାଇପ ଚୋପିଚନ୍ଦନ
ଯାଉ ଆସୁ ଦରଶନ ।"" (୧୨୦)

ସାରଳା ଦାସ ବହୁ ସ୍ଥଳରେ ହଳଦି ବ୍ୟବହାରର ଉଲ୍ଲେଖ କରିଅଛନ୍ତି । ସେଥିରୁ ଅବଧାରିତ ହୁଏ ଯେ, ତାଙ୍କ କାଳରେ ହଳଦି ଚାଷ ଓଡ଼ିଶାରେ ପର୍ଯ୍ୟାପ୍ତ ଭାବରେ କରାଯାଉ ଥିଲା । କବି ଲେଖିଛନ୍ତି ଯେ, ଚିତ୍ରାଙ୍ଗଦାଙ୍କ ବିବାହ କାଳରେ ଅର୍ଜୁନଙ୍କ ଶରୀରରେ ନାରୀମାନେ ହଳଦି ଲେପନ କରିଥିଲେ । (୧୨୧) ସୁଭଦ୍ରାଙ୍କ ପରିଣୟର ଚଉଠି ଦିବସରେ ନାରୀମାନେ ହରିଦ୍ରା-ରଞ୍ଜିତ ହୋଇ ସ୍ନାନ କରିଥିଲେ । (୧୨୨) ବିଲଙ୍କା ରାମାୟଣରେ ... (୧୨୨) ବେମବତୀ କାବ୍ୟରେ ମିଥିଳାର ଅନ୍ତଃପୁରସ୍ଥ ନାରୀଗଣ ଦଶରଥ ପ୍ରଭୃତିଙ୍କ ଦେହରେ ହରିଦ୍ରା ଲେପନ କରିବା କଥା ଅଛି । (ପୃ୭୬) 'ଦାଣ୍ଡି ରାମାୟଣ'ରେ ବିବାହ ପୂର୍ବରୁ ସୀତାଙ୍କ ଦେହରେ ହଳଦି ବୋଳାଯିବା ବିଷୟ ବର୍ଣ୍ଣିତ । (୧୨୩) ଢଗ-ଢମାଳିରେ ହଳଦିର ବହୁ ଉଲ୍ଲେଖ ଦେଖାଯାଏ । ଯଥା—

"ହଳଦି କାଟୁଆ କମ;
ଖଗବେଳେ ଧନ ଗୁଳିଲେ ବାଟ ହେ,
ଗୋଡ଼ରେ ପାଚଳ ଚମ;
ମୋ ପ୍ରଭୁ ସେ ।"
"ହଳଦି ଗରଗର ଗମ ଗଢ଼ୁଚ,
ଘରେ ଭାତ ନାହିଁ ପୁଅ ବଢୁଚ ।" (୧୨୪)

## (ଘ) ରାଶି, ସୋରଷ

ତୈଳବୀଜ ମଧ୍ୟରେ ସୋରଷ ଓ ରାଶିର ଚାଷ ସେ ଯୁଗରେ ପ୍ରବର୍ତ୍ତିମାନ ଥିଲା । କବିଙ୍କ କେତେକ ବର୍ଣ୍ଣନାରୁ ତାହା ଅବଧାରିତ ହୁଏ । ସେ କହନ୍ତି ଯେ ଖ୍ରୀମ ବଶିଷ୍ଠଙ୍କ ଗୃହରେ ରନ୍ଧନ କାର୍ଯ୍ୟ କରୁଥିବା ବେଳେ 'ବେଶର'ର ପ୍ରୟୋଗ କରିଥିଲେ । (୧୨୫) ସେଠାରେ ଥିବାବେଳେ ଖ୍ରୀମ ସୋରିଷରୁ ତେଲ ବାହାର କରି ମାଲକୁ ଲଗାଇବାକୁ କହିଥିଲେ ।

"ତେଲ ବୋଲି ସୋରିଷକୁ ଦେଲା ମୋତେ କାଢ଼ି
ବୋଇଲା ତୁ ତେଲ ଲଗା ସୋରଷରୁ କାଢ଼ି ।
ମୁଗୁନି ପାଟ ପଥର ମୁଥେ କରି ଚୂର୍ଣ୍ଣ
ପେଜରେ ଫୁଟାଇ ତାକୁ କରିଲା ବ୍ୟଞ୍ଜନ ।" (ବି୪୫ପୃ)

'ଲୋକଗୀତ'ରେ ସୋରଷ ସଂପର୍କରେ ଢଗ ଅଛି । ଯଥା—

"ସୋରଷ ଫୁଲ,
ସୋରିଷିଆ ଫୁଲ ଅମୁଲ ମୁଲ । (୧୨୬)

ସାରଳା ମହାଭାରତରେ ରାଶି ଚାଷର ବର୍ଣ୍ଣନା ବହୁ ସ୍ଥାନରେ ମିଳେ । ଯଥା— "କାର୍ତ୍ତିକେ ବୁଣିଲେ ତିଳ ମାଘମାସେ ଫଳେ
ଆପଣେ ବ୍ୟାସ ତୋଳିଲେ ଥାଇ ଯକ୍ଷଶାଳେ ।" (ସ୪୯ପୃ)
ସେ ଗ୍ରାମ ଲୋକମାନଙ୍କୁ ମାଗିଲେ ସେ ଭୂମି
ତିଳ ଖଣ୍ଡିଏ କରିବେ ଦିଅ ମତେ ସ୍ୱାମୀ ।" (ଡ଼୫୬ପୃ)
ମୂଷଳ ପେନ ଚରନ୍ତ ଭୂମି ଶୁଭଯୋଗେ
ମକର ତିଳ ବୁଣାନ୍ତ ଜଳଦେଇ ଯାଗେ ।
ମହାରସ ପାଇବାରୁ ଭୂମିତିଳ ଉଠି
ମକର ମାସ ମଧ୍ୟରେ ପଡ଼େ ଛଳେ ଫୁଟି ।" (ଆ୬୧ପୃ)

## (ଙ) ପାନ, ଗୁଆ

ପଞ୍ଚଦଶ ଶତାବ୍ଦୀର ଓଡ଼ିଶାରେ ପାନ-ଗୁଆର ଚାଷ କରାଯାଉଥିବା କଥା ଶାରଳାଙ୍କ ମହାଭାରତରୁ ଅବଧାରିତ ହେଉଅଛି । ଲୋକେ ଭୋଜନ ପରେ ସେତେବେଳେ ବି ପାନ ବ୍ୟବହାର କରୁଥିଲେ । ଜବ କହନ୍ତି—ଧୃତରାଷ୍ଟ୍ର ଶତଶୃଙ୍ଗ ପର୍ବତ ତଳେ ପଣ୍ଡୁଙ୍କୁ ଦେଖିବାକୁ ଆସିଥିବାବେଳେ ଭୋଜନାନ୍ତେ ତାମ୍ବୁଳ ସେବନ କରିଥିଲେ । (ଆ୫୪ପୃ) ଦୁଃଶୀଳା କନ୍ୟା ମଧୁଶଯ୍ୟା ଗୃହରେ ତାମ୍ବୁଳ ମଣୋହି କରିଥିଲେ । (ଆ୨୧୨ପୃ) ସୁଭଦ୍ରା ପରିଣୟ ଦୃଶ୍ୟରେ ମଧ୍ୟ ତାମ୍ବୁଳ-ସେବନର କଥା ରହିଛି । (୧୨୭) ଜଗଡ଼ମାଳୀରେ ପାନର ଉଲ୍ଲେଖ ଦେଖାଯାଏ । ଯଥା—

"ପାନ ଖାଏ, ଗୁଆ ଖାଏ ଲୁଗା ପିନ୍ଧେ ସରୁ,
ରାସ୍ତାରେ ଯେମନ୍ତ ବୁଲୁଥାଏ ନଗୋସେଇଁଆ ଗୋରୁ ।" (୧୨୮)

ନିମନ୍ତ୍ରଣାଦି କାର୍ଯ୍ୟରେ ଲୋକେ ଗୁବାକର ବ୍ୟବହାର କରୁଥିଲେ । ଭୀମସେନ ରାଜସୂୟ ଯଜ୍ଞ ପାଇଁ ପଦ୍ମକେଶର ରାଜାଙ୍କୁ ଅକ୍ଷତ ସହ ଗୁବାକ ଦେଇ ନିମନ୍ତ୍ରଣ କରିଥିଲେ । (ସ୬୦ପୃ) ମରୁତସେନ ରାଜାଙ୍କୁ (ସ୬୮ପୃ) ଓ ମାନଅର୍ଜ୍ଜୁନଙ୍କୁ ଅକ୍ଷତ ଓ ଗୁବାକ ଦେଇ ନିମନ୍ତ୍ରଣ କରାଯାଇଥିଲା । (୧୨୯) 'ଦାଣ୍ଡି ରାମାୟଣ'ରେ ଗୁବାକ ଓ ତାମ୍ବୁଳ ସେବନର କଥା ଅଛି । (୧୩୦) ଜଗଡ଼ମାଳୀରେ ପାନ-ଗୁଆର ବିଷୟ ରହିଛି । ଯଥା—

"ପାନ ଖଣ୍ଡିଏ ଦାଅନ୍ତ ବନ୍ଧୁ ନାହିଁ ପାନଗୁଆ
ଖାଲି ବଟୁଆ ଶୂନ୍‌ଶାନ୍ ପଡ଼ିଛି ଛିକେ ଧୂଆଁ ।" (୧୩୧)

ବର୍ତ୍ତମାନ ଯୁଗରେ ଓଡ଼ିଶାରେ ପାନଗୁଆର ବ୍ୟବହାର ପ୍ରଭୂତ ପରିମାଣରେ ଦେଖାଯାଏ । ନିମନ୍ତ୍ରଣାଦି କାର୍ଯ୍ୟରେ ଗୁଆ ଦେବା ଏବେ ବି ଓଡ଼ିଶାରେ ପ୍ରଚଳିତ ଅଛି ।

## (ଚ) ଫଳ

ଫଳଚାଷ ଏକ ଲାଭଜନକ ବ୍ୟବସାୟ । ଫିରୋଜ ଶାହଙ୍କ ଅମଳରେ ଏତେ ଫଳ ଉତ୍ତର-ଭାରତରେ ଉତ୍ପାଦନ କରାଯାଉଥିଲା ଯେ ସମ୍ରାଟଙ୍କ ରାଜସ୍ୱର ବହୁ ଭାଗ ସେଥିରୁ ମିଳିପାରୁଥିଲା । (୧୩୨) ଇବନ୍ ବାଟୁଟାଙ୍କ ବିବରଣୀରୁ ଜଣାଯାଏ ଯେ,

ସେ କାଳରେ ଆମ୍ବ, ପଣସ, ଜାମୁ, କମଳା ଓ ଲେମ୍ବୁ ଉତ୍ପାଦନ କରାଯାଉଥିଲା । ନଡ଼ିଆ ଓ ଗୁଆ ଦକ୍ଷିଣ ଭାରତରେ ଏତେ ଉତ୍ପାଦିତ ହେଉଥିଲା ଯେ ତାହା ଚୀନ ଦେଶକୁ ରପ୍ତାନି କରାଯାଇପାରୁଥିଲା । ବଙ୍ଗ ଦେଶରେ ସେ କାଳରେ ଆମ୍ବ, କଦଳୀ, ଗୁଆ ଓ ପଣସର ପ୍ରଚୁର ଚାଷ କରାଯାଉଥିବା କଥା ଚୀନ ପରିବ୍ରାଜକଙ୍କ ବିବରଣୀରୁ ଜଣାଯାଏ । (୧୩୩)

ସାରଳାଙ୍କ କାଳରେ ଓଡ଼ିଶାରେ ମଧ୍ୟ ବହୁବିଧ ଫଳର ଚାଷ ପ୍ରଚଳିତ ଥିଲା । କବି କହନ୍ତି ଯେ, ଇନ୍ଦ୍ରଙ୍କ ନନ୍ଦନବନରେ ବହୁ ଫଳବୃକ୍ଷ ଥିଲା । ଯଥା—

"ଆମ୍ବ ପଣସ କଦଳୀ ଗୁଆ ନାରିକେଳ
ଟଭା ଲେମ୍ବୁ କରମଙ୍ଗା କମଳା ଜମ୍ବିରି । (୧୩୪)

ଇନ୍ଦ୍ରଙ୍କ ତୋଟାରୁ ବହୁବିଧ ଫଳ ରାଜସୂୟଯଜ୍ଞ ପାଇଁ ଆନୟନ କରା-ଯାଇଥିଲା ବୋଲି କବି ଦର୍ଶାଇଅଛନ୍ତି । ଯଥା—

ନଡ଼ିଆ ପଣସ ରମ୍ଭା ପୃଷ୍ଠି ଚୂତଫଳ
ଟଭା ନାରଙ୍ଗ ଜାମ୍ବିର ଲେମ୍ବୁ କଣ୍ଟିହୋଳ ।" (ସ୨୪୦ପୃ)

ଲୋକେ ସେ କାଳରେ ବୃକ୍ଷରୋପଣ କରିବାକୁ ଧର୍ମକାର୍ଯ୍ୟ ବୋଲି ମନେ କରୁଥିଲେ । ପୁଣ୍ୟଲାଭ ପାଇଁ ବାଟରେ ବୃକ୍ଷରୋପଣ କରିବା କର୍ତ୍ତବ୍ୟ ବୋଲି ସମାଜରେ ବିବେଚିତ ହେଉଥିଲା ।

"କନ୍ୟାଦାନ କରି ତାର ନୋହିଲେ ସନ୍ତତି
ବାଟେ ବୃକ୍ଷ ଲଗାଇବ ଜାଣିଥାଅ ସତି ।" (ଆ୯୨ପୃ)

ଓଡ଼ିଶାରେ ପ୍ରାଚୀନ କାଳରୁ ବହୁ ଫଳଚାଷ କରାଯାଉଥିବାର ଜଣାଯାଏ । ଚୀନ ପରିବ୍ରାଜକ ହୁଏନ୍‌ସାଂ ଲେଖିଛନ୍ତି ଯେ, ଉଡ୍ର ଦେଶରେ ପ୍ରତ୍ୟେକ ପ୍ରକାର ଫଳ ବହୁ ପରିମାଣରେ ଜାତ ହେଉଥିଲା । (୧୩୫) କଳିଙ୍ଗ ଦେଶରେ ଫଳ-ପୁଷ୍ପ ପ୍ରଚୁର ଥିବା କଥା ସେ ବର୍ଣ୍ଣନା କରିଅଛନ୍ତି । (୧୩୬) ରୁଦ୍ରସୁଧାନିଧି (୧୩୭) ଓ 'ରାମ ବିଭା' କାବ୍ୟରେ (ପୃ୨୫) ନାନା ଫଳର ବର୍ଣ୍ଣନା ମିଳେ । ଦାଣ୍ଡି-ରାମାୟଣରେ ମଧ୍ୟ ନାନାବିଧ ଫଳର ଉଲ୍ଲେଖ ଦେଖାଯାଏ । (୧୩୮) ଫିରୋଜ ତୋଗଲକ ଓଡ଼ିଶା ଆକ୍ରମଣ କଲାବେଳେ (୧୩୬୦ ଖ୍ରୀଷ୍ଟାବ୍ଦ) ଓଡ଼ିଶାର ପ୍ରତ୍ୟେକ ଗୃହରେ ସୁନ୍ଦର ଫଳବଗିଚାମାନ ଦେଖିଥିବାର ଜଣାଯାଏ । (୧୩୯)

## (ଜ) ପନିପରିବା

କବିଙ୍କ ବର୍ଣ୍ଣନାରୁ ଅବଧାରିତ ହୁଏ ଯେ, ଉତ୍କଳରେ ସେତେବେଳେ କେତେକ ପନିପରିବା ମଧ୍ୟ ଉତ୍ପାଦିତ ହେଉଥିଲା । କବି କହନ୍ତି ଯେ, ରାଜସୂୟ ଯଜ୍ଞ ପାଇଁ ନନ୍ଦନ-କାନନରୁ ପରିବାମାନ ଆମଦାନି ହୋଇଥିଲା ।

"ପୁଣି ବ୍ୟଞ୍ଜନ ଯୋଗାଡ଼ ସର୍ବ ପଦାର୍ଥକୁ
ଇନ୍ଦ୍ର ତୋଟାଳିଆ ଦ୍ୟନ୍ତି କୈବର୍ତ୍ତ ରାଜାକୁ ।
× × ×
ନାନା ଫଳମାନ ଭରି ଆଣଇ ସୁବାହୁ
ଆଳୁ ସାରୁ କଦଳୀ ଯେ ନାନାଜାତି ଚହୁଁ ।" (ସ୨୪୦ପୃ)

ବିରାଟ ପର୍ବରେ ଭୀମସେନଙ୍କ ରନ୍ଧଣା ପ୍ରସଙ୍ଗରେ କବି ପରିବା ଓ ବ୍ୟଞ୍ଜନର ଉଲ୍ଲେଖ କରିଛନ୍ତି । (ପୃ୩୦) ସଭାପର୍ବରେ ମଧ୍ୟ ବ୍ୟଞ୍ଜନର ଉଲ୍ଲେଖ ମିଳେ । (୧୪୦) ହରିଉଦ୍ୟାନ ବନରୁ ନାରିମାନଙ୍କରେ ପରିବାଦି ଆମଦାନି-ହେବା କଥା କବି ଦର୍ଶାଇ ଅଛନ୍ତି । (୧୪୧) ଓଡ଼ିଶାରେ ପ୍ରଚଳିତ ଢଗଢ଼ମାଳୀରେ ପରିବାର ବହୁ ଉଲ୍ଲେଖ ଦେଖାଯାଏ । ଯଥା—

"ଆଳୁ ବାଇଗଣ ସାରୁ ପରିବା
ଗୋବର ଗୋଡ଼କୁ ହଲଇ ଦେବା ।"
"ଆଳୁ ବାରପଳ ସାରୁ ବାରପଳ
ବାର ବାର ପଳ ଚବିଶ ପଳ ।" (୧୪୨)

ସୂଳତଃ ପଞ୍ଚଦଶ ଶତାବ୍ଦୀରେ ଉତ୍କଳରେ କୃଷି ଥିଲା ମୁଖ୍ୟ ଜୀବିକା । ବିଭିନ୍ନ ଜାତିର ଲୋକେ କୃଷିକୁ ବୃତ୍ତିରୂପରେ ଗ୍ରହଣ କରିଥିଲେ । କର ବା କୃଷିଭାଗର ଆଦାୟ ପାଇଁ ନ୍ୟାୟୋଚିତ ରୀତି ଅନୁସୃତ ହେଉଥିଲା । ଜମିଜମାର ମାପ କରାଯାଉଥିଲା । କୃଷକ କରଭାରରେ ପ୍ରପୀଡ଼ିତ ହେଉ ନ ଥିଲେ । ସେମାନଙ୍କୁ ରାଜା ଅର୍ଥ ଦଣ୍ଡ ଦେଉ ନ ଥିଲେ । ଅଭାବଗ୍ରସ୍ତ କୃଷକଙ୍କୁ ରାଜା ପାଳନକରି ସୁଖରେ ରଖୁଥିଲେ । ସେମାନଙ୍କୁ ବିହନ ଯୋଗାଇବାରେ ରାଜା ସାହାଯ୍ୟ କରୁଥିଲେ । ଶସ୍ୟାକାର ବା ସୁନା ଆକାରରେ କର ଗୃହୀତ ହେଉଥିଲା । କର ଆଦାୟ ବର୍ଷକୁ ଥରେ ମାତ୍ର କରାଯାଉଥିଲା । ଜଳସେଚନ ପାଇଁ ରାଜା ଯତ୍ନଶୀଳ ଥିଲେ । ଗୋଚର ଭୂମିର ବ୍ୟବସ୍ଥା ରହିଥିଲା ଏବଂ ସେଥିପାଇଁ କର ନିଆ ଯାଉ ନ ଥିଲା । କେହି ଗୋଚର ଓ ଗୋଦଣ୍ଡାକୁ ନଷ୍ଟ କରୁ ନ ଥିଲେ । ହଳ, ଲଙ୍ଗଳ,

କୋଡ଼, କୋଦାଳ ଓ ବଳଦ ଥିଲା କୃଷିର ଉପକରଣ । ମାଣ, ନଉତି ଓ ପୌଟି ଆଦିରେ ଶସ୍ୟର ମାପ ହେଉଥିଲା । ଶସ୍ୟ ସଂଚୟ କରି ରଖିବାର ରୀତି ପ୍ରଚଳିତ ଥିଲା । ଧାନ, ରାଶି, ନଡ଼ିଆ, କଦଳୀ, ଗୁଆ, ମୁଗ, ବିରି, ହଳଦି, ସୋରିଷ, ବିଭିନ୍ନ ଫଳ ଓ ପରିବା ପ୍ରଭୃତି ପରିମାଣରେ ଚାଷ କରାଯାଉଥିଲା । ବ୍ରାହ୍ମଣମାନେ ଲୋକ ରଖି ଚାଷ କାର୍ଯ୍ୟ ଚଳାଉଥିଲେ । ସେମାନେ ନିଜେ ହଳ କରୁ ନ ଥିଲେ । ଧାନ ଥିଲା ମୁଖ୍ୟ କୃଷିଜାତ ଦ୍ରବ୍ୟ । କୃଷିକ୍ଷେତ୍ରରେ ନିଯୁକ୍ତ କୃଷକ ଭୂମିମାଲିକ ଠାରୁ ଅନ୍ନବସ୍ତ୍ର ଓ ବେତନ ପାଉଥିଲେ । ଭୂମିମାଲିକ କୃଷକପ୍ରତି ଉତ୍ତମ ବ୍ୟବହାର କରୁଥିଲେ । କୃଷକ ଶାନ୍ତିରେ ଥାଇ କୃଷି କର୍ମରେ ମନୋନିବେଶ କରୁଥିଲେ ।

———

## ପାଦଟୀକା

(୧) A Short History of the World, H. G. Wells,—P. 49-50 । (୨) The Indus Civilisation, M. Wheeler—P.67 । (୩) ହ. ର୍‌, ରାମ ଗୋବିନ୍ଦ—ପୃ ୫୪୦ । (୪) ବୈଦିକ ପ୍ରାର୍ଥନା, କେତକୀ ନାୟକ—ପୃ ୧୨୮ । (୫) "ଦୁସ୍ସାଃ କୃଷସ୍ତୁଧ୍ୱ ।" ଢ. ସଂ, ଦୁର୍ଗାଦାସ, ୧୪ଶ ଫକ୍ଷ୍ୟା—ପୃ ୪୧୭ । (୬) ସ୍ତ୍ରୀ.ଆ.ଇ, ଦକ୍ଷଭଞ୍ଜ—ପୃ ୧୨୮-୧୩୦ । (୭) H.C.I.P, vol. VI—P. 641 । (୮) History of India, A. L. Srivastava—P. 283 । (୯) A History of India, K. N. Shastri—P. 317 । (୧୦) 'ବୈଶେଚ କୃଷାଭରତେ ବସାମି ।' ଦଂ. ମ, ଅନୁ ୧୧,୧୯ । (୧୧) 'କୃଷିପ୍ରଗ୍ନେତ୍ତମା ବୃତ୍ତିଃ' । ଶୁ. ନୀ, ମଚ୍ଛ୍ରୁକାଗ୍ରର୍ଯ୍ୟ—ପୃ ୮୬ । (୧୨) ବ. ପୃ ୩,୮,୧୦ ଶ୍ରୀମଦଭାଗବତ, ଚିନ୍ତାମଣି ୪,୧୭,୨୪ । ୪,୧୮,୬ । (୧୩) Kautilya's Arthasastra, R. Shamsastri, BI, Ch. IV—P. 8 । (୧୪) ବ. ପୁ ୩,୮,୩୦ ମନୁ ୧୦,୭୯ । (୧୫) ବ.ପୃ ୩,୮,୩୯ । ସଂ. ମ, ଶାନ୍ତ ୭୮,୨ । (୧୬) ମନୁ ୧୦,୮୧—୮୨ । (୧୭) ପରାଶର ୨,୨ (୧୭) ମନୁ, ୧୦,୮୧—୮୨ । (୧୮) ପରାଶର ୨,୨ । (୧୯) ସା. ମ, ମଧ୍ୟ—ପୃ ୧୪ ।

ଦ୍ରଷ୍ଟବ୍ୟ—ପୁରାଣ ପ୍ରକାଶିକା କମ୍ପାନୀର ମହାଭାରତରେ ବପ୍ରର ନାମ 'ସଦାନନ୍ଦ' (ମ ୧୪ପୃ) । ପୋଥିରେ ବପ୍ରର ନାମ 'ଶିବ ଦାସ', ନଗରର ନାମ 'ଶିବନୀ ନଗର' ଓ ଶିବଙ୍କ ନାମ 'ମଣ୍ଡେଶ୍ୱର' । (ମୂ. ପୋ, ମଧ୍ୟ ୧ମ—ପୃ ୧୭କ) ସେଥିରେ ମଧ୍ୟ ଅଛି—

"ଶତେପୁତ୍ର ହୋଇବ ମୋର ହୋଇବ କୃଷିନାଶ ।"

"ସେ ବାଳୁତ ବ୍ରାହ୍ମଣର ହୋଇଲା ଅନେକ ସନ୍ତତ
ବେଦମନ୍ତ୍ର ନ ଜାଣି ସେ କୃଷି କ କଲା ପ୍ରୀତ ।" (ମଧ୍ୟ ୧ମ—ପୃ ୧୮କ)

(୨୦) ସା. ମ, ସ୍ୱ—ପୃ ୩ ।

ଦ୍ରଷ୍ଟବ୍ୟ—ଗୋପୀନାଥ ଦାସଙ୍କ ମହାଭାରତରେ ଏହିକଥା ଅଛି ।

"ସେ ବୋଇଲା ମୋ ମୂଳରେ ସିନା କାର୍ଯ୍ୟ
ତୁମ୍ଭର ବାଡ ତୁମ୍ଭେ ଘେନଯାଅ ଧାଜ ।" (ମ.ସା.ସଂ—ପୃ ୬୮୨—୬୮୩)

(୨୧) ଦା. ର, ବଳରାମ, ଲଂକା—ପୃ ୨୦୫ (୨୨) ଓ. ସା. ଇ, ୧ମ ସୂର୍ଯ୍ୟନାରାୟଣ—ପୃ ୮୩ (୨୩) ମନୁ ୧୦,୭୯-୮୦ (୨୪) ବି. ପୃ ୩,୮,୩୯ (୨୫) ଉ. ଇ, କୃପାସିନ୍ଧୁ—ପୃ ୧୬୯-୧୭୦ (୨୬) ପରାଶର ୧,୭୦ । ମନୁ ୧୦,୧୧୩ । ବି. ପୃ ୩,୮,୩୨ (୨୭) ପରାଶର ୨,୧୯ ।

(୨୮) ଶୁଦମୁନି—ଶ୍ରୀ ସାରଳା ଦାସ ତୋ ଶରଣ ।" ସା. ମ, ଆଦ୍ୟ—ପୃ ୩୨୩ । (୨୯) ମ. ପୋ. ମଧ୍ୟ ୨ସ୍କ—ପୃ ୧୬୧କ (୩୦) ଶା. ଚ, ମୃତ୍ୟୁଞ୍ଜୟ—ପୃ ୩୮
(୩୧ "ବଳି ଷଡ଼ଭାଗ ମୁଛ୍ଚ୍ୟ ନୃପସ୍ୟାରକ୍ଷିତୁଃ ପ୍ରଜାଃ ।" ସଂ. ରା, ଅଯୋଧ୍ୟା ୭୫,୨୫ ।
(୩୨) "ସ ଷଡ଼ଭାଗମପି ପ୍ରାଜ୍ଞ ସ୍ତାମେବାଭି ଗୁପ୍ତୟେ ।"

ସଂ. ମ—ଶାନ୍ତି ୭୧, ୧୦ ।

(୩୩) Kautilya's Arthasastra—R. Shamsastri—P, 99
(୩୪) Alberuni's India—Sachbau, BII—Ch. LXVII, P.149.
(୩୫) Kautilya's Arthasastra, P. 272 (୩୬) ମନୁ ୭, ୧୩୦ ।
(୩୭ "ଶହେମାଣେ ଏକ ଚନା ସୁନା ଦେଉ ସଞ୍ଜା ।"ସା. ମ—ବନ—ପୃ ୭୦ ।
(୩୮) "ମାଣେ ଜମିରୁ ଚନାଏ ନଅଇ ସେ ସନ୍ତା ।" ସା. ମ, ବନ—ପୃ ୨୪୭ ।
(୩୯) "ମାଣେ ଭୂମିକ ଚନାଏ କର ଦ୍ୟନ୍ତ ଗୃହୀ ।" ଏଜନ୍—ପୃ ୨୦୫ ।
(୪୦) "ବାଟିକରେ ଏକ ଚନା ନେଉଥିଲେ ଦଣ୍ଡୀ ।" ସା. ମ—ଶାନ୍ତି—ପୃ ୨ ।
"ବାଟୀକେ ଚୀନାଏ୍ ଘେନୁଥିବା ଶଯା ।"ମୂ,ପୋ,ଶାନ୍ତି—ପୃ୧୫୫ କ ।
(୪୧) "ବାଟିକ ଭୂମିରୁ ପାଞ୍ଚ ଚନା ସର୍ଣ୍ଣ ଲେଖି ।" ସା. ମ—ମଧ୍ୟ—ପୃ ୨୯୦ ।

(ଦ୍ରଷ୍ଟବ୍ୟ—ଏହି ବୃତ୍ତାନ୍ତ ମୂଳ ଗାଁ ପୋଥିରେ ନାହିଁ ।)

(୪୨) ଏକ ମାଢ଼ ସୁନା ଟ ୯। ସଙ୍ଗେ ସମାନ । ମାଢ଼କ ୧୦ ଚନା । ତେଣୁ ଚନାକ ପ୍ରାୟ ଟ ୦।୬୷ ହେଉଅଛୁ ।

(ଦ୍ରଷ୍ଟବ୍ୟ—ଉ. ଇ. କୃପାସିନ୍ଧୁ—ପୃ ୧୦୯)

(୪୩) ମା. ପା—ପ୍ରାଚୀ—ପୃ ୧୮ (୪୪) ଉ. ଇ—କୃପାସିନ୍ଧୁ—ପୃ ୧୭୨ ।
(୪୫) ଏଜନ୍—ପୃ ୧୬୮ (୪୬) ମା. ପା—ପ୍ରାଚୀ-ପୃ ୩୦ (୪୭) ସା. ମ—ଶାନ୍ତି-ପୃ ୧ ।
ମୂ. ପୋ—ଶାନ୍ତି—ପୃ ୧୫୫ କ ।

"କୋଡ଼ଏ ହାଥ କର କରବୁ ନଳ କାଠି
ବଂଶ ମାଣରେ କରବୁ ଏକବାଟୀ ।"

(୪୮) ସା. ମ—ଆଦ୍ୟ-ପୃ ୨୦୧ (ଗ୍ର. ନ. ପ୍ର) । ସା. ମ—ଆଦ୍ୟ (ପୂ. ପ୍ର. ଙ୍କ.) —ପୃ ୨୨୩ । (୪୯) "ବାରହସ୍ତେ ନଳେ ଜାଣ ଗୋ ।" ଲୀଳାବତୀ ସୂତ୍ର—ପୃ ୧୦୫, ୧୦୭ । (୫୦) ଉ. ଇ—କୃପାସିନ୍ଧୁ-ପୃ ୧୦୮ । ଓ. ଇ—୧ମ—ମହତାବ-ପୃ ୧୬୪
(୫୧) A History of Orissa—N. K. Sahu—Part II—P. 236
(୫୨) ଉ.ଇ—କୃପାସିନ୍ଧୁ-ପୃ ୧୦୮ (୫୩) ମା. ପା—ପ୍ରାଚୀ-୩୧ (୫୪) E. O. L. S. —K. B. Tripathy—P. 284 । (୫୫) ହ. ଋ—ଗ୍ରମଗୋବନ୍ଦ ୧୬୩, ୨୧ । ୨୫, ୧୫ । ୯୪୮, ୬ । Evolution of Indian Culture—B. N. Luniya—P. 58 (୫୬) ପା. କା. ଭ—ବାସୁଦେବଶରଣ—ପୃ ୧୬୭

(୫୭) I. A. T. P—B. N. Puri—P. 121 (୫୮) Kautilya's Arthasastra – Shamsastri—P. 127

(୫୯) "ବଡ଼ମାନୈ ବଳୀବର୍ଦ୍ଦୈ ର୍କିର୍ଷକେଣ ଦୁରସ୍ଥାନା"

ସଂ. ର—ଅଯୋଧ୍ୟା—୨୪-୨୩ ।

(୬୦) ତଥ୍ୟ ଲଙ୍ଗଲ ଦୃସ୍ତସ୍ୟ କୃଷଚ୍ଛ କ୍ଷେତମଣ୍ଡଳମ୍ । ଏକାକ୍ ୧୧୮, ୨୮ ।

(୬୧) ପରାଶର ୨, ୮ । ୨, ୧୨ । (୬୨) ଶା. ଚ—ମୁଖ୍ୟସ୍ତମ୍ଭ—ପୃ ୧୭ (୬୩) ମୃ. ପୋ—ପଞ୍ଚ ୨ସ୍କ—ପୃ ୧୬୧କ । (୬୪) ଦା. ଗ—ଆଦ—ବଳରାମ—ପୃ ୩୦ । (୬୫) ଓ. ସା. ପ—୧ମ—ସୂର୍ଯ୍ୟନାରାୟଣ—ପୃ ୩୩-୩୪ । (୬୬) ସା. ମ—ସଭା—ପୃ ୯୮ ।

ଦ୍ରଷ୍ଟବ୍ୟ—"ଏକା ନଉଦରୁ ଭାତ ପରଷନ୍ତୁ ଗୋସାମଣି ।" (ମୃ. ପୋ—ସଭା ୧ମ—ପୃ ୧୩୮ ଖ) (୬୭) ସା. ମ—ସଭା—ପୃ ୪୯ ।

"ଚାଷିକରେ ଭଣ୍ଡୁ ଲ ଦେବେ ଏକ ସେ ପଢ଼ନ୍ତି ।"(ମୃ.ପୋ—ସଭା୧ମ—ପୃ୨୪କ)

(୬୮) ଓ· ଇ—୧ମ—ହରେକୃଷ୍ଣ—ପୃ ୧୭୫ । (୬୯) Evolution of Indian Culture—B.N. Luniya—P. 58 H. C· I· P. Vol I—P. 395 (୭୦) ସଂ· ମ—ସଭା ୫—୭୮-୭୯ । (୭୧) Our Oriental Heritage – Durant—P. 477-488 (୭୨) India under Kushans—B. N. Puri—P. 113 (୭୩) Our Oriental Heritage—Durant—p. 477-488 (୭୪) A History of South India—K. N. Shastri—p· 318. (୭୫) ସା. ମ—ମଧ୍ୟ—ପୃ ୩୬୬ । (ଏହି ବୃତ୍ତାନ୍ତ ପୋଥିରେ ଅଛିବ) (୭୬) ଉ. ଇ—କୃପାସିନ୍ଧୁ—ପୃ ୩୪ (୭୭) ଓ. ଇ—୧ମ—ହରେକୃଷ୍ଣ—ପୃ୨୭-୨୮ । (୭୮) ମା· ପା—ପ୍ରାଚୀ—ପୃ୪, ୧୭, ୧୮, ୨୩, ୨୪, ୩୨-୩୪, ୩୬, ୪୧ । (୭୯) Kautilya's Arthasastra—Shamsastri—B II, Ch II—p. 49, 195 (୮୦) ସା. ମ—ଉଦ୍—ପୃ ୬୪ ।

ଦ୍ରଷ୍ଟବ୍ୟ—ମୂଳ ଗାଁ ପୋଥିର ବନ ପର୍ବରେ ଉକ୍ତଅଛି ଯେ, "ଦଣ୍ଡା ଗୋପନ୍ତୁ ଯେ କରନ୍ତୁ ହରଣ", ତାହାଙ୍କର ସନ୍ତାନ ସେ ନୁହଇ ଯଥାର୍ଥ ।" (ବନ ୨ସ୍କ, ପୃ ୮୬ ଖ) (୮୧) ଉ. ଇ—କୃପାସିନ୍ଧୁ—ପୃ ୧୩୧ (୮୨) E. O. L. S—K, B. Tripathy p. 284 (୮୩) ମା. ପା—ପ୍ରାଚୀ—ପୃ୩୧ (୮୪) ଦା. ଗ—ବଳରାମ—ସନ୍ଦର—ପୃ୯୯ (୮୫) ବୃ. ଭ—ରାମ ଗୋବିନ୍ଦ ୧୩୧୯, ୬ (୮୬) Kautilya's Arthasastra—B II, Ch IV – P. 58 (୮୭) I. A. T. P.—B. N. puri—p. 123-124 (୮୮) ସା. ମ—ସଭା—ପୃ୩୭ (ପୋଥିରେ ନାହିଁ) (୮୯) ଦା. ଗ—ଆଦ—ବଳରାମ—ପୃ୬୦ (୯୦) ସଂ. ମ—ଶାନ୍ତି ୮୮, ୨୮ (୯୧) ଏକାକ୍—ସଭା ୫, ୬୯ (୯୨) Kautilya's Arthasastra—BII. ChI—p. 46-47 (୯୩)

H· C. I. P–Vol I—p. 315. Our Oriental Heritage—W. Durant—p. 399-400 (୯୪) Evolution of Indian Culture —p. 58 (୯୫) Hindu Civilisation—pI—p. 147 (୯୬) I·A.T.P B. N. Puri–p. 120-124 (୯୭) ସଂ. ମ—ଅନୁ ୧୧୧—୭୧-୭୨ (୯୮) ବ. ପୃ. ୧, ୬, ୨୧-୨୫ (୯୯) 'ଭାତ ଛଅଣ ଯେତେକ ରାନ୍ଧିଥିଲେ ପୁଣି'—ସା. ମ—ଆଦ୍ୟ—ପୃ ୬୮ ।

(୧୦୦) "ଏକ ହାଣ୍ଡି କରେ ଭାତ ହାଣ୍ଡି ଏ ରାନ୍ଧିଲେ ।"

ସା. ମ — ଆଦ୍ୟ — ପୃ ୯୪ ।

"ସ୍ୱେତ କୁଣ୍ଡାଇ ଗୋଟିକରେ ଭାତ ରାନ୍ଧିଲେ ।"

ମ. ପୋ. — ଆଦ୍ୟ ୧ମ—ପୃ ୧୩୪ ଖ ।

(୧୦୧) "ଆଳାକ ଭାତ ସମସ୍ତେ ଭୁଞ୍ଜିବା କେମନ୍ତେ ।" ସା· ମ, ଆଦ୍ୟ, ପୃ୧୩୫ । (୧୦୨) "ପୂଜା ନ ଘେନନ୍ତି ନ ଭୁଞ୍ଜନ୍ତି ଭାତ ।" ସା. ମ, ମୂ, ପୃ ୧୮ । (୧୦୩) ମୂ. ପୋ, ସଭା ୧ମ, ପୃ· ୧୩୮ ଖ (୧୦୪) ସା. ମ. ସ୍ୱ, ପୃ ୨ । ସା. ମ ସଭା, ପୃ ୪୯ । ମୂ. ପୋ, ସଭା ୧ମ, ପୃ ୭୪ କ (୧୦୫) ସା· ମ, ବ, ପୃ ୪୫ (୧୦୬) H. C. I. P, Vol V, P. 516 (୧୦୭) ଓ. ପ୍ର. ସ, ବଟକୃଷ୍ଣ, ପୃ ୨୩ (୧୦୮) ଶାକର ମୁଗ ଯେ ଅନ୍ୟ ଦ୍ରବ୍ୟ ଖଣ୍ଡପୁଡ଼ା । ସା. ମ, ଆଦ୍ୟ, ପୃ ୩୨୦ । (୧୦୯) ସା. ମ, ସଭା, ପୃ ୩୭ । ମୂ. ପୋ, ସଭା ୧ମ, ପୃ ୫୪ ଖ ।

"ଧାନ ଚାଉଳ ବିରି ମୁଗ ପଣସ ମକରମାନ ।
ନାବମାନଙ୍କରେ ଚଳି ଆସୁଥିବ ହୁର ଉଦ୍ୟାନ ବନ ॥"

(୧୧୦) "ହସ୍ତୀ ଘୋଡ଼ାଙ୍କୁ ଦେଲେ ସେ ବର ଆଦ ବିରି ।" ସା. ମ. ଆଦ୍ୟ, ପୃ ୯୪ । (୧୧୧) ଛଗଡମାଳୀ ବଚନ, ଗୋପାଳଚନ୍ଦ୍ର, ପୃ ୧୮୪ (୧୧୨) ଏଜନ୍, ପୃ ୧୫୯ (୧୧୩) ସା. ମ. ଆଦ୍ୟ, ପୃ ୨୪୯ । ଗଦା, ପୃ୩ । (୧୧୪) ମୂ ପୋ, ସଭା ୧ମ, ପୃ ୩୫ କ । (୧୧୫) ହ· ଇ, କୃପାସିନ୍ଧୁ, ପୃ ୧୭୫ (୧୧୬) ନର୍ଯ୍ୟାଗୀତିକା, ଖଗେଶ୍ୱର, ପୃ ୧୨୨ । (୧୧୭) ଓ ପ୍ର. ସଂ, ବଟକୃଷ୍ଣ, ପୃ ୪୪ (୧୧୮) ମୂ· ପୋ, ସଭା, ୧ମ, ପୃ ୫୪ ଖ (୧୧୯) ଶା. ଚ, ମୃତ୍ୟୁଞ୍ଜୟ, ପୃ ୩୮ । (୧୨୦) ଛଗଡମାଳୀ ବଚନ, ଗୋପାଳଚନ୍ଦ୍ର, ପୃ ୧୪ । (୧୨୧) ସା. ମ, ମଧ୍ୟ, ପୃ ୫୫ । (ଏହା ପୋଥିରେ ଅଭାବ) । (୧୨୨) "ଅଗୁରୁ ଚନ୍ଦନ କର୍ପୂର ହଳଦୀ ।" ମୂ· ପୋ, ମଧ୍ୟ ୧ମ, ପୃ ୧୫୫ ଖ । (୧୨୩) ଦା· ଗ, ବଳରାମ, ଆଦ, ପୃ ୧୮୩ । (୧୨୪) ଛଗଡମାଳୀ ବଚନ, ପୃ ୨୨୩ ଓ ୨୨୪ । (୧୨୫) "ଲୁଣ ସଦ୍ଧତେ ବେଶର ଦେଇ ସେନ୍ଧ ଲଗେ ।" ସା. ମ. ବ, ପୃ ୧୧ । (୧୨୬) ଛ· ଚ. ବ, ଗୋପାଳଚନ୍ଦ୍ର, ପୃ ୨୨୧ । (୧୨୭) "କର୍ପୂର ତାମ୍ବୂଳ ଦେବ କରନ୍ତୁ

ସ୍ୱେଜନ ।" ମୃ. ପୋ, ମଧ୍ୟ ୧ମ, ପୃ ୧୬୦ ନ । (୧୨୮) ଭ. ଛ. ବ, ପୃ ୧୩୩ (୧୨୯) ମୃ. ପୋ, ସପ୍ତ ୧ମ, ପୃ ୮୨ କ । (୧୩୦) ଦା. ଗ୍ର, ଆଦ୍ୟ, ପୃ ୨୧ (୧୩୧) ଓ ହା. ଇ, ୧ମ, ସୂର୍ଯ୍ୟନାରାୟଣ, ପୃ ୯୫ । (୧୩୨) History of India, Srivastava, P. 283. (୧୩୩) H. C. I. P, Vol VI, P-641-642. (୧୩୪) ସା. ମ, ମଧ୍ୟ, ପୃ ୩୩୫ (ଏହା ଛୋଟରେ ମିଳୁ ନାହିଁ) । (୧୩୫) Chinese Accounts of India, Samuel Beal, P. 410-411 (୧୩୬) Ibid, P. 413. (୧୩୭) ତୁ. ସୁ. ନ, ନାରାୟଣ, ପୃ ୬୧ ଓ ୧୨୯ (୧୩୮) ଦା. ଗ୍ର, ବଳରାମ; ଆଦ୍ୟ ପୃ ୧୬ ଓ ୨୦୧ । (୧୩୯) H. C. I. P, Vol VI, P. 642. (୧୪୦) ମୃ. ପୋ, ସପ୍ତ ୧ମ, ପୃ '୩୮ ଖ (୧୪୧) ଏଜନ୍, ପୃ ୫୪ ଖ (୧୪୨) ଭ. ଛ. ବ, ଗୋପାଳଚନ୍ଦ୍ର, ପୃ ୨୧-୨୨ ।

———

# ଷଷ୍ଠ ଅଧ୍ୟାୟ

## ଶିଳ୍ପ, ବାଣିଜ୍ୟ ଓ ସ୍ଥାପତ୍ୟ

ଶିଳ୍ପ ଜୀବିକାର୍ଜ୍ଜନର ଅନ୍ୟତମ ପ୍ରମୁଖ ପନ୍ଥା । ବିଷ୍ଣୁ-ପୁରାଣ ଅନୁଯାୟୀ ବିଶ୍ୱକର୍ମା ସହସ୍ର ଶିଳ୍ପର ସ୍ରଷ୍ଟା । (୧) ମନୁଙ୍କ ମତରେ ଶିଳ୍ପ ଶୂଦ୍ରଜାତିର ବୃତ୍ତି । (୨) ପୂର୍ବେ ଭାରତରେ ବିଭିନ୍ନ ଶିଳ୍ପଜୀବୀ ରହିଥିଲେ । ସଂସ୍କୃତ ରାମାୟଣରେ କୁମ୍ଭକାର, ଲୌହକାର, ଶସ୍ତ୍ରୋପଜୀବୀ ଓ ମାୟୂରକ ଆଦି ଶିଳ୍ପଜୀବୀମାନଙ୍କର ଉଲ୍ଲେଖ ନିହିତ । (୩) ପାତଞ୍ଜଳିଙ୍କ ମହାଭାଷ୍ୟରେ କୁମ୍ଭକାର, ଲୌହକାର ଓ ବର୍ଦ୍ଧକିଙ୍କ କଥା ଅଛି । (୪) ପ୍ରାଚୀନ କାଳରେ ଭାରତୀୟଗଣ କାଷ୍ଠ ହସ୍ତୀଦନ୍ତ ଅସ୍ଥି, ଧାତୁ ଓ ଚମ ଆଦି ଶିଳ୍ପରେ ସୁନିପୁଣ ଥିଲେ ବୋଲି ୟୁରୋପୀୟମାନେ ଉପଲବ୍ଧି କରିଥିଲେ । (୫)

ବାଣିଜ୍ୟ ମଧ୍ୟର ଜୀବନ ଧାରଣର ଅନ୍ୟତମ ବୃତ୍ତି । ଯୁଗେ ଯୁଗେ ବାଣିଜ୍ୟ ଓ ତାହାର ବିକାଶ ଶାସକମାନଙ୍କର ଧ୍ୟାନ-ଧାରଣାର ବିଷୟ ହୋଇ-ଆସିଅଛି । (୬) ରାଜ୍ୟର ଅର୍ଥନୈତିକ ବ୍ୟବସ୍ଥାରେ ବାଣିଜ୍ୟ ଓ ଶିଳ୍ପ ପରସ୍ପର ସହ ଯୋଗାଯୋଗ ରକ୍ଷା କରନ୍ତି । (୭) ଶିଳ୍ପର ପ୍ରସାର ପାଇଁ ବାଣିଜ୍ୟର ଆବଶ୍ୟକତା ରହିଛି । ଶିଳ୍ପଜାତ ପଦାର୍ଥକୁ ବାଣିଜ୍ୟ ମାଧ୍ୟମରେ ଲୋକଙ୍କ ପାଖରେ ପହଞ୍ଚାଇ ଦିଆଯାଏ । ବାଣିଜ୍ୟ ଅର୍ଥାତ୍ ପରସ୍ପରର କଲ୍ୟାଣ ନିମିତ୍ତ ବସ୍ତୁର ଆଦାନ-ପ୍ରଦାନ ଏକ ସାର୍ବଜନୀନ ମାନବିକ ଅଭ୍ୟାସ (୮) ପ୍ରାଚୀନ ଭାରତରେ ଦଶବିଧ ବୃତ୍ତିସହ ଶିଳ୍ପ-ବାଣିଜ୍ୟ ପରିଗଣିତ ହେଉଥିଲା । (୯) ବର୍ଣ୍ଣାଶ୍ରମମୂଳକ ଭାରତୀୟ ସମାଜରେ ବାଣିଜ୍ୟ ବୈଶ୍ୟ-କର୍ମ ରୂପରେ ଗୃହୀତ । (୧୦) ଚତୁର୍ଦ୍ଦଶ ବିଦ୍ୟା ମଧ୍ୟରେ ବାର୍ତ୍ତା ଅନ୍ୟତମ । ବାର୍ତ୍ତା ମଧ୍ୟରେ କୃଷି, ପଶୁପାଳନ ସହ ବାଣିଜ୍ୟ ମଧ୍ୟ ପରିଗଣିତ ହୁଏ । (୧୧)

ସ୍ଥପତି କର୍ମ (ଗୃହ ଓ ମନ୍ଦିରାଦି ନିର୍ମାଣ) ମଧ୍ୟ ଜୀବିକାର୍ଜ୍ଜନର ଅନ୍ୟତମ ପନ୍ଥା । ପାତଞ୍ଜଳିଙ୍କ ମହାଭାଷ୍ୟରେ ନଗରକାରକ, କୂପ-ଖନନ (୧୨), ପ୍ରାସାଦ (ବହୁତଳବିଶିଷ୍ଟ ଅଟ୍ଟାଳିକା) ଓ କୁଟୀ (ଏକତଳବିଶିଷ୍ଟ ଗୃହ)ର ଉଲ୍ଲେଖ ଦେଖାଯାଏ । (୧୩) ସଂସ୍କୃତ ମହାଭାରତରେ ଜତୁଗୃହ, ସ୍ୱୟମ୍ବର ସଭା, ଶିବିର,

ନଗର୍ପ, ଯଜ୍ଞ ମଣ୍ଡପ, ପୁଷ୍କରଣୀ, ତଡ଼ାଗ, ପରିଖା ଆଦିର ବର୍ଣ୍ଣନା ମିଳେ । (୧୪) ଗ୍ରାମାୟଣରେ ପ୍ରାସାଦ ଓ ଗୃହ ନିର୍ମାଣ ତଥା ପରିଖା-ଖନନର ବିଷୟ ରହିଅଛି । (୧୫) ଏଥିରୁ ପ୍ରାଚୀନ ଯୁଗରେ ବିଭିନ୍ନ ସ୍ଥପତି-କର୍ମ ପ୍ରଚଳିତ ଥିବା କଥା ଅବଧାରିତ ହୁଏ ।

ମଧ୍ୟଯୁଗରେ ଶିଳ୍ପ-ବାଣିଜ୍ୟର ବିକାଶ ହୋଇଥିବାର ଜଣାଯାଏ । ସେ କାଳରେ ବୈଦେଶିକ ବଣିକମାନେ ଭାରତକୁ ବହୁସଂଖ୍ୟାରେ ଆଗମନ କରୁଥିଲେ, ଏବଂ ସୁନା-ରୂପାର ବିନିମୟରେ ବସ୍ତ୍ର ଓ ହସ୍ତୀ-ଦନ୍ତ-ନିର୍ମିତ ଦ୍ରବ୍ୟମାନ ନେଇ ଯାଉଥିଲେ । ମୁସଲମାନ ସୁଲତାନମାନେ ଦେଶରେ କାରଖାନାମାନ ସ୍ଥାପନ କରୁଥିଲେ ଏବଂ ତହିଁରୁ ପ୍ରଭୂତ ଦ୍ରବ୍ୟ ଉତ୍ପାଦିତ ହେଉଥିଲା । (୧୬) ତୁର୍କ-ଆଫଗାନ ଯୁଗରେ କୃଷି ବହୁ ଲୋକଙ୍କର ଜୀବିକା ଥିଲେ ହେଁ ସହରାଞ୍ଚଳ ତଥା ଗ୍ରାମାଞ୍ଚଳରେ ବହୁବିଧ ଶିଳ୍ପ ପ୍ରଚଳିତ ଥିଲା । ଶିଳ୍ପାନୁଷ୍ଠାନମାନ ବୈଦେଶିକ ଆକ୍ରମଣ ତଥା ଆଭ୍ୟନ୍ତରୀଣ ବିପ୍ଳବର ଧକ୍କା ସହି ତୁର୍କ-ଆଗମନର ଶହ ଶହ ବର୍ଷ ପୂର୍ବରୁ ଏ ଦେଶରେ ତିଷ୍ଠି ରହିଥିଲା । ଦିଲ୍ଲୀରେ ସୁଲତାନଙ୍କର ନିଜର କାରଖାନା ଥିଲା । ସେଥିରେ ରେଶମ ଓ କାର୍ପାସ ବସ୍ତ୍ର ପ୍ରସ୍ତୁତ ହେଉଥିଲା । ଏହି ରାଜକୀୟ କାରଖାନାରେ ସୁନା-ରୂପାର ଶିଳ୍ପ ମଧ୍ୟ କରାଯାଉଥିଲା । ବ୍ୟକ୍ତିଗତ ଭାବରେ ଲୋକେ କାର୍ପାସ, ରେଶମ, ପଶମ, ଲୌହ ଓ ତାମ୍ର ଆଦିର ଶିଳ୍ପ କରୁଥିଲେ । ସେତେବେଳେ ଭାରତ ସହିତ ଚୀନ, ମାଳୟ, ଭୁଟାନ, ତିବ୍ବତ, ଆଫଗାନସ୍ଥାନ, ପାରସ୍ୟ, ମଧ୍ୟ ଏସିଆ ଓ ପ୍ରଶାନ୍ତ ମହାସାଗରୀୟ ଅଞ୍ଚଳମାନଙ୍କର ବାଣିଜ୍ୟିକ ସଂପର୍କ ରହିଥିଲା । (୧୭) ପଞ୍ଚଦଶ ଶତାବ୍ଦୀରେ ବିଦରର 'ଗୁଉଲ' ବନ୍ଦର ବାଣିଜ୍ୟର କେନ୍ଦ୍ର ଥିବାର ଜଣାଯାଏ । କାଲିକଟ୍ ବନ୍ଦର ଠାରୁ ଲୋହିତସାଗର ଏଡ଼େନ ଓ ମକା ଅଭିମୁଖରେ ଆରବୀୟ ବାଣିଜ୍ୟ-ତରୀମାନ ଯାତ୍ରା କରୁଥିଲା । (୧୮) 'ଡଭ୍' ମଧ୍ୟ ଏକ ବାଣିଜ୍ୟ କେନ୍ଦ୍ର ଥିଲା । ସେଠାରୁ ବାଣିଜ୍ୟ-ତରୀ ଆରବ ଓ ପାରସ୍ୟର ବିଭିନ୍ନ ସ୍ଥାନକୁ ଯାତ୍ରା କରୁଥିଲା । (୧୯) ଦକ୍ଷିଣ ଭାରତରେ ବସ୍ତ୍ର, ଧାତୁ ଓ ସ୍ୱର୍ଣ୍ଣାଦି ଶିଳ୍ପର ପ୍ରଭୂତ ପ୍ରଚଳନ ଥିଲା । ଦେଶମଧ୍ୟରେ ବଣିକମାନେ ବାଣିଜ୍ୟ ବ୍ୟବସାୟରେ ରତ ଥିଲେ । (୨୦) ୧୫ଶ ଶତାବ୍ଦୀରେ ଦକ୍ଷିଣ ଭାରତର ବନ୍ଦରମାନଙ୍କୁ ଚୀନଦେଶରୁ ବାଣିଜ୍ୟ-ତରୀମାନ ଆଗମନ କରୁଥିଲା । (୨୧) ମଧ୍ୟଯୁଗରେ ଭାରତର ବାଣିଜ୍ୟିକ ସଂପର୍କ ସୁଦୂର ଆଫ୍ରିକା ମହାଦେଶ ସହିତ ଥିବାର ଜଣାଯାଏ । (୨୨)

ମାଧ୍ୟଯୁଗୀନ ଭାରତର ସ୍ଥାପତ୍ୟ ଓ ମୂର୍ତ୍ତି ଶିଳ୍ପ ବୈଦେଶିକ ମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଆଲ୍‌ବରୁଣୀ ଭାରତର ତୀର୍ଥସ୍ଥାନମାନଙ୍କରେ ଥିବା ପୁଷ୍କରିଣୀମାନ ଦେଖି ବିସ୍ମୟ ପ୍ରକାଶ କରିଥିଲେ । ସେ ହିନ୍ଦୁମାନଙ୍କର ପୁଷ୍କରିଣୀ ଖନନ କରିବା କଳା-କୌଶଳର ଭୂୟସୀ ପ୍ରଶଂସା କରିଛନ୍ତି । (୨୩) ଅମୀର୍ ଖୁସରୁ ଦିଲ୍ଲୀ ତଥା ଏକ ପର୍ବତର ପାଦଦେଶରେ ଥିବା ଜଳଭଣ୍ଡାର ଦେଖି ପ୍ରଶଂସା କରିଥିଲେ । (୨୪) ପଞ୍ଚଦଶ ଶତାବ୍ଦୀରେ ଆଗମନ କରିଥିବା ବିଦେଶୀ ପର୍ଯ୍ୟଟକମାନେ ଭାରତୀୟ ନଗରମାନଙ୍କୁ ଲଣ୍ଡନ ଓ ପାରିସ ସହ ତୁଳନା କରିବାକୁ କୁଣ୍ଠାବୋଧ କରନ୍ତି ନାହିଁ । (୨୫) ପଞ୍ଚଦଶ ଶତାବ୍ଦୀରେ ଉତ୍କଳୀୟ-ମାନେ ଶିଳ୍ପ, ବାଣିଜ୍ୟ ଓ ସ୍ଥାପତ୍ୟରେ ନୈପୁଣ୍ୟ ଲାଭ କରିଥିଲେ । ସାରଳା ଦାସଙ୍କ ମହାଭାରତ ତାହାର ଜାଜ୍ୱଲ୍ୟ ସାକ୍ଷୀ ।

## ୧. ବିଭିନ୍ନ ଶିଳ୍ପ

ସାରଳାଙ୍କ ଲେଖାରେ ବିଭିନ୍ନ ଅଳଙ୍କାର, ପରିଚ୍ଛେଦ, ବ୍ୟବହାର୍ଯ୍ୟ ବସ୍ତୁ, ଗୃହୋପକରଣ, ଯାନ-ବାହାନ ଓ ଅସ୍ତ୍ରଶସ୍ତ୍ରାଦିର ପ୍ରଭୃତି ଉଲ୍ଲେଖ ରହିଛି । ତାହାକୁ ଭିତ୍ତି କରି ସେ କାଳରେ ପ୍ରତିଷ୍ଠିତ ଥିବା ଶିଳ୍ପମାନଙ୍କର ପରିଚୟ ଲାଭ କରି ଯାଇପାରେ ।

### (କ) ଅଳଙ୍କାର

ଭାରତବର୍ଷରେ ପ୍ରାଚୀନ କାଳରୁ ଅଳଙ୍କାରର ପ୍ରସିଦ୍ଧି ଅଛି । ମହାଭାରତ ଯୁଗରେ ରାଜାମାନେ ମୁକୁଟ ଓ ନିଷ୍କ-ହାର (୨୬); ରାଜକନ୍ୟାଗଣ ସୁବର୍ଣ୍ଣ-ହାର, କୁଣ୍ଡଳ, କେୟୁର ତଥା ଅଙ୍ଗଦ ବ୍ୟବହାର କରୁଥିଲେ । (୨୭) ରାମାୟଣରେ ଅଛି ଯେ ରାମଚନ୍ଦ୍ର ସୁଯଜ୍ଞ ନାମକ ବିପ୍ରକୁ କୁଣ୍ଡଳ, ସ୍ୱର୍ଣ୍ଣହାର, କେୟୁର ଓ ବଳୟ ଦାନ କରିଥିଲେ । (୨୮) ଭାଗବତରେ ଶ୍ରୀକୃଷ୍ଣଙ୍କ ବେଶବିନ୍ୟାସ ପ୍ରସଙ୍ଗରେ ମେଖଳା, ଅଙ୍ଗୁରୀୟ, ନୂପୁର, କଙ୍କଣ, କେୟୁର (ବାଜୁବନ୍ଧ), କୁଣ୍ଡଳ ଓ କିରୀଟର ବର୍ଣ୍ଣନା କରାଯାଇଅଛି । (୨୯) ବିଷ୍ଣୁପୁରାଣରେ କୁଣ୍ଡଳ, ବଳୟ, ମୁକୁଟ ଓ କର୍ଣ୍ଣାଳଙ୍କାରର ଉଲ୍ଲେଖ ରହିଛି (୩୦) ।

ସାରଳା ଦାସଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ପଞ୍ଚଦଶ ଶତାବ୍ଦୀର ଉତ୍କଳୀୟ ନାରୀମାନେ ବହୁବିଧ ଅଳଙ୍କାର ବ୍ୟବହାର କରୁଥିଲେ । କବି କହନ୍ତି ଯେ,

ଦ୍ରୌପଦୀ ସ୍ୱୟମ୍ବର କାଳରେ ବହୁ ଅଳଙ୍କାର ପରିଧାନ କରିଥିଲେ । (ଆ୨୫୧ପୃ) ତାଙ୍କର ଦାସୀମାନେ ମଧ୍ୟ ଅଳଙ୍କୃତା ହୋଇଥିଲେ । (୩୧) ସାନେନ୍ଦ୍ରୀ କନ୍ୟାକୁ ଅଳଙ୍କାର ସହ ବେଦୀରେ ବସାଇବାକୁ ବ୍ରହ୍ମା ନିର୍ଦ୍ଦେଶ ଦେଇଥିଲେ । (ମ୨୩୬ପୃ) କୀଚକ ମୂଦୁସୁଲ୍ଲି ହାତରେ ଦ୍ରୌପଦୀଙ୍କ ପାଇଁ ବହୁବିଧ ଅଳଙ୍କାର ପ୍ରେରଣ କରି-ଥିଲେ । (ବି୫୬ପୃ) ସେ କାଳର ନାରୀମାନେ ଯେଉଁ ଅଳଙ୍କାରମାନ ପରିଧାନ କରୁଥିଲେ ତାହା ନିମ୍ନ ପଂକ୍ତିମାନଙ୍କରୁ ଅବଧାରିତ ହେବ ।

"ମୁକୁତା ଜାଲି ଉପରେ ସୀମନ୍ତିନୀ ମଣି
ଲଲାଟ ପଟରେ ହୀରା ରତନ ଖଞ୍ଜଣି ।
ପଦ୍ମରାଗର ତାଟଙ୍କ ରତ୍ନବେଷ୍ଟି କର୍ଣ୍ଣେ
ବାଳ ଆଦିତ୍ୟ କି ଗଣ୍ଡସ୍ଥଳେ ନାନା ବର୍ଣ୍ଣେ ।
ନାସାରେ ଅଷ୍ଟରତ୍ନର ଫୁଲ ଯେ ବସଣୀ
ସୂର୍ଯ୍ୟପାଖରେ ଚନ୍ଦ୍ରମା ଉଇଁଲକି ପୁଣି ।
ହୃଦରେ ମୁକୁତା ହାର ଶତେ ଶତେ ସରି
ଗଗନେ ତାରକା ପନ୍ତି ଉଦେହେଲା ପରି ।
ଭୁଜରେ କଙ୍କଣ ଦିବ୍ୟ ରତ୍ନ ବେନି ଚୂଡ଼ି
ଅଷ୍ଟରତନ ଖଚିତ ବଦ ମୁଦି ଯୋଡ଼ି ।
ପାଦରେ ନୂପୁର ତହିଁ ଝଟକନ୍ତି ହୀରା
ନ ସହଇ ସେ ସୁନ୍ଦରୀ ଅଳଙ୍କାର ଭାରା ।"' (୩୨)
"ନିଅ ଲଲାଟ ବନ୍ଧାଣ ଶିର ସିମନ୍ତମୀ
ମୁକୁତାର ଜାଲ ହରିତାଳ ଲେଖା ପୁଣି ।
ବଳା ରୂପସରି ଦଶ ଅବତାର ମାଳ
ସୁବର୍ଣ୍ଣର ଚୂଡ଼ି କଟି କିଙ୍କିଣୀ ମେଖଳ ।
ବଦ ମୁଦି ବାହୁଟି ଯେ ସୁନାପାଣି ଦ୍ରବ୍ୟ
ରୁଣୁଝୁଣୁ ନୂପୁର ଯେ ଚରଣେ ଆରମ୍ଭ ।" (ବି୫୬ପୃ)

ସେ କାଳରେ ପୁରୁଷମାନେ ମଧ୍ୟ ନାରୀମାନଙ୍କ ଭଳି ଅଳଙ୍କାର ପରିଧାନ କରୁଥିଲେ । ଦ୍ରୌପଦୀଙ୍କ ସ୍ୱୟମ୍ବର ସଭାରେ ଯୋଗଦେବା ନିମିତ୍ତ ଦୁର୍ଯ୍ୟୋଧନ ଅଳଙ୍କୃତ ହୋଇ ଗମନ କରିଥିଲେ ବୋଲି କବି କହନ୍ତି । (ଆ୨୬୨ପୃ) ଚନ୍ଦ୍ରା-ବତୀଙ୍କର ସ୍ୱୟମ୍ବର ସଭାକୁ ଆଗତ ରାଜାମାନଙ୍କୁ ଦୁର୍ଯ୍ୟୋଧନ ଅଳଙ୍କାରମାନ

ପ୍ରଦାନ କରୁଥିଲେ । (ମ୨୫୮ପୃ) ଖ୍ରୀଷ୍ଟ ଯୁଦ୍ଧଯାତ୍ରାରେ ବର୍ଦ୍ଧିତ ହେବାବେଳେ ସୁଭୂଷିତ ହୋଇଥିଲେ । (ଖ୍ରୀ୧୯ପୃ) ଖ୍ରୀଷ୍ଟ ବିବାହ ଯାତ୍ରାରେ ଗଲାବେଳେ ଅଳଙ୍କାର ପରିଧାନ କରିଥିଲେ । (ଆ୧୮ପୃ) ପୁରୁଷମାନେ କଭଳି ଅଳଙ୍କାର ବ୍ୟବହାର କରୁଥିଲେ । ତାହା ନିମ୍ନ ବର୍ଣ୍ଣନାରୁ ଜଣାଯିବ ।

"ଶିରରେ ରତନ ମଣି ମୁକୁଟ ଉଜ୍ଜ୍ୱଳ
ଭୁଜରେ ତାଡ଼ ତୋଡ଼ର କର୍ଣ୍ଣେ କର୍ଣ୍ଣାଞ୍ଚଳ ।"
"ଶିରେ ଶୋହେ ରତ୍ନମଣି ମୁକୁଟ ସୁତଳ
ହୃଦରେ ଭୂଷଣ କଣ୍ଠଦେଶେ ରତ୍ନମାଳ ।
ବାହୁରେ ତାଡ଼ ତୋଡ଼ର କର୍ଣ୍ଣରେ କୁଣ୍ଡଳ
ଖେଳନ୍ତା ସିଂହକୁ ନିନ୍ଦେ ଜାହ୍ନବୀର ବାଳ ।" (ଆ୧୮ପୃ)
"ତାଡ଼ ଝୁମ୍ପା ବାହୁଟି ଯେ ପାଦବଳା
ଶିରକୁ ସୀମନ୍ତ ହାର ହୃଦୟକୁ ମାଳା ।
ରତ୍ନମଣି ମୁକୁଟ ଯେ ବିରାଜଇ ଶିରେ ।
ବିଦମୁଦ୍ର କଙ୍କଣ ଯେ ଶୋଭଇ ବାହୁରେ ।"
"ମସ୍ତକେ ମୁକୁଟ ଲାଗିଅଛି ତହିଁ ମଣି
ନାନା ରତ୍ନ ଆଭରଣ ଶୋଭା ଷାରମଣି ।
ବାହୁ ହସ୍ତରେ କଙ୍କଣ ହୃଦେ ରତ୍ନମାଳା
କଟିରେ ମେଖଳା ପାଦେ ଅଛି ଜଗଦ୍‌ବଳା ।
ଶିରେ ଝଞ୍ଜା ହୋଇଅଛି ବହୁମୂଲ୍ୟ ମାଳା
ନାନାରତ୍ନେ ବିଭୂଷିତ ଶାନ୍ତନୁର ବଳା ।" (ଖ୍ରୀ୧୯ପୃ)

ପୁରୁଷ ତଥା ନାରୀ ଉଭୟେ ଅଳଙ୍କାର ପରିଧାନ କରିବାର ପରମ୍ପରା ପଞ୍ଚଦଶ ଶତାବ୍ଦୀର ବହୁ ପୂର୍ବରୁ ଭାରତ ତଥା ଓଡ଼ିଶାରେ ପ୍ରଚଳିତ ଥିଲା ।

ଆଲ୍‌ବରୁଣୀଙ୍କ ବିବରଣୀରୁ ଜଣାଯାଏ ଯେ, ସେ ଯୁଗରେ ପୁରୁଷମାନେ ନାରୀସୁଲଭ କର୍ଣ୍ଣାଳଙ୍କାର, ବାହୁ ବଳୟ ଓ ସୁବର୍ଣ୍ଣ-ମୁଦ୍ରିକା ପରିଧାନ କରୁଥିଲେ । (୩୩) ଉତ୍କଳର ଶିଳାଲିପିରୁ ଉପଲବ୍ଧ ହୁଏ ଯେ, ପ୍ରାଚୀନ ଉତ୍କଳର ନର-ନାରୀ ଉଭୟେ ଅଳଙ୍କାର ଲଗାଉଥିଲେ । କେତେକ ଦୃଷ୍ଟାନ୍ତରୁ ତାହା ଅବଧାରିତ ହୁଏ । ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରରେ ଥିବା ଗୋଟିଏ ମୂର୍ତ୍ତିରେ ଦେଖାଯାଏ ଯେ, ପୁତ୍ର ମାତାର ମୁକ୍ତାହାରକୁ ଧରିଅଛି । (୩୪)

ରାଜାରାଣୀ ମନ୍ଦିରର ଗୋଟିଏ ଦୃଶ୍ୟରେ ପରିଦୃଷ୍ଟ ହୁଏ ଯେ ନାରୀଟିଏ ଗୋଟିଏ ହାତରେ ବଳାଟିଏ ଧରିଛି ଓ ଅନ୍ୟ ହାତରେ ପାଦରୁ ବଳା ବାହାର କରୁଛି । (୩୫) ସୁନ୍ଦରପଦା ଗ୍ରାମରୁ ପ୍ରାପ୍ତ ନାଗରାଣୀ ଓ ନାଗରାଜ ମୂର୍ତ୍ତିରେ ଅଳଙ୍କାର ରହିଛି । (୩୬) ପର୍ଶୁରାମ ମନ୍ଦିରର ମୂର୍ତ୍ତିମାନଙ୍କରୁ କୋଡ଼ିଏ ପ୍ରକାର ମେଖଳାର ପରିଚୟ ମିଳେ । (୩୭) କୋଣାର୍କର ସୂର୍ଯ୍ୟମୂର୍ତ୍ତିରେ ମୁକୁଟ, କୁଣ୍ଡଳ ଓ ହାର ଦେଖାଯାଏ । (୩୮) ସାରଳାଙ୍କ ପୂର୍ବବର୍ତ୍ତୀ ଯୁଗର ଲେଖା ସାହିତ୍ୟଦର୍ପଣ ଗ୍ରନ୍ଥରେ ଅଳଙ୍କାରର ବର୍ଣ୍ଣନା ମିଳେ । (୩୯) ଜୟଦେବଙ୍କ ଗୀତଗୋବିନ୍ଦରେ ଶ୍ରୀକୃଷ୍ଣଙ୍କ ଅଳଙ୍କାର କୁଣ୍ଡଳ (୪୦), ବଳୟ ବା କଙ୍କଣର (୪୧) ଉଲ୍ଲେଖ ନିହିତ । ଚନ୍ଦ୍ରକଳା ନାଟକରେ କଟକ ଓ ମୁକ୍ତାମାଳାର ବର୍ଣ୍ଣନା ମିଳେ । (୪୨)

ସାରଳାଙ୍କ ସମସାମୟିକ ସାହିତ୍ୟରେ ନର-ନାରୀ ଉଭୟଙ୍କ ଅଳଙ୍କାରର ବର୍ଣ୍ଣନା ମିଳେ । ରୁଦ୍ରସୁଧାନିଧିରେ ପାର୍ବତୀଙ୍କ କନ୍ୟା (ପୃ୮) ତଥା ଶିବ (ପୃ୨୩-୨୪) ଉଭୟଙ୍କର ଅଳଙ୍କାର ବର୍ଣ୍ଣିତ । ଏହି କାବ୍ୟରେ ନୂପୁର, ବଳୟ, ମେଖଳା, କଙ୍କଣ, ମୁକୁଟ, କୁଣ୍ଡଳ, ମୁକ୍ତାମାଳ ଓ ସୁନାମୁଦ୍ରିର ଉଲ୍ଲେଖ ଅଛି । (୪୩) ରାମବିଭା କାବ୍ୟରେ ଶ୍ରୀରାମ ତଥା ସୀତା ଉଭୟଙ୍କ ବର୍ଣ୍ଣନାରେ କବି ଅର୍ଜୁନ ଦାସ ଅଳଙ୍କାରର ବ୍ୟବହାର ଦେଖାଇଅଛନ୍ତି । (ପୃ୨୨,୨୩) ଏହି କାବ୍ୟରେ ମୁକ୍ତାଜାଲି, ଦଶାବତାର ମାଳ, ତଡ଼ିକ (ତାଟଙ୍କ), ଥାପକ (ଫାଶିଆ) ବିଦ, ମୁଦି, କଙ୍କଣ, ନୂପୁର, ମେଖଳା, କଣ୍ଠମାଳ, ମଣିସର (ମଣିହାର), କାନଫୁଲ, ମୁକ୍ତାହାର, ସୁନାସୂତା ଓ ପାହୁଡ଼ର ବର୍ଣ୍ଣନା ମିଳେ । (୪୪) କଳ୍ପଲତା କାବ୍ୟରେ ପୁରୁଷ ଓ ନାରୀ ଉଭୟଙ୍କର ଅଳଙ୍କାର ବିନ୍ୟାସ ପ୍ରଦର୍ଶିତ । (୪୫) ଏଥିରେ ମୁକ୍ତାଜାଲି, ସୀମନ୍ତି, ତାଟଙ୍କ, କାନଫୁଲ, କଙ୍କଣ, ମେଖଳା, କୁଣ୍ଡଳ, ନୂପୁର, ହାର, ବିଦ, ମୁଦି, ବାହୁଟି, ଚୂଡ଼ୀ, ପାହୁଡ଼ ଓ କଣ୍ଠିମାଳର ଉଲ୍ଲେଖ ଅଛି । (୪୬) କପିଳେନ୍ଦ୍ର ଦେବଙ୍କ ଦ୍ୱାରା ସମର୍ପିତ ଅଳଙ୍କାରମାନଙ୍କ ମଧ୍ୟରେ ତୋଡ଼ର, ମୁକୁଟ, କାନଫୁଲ, ନୋଡ଼କ, ହୀରାମାଳ, ମାଣିକ୍ୟମାଳ, ମୁକ୍ତାମାଳ, ପଦକ, ମୁଦି, ତଡ଼କା, ମର୍କତଜାଲି, ମାଣିକ୍ୟସୂତ୍ର, କଣ୍ଠମାଳ, ବାହୁଟୀ, କଟୀମେଖଳା, ବଳା ଓ ତାଡ଼ ଆଦିର ନାମ ଦେଖାଯାଏ । (୪୭) ପୁରୁଷୋତ୍ତମ ଦେବଙ୍କ ପ୍ରଦତ୍ତ ଅଳଙ୍କାରମାନଙ୍କ ମଧ୍ୟରେ କାନଫୁଲ, ବାହୁଟୀ, ତାଡ଼ ଓ ଶିରୋଭୂଷଣର ଉଲ୍ଲେଖ ମିଳେ (୪୮) ।

ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀ ବେଳକୁ ଓଡ଼ିଆଙ୍କ ଘରେ ପ୍ରଭୂତ ଅଳଙ୍କାର ବ୍ୟବହୃତ ହେଉଥିବା କଥା ଘନକୃଷ୍ଣ ଦାସଙ୍କ ଅଳଙ୍କାର ବୋଲି (୪୯) କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀ (୫୦) ଏବଂ ପୁରୁଷୋତ୍ତମ ଦାସଙ୍କ କାଞ୍ଚୀ-କାବେରୀ (୫୧) ପାଠରୁ ଅବଧାରିତ ହୁଏ ।

## (ଖ) ବସ୍ତ୍ରଶିଳ୍ପ—

ବସ୍ତ୍ରଶିଳ୍ପ ଭାରତରେ ବହୁ ପ୍ରାଚୀନ । ଋକ୍‌ବେଦରେ ବସ୍ତ୍ରବୟନର ଉଲ୍ଲେଖ ମିଳେ । (୫୨) ସଂସ୍କୃତ ମହାଭାରତରେ ଶୁକ୍ଳବସ୍ତ୍ର, ପୀତବସ୍ତ୍ର ଓ ନୀଳ-ବସ୍ତ୍ରର ଉଲ୍ଲେଖ ଅଛି । (୫୩) ସେଥିରେ ପ୍ରାବାର ନାମକ ବହୁମୂଲ୍ୟ ବସ୍ତ୍ରର ବର୍ଣ୍ଣନା ରହିଛି । (୫୪) ମହାଭାଷ୍ୟରେ ଧୋତି, ପଟ୍ଟବସ୍ତ୍ର, ବିଭିନ୍ନ ବର୍ଣ୍ଣର ବସ୍ତ୍ର ଓ ଊର୍ଣ୍ଣ ବସ୍ତ୍ରର ବର୍ଣ୍ଣନା ମିଳେ । (୫୫) ଖ୍ରୀଷ୍ଟଙ୍କ ଜନ୍ମ ପୂର୍ବରୁ ଗ୍ରୀକ୍‌ମାନେ ବସ୍ତ୍ର ପାଇଁ ପୂର୍ଣ୍ଣତଃ ଭାରତ ଉପରେ ନିର୍ଭରଶୀଳ ଥିଲେ । (୫୬) ମଧ୍ୟ ଯୁଗରେ କାର୍ପାସ ଶିଳ୍ପର ବିଶେଷ ଉନ୍ନତି ହୋଇଥିବାର ଜଣାଯାଏ । (୫୭) ବିଷ୍ଣୁ-ପୁରାଣରେ ପୀତାମ୍ବର ତଥା ବିଭିନ୍ନ ବର୍ଣ୍ଣର ବସ୍ତ୍ରର ଉଲ୍ଲେଖ ମିଳେ । (୫୮) ପାର୍ଶ୍ଵନିକାୟ ଗ୍ରନ୍ଥରେ କ୍ଷୌମ, କାର୍ପାସ ଓ ଉଷ୍ଣବସ୍ତ୍ରର କଥା ଅଛି । (୫୯) ଭାଗବତରେ ପଟ୍ଟବସ୍ତ୍ର, କ୍ଷୌମବସ୍ତ୍ର, ଦୁକୂଳ ବା ରେଶମବସ୍ତ୍ର ବିଷୟ ନିହିତ । (୬୦)

ସାରଳା ମହାଭାରତରେ ବସ୍ତ୍ରର ବହୁ ଉଲ୍ଲେଖ ଦେଖାଯାଏ । କବି-ଲେଖାରୁ ଜଣାଯାଏ ଯେ, ସେ କାଳରେ ରାଜକୁମାରୀମାନେ କ୍ଷୀଣ ବସ୍ତ୍ର ଓ ପଟ୍ଟବସ୍ତ୍ର ପରିଧାନ କରୁଥିଲେ । କବି କହନ୍ତି ଯେ— ଦ୍ରୌପଦୀ କ୍ଷୀଣବସ୍ତ୍ର ପରିଧାନ କରି ସ୍ୱୟମ୍ବର ସଭାକୁ ଗମନ କରିଥିଲେ । (ଆ/୨୫୧ପୃ) ରାଜପୁରୁଷଗଣ ସୂକ୍ଷ୍ମ ପୀତାମ୍ବର ପରିଧାନ କରୁଥିଲେ । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ସୂକ୍ଷ୍ମ ପୀତାମ୍ବର ପିନ୍ଧାଇ-ଥିଲେ । (ମ/୧୧୦ପୃ) ସାଧାରଣ ପରିବାରର ସ୍ତ୍ରୀମାନେ ପଟ୍ଟବସ୍ତ୍ର ପିନ୍ଧୁଥିଲେ ଓ ତା ଉପରେ ପାଟ ଉପରଣି ଦେଉଥିଲେ । କବି ଲେଖିଛନ୍ତି ଯେ, ବିଷ୍ଣୁଙ୍କର ପଣ୍ଡାର ସ୍ତ୍ରୀ ପାଟଟିଏ ପିନ୍ଧି, ପାଟଟିଏ ଉପରଣି ଦେଇ କୁନ୍ତୀଙ୍କୁ ଅର୍ଘ୍ୟ ପ୍ରଦାନ କରିଥିଲେ । (ଆ/୨୨୦ପୃ) କେହି କେହି ଦୁକୂଳ ବା ରେଶମୀବସ୍ତ୍ର ମଧ୍ୟ ପରିଧାନ କରୁଥିଲେ । ଜାରାଶବର ନାଲି ବର୍ଣ୍ଣର ଦୁକୂଳ ପିନ୍ଧି ଅସ୍ତ୍ରଶିକ୍ଷା ପାଇଁ ଦ୍ରୋଣାଚାର୍ଯ୍ୟଙ୍କ ଆଖଡ଼ାକୁ ଆସିଥିଲେ ବୋଲି କବି କହନ୍ତି । (୬୧)

ବିଭିନ୍ନ ବର୍ଣ୍ଣର ବସ୍ତ୍ର ସେତେବେଳେ ଲୋକେ ବ୍ୟବହାର କରୁଥିଲେ । କବି ଚନ୍ଦ୍ରଚୂଡ଼—ଖନକାର ପରିଧାନ କରିଥିବା ବସ୍ତ୍ରର ବର୍ଣ୍ଣନା କରିଥିଲେ । (ଆ୧୫୧ପୃ) ଗଣେଶଙ୍କୁ ବସୁ କୁମାର ନୀଳ ବସ୍ତ୍ରରେ ଶୋଭିତ କରିଥିଲେ । (ବ୍ର୍ୟ୧ପୃ) କାମାକ୍ଷୀ ଦେବୀ (ମ୩୦୨ପୃ) ଓ ଜାତ୍ୟାପିନୀ (ସ୧୫୨ପୃ) ରଙ୍ଗବସ୍ତ୍ର ପରିଧାନ କରିଥିଲେ । ଦ୍ୱାରକାରେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ପୀତ ବର୍ଣ୍ଣର ବସ୍ତ୍ର ପିନ୍ଧାଇଥିଲେ । (ମ୧୧୦ପୃ) ଖାର ଦେଶର ରାଜା ଶିବଭକ୍ତ ହୋଇ କଷାୟବସ୍ତ୍ର ଧାରଣ କରିଥିଲେ । ସ୧୨୯ପୃ) ବରଦାୟକ ବିପ୍ର ସନ୍ନ୍ୟାସୀ ହୋଇ କଷାୟ-ବସ୍ତ୍ର ଗ୍ରହଣ କରିଥିଲେ । (ସ୨୯୨ପୃ)

ସେତେବେଳେ ଶୀତ-ନିବାରକ ବସ୍ତ୍ର ବି ଥିଲା । ଯୁଧିଷ୍ଠିରଙ୍କ ପ୍ରସଙ୍ଗରୁ ତାହା ଅବଧାରିତ ହୁଏ । କୁରୁକୁଳ ଶାସନରେ ରହିବା ସପକ୍ଷରେ ଯୁଧିଷ୍ଠିର ଯେଉଁ କାରଣମାନ ଦର୍ଶାଇଥିଲେ, ତନ୍ମଧ୍ୟରେ ଏକ କାରଣ ଥିଲା—ଶୀତବସ୍ତ୍ରର ଅଭାବ। ଏଥିରୁ ପ୍ରତିପାଦିତ ହୁଏ ଯେ, ଶୀତରୁ ରକ୍ଷା ପାଇବା ପାଇଁ ଲୋକେ ବିଶେଷ ପ୍ରକାର ବସ୍ତ୍ର ବ୍ୟବହାର କରୁଥିଲେ । (ଆ୨୪୯ପୃ)

ସାଧାରଣତଃ ପୁରୁଷଗଣ ଧୋତି ବା ଲୁଗା ଓ ନାରୀଗଣ ଶାଢ଼ୀ ପରିଧାନ କରୁଥିଲେ । ପୁରୁଷମାନେ ଉତ୍ତରୀୟ ଓ ଗାମୁଛା ବ୍ୟବହାର କରୁଥିଲେ । ନିମ୍ନୋକ୍ତରୁ ତାହା ସ୍ପଷ୍ଟ ।

"ଦଦରା ଛିଣ୍ଡା ଖଣ୍ଡିଏ କାନ୍ଧରେ ଗାମୁଛା
ଧୋତି ମଳିନ ଉତ୍ତରୀ ପଇତା ହିଁ ଲୋଚ୍ଛ ।" (୭୨)
"ଧୋତି ଗୋଟି ଦେବ ଧଇଲେ ଶ୍ରୀଭୁଜେ ।
ଲେଉଟାଇ ବେକଫାଳ କଲେ ଦେବରାଜେ ।" (୭୩)
"ପାଟପଦମା ଖଣ୍ଡୁଆ ନାନା ଜାତି ଶାଢ଼ୀ
ବାତ ବିଘାତରେ ସବୁ ଯାଉଛନ୍ତି ଉଡ଼ି ।" (ଉ୩୮ପୃ)

ପରିଧେୟ ବସ୍ତ୍ର ବ୍ୟତୀତ ନାନାବିଧ ବ୍ୟବହାର୍ଯ୍ୟ ପଦାର୍ଥ ଲୋକେ ବ୍ୟବହାର କରୁଥିଲେ । ସେ ଗୁଡ଼ିକ ହେଲା—ପତାକା, ଚନ୍ଦ୍ରାତପ, ବିଛଣା, ଗୁଦଡ଼, ମଶାରି, ଛତ୍ର, ଆଲମ୍ବ (ଝୁମ୍ପି ବା ଝାଲର) ଓ ମୁରୁଜ ।
ଯଥା :—

"ନେତର ପତାକାମାନ ଉଡ଼େ ଫରଫର ।"

"ନେତର ଚନ୍ଦ୍ରାତପ ଝଡ଼ା ଫୁଲର ଧୂଳ ।" (୬୪)

"ହଂସୁଲ ଭୁଲ ଉପରେ ନେତର ସୁପାଡ ।" (ଆ୨୪୯ପୃ)

"ଝୀନ ବସନ ମଶାଶ୍ର ତହିଁରେ ଆବୃତ୍ତ ।" (ଗ୩ପୃ)

"ଅନେକ ପାଟଛତ୍ର ଉହାଡ଼ନ୍ତ ଆଲମ୍ବ ।" (୬୫)

"ତହିଁ ଉପରେ ପଡ଼ିଛି ପାଟର ମୁଚୁଳି ।" (ଗ୩ପୃ)

"ପାଟ ପତନୀ ଖଣ୍ଡିଆ ନାନା ଜାତ ଶାଢ଼ୀ ।" (୬୬)

ଅତି ପ୍ରାଚୀନ କାଳରୁ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଉତ୍କଳରେ ବସ୍ତ୍ର-ଶିଳ୍ପର ଭୂୟୋବିକାଶ ପରିଲକ୍ଷିତ ହୁଏ । କୌଟିଲ୍ୟଙ୍କ ସମୟରୁ କଳିଙ୍ଗ ବସ୍ତ୍ର-ଶିଳ୍ପର ଏକ ପ୍ରଧାନ କେନ୍ଦ୍ର ରୂପରେ ପରିଗଣିତ ହୋଇ ଆସିଅଛି । (୬୭) ଉଦୟଗିରିର ରାଣୀଗୁମ୍ଫା ଓ ଗଣେଶ ଗୁମ୍ଫାରେ ଥିବା ନାରୀଚିତ୍ରରେ ସୂକ୍ଷ୍ମ ବସ୍ତ୍ରର ବ୍ୟବହାର ଲକ୍ଷ୍ୟ କରାଯାଏ (୬୮) ସୁନ୍ଦରପଦାରୁ ପ୍ରାପ୍ତ ନାଗରାଣୀ ଓ ନାଗ-ରାଜାଙ୍କ ମୂର୍ତ୍ତିରେ କୁଞ୍ଚନରା ବସ୍ତ୍ରର ସନ୍ଧାନ ମିଳେ । (୬୯) ସାହିତ୍ୟ ଦର୍ପଣରେ ରଙ୍ଗୀନ ବସ୍ତ୍ରର ଉଲ୍ଲେଖ ଅଛି । (୭୦) ଓଡ଼ିଶାର ପୀତାମ୍ବର ଭାରତ-ବିଖ୍ୟାତ ଥିବାର ଜଣାଯାଏ । କାବ୍ୟ-ନାୟକ ବିଶାଳ ଦେବ ଉତ୍କଳରୁ ପୀତାମ୍ବରୀ ଶାଢ଼ୀ ଆଣିଦେବେ ବୋଲି ତାଙ୍କର ପତ୍ନୀଙ୍କୁ କହିଥିବା ବିଷୟ ହିନ୍ଦି କବି ନଳଙ୍କର 'ବିଶଳ ଦେବ ରାସୋ' କାବ୍ୟରେ ବର୍ଣ୍ଣନା କରାଯାଇଅଛି । (୭୧) ସେତେବେଳେ କଳିଙ୍ଗର ବସ୍ତ୍ର ରାଜଯୋଗ୍ୟ ଭୂଷଣ ଭାବରେ ପ୍ରତିଷ୍ଠା ଲାଭ କରିଥିବାର ଜଣାଯାଏ । (୭୨) ରୁଦ୍ରସୁଧାନିଧିରେ ପୀତ-କୌଷେୟ ବସ୍ତ୍ର, ଶେଯ, ଗୁଦର, କ୍ଷୀରୋଦ୍ର ପାଟ, ପତାକା ଓ ପୀତବସନର ଉଲ୍ଲେଖ ଦେଖାଯାଏ । (୭୩) ରାମବିଭା କାବ୍ୟରେ ଛତ୍ର, ବାନା, ଦୁକୂଳ, ଝୀନବସ୍ତ୍ର, ତଡ଼ାଉ ବା ପୋଷାକ, ସୁରଙ୍ଗ ନେତ ବା ଲାଲ ବର୍ଣ୍ଣର ପାଟଲୁଗା, ଖାଡ଼ୀ, ଗନ୍ତା, ପାଟଶାଢ଼ୀ, ଚନ୍ଦ୍ରାତପ, ଭୁଲ ବା ଭୁଳାଶେଯ, ପାଛୁଡ଼ା, ଦୋଯଡ଼ା ବା ଉତ୍ତରୀୟ ଆଦିର ବର୍ଣ୍ଣନା ଅଛି । (୭୪) କବିସମ୍ରାଟ ଉପେନ୍ଦ୍ର ଭଞ୍ଜ କଳିଙ୍ଗର ମିହି ଝୀନ ଶାଢ଼ୀର ବର୍ଣ୍ଣନା କରିଛନ୍ତି—

"ବାହାର କଲେ ମିହି ଝୀନ ଶାଢ଼ୀ ।
ସିନ୍ଦୂରୀ ଧଡ଼ି ଫୁଲଲିଙ୍ଗ ପଢ଼ି ।

ରଖିଲେ ରତ୍ନବ ମୁଠା ଭିତରେ ।
ସତେ ରଖିଥିଲେ ବଂଶ ନଳୀରେ । (୭୫)
"କି ମାଳଶାଢ଼ୀ ହଂସାବଳୀ ରଙ୍ଗ ଧଡ଼ି ହୋଇଛି
ଅବମି ବନତା ଦସ୍ତାରେ କବା କଣିବା ଇଚ୍ଛି ।" (୭୬)

(ଗ) **ରୌପ୍ୟଦ୍ରବ୍ୟ—**

ସଂସ୍କୃତ ମହାଭାରତ (୭୭) ତଥା ରାମାୟଣରେ (୭୮) ରୂପା ବ୍ୟବହାରର ସୂଚନା ମିଳେ । ଭାଗବତରେ ବିମାନ ସୁନା, ମଣିମାଣିକ୍ୟ ଓ ରୂପାରେ ମଣ୍ଡିତ ହେବା କଥା ବର୍ଣ୍ଣିତ । (୭୯) ଗୃହନିର୍ମାଣରେ ରାଜାମହାରାଜାଙ୍କ ଘରେ ରୁପାର ବ୍ୟବହାର ହେବା ବିଷୟ ମଧ୍ୟ ଭାଗବତରେ ପ୍ରଦର୍ଶିତ । (୮୦) ସୁନା ଓ ରୁପା ଉଭୟ ଅଷ୍ଟନିଧି ମଧ୍ୟରେ ଗୃହୀତ ହୁଏ । (୮୧) ଏଥିରୁ ଭାରତରେ ରୁପାର ପ୍ରସିଦ୍ଧି ଥିବା କଥା ସ୍ପଷ୍ଟ ।

କବି-ଲେଖମାନେ ରୁପାର କେତେକ ବ୍ୟବହାର ବର୍ଣ୍ଣିତ ହୋଇଅଛି । ସେ କହନ୍ତି—ଅଭିମନ୍ୟୁଙ୍କ ବିବାହୋତ୍ସବ କାଳରେ ଶ୍ରୀକୃଷ୍ଣ ଯେଉଁ ମଣ୍ଡପରେ ଉପବେଶନ କରିଥିଲେ ତାହାର ପାବଚ୍ଛ ରୌପ୍ୟ-ନିର୍ମିତ ଥିଲା । (ବି୧୮୧ପୃ) ଯୁଧିଷ୍ଠିରଙ୍କ ଯଜ୍ଞଶାଳ ରୂପାରେ ଛୁଆଣି କରାଯାଇଥିଲା । (ସ୫୦ପୃ) ପାଣ୍ଡବ-ମାନେ ଇନ୍ଦ୍ରପ୍ରସ୍ଥ ନଗରୀକୁ ଅନୁକୂଳ କରି ଗମନ କଲାବେଳେ ରୁପାର ଏକ ଭାଣ୍ଡରେ ଦଧିର ଯୋଗାଡ଼ କରାଯାଇଥିଲା । (ବି୧୮୭ପୃ)

ମଧ୍ୟଯୁଗରେ ରୁପା ବ୍ୟବହାରର ପ୍ରମାଣ ପର୍ଶୁରାମ ମନ୍ଦିର ଗାତ୍ରରୁ ମିଳେ । ଏଥିରେ କଟିମେଖଳାର ଯେଉଁ ଚିତ୍ର ଦେଖାଯାଏ, ସେଥିରେ ପଦକମାନ ସୁନା ତଥା ରୁପାର ଶିକୁଳିରେ ବନ୍ଧାଯାଇଥିବାର ପରିଲକ୍ଷିତ ହୁଏ । (୮୨) ରାମବିଭା କାବ୍ୟରେ ରୁପା ଛିଆରି କଡ଼ିଆଳର ଉଲ୍ଲେଖ ଦେଖାଯାଏ । (ପୃ୮୯)

(ଘ) **ସୁବର୍ଣ୍ଣ-ଉପକରଣ—**

ଅଳଙ୍କାର ବ୍ୟତୀତ ନାନାବିଧ ବ୍ୟବହାର୍ଯ୍ୟ ବସ୍ତୁ ପ୍ରସ୍ତୁତ କରିବା ପାଇଁ ସୁବର୍ଣ୍ଣର ଉପଯୋଗ ହୁଏ । ରାମାୟଣରେ ସୁବର୍ଣ୍ଣ ଘଟ (୮୩), ଆସନ (୮୪) ଓ ପଲଙ୍କର (୮୫) ଉଲ୍ଲେଖ ମିଳେ । ବିଷ୍ଣୁପୁରାଣରେ ସୁବର୍ଣ୍ଣର ଯଜ୍ଞୀୟ ଉପକରଣ (୮୬), ପାତ୍ର (୮୭) ଓ ପେଟିକାର (୮୮) ବର୍ଣ୍ଣନା ଅଛି ।

ସାରଳାଙ୍କ ଯୁଗରେ ସୁବର୍ଣ୍ଣରେ ନାନାପ୍ରକାର ଉପକରଣ ଓଡ଼ିଆ ଶିଳ୍ପୀମାନେ ପ୍ରସ୍ତୁତ କରୁଥିଲେ । ସେଗୁଡ଼ିକ ହେଉଛି—ସୁବର୍ଣ୍ଣର ରଥ, ହାଦୋଳା

ପଲଙ୍କ, ଥାଳ, ଘଣ୍ଟ, ଅର୍ଘ୍ୟଥାଳୀ, ଘାପ, ରୁଖା, କୁମ୍ଭ, କୌଡ଼, ପୀଢ଼ା, ପଞ୍ଜୁରି, ଓ ଗୃଙ୍ଗଡ଼ା ଆଦି । ନିମ୍ନୋକ୍ତ ଗୁଡ଼ିକରୁ ଏହା ଅବଧାରିତ ହେବ ।

"ସୁବର୍ଣ୍ଣ ରଥେ ଶାର୍ଦ୍ଦୂଳ ଚର୍ମ ଯତ୍ନେ ଥୁଇ ।" (ଦ୍ରୋ ୪ପୃ)

"ସୁବର୍ଣ୍ଣ ହାଣ୍ଡୋଳା ମଧ୍ୟେ ବଜସ୍ର ପାଞ୍ଚାଳୀ ।" (ଆ ୨୫୧ପୃ)

"ସୁବର୍ଣ୍ଣ ପଲ୍ୟଙ୍କ ତେଜ କରି ଧୃତରାଷ୍ଟ୍ର ।" (ଏଜନ୍, ପୃ ୫୨)

"ସୁବର୍ଣ୍ଣ ଥାଳରେ ପଞ୍ଚରତନ ପୂରାଇ ।" (ମ ୨୧୭ ପୃ)

"ରସାଣ କନକ ଘଣ୍ଟ ବସାଇ କୁଣ୍ଡରେ ।" (ଆ ୬୧ ପୃ)

"ସୁବର୍ଣ୍ଣ ଅର୍ଘ୍ୟ ଥାଳକୁ ତଳେ ଥୋଇ ଦେଇ ।" (ଶ ୩ ପୃ)

"ସୁବର୍ଣ୍ଣର ଘାପ ଦେବ ଦଶ ଅଇବ୍ରତେ ।" (ସ ୪୧ ପୃ)

"ସ୍ୱର୍ଣ୍ଣ ଘାପରୁଖା ଲକ୍ଷେ ଲଗିଥିବ ଖୁରା ।" (ଏଜନ୍)

"ସ୍ୱର୍ଣ୍ଣ କୁମ୍ଭ ବସାଇଲା ନେଇ ମଙ୍ଗଠାବ ।" (ସ ୨୬ ପୃ)

"ଦଶ ଲକ୍ଷ ସୁବର୍ଣ୍ଣର ଦେବ ତୁମ୍ଭେ କୌଡ଼ ।" (ସ ୪୧ ପୃ)

"ସ୍ୱର୍ଣ୍ଣ ପୀଢ଼ାରେ ବସାଇ ଅର୍ଘ୍ୟ ଦେଲେ ପୁଣ ।" (ବ ୧୫୩ ପୃ)

"ସ୍ୱର୍ଣ୍ଣ ପିଞ୍ଜରାରେ ଅନ୍ନ ଦେଉଥିଲେ ନିତ ।" (ସ ୩୦୭ ପୃ)

"ସୁବର୍ଣ୍ଣ ଗୃଙ୍ଗଡ଼ା ମାନ ଘେନଣ କାମିନୀ ।" (ଆ ୧୧୭ ପୃ)

## (ଙ) ଲୌହ ଶିଳ୍ପ—

ଲୌହଶିଳ୍ପ ଭାରତରେ ସୁପ୍ରାଚୀନ । ଋକ୍‌ବେଦରେ ଲୌହମୟ ପୁରୀ (୮୯) ଓ ଲୌହକୀଳକଯୁକ୍ତ ସୁବର୍ଣ୍ଣ ରଥ (୯୦)ର ବର୍ଣ୍ଣନା ମିଳେ ।

ପଞ୍ଚଦଶ ଶତାବ୍ଦୀର ଉତ୍କଳରେ ଲୌହଶିଳ୍ପ ପ୍ରବର୍ତ୍ତମାନ ଥିବା କଥା ସାରଳା ମହାଭାରତର କେତେକ ବର୍ଣ୍ଣନାରୁ ଅବଧାରିତ ହୁଏ । ସେ କାଳରେ ଓଡ଼ିଶାରେ କମାର ଥିଲେ ଓ କମାରଶାଳ ଥିଲା । ଗ୍ରାମୀଣ କମାର ଶାଳ ଥିଲା ଲୌହ ଶିଳ୍ପର କେନ୍ଦ୍ର । ସାରଳା ଦାସ 'ଖଡ଼କାର ଜନ୍ମ ବୃତ୍ତାନ୍ତ'ରେ କମାର ଶାଳର କଥା କହିଛନ୍ତି ।

"ଗନ୍ଧେ ହୋଇଲେ ଯତନେ ଶାଳ ପୂଜା କରି
ନୂତନ ଅଗ୍ନି ଉଠାରି ଚକମକ ଧରି ।
ରାହ ତିନ ପ୍ରହରରେ କୃଷ୍ଣଛାଗ ନେଇ
ଚଣ୍ଡୀ ଦେବୀଙ୍କୁ ରକତ ଭାତ ବଳି ଦେଇ ।

ପ୍ରସ୍ତୁତ ଧରିବା ଲୁହା ଏକ ଖଣ୍ଡ ନେଇ
ପଟାବଳୀ କରିବ ତା ଅଗ୍ନିରେ ସିଝାଇ ।
ଯୋଗେଣ ନିର୍ମିତ କରେ ତାହା ମହାରଣା
ଛନଧାର କରି ଦେବ ଗଢ଼ଇ ଲକ୍ଷଣା ।" (ଆ ୧୫୧ ପୃ)

ରାଜା ଦୁର୍ଯ୍ୟୋଧନ ଜତୁଗୃହ ନିର୍ମାଣ କଲାବେଳେ ଲୌହ କର୍ମରେ ନିଯୁକ୍ତ ଦକ୍ଷ ବିଜ୍ଞାଣୀମାନଙ୍କୁ ନିଯୁକ୍ତ ଦେଇଥିଲେ । (ଆ ୧୫୦ ପୃ) କବି-ଲେଖନୀରେ ବ୍ୟବହାରୋପଯୋଗୀ ଲୌହ ଦ୍ରବ୍ୟମାନଙ୍କ ପ୍ରଭୂତ ଉଲ୍ଲେଖ ଦେଖାଯାଏ । ଯଥା—

"ଦେଖନ୍ତେ ଯେନଲେ ଗଙ୍ଗା କରରେ କଟାରି ।" (ଆ ପୃ ୧୪)
"କଳକଳା ନାଦ କରି କୁଠାରକୁ ଧରି ।" (ସ ପୃ ୮୧)
"ଧାଇଁଲା ସେ ବେନି କରେ ଧଡ଼ିଣ କୋଦାଳ ।" (ଦ୍ରୋ ପୃ ୧୧୩)
"ହାଣନ୍ତେ ପାଷାଣେ ଯାଇ ଲଗିଲାକ କୋଡ଼ ।" (ସ୍ୱ ପୃ ୨)
"ଲେଖନୀ ଧରି ବସିଲେ ତାଳପତ୍ର ଘେନ ।" (ସ ୧୪୩ ପୃ)
"ଲୁହାଶସ୍ତ୍ର ଦେଉଅଛୁ ତୋତେ ବନମାଳୀ ।" (ଆ ପୃ ୧୫୧)
"ନାରାୟଣ ଚକ୍ର କୁନ୍ତ ମୁଷଳ ଭୁଷଣ୍ଡୀ ।" (ବ ପୃ ୧୩୨)
"ଲୁହା ଚଟୁରେ ପିଠଉ ଲୁଚାଏ ଯେ ଦେଇ ।" (ମୃ ପୃ ୨୮)
"ଭୁଜେ ବାଜ ଲୌହଦଣ୍ଡା ଚୂର୍ଣ୍ଣ ହୋଇଗଲା ।" (ଦ୍ରୋ. ପୃ ୧୧୪)
"ଲୌହ ଧନୁ ଧରେ ଦୁଇବଂଶ ସତ୍ତ୍ୱ ବଳ ।" (ସ ପୃ ୬୮)
"ବିନ୍ଧନ୍ତେ ଲୌହ ନାରାଚ ତୀକ୍ଷ୍ଣ ତୀକ୍ଷଣ ମୁନା ।" (ସ ପୃ ୮୦)
"କୁନ୍ତ ଅସିବର ପାଶ ଅଙ୍କୁଶ ତୋମର ।" (ମ ପୃ ୭୯)
"ସାଙ୍ଗୁ ଶାବଳ ମୁଷଳ ଶକ୍ତି ବଜ୍ର ଯଷ୍ଟି ।" (ମ ପୃ ୮୭)
"ପରଶୁ ମୁଦ୍‌ଗର ଆଉ କୁଠାର ଶକତ୍ତ ।" (ଆ ପୃ ୯୭)
"ଘଣ୍ଟିକା ଆରୋହି ଥିଲା ଏକ ଲୌହରଥ ।" (ଦ୍ରୋ ପୃ ୧୧୪)
"ଲୁହାର ଯଷ୍ଟି ଏକ ଯେ କରେ ଅଛି ଘେନ ।" (ଶା ପୃ ୨୧)
"ଖଡ଼ଗ କୁନ୍ତ ପରିଘ ଗୁରୁଜ ଯେ ଯାଠି ।" (ଦ୍ରୋ ପୃ ୪୧)
"ଶୂଳ ମାଡ଼ ଭୀମସେନ ବସି ବକ୍ଷସ୍ଥଳେ ।" (ଆ ପୃ ୧୮୫)
"ରଥୀମାନେ ଅଇଲେ ଯେ ଖଡ଼୍‌ଗ ଫଳା ଘେନ ।" (ଦ୍ରୋ ପୃ ୪୧)

"କୁନ୍ତ ଯଷ୍ଟି ଅସିବର ଠେଲ ଚଙ୍କାଣ୍ଡ।" (ଆ ପୃ ୨୨୪)
"ଝଲଙ୍କନ୍ତ ଲର୍କଆର୍କୁ ମେଘପ୍ରାୟୁ ଗର୍ଜି।" (ବ ପୃ ୯୩)

ଐତିହାସିକମାନେ କହନ୍ତି ଯେ ଗଙ୍ଗ ଓ ସୂର୍ଯ୍ୟ ବଂଶର ରାଜତ୍ୱ କାଳରେ ଦେଶରେ ଲୁହା ଓ ପଥରର କାରଖାନାମାନ ଥିଲା। (୯୧) ସେମାନେ ଭୁବନେଶ୍ୱର, କୋଣାର୍କ ଓ ପୁରୀ ମନ୍ଦିରର ଲୌହକଡ଼ିମାନଙ୍କର ଭୂୟସୀ ପ୍ରଶଂସା କରନ୍ତି। (୯୨) ସାହିତ୍ୟ-ଦର୍ପଣରେ କମାର ଜାତିର ଉଲ୍ଲେଖ ଦେଖାଯାଏ। (୯୩) ରାମବିଭା କାବ୍ୟରେ କୋଦଣ୍ଡ (ଧନୁ), ଶର ଓ ପରଶୁର ଉଲ୍ଲେଖ ମିଳେ। (୯୪) ଭାଗବତରେ ଖଡ୍‌ଗ, ଧନୁ, ନାରାଚ, ଗଦା, ମୁଦ୍‌ଗର, କୁନ୍ତ, ପରିଘ, ଶକ୍ତି ଆଦିର ବର୍ଣ୍ଣନା ଅଛି। (୯୫) 'ପାଇକ ଖେଦା'ରେ ଖଣ୍ଡା, କଟାରି, ଧନୁଶର ଓ କୁନ୍ତ ଆଦି ଯୁଦ୍ଧାସ୍ତ୍ରର ନାମ ରହିଛି। (୯୬)

## (ଚ) ତାମ୍ର ଶିଳ୍ପ

ମହାଭାରତ (୯୭), ମନୁସ୍ମୃତି (୯୮) ଓ ମହାଭାଷ୍ୟରୁ (୯୯) ତମ୍ବା ବ୍ୟବହାରର ପ୍ରାଚୀନତା ଉପଲବ୍‌ଧ ହୁଏ। ସାରଳା ଦାସଙ୍କ ଯୁଗରେ ଓଡ଼ିଆ କାରିଗର ତମ୍ବାରେ ନାନାବିଧ ଜିନିଷ ପ୍ରସ୍ତୁତ କରୁଥିବାର ଜଣାଯାଏ। କବି କହନ୍ତି ଯେ ଯୁଧିଷ୍ଠିରଙ୍କ ଯଜ୍ଞଶାଳ ନିର୍ମାଣ ବେଳେ ତାମ୍ରୁରୀ ବନ୍ଧାଣିମାନେ ତାମ୍ର ଯୋଗାଡ଼ କରିଥିଲେ। (ସ ୪୯ ପୃ) ସେ କାଳରେ ସନନ୍ଦ ଲେଖା କାର୍ଯ୍ୟରେ ତମ୍ବାପଟାର ବ୍ୟବହାର କରାଯାଉ ଥିଲା। କବି ଲେଖିଛନ୍ତି ଯେ, ହମିଳା ନାମକ ବାଉରୀକୁ ଶାସନ ଦାନ କରାଯାଇ ଏକ ତମ୍ବାପଟିଆ ସନନ୍ଦ ପ୍ରଦତ୍ତ ହୋଇଥିଲା।

"ବାଉରୀ ଶାସନ ବୋଲି ଏହା ନାମ ହେଉ
ଆମ୍ଭର ଏ କଥା ଯୁଗେ ଯୁଗେ ରହିଥାଉ।"
"ତମ୍ବାପଟାରେ ସମସ୍ତ କଥା ଲେଖି କରି
ହତ୍ୟା ବିମୋଚନ ଅର୍ଥେ କୃଷ୍ଣ ବଜ୍ରଧାରୀ।"
ଏସନେକ ତମ୍ବାପଟା ଗ୍ରାମଜନେ ଥୋଇ
ହତ୍ୟା ବିମୋଚନ କରି ଦେବ ଚଳୁଁ ଯାଇ।" (ଆ ୧୯୪ ପୃ)

ସେ କାଳରେ ତମ୍ବାରେ କୁଣ୍ଡଳ, ନୌକା, ପାଣ୍ଡି ଓ କୁଣ୍ଡ ଭଳି ବ୍ୟବହାର୍ଯ୍ୟ ବସ୍ତୁ ପ୍ରସ୍ତୁତ ହେଉଥିବା କଥା ନିମ୍ନୋକ୍ତିରୁ ଉପଲବ୍‌ଧ ହୁଏ।

"ତମ୍ବାର କୁଣ୍ଡଳ କଲାକ ଆଦୃତ ।" (୧୦୦)
"ତମ୍ବା ନଉକାରେ ମାଛ ଦେଲେ ଗୁଡ଼ ।" (ବ ପୃ ୧୮୭)
"କରେ କୁଶବଟୁ ତମ୍ବାପାତ୍ରୀ କ ସୁନ୍ଦର ।" (ଶା. ପୃ. ୧୫)
"ତମ୍ବା ନିର୍ମିତ କୁଣ୍ଡରେ କଲାକ ଆଦୃତ ।" (ବ. ପୃ. ୨୦୫)

ଇତିହାସରୁ ଜଣାଯାଏ ଯେ, ସେ କାଳରେ ଓଡ଼ିଶାରେ ତମ୍ବାର ବହୁବିଧ ଶିଳ୍ପ ପ୍ରସ୍ତୁତ ହେଉଥିଲା । (୧୦୧) ଭାଗବତରେ ତମ୍ବାପାତ୍ରୀ ଓ ତମ୍ବା ପାତେଶ୍ୱର ଉଲ୍ଲେଖ ଦେଖାଯାଏ । (୧୦୨) କପିଳେନ୍ଦ୍ର ଦେବ ବ୍ରାହ୍ମଣମାନଙ୍କୁ ଜାଗେଶ୍ୱର ପୁର, ବେଲମା ପୁର ଓ ପ୍ରତାପ କପିଳେଶ୍ୱର ପୁର ଗ୍ରାମମାନ ଦାନ କରି ତାଙ୍କ ରାଜତ୍ୱର ୨୮ ଅଙ୍କରେ ତାମ୍ରପଟ୍ଟା ସନନ୍ଦ ପ୍ରଦାନ କରିଥିବାର ଜଣାଯାଏ । (୧୦୩)

## (ଛ) କାଂସ୍ୟ ଶିଳ୍ପ

କାଂସ୍ୟଶିଳ୍ପ ଭାରତରେ ବହୁକାଳରୁ ପ୍ରସିଦ୍ଧ । ସଂସ୍କୃତ ମହାଭାରତରେ କାଂସ୍ୟ ପାତ୍ରର ଉଲ୍ଲେଖ ଦେଖାଯାଏ । (୧୦୪) ମନୁ କହନ୍ତି ଯେ, କାଂସ୍ୟପାତ୍ରକୁ ଧୌତ ନ କରି ଭୋଜନ କରିବା ଅନୁଚିତ । (୧୦୫) ପଞ୍ଚଦଶ ଶତାବ୍ଦୀରେ କାଂସ୍ୟଶିଳ୍ପ ପ୍ରଚଳିତ ଥିବା କଥା ସାରଳା ଦାସଙ୍କ ବର୍ଣ୍ଣନାରୁ ଜଣାଯାଏ । କବି କହିଛନ୍ତି ଯେ ପଣ୍ଡୁଙ୍କ ଶୁଦ୍ଧି କ୍ରିୟା ବେଳେ କାଂସ୍ୟ-ବାସନ ଦାନ କରାଯାଇଥିଲା । (ଆ୮୫ପୃ) ଦୁର୍ଯ୍ୟୋଧନ ଗାନ୍ଧାରସେନକୁ ବନ୍ଦୀଗୃହରେ କଂସାଥାଳରେ ଅନ୍ନ ଦେଉଥିଲେ । (ଆ୧୩୫ପୃ) କବିଙ୍କ ବର୍ଣ୍ଣନାରେ ବାଦ୍ୟଯନ୍ତ୍ର କଂସାଳ, ମର୍ଦ୍ଦଳ ଓ ଝାଞ୍ଜର ନାମୋଲ୍ଲେଖ ଦେଖାଯାଏ ।

"ଦେବେଶ କଂସାଳ ନେଲେ ପବନ କାହାଳ ।" (ବ୩୨୪ପୃ)
"ଝାଞ୍ଜ ମୃଦଙ୍ଗ ମର୍ଦ୍ଦଳେ ପୃଥ୍ୱୀ କମ୍ପମାନ ।" (ଶା୧୭ପୃ)
"ମର୍ଦ୍ଦଳ କଂସାଳ ଭୁଷ ତାଳର ବଧାନେ ।" (ବ୪୮ପୃ)

ଇତିହାସ ପୃଷ୍ଠାରୁ ଉପଲବ୍ଧ ହୁଏ ଯେ ସେ କାଳରେ କଣ୍ଟିଲୋ, ବାଳକାଟି ଓ ବାଲେଶ୍ୱର କଂସାବାସନର କେନ୍ଦ୍ର ଥିଲା । ଏବଂ ସେଠାରୁ ବିଦେଶକୁ କଂସାବାସନ ରପ୍ତାନି କରାଯାଉଥିଲା । (୧୦୬) ଓଡ଼ିଆ ଛଗଡ଼ମାଳରେ କଂସାବାସନର ଉଲ୍ଲେଖ ଦେଖାଯାଏ । ଯଥା—

"କଂସାକ ଘଡ କୁକୁରକୁ ଦେଇ,
ଘଟରେ ହେଉଛୁ କଇଁ କଇଁ।"
"କଂସାକୁ ଛାଡିଆ ଝାଇଁ,
ଟୋହୋ ପର ମୁହଁ କାଲ ଆଣିବ,
ଘଇକ ପାଇବ କାହିଁ ?"
"କଂସା ଲେଟା ଯାହା ହାବୁଡ଼୍ଡ଼ୁଚି ଅଣ୍ଟିକ ଉଠା।" (୧୦୭)

## (ଜ) ମୃଣ୍ମୟ ଶିଳ୍ପ

ମୃତ୍ତିକାରେ ବିଭିନ୍ନ ବ୍ୟବହାର୍ଯ୍ୟ ବସ୍ତୁ ପ୍ରସ୍ତୁତ କରିବା କେଉଁ ଆଦିମ କାଳର କଥା ମହାଭିଷ୍ୟକାର ପଞ୍ଚକାରୁକାଙ୍କ ମଧ୍ୟରେ କୁଲାଳ ବା କୁମ୍ଭାର ଜାତିକୁ ଗ୍ରହଣ କରନ୍ତି । (୧୦୮) ସାରଳା ମହାଭାରତରେ କୁମ୍ଭାର ଓ କୁମ୍ଭାର ଶାଳର ଉଲ୍ଲେଖ ମିଳେ । ଶିବା ନାମକ ନଦୀକୂଳରେ ବସୁ ନାମକ କୁମ୍ଭାର ଶାଳ ପ୍ରତିଷ୍ଠା କରି ରହିଥିବା କଥା କବି ଉଲ୍ଲେଖ କରିଛନ୍ତି ।

"ବସୁ ନାମରେ ଯେ ଏକ ଚକ୍ରୀ ଅଟେ ସେହି
ଶିବା ନଦୀ କୂଳରେ ଯେ ଶାଳ କରିଥାଇ ।
× × ×
ଆରେ କୁଲାଳ ମୁଁ ଅଟେ ଜାଣ ଗଣେଶ୍ୱର
ଏକ ମୂର୍ତ୍ତି କର ତୁହି ସ୍ୱରୂପେ ଆମ୍ଭର ।
ଶାଳେ ବସାଇ ଅଗ୍ନିରେ ପୋଡ଼ାଇ ତାହାକୁ
ସତ୍ୱରରେ ଆଣିଦିଅ ମୋହର ସ୍ତମ୍ଭକୁ ।" (କ୩୧ପୃ) ।

କବି କହନ୍ତି ଯେ ଯୁଧିଷ୍ଠିରଙ୍କ ଯଜ୍ଞକୁ ହାଣ୍ଡି ଯୋଗାଇବା ପାଇଁ ବତିଶ ଲକ୍ଷ କୁଲାଲଶାଳ ପ୍ରତିଷ୍ଠା କରାଯାଇଥିଲା । (ସ୪୯ପୃ) ପାଣ୍ଡବମାନେ ବନବାସ କାଳରେ କୁଲାଳ ଶାଳରେ ଆଶ୍ରୟ ନେଇଥିଲେ । ଯୁଧିଷ୍ଠିର ତାହାକୁ ଶୁଦ୍ଧସ୍ଥାନ ଓ ପାପନାଶକ ସ୍ଥଳୀ ବୋଲି କହିଥିଲେ ।

"ଯୁଧିଷ୍ଠି ବୋଇଲେ ବାବୁ କହନ୍ତି ପଣ୍ଡିତ
ସେ ସ୍ଥାନ ଗୋଟି ଅଟଇ ଅତ୍ୟନ୍ତ ପବିତ୍ର ।
ଗୋରୁ ଗୁହାଳେ ଅଥବା କୁଲାଳର ଶାଳ
ଏଥି ଯେ ରହେ ତା ପାପ ଖଣ୍ଡଇ ସକଳ ।

ବିବସେକ ଯେବେ ତହିଁ ରହେ ନରଦେହୀ
ଛ ମାସର ପାପ ତାର ଦେହରେ ନରହ ।” (ଆ୨୪୮ପୃ)

କବି-ଲେଖମାରେ ମାଟିହାଣ୍ଡି, ଘଟ, କଳସୀ, ନଉତି, କୁଡ଼ଆ ଆଦିର ଉଲ୍ଲେଖ ଦେଖାଯାଏ । ଯଥା :—“ଏକ ହାଣ୍ଡିକରେ ଘିଅ ହାଣ୍ଡିଏ ଘେନିଲେ ।” (ଆ ୯୪ ପୃ)

“ମଥାରେ ସେ ବସାଇଲା ପାଣିଘଟ ଗୋଟି ।” (ଆ୨୦୪ପୃ)
“କୁଡ଼ୁଆଏ ଘିଅଦୁଧ ସାରିନପାରିଲେ ।” (କା ୮ ପୃ)
“ଯେସନେକ ନଉତିରୁ ଦେଉଛନ୍ତି ଆଣି ।” (୧୦୯)

ଏବେ ମଧ୍ୟ ପୁରୀ ଓ ଭୁବନେଶ୍ୱର ମନ୍ଦିରରେ ମାଟି କୁଡ଼ୁଆ ଭୋଗ ପାଇଁ ବ୍ୟବହୃତ ହୁଏ । ଏପରି କୁଡ଼ୁଆ ଭୋଗ ଭାରତରେ ଅନ୍ୟତ୍ର ବିରଳ । ଭାଗବତରେ ମାଟିର କଳଶ, ଧୂପ ଓ ଘଟର ଉଲ୍ଲେଖ ଅଛି । (୧୧୦)

## (୯) କାଷ୍ଠଶିଳ୍ପ

କାଠକାମର ପ୍ରାଚୀନତା ଋକ୍‌ବେଦରୁ ଉପଲବ୍‌ଧ ହୁଏ । ଋକବେଦର ମନ୍ତ୍ରରେ ବିଶ୍ୱକର୍ମା କାଷ୍ଠଚକ୍ର ନିର୍ମାଣ କରିବା (୧୧୧) ଓ ସୁଦୃଢ଼ ରଥ ଗଠନ କରିବା (୧୧୨) କଥା ଅଛି । ପଞ୍ଚକାରୁକାଙ୍କ ମଧ୍ୟରେ ବର୍ଦ୍ଧକୀ ଅନ୍ୟତମ । (୧୧୩) ସାରଳା ଦାସଙ୍କ ଯୁଗରେ ଉତ୍କଳରେ ବଢ଼େଇମାନେ କାଠର ନାନାବିଧ ଶିଳ୍ପ କରି ଜୀବିକାର୍ଜନ କରୁଥିଲେ । କବି-ଲେଖମାରେ ବହୁ କାଠ ଜିନିଷର ଉଲ୍ଲେଖ ମିଳେ । ଯଥା:—

“ନାବମାନଙ୍କରେ ଚଳି ଆସୁଥିବ ହରିଜଦ୍ୟାନବନ ।” (୧୧୪)
“ରତ୍ନଖଚିତ ହାନ୍ଦୋଳା ମଧ୍ୟେ ବସ୍ତ୍ର ଟାଣି ।” (୧୧୫)
“କୋଳକରି ବିମାନରୁ ଓହ୍ଲାଇ ଯୁବତୀ ।” (ବ୧୫୬ପୃ)
“ଶତେକ ରଥ ସୁବର୍ଣ୍ଣ ବେଗ କରି ଆଣ ।” (ମ୧୫୧ପୃ)
“ଉତ୍ତାନଶାୟୀ ହୋଇଣ ପଲ୍ୟଙ୍କେ ପହୁଡ଼ ।” (ଆ୮୨ପୃ)
“କବାଟେ କର ଦିଅନ୍ତେ ଫିଟିଲା କଳଣୀ ।” (୧୧୬)
“ପାଦରେ କଠାଉ ପୁଣି ମଥାରେ ଖୋଳରି ।” (ବ୨୩ପୃ)
“ଧାମଣା କାଠର ଧନୁ ଫିରିକର ଶର ।” (୧୧୭)

"ସେ ଦ୍ରବ୍ୟମାନ ବଳଦେ ଶକଟେ ଲଗାଇ ।" (ବ୨୫୧ପୃ)
"ବେଲକାଷ୍ଟେ ପୁଣି ଷଣ୍ଢେ କରନ୍ତି ସେ ହଳ ।" (ଦ୍ରୋ୫୬ପୃ)
"କୁନ୍ଦ ଫରୁଆ କାଞ୍ଚଲ ବନ୍ଧେ ବକ୍ଷସ୍ଥଳେ ।" (ବ୭୬ପୃ)
"ମଞ୍ଜୁଷକୁ ଧୀରେ ଧୀରେ ଧଇଲକ ରାଧା ।" (ଆ୪୩ପୃ)
"ଧର କାଠପେଡ଼ି ମଧ୍ୟେ ରଖିଥିଲ ନେଇ ।" (କା୩ପୃ)
"ଲଙ୍ଗଳ ପୂରାଇ ମୁଁ ଚଷୁଥିଲ ଜମି ।" (୧୧୮)
"ଭାର୍ଯ୍ୟା ପିଢ଼ା ପରେ ସ୍ୱାମୀ ପାଣି ଢାଏ ତଳେ ।" (ଉ୯୯ପୃ)
"ସ୍ଫଟିକର ସ୍ତମ୍ଭରେ ଯେ ଚନ୍ଦନର ସେଜ ।" (୧୧୯)

'ମାଦଳାପାଞ୍ଜି'ରେ ଗଛ କାଟି ରଜା ନାବର ସୃଷ୍ଟି କରିଥିବା କଥା ଲୁହାଯାଇଛି । (୧୨୦) ସାହିତ୍ୟ ଦର୍ପଣରେ 'କାଠ କାମ କରିବା ବ୍ୟକ୍ତି' ଭଳି ଉକ୍ତି ନାହିଁ । (୧୨୧)

## (ଙ) ଗୌଣ ଶିଳ୍ପ.

ସାରଳା ଦାସଙ୍କ ଯୁଗରେ ଚମଡ଼ା, ହାତୀଦାନ୍ତ, ଅସ୍ଥି ଓ କାଚର କେତେକ ଶିଳ୍ପ ପ୍ରଚଳିତ ଥିବାର ଜଣାଯାଏ । କବି ଲେଖିଛନ୍ତି ଯେ, ଗଙ୍ଗାଦେବୀ ଗାନ୍ଧାରସେନ ରଜାଙ୍କୁ ହାତର ଅସ୍ଥିରେ ପଶାକାଠି ଓ ଗୋଟି ପ୍ରସ୍ତୁତ କରିବାକୁ ଉପଦେଶ ଦେଇଥିଲେ । ଶକୁନି ତାଙ୍କର ପିତାଙ୍କର ହସ୍ତର ଅସ୍ଥିକୁ ଘୋର ପଶାକାଠି ଓ ଗୋଟି ତିଆର କରିଥିଲେ । (ଆ ୧୩୬ପୃ) ଏଥିରୁ ଅବଧାରିତ ହୁଏ ଯେ, ସେ ଯୁଗରେ ଅସ୍ଥି-ଶିଳ୍ପ ଓଡ଼ିଶାରେ ପ୍ରଚଳିତ ଥିଲା । କବି ଦର୍ପଣରେ ମୁଖ ଦେଖିବା (ଆ ୮୪ପୃ) ଓ ରଥରେ ଦର୍ପଣ ଖଞ୍ଜା ହେବା (ମ ୧୬୨ପୃ) କଥା ବର୍ଣ୍ଣନା କରିଥିବାରୁ ଅନୁମିତ ହେଉଛି ଯେ ସେତେବେଳେ କାଚଶିଳ୍ପର ଅସ୍ତିତ୍ୱ ଓଡ଼ିଶାରେ ଥିଲା । ଚମଡ଼ା ଶିଳ୍ପର ଅସ୍ତିତ୍ୱ କବି-ବର୍ଣ୍ଣିତ ମୃଦଙ୍ଗ, ଢୋଲ ଓ ପାଣ୍ଡୋଇ କଥାରୁ ସୂଚିତ ହୁଏ ।

"ମୃଦଙ୍ଗ ତାଳ କଂସାଳ ଶଙ୍ଖ ତନ୍ତ୍ର ବୀଣା ।" (ଆ ୧୮ପୃ)
"ବଜାନ୍ତି ଦୁନ୍ଦୁଭି ଯେ ମହୁରୀ ଢୋଲ ଭେରୀ ।" (୧୨୨)
"ପ୍ରତ୍ୟକ୍ଷରେ ଚିତା ଛତା ଖଣ୍ଡିଆ ପାଣ୍ଡୋଇ ।" (ଆ ୨୮୦ପୃ)

ଏତତ୍‌ଭିନ୍ନ ହାତୀଦାନ୍ତର କେତେକ କାମ ବି ସେ କାଳରେ ହେଉଥିଲା । କବିଙ୍କ ଲେଖାରେ ହାତୀଦାନ୍ତର ପୀଢ଼ା, ପଲଙ୍କ ଓ ପାନିଆର ବହୁ ଉଲ୍ଲେଖ ଦେଖାଯାଏ । ଯଥା—

"ଝଞ୍ଜି ସ୍ତବ୍ଧ ମଳା ଗଜଦନ୍ତ ପୀଢ଼ା ପାରି ।" (୧୨୩)
"ବସାଇଲେ ଗଜଦନ୍ତ ପଲ୍ୟଙ୍କ ଉପରେ ।" (୧୨୪)
"ହାତୀଦାନ୍ତ ପାନିଆରେ କେଶ ତା ସମାଳ ।" (ଉ ୯୯ପୃ)

କେତେକ ବେତକାମ ମଧ୍ୟ ସେତେବେଳେ ଓଡ଼ିଶାରେ କରାଯାଉଥିଲା । ପାଣ୍ଡବମାନେ ବେତରେ ଛତ୍ର ନିର୍ମାଣ କରି ଚନ୍ଦ୍ର ଭିକ୍ଷାରେ ବାହାରିବା ବର୍ଣ୍ଣନାରୁ ଏହା ସ୍ପଷ୍ଟ ।

"ବନସ୍ତୁ କାଟି ଅଣିଲେ ସରୁ ବେତମାନ
ଛତ୍ରଣ ଚନ୍ଦ୍ର ତାହାକୁ କଲକ ଅର୍ଜୁନ ।" (ଆ ୨୧୯ପୃ)

ଲୋକେ ବାଉଁଶରେ କେତେକ ଶିଳ୍ପ କରୁଥିଲେ ବୋଲି କବି-ଲେଖନୀରୁ ଜଣାଯାଏ । ରମ୍ଭା, ଉର୍ବଶୀ ଆଦି ବାଳିକାଙ୍କ ଧୂଳି ଖେଳ ପ୍ରସଙ୍ଗରେ କବି କୁଲା, ଟୋକେଇ ଓ କୁଲେଇ ଆଦି ଜିନିଷର ଉଲ୍ଲେଖ କରିଅଛନ୍ତି ।

"କୁଲା ଟୋକେଇ କୁଣ୍ଢାଇ ଆଣି ଖେଳ ଖେଳି
କୁଣ୍ଢାଇକି ବନ୍ଧି କରି ଦ୍ୟନ୍ତି ହୁଳହୁଳି ।"
"କୁଲାଇ ଗୋଟିକେ ଆଣି ଧୂଳି ପୂରାଇଲେ
ଅତି ଯତନ କରିଣ ତାକୁ ପାଛୋଡ଼ିଲେ ।" (୧୨୫)

## ୨ । ବାଣିଜ୍ୟ

ଶିଳ୍ପସହ ବାଣିଜ୍ୟ ଘନିଷ୍ଠ ଭାବରେ ସଂପୃକ୍ତ । ବାଣିଜ୍ୟ-ବ୍ୟବସାୟ ମାଧ୍ୟମରେ ଶିଳ୍ପଜାତ ଦ୍ରବ୍ୟର ବଣ୍ଟନ ବା ବିତରଣ ସମ୍ଭବ ହୁଏ । (୧୨୬) ବାଣିଜ୍ୟକୁ ଅନ୍ତର୍ବାଣିଜ୍ୟ ଓ ବହିର୍ବାଣିଜ୍ୟ ଭେଦରେ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ସାରଳା ଦାସଙ୍କ ମହାଭାରତରୁ ଉଭୟବିଧ ବାଣିଜ୍ୟ ସମ୍ପର୍କରେ କେତେକ କଥା ଜଣାଯାଏ ।

## (କ) ଅନ୍ତର୍ବାଣିଜ୍ୟ

ବାଣିଜ୍ୟ ଶିଳ୍ପପରି ପ୍ରାଚୀନ । ବେଦଯୁଗରୁ ଏହାର ସୂଚିତ ଲକ୍ଷ୍ୟ କରାଯାଇପାରେ । ଋକ୍‌ବେଦରେ ଋଷି ଅଗ୍ନିଙ୍କୁ ବାଣିଜ୍ୟକର୍ମ ପ୍ରବର୍ତ୍ତନ କରିବା ନିମିତ୍ତ ପ୍ରାର୍ଥନା କରିଅଛନ୍ତି । (୧୨୭) ମହାଭାରତରେ ବାଣିଜ୍ୟର ଯତ୍ନନେବା ଓ ସୁରକ୍ଷା କରିବା ରାଜାର କର୍ତ୍ତବ୍ୟ ବୋଲି ଉକ୍ତ । (୧୨୮) କୌଟିଲ୍ୟ କହନ୍ତି ଯେ, ରାଜା ଲୋକ ନିଯୁକ୍ତ କରି ବାଣିଜ୍ୟିକ ଦ୍ରବ୍ୟର ବଣ୍ଟନ ଓ କ୍ରୟ-ବିକ୍ରୟାଦିର ମାତ୍ରା ନିର୍ଦ୍ଧାରଣ କରିବେ । (୧୨୯) ପ୍ରାଚୀନ ଯୁଗରେ ଭାରତର ପ୍ରତ୍ୟେକ ରାସ୍ତାର ପାର୍ଶ୍ୱରେ ଦୋକାନ-ବଜାର ଥିଲା ଓ ଅନ୍ତର୍ବାଣିଜ୍ୟ ପ୍ରଚଳିତ ଥିଲା । ମୌର୍ଯ୍ୟ-କାଳଠାରୁ ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ଅନ୍ତର୍ବାଣିଜ୍ୟ ଓ ବହିର୍ବାଣିଜ୍ୟ ଭାରତର ଅଧିକାଂଶ ଅଞ୍ଚଳରେ ପ୍ରଚଳିତ ଥିଲା । ତାହା ଦେଶର ସାଂସ୍କୃତିକ ଜୀବନ ଉପରେ ଗଭୀର ପ୍ରଭାବ ପକାଉଥିଲା । (୧୩୦)

ପଞ୍ଚଦଶ ଶତାବ୍ଦୀରେ ଉତ୍କଳରେ ଆଭ୍ୟନ୍ତରୀଣ ବାଣିଜ୍ୟ ପ୍ରବର୍ତ୍ତମାନ ଥିଲା । ସାରଳା ଦାସଙ୍କ ମହାଭାରତ ତାହାର ପର୍ଯ୍ୟାପ୍ତ ମୁଦ୍ରାଙ୍କ ବହନ କରେ । ସେ କହିଛନ୍ତି ଯେ, ତାହାଳ ଦେଶର ରାଜା ଅଶ୍ୱ-ବ୍ୟବସାୟ କରୁଥିଲେ । (ସ ୮୪ ପୃ) ଐତିହାସିକମାନଙ୍କ ମତରେ ଓଡ଼ିଶାର ବରହମ୍‌ପୁର ଅଞ୍ଚଳରେ ଏକ ପ୍ରକାର ଟାଙ୍ଗୁଘୋଡ଼ା ମଧ୍ୟଯୁଗରେ ପାଳନ କରାଯାଉଥିଲା । ଉତ୍କଳର ସ୍ୱାଧୀନତା ରକ୍ଷା କରିବା ଦିଗରେ ସେମାନଙ୍କର କାର୍ଯ୍ୟ ପ୍ରଶଂସନୀୟ ଥିଲା । (୧୩୧) କବି ଲେଖିଛନ୍ତି—କୃଷ୍ଣାବେଣୀ ନଗରର ଲୋକେ କାଠର ବ୍ୟବସାୟ କରୁଥିଲେ । (ଉ ୭୫ ପୃ) ମରହଟ୍ଟ ନଗରର ସୁଜାଣେଶ୍ୱର ଶବର ମାଂସ ବିକ୍ରୟ କରୁଥିଲେ । (ସ୍ୱ ୯ ପୃ) ଯାଜପୁରର ବୈଶ୍ୟ ହରି ସାହୁ ସୁନାରୁପାର ବ୍ୟବସାୟୀ ଥିଲେ । (ସ୍ୱ ୫-୯ ପୃ) ବିରାଟ ରାଜ୍ୟର ଲୋକେ ଦୁଗ୍ଧ-ବ୍ୟବସାୟ କରି ଜୀବିକା ଚଳାଉ ଥିଲେ । (ବ ୨୯ ପୃ) ଗୋପାଳୁଣୀମାନେ ମୁଣ୍ଡରେ ଦହିପସରା ଧରି ରାସ୍ତାରେ ବୁଲି ବିକାକିଣା କରୁଥିଲେ । ପାଣ୍ଡବଙ୍କର ଗୋପାଳୁଣୀ ବେଶଧାରଣ ଓ ଚନ୍ଦ୍ରଭାଗା କୂଳର ରାସ୍ତାରେ ଦଧିବିକ୍ରୟ କରିବା ଚିତ୍ରରୁ ଏହା ଅବଧାରିତ ହୁଏ । (୧୩୨) କମ୍ୱଦନ୍ତୀରୁ ପ୍ରକାଶ ପାଏ ଯେ ମାଣିକ ନାମ୍ନୀ ଗୋପାଳୁଣୀ ଚିଲିକା କୂଳରେ ଦଧି ବିକ୍ରୟ କରୁଥିଲେ ଏବଂ ରାଉତବେଶୀ ଜଗନ୍ନାଥ-ବଳରାମ ତାଙ୍କଠାରୁ ଦଧି କ୍ରୟ କରି ପାନ କରିଥିଲେ । ପୁରୁଷୋତ୍ତମ ଦାସଙ୍କ କାଞ୍ଚୀ-କାବେରୀ କାବ୍ୟରେ ଏହାର ଚିତ୍ର ନିହିତ । (ପୃ ୨୭-୨୮)

ସେକାଳରେ ହାଟ ବସୁଥିଲା ଏବଂ ହାଟରେ ବିକାକିଣା ଚାଲୁଥିଲା । କବି-ବର୍ଣ୍ଣିତ କେତେକ ଶବ୍ଦରୁ ତାହା ଅବଧାରିତ ହୁଏ; ଯଥା-—

"ଗୋଟିଏ କାଠ ଭାଙ୍ଗିଣ ପକାଏ ସେ ଘରେ
ଭାରିଯା ବିକଇ ତାକୁ ନେଇଣ ହାଟରେ ।" (ଉ ୭୫ ପୃ)
"ସେ ହାଟେ ଶବର ମାଂସ ବ୍ୟବସା କରଇ
ଗଣ୍ଡାକ ମାଂସ ପାଞ୍ଚ କଉଡ଼ାରେ ବିକଇ ।" (ସ୍ୱ ୯ ପୃ)
"ହାଟବାଟ ଦେଉଳ ମଣ୍ଡୋପ ଜଗତି
ସମସ୍ତ ଜନେ ମିଳି ସମ୍ଭରେ ରହାନ୍ତି ।" (୧୩୩)

ମଧ୍ୟଯୁଗରେ ଓଡ଼ିଶାରେ ହାଟମାନ ପ୍ରତିଷ୍ଠିତ ଥିବା କଥା ଅନ୍ୟ ଲେଖାରୁ ମଧ୍ୟ ଜଣାଯାଏ । ମାଦଳାପାଞ୍ଜିରେ କୁହାଯାଇଅଛି ଯେ ଅନଙ୍ଗଭୀମ ଦେବ ତିନଶହ ପଞ୍ଚାଶ ଗୋଟି ହାଟ ବସାଇଥିଲେ । (୧୩୪) ରୁଦ୍ରସୁଧାନିଧି (ପୃ ୯୫) ଓ ଭାଗବତରେ ହାଟର ଉଲ୍ଲେଖ ମିଳେ । (୧୩୫)

ସାରଳା ଦାସଙ୍କ ଲେଖାରେ ବହୁ ସ୍ଥଳରେ ସାଧବଙ୍କ କଥା କୁହା-ଯାଇଅଛି । ଆଦ୍ୟପର୍ବରେ କବି କହନ୍ତି ଯେ ଶଶିକର ବିପ୍ରର ବିଧବା ପତ୍ନୀ ସେ ଦେଶର 'ସାଧବ'ର ଔରସରୁ ସନ୍ତାନ ଲାଭ କରିଥିଲା । (ଆ ୧୭୭ପୃ) 'ସତ୍ତି ସ୍ତ୍ରୀ' ଉପାଖ୍ୟାନରେ ଅଛି ଯେ ସାଧବମାନେ ସତ୍ତିଙ୍କର ପ୍ରେମ କାମନା କରିଥିଲେ । (୧୩୬) ବନ ପର୍ବରେ ଜଣେ ସାଧବ ବଳଦ ଉପରେ କନକ ଲଦି ବାଣିଜ୍ୟ ଉଦ୍ଦେଶ୍ୟରେ ଯାତ୍ରା କରୁଥିବାର ଏକ ଚିତ୍ର କବି ପରିବେଷଣ କରିଛନ୍ତି ।

"ରାଜୀବ ବୋଲି କରି ଏକଇ ବନସ୍ତେ ।
ତହିଁ ଦେଖିଲାକ ଏକ ସାଧବ ଆସନ୍ତେ ।
ଅନେକ ବଳଦରେ ସାରେକ ପୂରାଇ ।
ରେଖାର ତୁରଙ୍ଗମ ବାଜିତ ଚଳାଇ ।" (୧୩୭)

ଓଡ଼ିଶାର ଲୋକେ ପୂର୍ବେ ଏହିପରି ଭାବରେ ଦୂର ସ୍ଥାନକୁ ଗମନ କରି ବାଣିଜ୍ୟ କରୁଥିବା କଥା ଇତିହାସ ସମର୍ଥନ କରେ । ଓଡ଼ିଶାର ବଣିକ ତପୁସା ଓ ବାହ୍ଲିକ ପାଞ୍ଚଶତ ଗାଡ଼ିରେ ସାମଗ୍ରୀମାନ ନେଇ ମଧ୍ୟଦେଶକୁ ଯାତ୍ରା କରିବା ଏବଂ ପ୍ରଥମେ ବୁଦ୍ଧଙ୍କଦ୍ୱାରା ବୌଦ୍ଧ ଧର୍ମରେ ଦୀକ୍ଷିତ ହେବା ବୃତ୍ତାନ୍ତ ଇତିହାସରେ ମିଳେ । (୧୩୮) ଉଦୟମାଣ, ଧୌତମାଣ ଓ ଅଜିତମାଣ ନାମକ ବ୍ୟବସାୟୀତ୍ରୟ

ତାମ୍ରଲିପ୍ତି ଓ ମଧ୍ୟଦେଶ ମଧ୍ୟରେ ବାଣିଜ୍ୟ ଚଳାଉଥିବା କଥା ଐତିହାସିକମାନେ ଉଲ୍ଲେଖ କରିଛନ୍ତି । (୧୩୯) ଗୁପ୍ତଯୁଗରେ କଳିଙ୍ଗର ହସ୍ତୀ ଭାରତୀୟ ବିପଣିରେ ବର୍ଦ୍ଧି କରାଯାଉଥିବାର ଜଣାଯାଏ । (୧୪୦)

କବିଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ସେ ଯୁଗର ବ୍ୟବସାୟୀମାନେ ପଚିଶ ପ୍ରତିଶତ ଲାଭ ସ୍ୱରୂପ ଗ୍ରହଣ କରୁଥିଲେ । ସୁଜାଣେଶ୍ୱର ଓ ହରିସାହୁଙ୍କ ବର୍ଣ୍ଣନାରୁ ଏହା ପ୍ରତିପାଦିତ ହୁଏ ।

"ଗଣ୍ଡାକ ମାଂସକୁ ପାଞ୍ଚକଉଡ଼ାରେ ବିକଇ ।"
"ଗଣ୍ଡାକେ କଉଡ଼ା ବୋଡ଼ିକେ ଘେନିବ ଗଣ୍ଡାଏ ।
ପଣକେ ବୋଡ଼ି କାହାଣେ ଲାଭ ପଡ଼ିକାଏ ।
ଯେତେ ଲାଭ ହେଲେ ମିଥ୍ୟା ନ କହିବ ହାଦେ
ଗୃହିପାଦେ କଣି ନେଇ ବିକ ପାଞ୍ଚ ପାଦେ ।" (ସ୍ୱ୍ୟୟମ୍ଭୁ)

## (ଖ) ବହିର୍ବାଣିଜ୍ୟ

ବହିର୍ବାଣିଜ୍ୟ ଭାରତରେ ସୁପ୍ରାଚୀନ କଥା । ଋକବେଦରେ ବରୁଣଙ୍କୁ ସାମୁଦ୍ରିକ ମାର୍ଗର ଜ୍ଞାତା ବୋଲି କୁହାଯାଇଅଛି । (୧୪୧) ଐତିହାସିକମାନେ କହନ୍ତି ଯେ ସିନ୍ଧୁ ସଭ୍ୟତାରେ ବି ବହିର୍ବାଣିଜ୍ୟ ଥିଲା । (୧୪୨) ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ କାଳରେ ଭାରତର ବାଣିଜ୍ୟ-ତରୀ ବାବିଲୋନ, ବ୍ରହ୍ମଦେଶ ଓ ଚୀନ ଅଭିମୁଖରେ ଯାତ୍ରା କରୁଥିଲେ । (୧୪୩) ଗୁପ୍ତଯୁଗରେ ଭାରତ ସହ ମିଶର, ଗ୍ରୀସ, ରୋମ, ପାରସ୍ୟ, ଆରବ, ସିରିଆ, ସିଂହଳ, କାମ୍ବୋଡ଼ିଆ, ଶ୍ୟାମ, ସୁମାତ୍ରା, ମାୟୁ ଓ ଚୀନ ଦେଶ ସହ ବାଣିଜ୍ୟକ ସମ୍ପର୍କ ସମୁଦ୍ର ପଥରେ ପ୍ରତିଷ୍ଠିତ ହୋଇଥିଲା । (୧୪୪)

ସାରଳା ଦାସଙ୍କ କାଳରେ ସମୁଦ୍ର ପଥରେ ବାଣିଜ୍ୟ ଥିଲା । ଶ୍ରୀକୃଷ୍ଣ ଗୁରୁପୁତ୍ରମାନଙ୍କ ଅନ୍ୱେଷଣ କରିବା ନିମିତ୍ତ ସମୁଦ୍ରରେ ପ୍ରବେଶ କରିବା ଘଟନାରୁ ଅବଧାରିତ ହୁଏ ଯେ, ସେ କାଳରେ ସମୁଦ୍ରଯାତ୍ରା ପ୍ରଚଳିତ ଥିଲା ।

"ଗୁରୁଙ୍କୁ କହିଣ ଚଳିଲେ ବହନ
ବାରିନିଧିରେ ଯେ ପଶିଲେ ଚକ୍ରପାଣି ।
ଗୋବିନ୍ଦେ ପୃଚ୍ଛା କଲେ ବଳଦେବଙ୍କ ମୁଖ ଗୃହିଁ ।
ତୁମ୍ଭେ ଥାଅ ଏବେ ଗୁରୁଙ୍କ ପାଶେ ରହି ।

ଆମ୍ଭେ ଯାଇ ଦେଖିବା ବାବନଧି ସ୍ଥାନେ ।
ଗୁରୁଙ୍କ ପୂଜ ଗଲେ କ ହେତୁ ବଚନେ ।” (୧୪୫)

ସେ ଯୁଗରେ ସାଧବଗଣ ବୋଇତ ନେଇ ଦେଶ ବିଦେଶରେ ବାଣିଜ୍ୟ କରୁଥିବା କଥା କବି-ବର୍ଣ୍ଣିତ ମଳୟାନିଳ ବୃତ୍ତାନ୍ତରୁ ଅବଧାରିତ ହୁଏ ।

“ଉତ୍କଳ ବୋଲି କରଣ ଏକାଇ ନଗର
ମଳୟାନିଳ ତହିଁରେ ଅଟେ ଅଧିକାରୀ ।
ବଡ଼ ସାଧୁ ସମ୍ପଦେ ସେ ଅଟେ ଲକ୍ଷ୍ମୀଧର
ଅନେକ ବୋଇତ ସେହୁ କରଇ ବେଭାର ।” (ପ ୨୯୩ପୃ)

ଉତ୍କଳବାସୀଗଣ ଅତୀତରେ ବହିର୍ବାଣିଜ୍ୟରେ ଲିପ୍ତ ଥିଲେ ବୋଲି ଇତିହାସ କହେ । ଐରବଂଶୀୟ ସମ୍ରାଟ ଖାରବେଳଙ୍କ ପରେ କଳିଙ୍ଗର ଲୋକେ ଭାରତୀୟ ସଂସ୍କୃତିକୁ ସମୁଦ୍ର-ମଧ୍ୟସ୍ଥ ଦ୍ୱୀପମାନଙ୍କରେ ପରିବ୍ୟାପ୍ତ କରିଥିବାର ଜଣାଯାଏ । ଟୋଲେମି କଳିଙ୍ଗର ଗୋଟିଏ ଜାହାଜ ସୁବର୍ଣ୍ଣ ଦ୍ୱୀପକୁ ଯାତ୍ରା କଲାବେଳେ ପଥଭ୍ରଷ୍ଟ ହେବା କଥା ବର୍ଣ୍ଣନା କରିଛନ୍ତି । (୧୪୬) ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ ଇତିହାସୋକ୍ତ ‘କଳିଙ୍ଗ ନଗର’ ଓ ‘ପରୁଆଲିସ’ ହେଉଛି ପୁରୀ-ନିକଟବର୍ତ୍ତୀ ‘କୋଣାର୍କ’ ଓ ‘ପାଟେଲି’ ଗ୍ରାମ । ଦୁଇ ହଜାର ବର୍ଷ ପୂର୍ବେ ଏହିଠାରୁ ହିଁ ମିଶର, ଜାଭା ଓ ସୁମାତ୍ରାକୁ ବାଣିଜ୍ୟତରୀମାନ ଯାତ୍ରା କରୁଥିଲି । (୧୪୭) ବ୍ରହ୍ମାଣ୍ଡ ପୁରାଣରେ ଚିଲିକାରେ ସହସ୍ର ପୋତ ଭାସମାନ ହେଉଥିବା (ଚିଲ୍‌କା ହ୍ରଦେ ସହସ୍ରଂ ତୁ ସୁପୋତାଃ ଜଳଗାମିନଃ) କଥା ବର୍ଣ୍ଣିତ । ସେଥିରେ କୁହାଯାଇଅଛି ଯେ ସେଠାରୁ ଜାଭା, ମଳୟ, ସିଂହଳ, ଗଙ୍ଗାସାଗର ଓ ଚୀନ ଦେଶକୁ ପୋତମାନ ଯାତ୍ରା କରୁଥିଲି । (୧୪୮) ଅନୁମିତ ହୁଏ ଯେ, କାଞ୍ଚି-ବିଜୟ କାଳରେ ପୁରୁଷୋତ୍ତମ ଦେବଙ୍କ ସୈନ୍ୟବାହିନୀ ମାଣିକପାଟଣା-ଠାରେ ଚିଲିକା ମୁହାଣ ପାର ହୋଇଥିଲେ । (୧୪୯) ଷୋଡ଼ଶ ଶତାବ୍ଦୀର ଆଦିଭାଗରେ ହିନ୍ଦି କବି ମାଲିକ ମହମ୍ମଦ ଜୟସୀ ଯେଉଁ ‘ପଦ୍ମାବତ’ କାବ୍ୟ ଲେଖିଛନ୍ତି (୧୫୦), ତହିଁରେ ନାୟକ ରତନ ସିଂହ ଉତ୍କଳର ତଦାନୀନ୍ତନ ଗଜପତିଙ୍କଠାରୁ ସାତଶହ ଲୋକ ବସିବା ଭଳି ଏକ ଜାହାଜ ନେଇ ସିଂହଳ-ଯାତ୍ରା କରିଥିବା ବିଷୟ ବର୍ଣ୍ଣିତ ହୋଇଅଛି । (୧୫୧) ଖ୍ରୀଷ୍ଟିୟ ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀ ଉତ୍କଳୀୟ ବହିର୍ବାଣିଜ୍ୟର ସମୃଦ୍ଧିତମ ତଥା ଅନ୍ତିମ କାଳ । (୧୫୨) ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ସାମୁଦ୍ରିକ ବାଣିଜ୍ୟ କେତେକାଂଶରେ ତିଷ୍ଠି

ରହିଥିବା କଥା କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ 'ବହିତ୍ର ଲଗିଲା ଯାଇ ସିଂହଳ ଦ୍ୱୀପରେ' ଉକ୍ତିରୁ ଅନୁମିତ ହୁଏ । (୧୫୩) କାଞ୍ଚୀ-କାବେରୀ କାବ୍ୟରେ ରାଉତବେଶୀ ଜଗନ୍ନାଥ ଓ ବଳଭଦ୍ର ସମୁଦ୍ରର ମୁହାଣ ବାଟରେ ଗମନ କରିଥିବା କଥା ଉକ୍ତ ।

"ଯେଉଣେ ପ୍ରଭୁ ଜଗନ୍ନାଥ ରାଉତ ରୂପରେ
ସମୁଦ୍ର ମୁହାଣ ପଥେ ଯାଉଛନ୍ତି ଧୀରେ ।" (୧୫୪)

## (ଗ) ନୌ ବାଣିଜ୍ୟ—

ନଦୀ ପଥରେ ପୂର୍ବେ ବାଣିଜ୍ୟ ଚାଲୁଥିଲା । ରାମାୟଣ (୧୫୫), ମାର୍କଣ୍ଡେୟ ପୁରାଣ (୧୫୬), ଭାଗବତ (୧୫୭) ଓ ଶୁକ୍ରନୀତିମ୍‌ରେ (୧୫୮) ନାବର ବର୍ଣ୍ଣନା ଅଛି । ଷୋଡ଼ଶ ଶତାବ୍ଦୀରେ ଯମୁନା ନଦୀରେ ଶହେ ଅଶୀ ଗୋଟି ଜାହାଜ ବାଣିଜ୍ୟକ ସମ୍ଭାର ନେଇ ଯାତ୍ରା କରୁଥିବା କଥା ଫିଞ୍ଚ୍ ବର୍ଣ୍ଣନା କରିଅଛନ୍ତି । (୧୫୯) ସାରଳା ଦାସଙ୍କ ଯୁଗରେ ଓଡ଼ିଶାର ନଦୀ ପଥରେ ବାଣିଜ୍ୟ ଚାଲୁଥିଲା । ଜନ୍ମ-ଲେଖାମାନେ ଅଛି ଯେ, ଶ୍ରୀକୃଷ୍ଣ ମହ୍ଲାର ଦେଶର ରାଜାଙ୍କୁ ରାଜସୂୟ ଯଜ୍ଞ ପାଇଁ ନାବରେ ତଣ୍ଡୁଳ ପ୍ରେରଣ କରିବା ନିମିତ୍ତ ଆଦେଶ ଦେଇଥିଲେ । (ସ୩୭ପୃ) ସେହିପରି ଇନ୍ଦ୍ର ନାବଯୋଗେ ଫଳ (ସ୪୨ପୃ) ଓ କଞ୍ଚନ ଦେଶର ରାଜା ହୃଷିକେଶ ନାଆରେ ରାଶି ପ୍ରେରଣ କରିବା ନିମିତ୍ତ ଶ୍ରୀକୃଷ୍ଣଙ୍କ ଦ୍ୱାରା ଆଦିଷ୍ଟ ହୋଇଥିଲେ । (୧୬୦) ପ୍ରଚଳିତ ଢ଼ଗ ଢ଼ମାଳୀରେ ନାବଚାଳନର ବର୍ଣ୍ଣନା ମିଳେ । ଯଥା—

"ଏଇ କଥାକୁ, ନାବ ପେଲିଦେଲି କଲିକତାକୁ ।" (୧୬୧)

## (ଘ) ମୁଦ୍ରାର ସ୍ୱରୂପ—

ଭାରତରେ ମୁଦ୍ରାର ପ୍ରଚଳନ ବହୁ କାଳରୁ ଅଛି । ସଂସ୍କୃତ ମହାଭାରତରେ ନିଷ୍କ ନାମକ ମୁଦ୍ରାର ଉଲ୍ଲେଖ ମିଳେ । (୧୬୨) ମନୁସ୍ମୃତିରେ ନିଷ୍କ, ଶତମାଣ, କାର୍ଷାପଣ ଆଦି ମୁଦ୍ରାର ନାମ ଦେଖାଯାଏ । (୧୬୩) ଷୋଡ଼ଶ ଶତାବ୍ଦୀ ବେଳକୁ ସ୍ୱର୍ଣ୍ଣ, ରୌପ୍ୟ ଓ ତାମ୍ର ମୁଦ୍ରାର ବହୁଳ ପ୍ରଚଳନ ପରିଲକ୍ଷିତ ହୁଏ । (୧୬୪)

ପଞ୍ଚଦଶ ଶତାବ୍ଦୀରେ ଉତ୍କଳରେ ମାଢ଼, କର୍ଷ ଓ ଟଙ୍କାର ବ୍ୟବହାର ଥିଲା । ସାରଳା ଦାସ ଲେଖିଛନ୍ତି ଯେ ରାଜା ସମ୍ବରଣ ମାଢ଼ ଓ କର୍ଷର ସୃଷ୍ଟି କରିଥିଲେ । (ଆ୫ପୃ) ରାଜା ଯଯାତି ମାଢ଼ ସହ ଟଙ୍କାର ପ୍ରଚଳନ କରିଥିଲେ । (ଆ୪୫ପୃ) ସେ କାଳରେ କଉଡ଼ିର ପ୍ରଚଳନ ଥିଲା । ଯମ-ହରିସାଦ୍ଧ ବୃତ୍ତାନ୍ତରୁ ତାହା ଜଣାଯାଏ । ଯଥା—

"ଗଣ୍ଡାକେ କଡ଼ା ବୋଡ଼ିକେ ଘେନିବ ଗଣ୍ଡାଏ
ପଣକେ ବୋଡ଼ି କାହାଣେ ଲଭ ପଦକାଏ ।"
"ଗଣ୍ଡାକ ମାଂସକୁ ପାଞ୍ଚ କଡ଼ାରେ ବିକଇ
ବେଶୀ ଲଭ ପାଇଁ କେବେ ମିଛ ନ କହଇ ।" (ମ୍ଭ୯ପୃ)

ଇତିହାସରୁ ଜଣାଯାଏ ଯେ, ଗଙ୍ଗବଂଶୀୟ ରାଜାମାନେ 'ମାଢ଼' ନାମକ ମୁଦ୍ରା ପ୍ରଚଳନ କରାଇଥିଲେ । (୧୬୫) କପିଳେନ୍ଦ୍ର ଦେବଙ୍କ କାଳରେ କଉଡ଼ି, ନିଷ୍କ ଓ 'ଗଜପତି ମୁଦ୍ରା' ପ୍ରଚଳିତ ଥିଲା । (୧୬୬) ତ୍ରୟୋଦଶ ଶତାବ୍ଦୀର ବୃଦ୍ଧ କବି ନନ (୧୬୭) ତାଙ୍କ 'ବିଶାଳ ଦେବ ରାସୋ'ରେ ନାୟକ ନାୟିକାକୁ ଉତ୍କଳରୁ କଉଡ଼ି ଆଣିଦେବେ ବୋଲି କହିଥିବାର ଉଲ୍ଲେଖ ଅଛି । (୧୬୮) ପୁରୁଷୋତ୍ତମ ଦେବ ଜଗନ୍ନାଥଙ୍କୁ ଦୁଇହଜାର କାହାଣ କଉଡ଼ି ଦାନ କରିଥିବାର ଜଣାଯାଏ । (୧୬୯) ମାଦଳାପାଞ୍ଜିରେ କଉଡ଼ି, ଗଣ୍ଡା ଓ ବୋଡ଼ିର ବହୁ ଉଲ୍ଲେଖ ମିଳେ । (୧୭୦)

## (ଙ) ଓଜନ ବାଧ —

ଶସ୍ୟାଦିର ଓଜନ କରିବା ରୀତି ଭାରତରେ ଏକ ପ୍ରାଚୀନ କଥା । ସିନ୍ଧୁ ସଭ୍ୟତାରେ ବିଭିନ୍ନ ଓଜନର ବଟକରା ଥିଲା ଏବଂ କାଷ୍ଠ ନିର୍ମିତ ତରାଜୁ ବି ଥିଲା । (୧୭୧) ମହେଞ୍ଜୋଦାରୋରୁ ମିଳିଥିବା ବଟକରା ଗୁଡ଼ିକ ସଠିକ ଥିଲା ବୋଲି ତତ୍ତ୍ୱବିଦମାନେ ମତ ଦିଅନ୍ତି । (୧୭୨) ସାରଳା ଦାସଙ୍କ ମହାଭାରତରୁ ଜଣାଯାଏ ଯେ ଉତ୍କଳରେ ବିଶା ଓ ପଳ ସେ କାଳରେ ଓଜନର ଏକକ ଥିଲା । କବି କହନ୍ତି—ରାଜା ସମ୍ବରଣ ବିଶା ଓ ପଳର ସୃଷ୍ଟି କରିଥିଲେ ।

"ଅଜମୀଢର ନନ୍ଦନ ହୋଇଲା ସମ୍ବରଣ
ବିଶା ପଳ ମାଢ଼ କର୍ଷ କଲେକ ଭିଆଣ ।" (୧୭୩)

ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ବଶା ଶବ୍ଦଟି ସଂସ୍କୃତ ବଶ୍ୱା ଶବ୍ଦରୁ ଆଗତ । ଏକ ବଶାର ପରିମାଣ ଅଠର, କୋଡ଼ିଏ ବା ବାଇଶ ପଳ ହୁଏ । (୧୭୪) ଏବେ ମଧ୍ୟ ଗ୍ରାମାଞ୍ଚଳରେ ବଶାର ବ୍ୟବହାର ଅଛି ।

(ଚ) ବଦଳ ପ୍ରଥା—

ଧାନ ବା ଖାଦ୍ୟଶସ୍ୟ ଦେଇ ଦ୍ରବ୍ୟ କ୍ରୟ କରିବା ଏକ ପ୍ରାଚୀନ ଚଳଣି । ମଧ୍ୟ-ଯୁଗରେ ଏହି ରୀତି ଉତ୍କଳରେ ପ୍ରଚଳିତ ଥିବାର ଜଣାଯାଏ । ପାଦଗ୍ରାଙ୍କର ଦହି-ବିକା ଦୃଶ୍ୟରେ ଧାନ ଦେଇ ଦହି କିଣିବା କଥା କବି ଦର୍ଶାଇଅଛନ୍ତି ।

"ତହୁଁ ଦେଖି ବୋଇଲେ ମୁଁ କୁଳ ଭୂଆସୁଣୀ
ଧାନ ପୁଡ଼ାଏ ପାଇଲେ ବଞ୍ଚୁ ଦୁଇ ପ୍ରାଣୀ ।
ଶୁଣି ବୋଇଲେ ଦାନବେ ଘରୁ ଧାନ ନେବୁ
ହାରି ନଉଡ଼ିଏ ଆଣି ତୋ ଘରେ ଦେବୁ ।" (ସ୍ୱ୧୨ପୃ)

ଓଡ଼ିଆ ଭାଗବତରେ ଶ୍ରୀକୃଷ୍ଣ ଧାନ ଦେଇ କୋଳି କିଣିବା କଥା ବର୍ଣ୍ଣନା କରାଯାଇଅଛି ।

"ଧାନ ଅଞ୍ଜଳି ପେଟେ ଦେଇ । ବେଗେ ଧାଇଁଲେ ଭବଗ୍ରାହୀ ॥
ମିଳିଲେ କୋଳି ବିକା ଲୋକେ । ମାଣ ପାତିଲେ ନେଇ ବେଗେ ॥ (୧୭୫)

୩ । ସ୍ଥାପତ୍ୟ—

ଭାରତରେ ସ୍ଥାପତ୍ୟର କ୍ରମବିକାଶ ବେଦକାଳରୁ ଲକ୍ଷ୍ୟ କରାଯାଇପାରେ । ଋକ୍‌ବେଦ ଯୁଗରେ ବହୁ ସ୍ତମ୍ଭଯୁକ୍ତ ସଭା ମଣ୍ଡପ ଗଠିତ ହେଉଥିବାର ଉପଲବ୍ଧ ହୁଏ । ବୈଦିକ ଋଷି ମିତ୍ରା ବରୁଣଙ୍କୁ ବହୁ ସ୍ତମ୍ଭଯୁକ୍ତ ମଣ୍ଡପରେ ଉପବେଶନ କରିବା ପାଇଁ ପ୍ରାର୍ଥନା କରି ଅଛନ୍ତି । (୧୭୬) ଋଷି ମଧ୍ୟ ତିନିଗୋଟି କାଠ ଶେଣୀ ଥିବା ଗୃହ ଭିକ୍ଷା କରନ୍ତି । (୧୭୭) ବୈଦିକ ଋଷି ପ୍ରାସାଦ ବା ହର୍ମ୍ୟ (୧୭୮) ଓ ନିତଳ ବିଶିଷ୍ଟ ଗୃହର ଉଲ୍ଲେଖ କରିଥିବାର ଦେଖାଯାଏ । (୧୭୯) ସଂସ୍କୃତ ମହାଭାରତରେ ଜତୁ ଗୃହ (୧୮୦), ସ୍ୱୟମ୍ବର ସଭା (୧୮୧) ଶିବିର (୧୮୨) ଓ ଯଜ୍ଞ ମଣ୍ଡପ (୧୮୩) ନିର୍ମାଣର ବର୍ଣ୍ଣନା ମିଳେ । ରାମାୟଣରେ ପ୍ରାସାଦ, ହର୍ମ୍ୟ (୧୮୪) ତଥା ପ୍ରଣାଳୀଯୁକ୍ତ ଗୃହର (୧୮୫) ଉଲ୍ଲେଖ ନାହିଁ ।

ଭାଗବତରେ ଗ୍ରାମ, ନଗର ଓ ଦୁର୍ଗରେ ସୃଷ୍ଟି କପର ରାଜା ପୃଥୁ ପ୍ରଥମେ କରଥିଲେ ତାହା ବର୍ଣ୍ଣିତ । (୧୮୬)

ବିଷ୍ଣୁପୁରାଣରେ ଶୀତୋଷ୍ଣ-ନିରୋଧକ ଗୃହ, ଦୁର୍ଗ (୧୮୭) ଓ ସ୍ଫଟିକ ତଥା ଅଭ୍ରଶିଳାନିର୍ମିତ ଗୃହର ଉଲ୍ଲେଖ ଅଛି । (୧୮୮) ଶୁକ୍ରନୀତିରେ ଦୁର୍ଗ ଓ କାଳକୁ ରାଜ୍ୟର ସପ୍ତାଙ୍ଗ ମଧ୍ୟରେ ଗ୍ରହଣ କରାଯାଇଅଛି । (୧୮୯) ସାରଳା ଦାସଙ୍କ ମହାଭାରତରେ ସ୍ଥାପତ୍ୟର ପ୍ରଭୂତ ପରିଚୟ ମିଳେ ।

## (କ) ଗୃହ, ପ୍ରାସାଦ

ସେ କାଳରେ ରାଜାମାନେ ବିଶାଳ, ବହୁ କୋଠରୀଯୁକ୍ତ ଭବନ ନିର୍ମାଣ କରୁଥିଲେ । କବି କହନ୍ତି ଯେ, ଦୁର୍ଯୋଧନ ଗାନ୍ଧାରସେନଙ୍କ ପାଇଁ ଯେଉଁ ବନ୍ଦୀଶାଳ ନିର୍ମାଣ କଲେ ତାହାର ବିସ୍ତାର ଏକ ଯୋଜନ ଓ ଉଚ୍ଚତା ତିନିଶହ ହାତ ଥିଲା । (ଆ୧୩୩ପୃ) ନାରାୟଣଙ୍କ ବାସଭବନର ବିସ୍ତାର ସତର କୋଟି ଯୋଜନ (ଉ୮୨ପୃ) ଓ ଯୁଧିଷ୍ଠିରଙ୍କ ଶୟନ-କକ୍ଷର ଦୈର୍ଘ୍ୟ ଚଉରକୋଶ ଥିଲା । (ସ୩୨୧ପୃ) ଏହା ଅତ୍ୟୁକ୍ତି ହେଲେହେଁ, ସେ ଯୁଗର ଗୃହମାନଙ୍କର ବିଶାଳତାର ପରିଚୟ ଦିଏ । ସେ କାଳର ଗୃହମାନଙ୍କରେ ପାହାଚ, କବାଟ, କଳଣୀ ଓ ଜଳା କବାଟ ରହୁଥିବା କଥା ନିମ୍ନ ଉକ୍ତିମାନଙ୍କରୁ ଅବଧାରିତ ହୁଏ ।

"ସ୍ଫଟିକ ପାବଚ୍ଛ ମୃକତ ଶୁଦ୍ଧ ସ୍ଥଳ ।"
"ଚଉଦିଗେ ପାବଚ୍ଛ ନୀଳାସ୍ମେଣ ନିର୍ମିତ ।" (୧୯୦)
"କବାଟେ କର ଦିଅନ୍ତେ ଫିଟିଲା କଳଣୀ । (୧୯୧)
"ବନ୍ଦ ଜଳାବାଟେ ନେଇ ଦିଅନ୍ତି ସେ ଅନ୍ନ ।" (ଆ୧୩୫ପୃ)

ସାଧାରଣ ଘର ଗୁଡ଼ିକରେ ଖୁଣ୍ଟ ରହୁଥିଲା । ସ୍ତମ୍ଭମାନଙ୍କ ଉପରେ ଖୁଣ୍ଟ ରଖା ଯାଉଥିଲା । ଓର, ଶେଣି ଓ ବତାର ବ୍ୟବହାର ହେଉଥିଲା । ଏହାର ପରିଚୟ ଜଉଗୃହ, ଅର୍ଜୁନଙ୍କ ଦ୍ୱାରକାର ଶୟନକକ୍ଷ ଓ ନାରାୟଣଙ୍କ ଭବନ ବର୍ଣ୍ଣନାରୁ ଉପଲବ୍ଧ ହୁଏ । ଯଥା—

"କାନ୍ଥ ଖୁଣ୍ଟ ରୁଅ ବତା ଶେଣୀ ଆଦି କରି
ଜଉ ସଜଳସ ଘୃତ ଛଣପଟେ ଜଡ଼ି ।" (ଆ୧୩୫ପୃ)

"ସ୍ଫଟିକର ପିଢ଼ ଚନ୍ଦନ ରୁଅ କାଠ ଶ୍ରେଣୀ
ତହିଁ ଉପରେ ହୋଇଛୁ ରତ୍ନର ଖଞ୍ଜଣି ।" (୧୯୨)
"ସୁବର୍ଣ୍ଣର ସ୍ତମ୍ଭ ହୋଇବ ସୁବର୍ଣ୍ଣର ଗୃଳ ।" (୧୯୩)
"ସ୍ଫଟିକର ସ୍ତମ୍ଭରେ ଯେ ଚନ୍ଦନର ସ୍ରେଣି ।" (୧୯୪)

'ଦାଣ୍ଡି ରାମାୟଣ'ରେ କଳଶୀ, କବାଟ, ସ୍ତମ୍ଭ, ରୁଅ, ପାବଛ ଓ ଗୃଳର ବର୍ଣ୍ଣନା ଦେଖାଯାଏ । (୧୯୫) ଭାଗବତରେ ଜଳା କବାଟୀ, କଳଶୀ, କବାଟ ଓ ଗୃଳର ଉଲ୍ଲେଖ ମିଳେ । (୧୯୬)

ସାରଳା ଦାସଙ୍କ ଯୁଗରେ ମଣ୍ଡପ (ଦେଉଳ), ଅଟ୍ଟାଳିକା (ଜଗଘର ବା ମେଡ଼) ନିର୍ମାଣ କରାଯାଉଥିଲା । କବିଙ୍କ ଉକ୍ତିରୁ ତାହା ଜଣାଯାଏ ।

"ହାଟ ବାଟ ଦେଉଳ ଯେ ମଣ୍ଡପ ଜଗଘର
ସବୁଠାରେ ଲୋକ ଉଦ୍ଧା ପାର୍ଥକୁ ଦେଖନ୍ତ ।" (୧୯୭)
"ମେଡ଼ ମଣ୍ଡପ ଦେଉଳ ଆବର ଅଟ୍ଟାଳି
ମାଳ ମେଘେ ଦିଶେ ଯେହ୍ନେ ଶରତ ବିଜୁଳି ।" (ବ୮୭ପୃ)

ପ୍ରାଚୀନ ଉତ୍କଳରେ ପ୍ରାସାଦ ନିର୍ମାଣ କରାଯାଉଥିଲା । ଖାରବେଳ ମଗଧ ବିଜୟ ପରେ ରାଜଧାନୀରେ 'ମହା ବିଜୟ ପ୍ରାସାଦ' ନିର୍ମାଣ କରିଥିଲେ । ତାହା ପ୍ରାଚୀ ନଦୀ କୂଳରେ ଅବସ୍ଥିତ ଥିଲା । (୧୯୮) 'ଦାଣ୍ଡି ରାମାୟଣ'ରେ ଅଟ୍ଟାଳିକାର ଉଲ୍ଲେଖ ମିଳେ । (୧୯୯)

## (ଖ) ସଭାଗୃହ ଓ ଯଜ୍ଞଶାଳା

ସାରଳା ଦାସଙ୍କ ମହାଭାରତରେ ସ୍ୱୟମ୍ବର ସଭାର ବର୍ଣ୍ଣନା ମିଳେ । ସେଥିରୁ ଜଣାଯାଏ ଯେ, ସଭାଗୃହର ଆକାର ବିଶାଳ ଥିଲା । ସେଥିରେ ଅଶ୍ୱଶାଳ ଓ ଗଜଶାଳ ରହୁଥିଲା । ଭାନୁମତୀ ଓ ଚନ୍ଦ୍ରାବତୀଙ୍କ ସ୍ୱୟମ୍ବର ପ୍ରସଙ୍ଗରୁ ଏହା ଜଣାଯାଏ ।

"ରତ୍ନସ୍ଥା ମଣ୍ଡପେକ ଭିଆଇଲେ ଶୁଭ ଯୋଗେ
ଅକ୍ଷତ ଅର୍ଘ୍ୟ ଯେ ଭିଆଇଲେ ଆଗେ ।
ଅଶ୍ୱଶାଳ ଗଜଶାଳ କଲେ ନଦୀ କୂଳେ
ସୁବର୍ଣ୍ଣ କଳସ ଘରେ ଥାପି ଅନୁକୂଳେ ।" (ଆ୧୧୫ପୃ)
"ରତ୍ନସ୍ଥା ମଣ୍ଡପ ହୋଇଲା ବେନି ଯୋଜନ ସ୍ଥଳ
ଯମୁନା ନଦୀ ତୀରେ ସମସ୍ତେ ଯାଇ ମିଳି ।" (୨୦୦)

ଯଜ୍ଞଶାଳ ମଧ୍ୟ ବିଶାଳ ଆକାରରେ ଗଠିତ ହେଉଥିଲା । ସେଥିରେ ବହୁ କୋଠରୀ ରହୁଥିଲା । କବି କହନ୍ତି ଯେ, ଯୁଧିଷ୍ଠିରଙ୍କ ଯଜ୍ଞମଣ୍ଡପରେ ଗୃହ-ଯୁକ୍ତ ବିଶାଳଦେହ ବଖରା ଥିଲା । ପ୍ରତି ବଖରା ପଞ୍ଚନଳ ଆୟତନ ବିଶିଷ୍ଟ କରାଯାଇ ଥିଲା । ଏଥିରେ ରାଜାଙ୍କ ନବର, ଅଶ୍ୱଶାଳ, ଗଜଶାଳ ଓ ରନ୍ଧନ ଗୃହ ରହିଥିଲା । (୨୦୧) ଧର୍ମ ଯଜ୍ଞ ପାଇଁ ନିର୍ମିତ ଯାଗଶାଳାରେ ଋଷି ଓ ରାଜାଙ୍କ ପାଇଁ ଭିନ୍ନ ଭିନ୍ନ ଆସ୍ଥାନର ବ୍ୟବସ୍ଥା ଥିଲା । ଶେଣୀ, ରୁଅ ଓ ସ୍ତମ୍ଭର ଉପରେ ତେଜପତ୍ର-ଚ୍ଛାଆଣି ଗୃହ ଥିଲା । (ମ୩୨୪ପୃ)

## (ଗ) ଦୁର୍ଗ

ସେ କାଳରେ ଓଡ଼ିଶାରେ ଦୁର୍ଗମାନ ପ୍ରତିଷ୍ଠା କରାଯାଉଥିଲା । କବି କହନ୍ତି ଯେ, ବ୍ରହ୍ମାଙ୍କ ଆଦେଶରେ ରଣଭକ୍ଷ ନାମକ ଦୈତ୍ୟ ମହାକାମରୂପୀ ଗଡ଼ ସ୍ଥାପନ କରିଥିଲେ । (ବ୨୦୩ପୃ) ଚିତ୍ରୋତ୍ପଳା ନଦୀକୂଳରେ 'କଳକଳା ଗଡ଼' ଥିଲା ଏବଂ ସେଠାରେ ଅର୍ଜୁନ ଯମକୁ ବାନ୍ଧି ରଖିଥିଲେ । (ସ୍ୱ୧୨ପୃ) ରଣସ୍ତମ୍ଭ ନାମକ ରାଜ୍ୟରେ ଗୋଟିଏ ଗଡ଼ ଥିଲା ଏବଂ ସେଠାରେ ହିଙ୍ଗୁଳା ଦେବୀ ଅଧିଷ୍ଠିତ ଥିଲେ । (ସ୍ୱ୧୭୧ପୃ) ସ୍ତମ୍ଭନ ଗଡ଼ରେ ପାଣ୍ଡବମାନେ ହିଙ୍ଗୁଳା ଦେବୀଙ୍କୁ ଦର୍ଶନ କରିଥିଲେ । (ସ୍ୱ୧୯ପୃ) ଦୁର୍ଗ ବା ଗଡ଼ରେ ପାଚେରୀ, କବାଟ ଓ ଗଡ଼ଖାଇ ରହୁଥିଲା । ରଣଭକ୍ଷର ଗଡ଼ ନିର୍ମାଣ ଓ ଦ୍ରୁପଦଙ୍କ ଗଡ଼ଖାଇ ପରିବେଷ୍ଟିତ ପୁର ସ୍ଥାପନ ବର୍ଣ୍ଣନାରୁ ଏହା ଅବଧାରିତ ହୁଏ ।

"ବଡ଼ ଯନ୍ତ୍ର କବାଟ ହୋଇବ କାଳଣି
ପାଚେରୀ ଉଞ୍ଚ ହୋଇବ ବଡ଼ ସଞ୍ଚା ଜାଣି ।" (୨୦୨)
"ଗଡ଼ଖାଇମାନ କରି ଭିଆଇଲେ ପୁର
ଖଞ୍ଜିଲେ ପାତ୍ର ସାମନ୍ତ ନିଜ ପରିବାର ।" (ଆ୯୫ପୃ)

ମଧ୍ୟଯୁଗରେ ଉତ୍କଳ ପ୍ରକୃତ ପକ୍ଷରେ ଥିଲା ଦୁର୍ଗମୟ । ପ୍ରସିଦ୍ଧ ବାରବାଟୀ ଦୁର୍ଗ ଅନଙ୍ଗଭୀମ ଦେବ ଆରମ୍ଭ କରିଥିଲେ । ଏହା ମୁକୁନ୍ଦ ଦେବଙ୍କ କାଳ ପର୍ଯ୍ୟନ୍ତ (ଖ୍ରୀ. ଅ. ୧୫୫୧-୧୫୬୮) ବିଦ୍ୟମାନ ଥାଇ ଉତ୍କଳୀୟ ସ୍ଥାପତ୍ୟର ପରାକାଷ୍ଠା ପ୍ରଦର୍ଶନ କରୁଥିଲା । (୨୦୩) ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଉତ୍କଳରେ ବହୁ ଦୁର୍ଗ ବିଦ୍ୟମାନ ଥିବାର ଜଣାଯାଏ । (୨୦୪)

## (ଘ) ପୁଷ୍କରଣୀ

ସାରଳା ଦାସଙ୍କ ଯୁଗରେ ପୁଷ୍କରଣୀମାନ ମଧ୍ୟ ଖୋଦନ କରାଯାଉଥିଲା । କବି ସେ କାଳରେ ଥିବା ପ୍ରସିଦ୍ଧ ପୁଷ୍କରଣୀମାନଙ୍କର ନାମୋଲ୍ଲେଖ କରିଅଛନ୍ତି । ତାଙ୍କ ଲେଖାରେ ଭୁବନେଶ୍ୱରର ବିନ୍ଦୁସାଗର (୨୦୫), ପୁରୀର ଶ୍ୱେତଗଙ୍ଗା-ମାର୍କଣ୍ଡ (ବା୮୭ପୃ) ପୁଷ୍କରଣୀର ନାମ ମିଳେ । କବି ସୁଦେବ ଗିରି ନିକଟରେ ଅନ୍ଧକ ନାମକ ବିଶାଳ ସରୋବର ଥିଲା ବୋଲି ଦର୍ଶାଇ ଅଛନ୍ତି ।

ଅନ୍ଧକ ସରୋବର ସୁଦେବ ଗିରିତଳ
ପନ୍ଦର କୋଶ ବିସ୍ତାରେ ରହିଅଛି ଜଳ ।

× × ×

ସେ ସରୋବର ଅଟଇ ଯୋଜନେ ବିସ୍ତୀର୍ଣ୍ଣ
ଅଛଇ ଶିମ୍ବଳୀ ବୃକ୍ଷ ମଧ୍ୟେ ବିଦ୍ୟମାନ ।" (ବା୧୦୧ପୃ)

## (ଙ) ଉପକରଣ ଓ ସାଜସଜ୍ଜା

ସେ କାଳରେ ଗୃହନିର୍ମାଣର ପ୍ରଧାନ ଉପକରଣ ଥିଲା ମାଟି, ପଥର ଓ କାଠ । କବି ଲେଖିଛନ୍ତି ଯେ, ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ କାଳରେ ଯେଉଁ କୋଠିମାନ ନିର୍ମିତ ହେଲା ତାହା ମାଟିରେ ଗଢ଼ା ଯାଇଥିଲା । (ସ୪୯ପୃ) ଗାନ୍ଧାରସେନଙ୍କ ପାଇଁ ଦୁର୍ଯ୍ୟୋଧନ ପଥରରେ ବନ୍ଦୀଶାଳ ନିର୍ମାଣ କରିଥିଲେ । (ଆ୧୩୩ପୃ) ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ କାଳରେ ଘର ତିଆରି ପାଇଁ କାଠ ଓ ପଥର ନାବରେ ଅଣାଯାଇଥିଲା । (ସ୪୭ପୃ)

ଗୃହ ତଥା ସଭାମଣ୍ଡପ ଆଦିର ସାଜସଜ୍ଜା ଉପରେ ସେ କାଳରେ ଖୁବ୍ ଗୁରୁତ୍ୱ ଦିଆଯାଉଥିଲା । ଗୃହର କାନ୍ଥମାନଙ୍କରେ ନାନାବିଧ ଚିତ୍ର ଅଙ୍କନ କରାଯାଉଥିଲା । କବି କହନ୍ତି—କାମାତୁର ରାଜା ଶାନ୍ତନୁ ସ୍ୱଗୃହର ଭିତ୍ତିଚିତ୍ରକୁ ସନ୍ଦର୍ଶନ କରିବାରୁ ତାଙ୍କର ରେତ ସ୍ଖଳିତ ହେଲା । (ଆ୧୦ପୃ) ଧର୍ମ ଯଜ୍ଞ ପାଇଁ ଯେଉଁ ଗୃହମାନ ନିର୍ମିତ ହୋଇଥିଲା, ତାହାର ପ୍ରତ୍ୟେକ କୋଠରୀରେ ଭିନ୍ନ ଭିନ୍ନ ଚିତ୍ର ଥିଲା । (ମ୩୨୪ପୃ) ଯୁଧିଷ୍ଠିରଙ୍କ ଶୟନ କକ୍ଷରେ ହୀରା, ନୀଳା, ଗଜମୋତି ଓ ମାଣିକ୍ୟର ଭୂଷଣ; ପ୍ରବାଳର ସ୍ତମ୍ଭ ଉପରେ ରତ୍ନଦୀପ, ପାଟବସ୍ତ୍ରର ଚନ୍ଦ୍ରାତପ ଶୋଭା ପାଉଥିଲା । (ସ୩୨୧ପୃ) ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ କାଳର ସଭା-ମଣ୍ଡପର ସାଜସଜ୍ଜା ଅନବଦ୍ୟ ଥିଲା । ଯଥା—

"ବାଡ଼େ ଶବ୍ଦ ଯେ ହୋଇବ ଲେଖନ ।
ଜଡ଼ ସ୍ଫଟିକରେ ହୋଇବ ଏକ ବର୍ଣ୍ଣ ।
ଜଳେ ଥଳେ ହାଟେ ହୋଇବ ଏକ ଜଳ ।
ସୁବର୍ଣ୍ଣର ସ୍ତମ୍ଭ ହୋଇବ ସୁବର୍ଣ୍ଣର ଗୃହ ।" (୨୦୫)
"ପିଣ୍ଡ ଘଟଣ କରନ୍ତି ଅନେକ ଉଚ୍ଛବେ ।"
"ତିନ କୋଟି ଉର୍ଦ୍ଧେ ଦଶ ଯୋଜନ ସ୍ଥଳ ।
ସ୍ଫଟିକ ପାବଛେ ମ୍ରକତ ଶୁଦ୍ଧ ଝଳ ।
ଚଉଷଷ ପାବଛ ନଳାସୁଣ ନର୍ମିତ ।
ଦେଖିଣ ଆନନ୍ଦ ହୋଇଲେ ଜଗନ୍ନାଥ ।" (୨୦୬)

## (ଚ) ଯୋଜନା ଓ ଅନୁକୂଳ

ସାରଳା ଦାସଙ୍କ ମହାଭାରତରୁ ପରିଜ୍ଞାତ ହୁଏ ଯେ, ଗୃହ ବା ଦୁର୍ଗାଦି ନିର୍ମାଣ କରିବା ପୂର୍ବରୁ ଗୋଟିଏ ଯୋଜନା କରାଯାଉଥିଲା । ବ୍ରହ୍ମା ରଣଭକ୍ଷ ଅସୁରକୁ ଲଙ୍କାଗଡ଼ ନିର୍ମାଣ କରିବା ପାଇଁ ଏକ ଚିତ୍ରପଟ ପ୍ରଦାନ କରିବା ବିଷୟରୁ ଏହା ସ୍ପଷ୍ଟ । (ବ୨୦୩ପୃ) ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ନିମିତ୍ତ ସଭା-ମଣ୍ଡପ ଗଠନ କରିବା ପୂର୍ବରୁ ଶ୍ରୀକୃଷ୍ଣ ବିଶ୍ୱକର୍ମାଙ୍କୁ ଗୋଟିଏ ଚିତ୍ରପଟ ଦେଇ-ଥିଲେ । (ସ୩୮ପୃ) ନିଜେ ବ୍ୟାସଦେବ ଯାଗଶାଳାର ଆୟତନାଦି ମାପଚୂପ କରି ସ୍ଥିର କରିଥିଲେ—

"ଯାଗକୁ କରି ସଞ୍ଚା ବ୍ରହ୍ମବେତ ।
ଅଶ୍ୱମେଧ ହୁତ ଯଜ୍ଞକୁ ତିନି ନିର୍ମିତ ।
ରାଜାଙ୍କ ନବର ଅଶ୍ୱଶାଳ ଗଜଶାଳ ।
ଭାଗମାପ କରିଣ ନେଇ ପାତିଲେକ ନଳ ।" (୨୦୭)

କବି କହନ୍ତି ଯେ, ପୁରୀ ମନ୍ଦିର ନିର୍ମାଣ କଲାବେଳେ ବିଶ୍ୱାବସୁ ମାପଚୂପ କରି ମନ୍ଦିର ଗଠନ ଆରମ୍ଭ କରିଥିଲେ—

"ଦେଉଳକୁ ମାପ କଲା ନେଇ ମାପ କାଠି
ତିନି ତାଳ ଆୟତନ କଲା ସେତୁ ବାଣ୍ଟି ।
ଆବର ଯେ ତିନି ତାଳ ଉତ୍ସର୍ଗ ଯେ କଲା
ପାଷାଣର ମନ୍ଦିର ଯେ ନିର୍ମିତ ହୋଇଲା ।" (ମୂ୩୧ପୃ)

ପୁରୀ ଜଗନ୍ନାଥ ମନ୍ଦିର ଅନଙ୍ଗଭୀମ ଦେବଙ୍କ କାଳରେ ନିର୍ମିତ ହେବା-ବେଳେ ଶିଳ୍ପୀ ମାପଚୂପ କରିଥିଲେ ବୋଲି 'ଶିଳ୍ପ ଚନ୍ଦ୍ରିକା' ନାମକ ଗ୍ରନ୍ଥରେ କୁହାଯାଇଅଛି । ଯଥା—

"ଚନ୍ଦ୍ର ସୂତ୍ରରେ ଯେ ଜାଣିଲୁ ।
ଯୋଡ଼ା ମାପିଣ ଶଙ୍କୁ କଲୁ ।" (୨୦୮)

ନିର୍ମାଣ କାର୍ଯ୍ୟର ପ୍ରାରମ୍ଭ ମଙ୍ଗଳ ବେଳାରେ ଅନୁକୂଳ ସହ କରା-ଯାଉଥିଲା ! କବି କହନ୍ତି ଯେ ଧୃତବର୍ଷ୍ମଙ୍କର ଯାଗଶାଳା ସ୍ଥାପନ (ଆ୬୦ପୃ), ଦ୍ରୁପଦଙ୍କ ଯଜ୍ଞଶାଳା ପ୍ରତିଷ୍ଠା (ଆ୨୦୮ପୃ), ଚନ୍ଦ୍ରାବତୀଙ୍କ ସ୍ୱୟମ୍ବର ସଭା (ମ୨୫୩ପୃ) ଶୁଭବେଳ ଦେଖି ଅନୁକୂଳ କରାଯାଇଥିଲା । କବି-ଲେଖାରୁ ଜଣାଯାଏ ଯେ ପୁରୀ ମନ୍ଦିରର ଅନୁକୂଳ ଶୁଭବେଳାରେ ହୋଇଥିଲା—

"ତୁଳମାସ କୃଷ୍ଣପକ୍ଷ ଚଉଠିର ତିଥି
ରୋହିଣୀ ନକ୍ଷତ୍ର ଗୁରୁବାର ଯେ ପାହାନ୍ତି ।
ବିଶ୍ୱାବସୁ ବୋଲିକରି ଏକ ଦ୍ୱିଜ ବାଳ
ସେ ଯାଇଣ ଦେଉଳକୁ କଲା ଅନୁକୂଳ ।" (ମୂ ୩୧ ପୃ)

ଶିଳ୍ପ ଚନ୍ଦ୍ରିକାରେ ଥିବା ପୁରୀ ମନ୍ଦିରର ନିର୍ମାଣ କାଳ ସହିତ କବି-ବର୍ଣ୍ଣିତ ନିର୍ମାଣକାଳ ସମାନ ନୁହେଁ । ତଥାପି ଉଭୟ ଗ୍ରନ୍ଥରେ ବ୍ରାହ୍ମଣ ଦ୍ୱାରା ଶୁଭଯୋଗରେ ଅନୁକୂଳ ହେବା କଥା ଅଛି—

"ରାଜାଙ୍କ ଦଶ ଅଙ୍କ ଜାଣ
ସକଳ ଯୋଗ ପରମାଣ ॥
ବିଷ୍କୁମ୍ଭ ନାମ ଶୁଭ ଯୋଗ ।
· ଏକାଦଶ ଯେ ଗ୍ରହ ଭୋଗ ॥
କକଡ଼ା ମାସ ତିନି ଦିନ
ଗୁରୁ ଯେ ଶୁକ୍ର ପରମାଣ ॥"
"ଶୁଭ ଯୋଗରେ ଦ୍ୱିଜମାନେ
ଗଣେଶ ସ୍ଥାପି ଶୁଭକ୍ଷଣେ ।" (ପୃ୯)

ଉପରୋକ୍ତ ଆଲୋଚନାରୁ ପ୍ରତିପନ୍ନ ହୁଏ ଯେ, ପଞ୍ଚଦଶ ଶତାବ୍ଦୀରେ ଉତ୍କଳରେ ଶିଳ୍ପର ପ୍ରସାର ହୋଇଥିଲା । ସ୍ୱର୍ଣ୍ଣ, ଲୌହ, ତାମ୍ର, ରୌପ୍ୟ,

କାଂସ୍ୟ, କାଷ୍ଠ, ବସ୍ତ୍ର ଓ ମୃଣ୍ମୟାଦି ଶିଳ୍ପର ବ୍ୟବସ୍ଥା ସେତେବେଳେ ଥିଲା । ତାଛଡ଼ା ବ୍ୟକ୍ତିଗତ ହସ୍ତୀଦନ୍ତ, ଅସ୍ଥି, ବାଉଁଶ ଓ ବେତର କେତେକ କାମ ମଧ୍ୟ କରାଯାଉଥିଲା । ଦେଶରେ ଅନ୍ତର୍ବାଣିଜ୍ୟ, ବହିର୍ବାଣିଜ୍ୟ ଓ ନୌବାଣିଜ୍ୟ ପ୍ରଚଳିତ ଥିଲା । ମୁଦ୍ରା ଓ କଉଡ଼ି ବିନିମୟର ମାଧ୍ୟମ ଥିଲା । ଗ୍ରାମ ଗହଳରେ ବଦଳ-ରୀତି (Barter system) ରହିଥିଲା । ବିଶା ଓ ତଳ ଓଜନର ଏକକ ରୂପରେ ଗୃହୀତ ହେଉଥିଲା । ଗୃହ, ମନ୍ଦିର, ପ୍ରାସାଦ, ଦୁର୍ଗ, ଯଜ୍ଞମଣ୍ଡପ, ସଭାଗୃହ ଆଦି ଯୋଜନା-ଅନୁଯାୟୀ ନିର୍ମାଣ କରାଯାଉଥିଲା । ଗୃହଗୁଡ଼ିକ ଯେପରି ପ୍ରଶସ୍ତ ଥିଲା, ତଦନୁରୂପ ବିଭିନ୍ନ ସାଜସଜ୍ଜାରେ ପରିପୂର୍ଣ୍ଣ ଥିଲା । ଦୁର୍ଗ ଓ ମନ୍ଦିରାଦି ନିର୍ମାଣ କଲାବେଳେ ଜ୍ୟୋତିଷ-ମତରେ ଶୁଭବେଳା ଦେଖି ଅନୁକୂଳ କରାଯାଉଥିଲା । ଲୋକେ ଜଳପୂର୍ଣ୍ଣ ପୁଷ୍କରିଣୀମାନ ଖନନ କରୁଥିଲେ ।

---

# ପାଦଟୀକା

(୧) ବି. ପୁ ୧, ୧୫, ୧୧୮-୧୨୦ । ୪, ୨, ୯୭ (୨) ମନୁ ୧୦, ୧୨୦ । ବି. ପୁ ୩, ୮, ୩୨ । (୩) ସ. ରା, ଅଯୋଧ୍ୟା ୮୩, ୧୨-୧୬ । (୪) I. A. T. P, B. N. Puri, P. 117. (୫) O. O. H. W. Durant, P. 479. (୬) The Business Encyclopaedia and Legal Adviser, Vol. V. P. 258. (୭) E. R. E. Vol III, P. 721 (୮) Chambers Encyclopaedia, Vol. XIII, P. 173. (୯) ମନୁ ୧୦, ୧୧୬ । (୧୦) ମନୁ ୧, ୯୦ । ବି. ପୁ, ୩, ୮, ୧୩୦ । ହ୦. ମ. ଗ୍ରନ୍ଥ ୪୨, ୪୨ । (୧୧) ବି. ପୁ. ୫, ୧୦, ୨୭ (୧୨) I. A. T. P, P.118. (୧୩) Ibid, P. 257-258. (୧୪) ସଂ ମ, ଆଦି ୧୪୩, ୮-୧୫ । ୧୮୩, ୧୯-୨୩ । ୨୦୫, ୨୮-୩୬ । ୨୦୬, ୪୮, ୩୦ । ସଭା ୩ ଅ । ଉଦ୍ ୧୫୫, ୧୨-୧୬ । (୧୫) ସଂ. ରା, ଅଯୋଧ୍ୟା ୩୩, ୩ । ୫୬, ୨୫ । ୬୧, ୧୦ । ୭୦, ୧ । (୧୬) S. G. M. I. A. B. Pandey-P-206-207. (୧୭) Delhi Sultanate, A. L. Srivastava, P. 335-336. (୧୮) Medieval Indian Culture, Yusuf Hussain, P. 140. (୧୯) Ibid, P.141. (୨୦) A History of South India, Sastri, P.319. (୨୧) Ibid, P. 324 (୨୨) H. C. I. P, Vol VI, P. 650. (୨୩) Alberuni's India, Sachau, Ch II, P. 144. (୨୪) Medieval Indian Culture, Yusuf Hussain, P. 136. (୨୫) Ibid, P. 138. (୨୬) ସଂ.ମ, ଆଦି ୧୧୯, ୩୮ । (୨୭) ଏଜନ୍ ୭୩, ୨-୩ । ଏଜନ୍, ବନ ୨୩୨, ୬୬-୪୭ (୨୮) ସଂ, ରା, ଅଯୋଧ୍ୟା ୩୨, ୪-୫ । (୨୯) ଶ୍ରୀମଦ୍ ଭାଗବତ, ଚନ୍ଦ୍ରାମଣି ୨, ୨, ୧୧ । ୩, ୧୫, ୨୭ (୩୦, ବ୍ର. ପୁ ୨, ୫, ୧୬ । ୩, ୭, ୧୬ । (୩୧) ସବ ଅଳଙ୍କାର ପିନ୍ଧି ସହସ୍ର ଯୋଉନ୍ତି । ସା. ମ, ଆଦ୍ୟ, ପୃ ୨୫୧ । (୩୨) ସା. ମ. ଆଦ୍ୟ, ପୃ ୨୫୧ । ('ଦସଣି' ଉଠାଣି ଯୋଖିବେ ନାହିଁ । 'ମହାଭାରତ ସାର ସଂଗ୍ରହ'ରେ କେବଳ ଗଜମୋତିକୁ ନାହାକଙ୍କାର ମଧ୍ୟରେ ସ୍ଥାନ ଦିଆଯାଇଛି । ମ. ସା, ସଂ, ଗୋପୀନାଥ, ଆଦ୍ୟ, ପୃ ୧-୨ । ପରନ୍ତୁ ବର୍ମାଙ୍କର ମହାଭାରତରେ 'ଦସଣି'ର ଉଲ୍ଲେଖ ଅଛି । ଅଦ୍ୟ, ପୃ ୨୮୦ । (୩୩) Alberuni's India, Sachhau, Ch XVI, P. 180 (୩୪) A. R. A. B., K. C. Panigrahi, P. 110 (୩୫) Ibid, P. 111.

(୩୬) O.H.R. J., April 1954—P.1 – 2 (୩୭) Ibid, No. 1, 1964 – P.37. (୩୮) କୋଣାର୍କ, କୃପାସିନ୍ଧୁ—ପୃ ୧୬୭, ୧୫୮ । (୩୯) 'ଅଳଙ୍କାରୈଃ କଟକ କୁଣ୍ଡଳାଙ୍ଗଦବତ୍' । ସା.ଦ, ବିଶ୍ୱନାଥ, ପୃ ୨୨ ।

'କାଞ୍ଚମଣିରଣିତ ମାର୍କଣ୍ୟ ।" ଏଜନ୍, ପୃ୬୭ ।

'ରଣେନ୍ଦ୍ରନୂପୁରକଙ୍କଣା ।" ଏଜନ୍, ପୃ ୮୦ ।

'ହ୍ରାସ୍ୱେନ୍ଦ୍ରକେ ସାକ୍ଷିତଃ ।" ଏଜନ୍, ପୃ୮୦ ।

(୪୦) 'ମଣ୍ଡିତ ଗଣ୍ଡଯୁଗଳେ ମଣିକୁଣ୍ଡଳ ।' ଗୀ· ଗୋ. ଧରଣୀଧର ।

"କେଳି ଚଳନ୍ମଣି କୁଣ୍ଡଳମଣ୍ଡିତ ଗଣ୍ଡଯୁଗସ୍ମିତଶାଳୀ । ଗୀ. ଗୋ, ଜୟଦେବ ୧,୪୦ । (୪୧) 'କରତଳ ତାଳ ତରଳ ବଳୟା ବଳିତ ।' ଏଜନ୍, ୧,୪୫ ।

"କରତଳ ଶବଦର କଙ୍କଣଧ୍ୱନ ।" ଗୀ. ଗୋ. ଧରଣୀଧର ।

(୪୨) 'ଶ୍ୱଶ୍ରୁସ୍ତାଃ କଟକାଚ୍ଛନ୍ନା ମୁକ୍ତାହାରବିଭୂଷଣ ।' ଚ. ନା, ବିଶ୍ୱନାଥ—ପୃ ୫୩ । (୪୩) ରୁ. ସୁ. ନ, ପୃ ୮, ୨୩, ୨୪, ୪୭, ୪୮, ୯୬ ଓ ୧୯୭ । (୪୪) ରାମବିଭା, ପୃ୯, ୭୨, ୭୩, ୭୪, ୭୭, ୮୧, ୮୨, ୮୩, ୮୫, ୮୬ । (୪୫) କଳାକଳତା, ଅର୍ଜୁନ, ପୃ ୬୭, ୯୩ । (୪୬) ଏଜନ୍—ପୃ ୬୩-୬୪, ୬୭, ୭୧, ୭୯, ୮୯, ୯୩ । (୪୭) E. O. L. S., K. B. Tripathy – P· 274-277 (୪୮) Ibid—P. 279 – 281. (୪୯) ଅଳଙ୍କାର ବୋଲି, ଦୀନକୃଷ୍ଣ, ପୃ୭-୯, ପୃ୨୯-୩୦ । (୫୦) ଲାବଣ୍ୟବତୀ, ଉପେନ୍ଦ୍ର—ପୃ ୪୫—ପୃ୪୨-୪୮ (୫୧) କାଞ୍ଚୀ-କାବେରୀ—ପୃ୨୯-୩୦ —ପୃ୨୩-୨୪ । (୫୨) ବୃ. ର, ଧାମ ଗୋବିନ୍ଦ, ୭୨୨,୨-୩ । (୫୩) 'ବସନାନ୍ତଗାଣ୍ଟ' । ସଂ· ମ, ବନ ୨୩,୨ । 'ପୀତଂ ରୁଚିରଂ ଚ ବସ୍ତ୍ରମ' । ସଂ. ମ., ବ. ୬୬, ୧୩ । 'ଉତ୍ତରୀୟମାଳେ' । ଏଜନ୍ । (୫୪) ସଂ·ମ, ସଭା ୪୯,୯ । (୫୫) I. A. T. P, B. N. Puri—P· 103 – 104. (୫୬) O. O. H. Durant – P.479 । (୫୭) A History of Northern India, Shastri—P· 326. (୫୮) ବ. ପ୍ର ୪,୧୫,୧୩ । ୫,୧୯,୧୪ (୫୯) ଘା· ନ; ଗନ୍ଧକ—ପୃ୪, ୧୫୭ (୬୦) ଶ୍ରୀମଦ୍-ଭାଗବତ, ଚନ୍ଦ୍ରାମଣି ୭, ୧୩, ୩୯ । ୨, ୩, ୨୧ । ୧,୧୫, ୪୦ । ୩, ୧୪, ୨୮ । (୬୧) ସା· ମ, ଆଦ୍ୟ, ପୃ ୧୦୧ ।

"ଲୋହିତ ବର୍ଣ୍ଣ ନେତ ଅଙ୍ଗେ ଅଛୁ ଲାଗି ।" ମୃ· ପୋ, ଆଦ୍ୟ ୧ମ, ପୃ ୧୪୪ ଖ

ଦ୍ରଷ୍ଟବ୍ୟ—'ନେତ' ଅର୍ଥ ଏକ ପ୍ରକାର ପଟ୍ଟବସ୍ତ୍ର ହୁଏ ।

(୬୨) ସା. ମ—ମଧ୍ୟ—ପୃ୨୧ । ମୃ. ପୋ—ମଧ୍ୟ ୧ମ – ପୃ ୨୨କ । (୬୩) ମୃ. ପୋ—ସଭା ୧ମ—ପୃ୩୫ କ । (୬୪) ମୃ. ପୋ.—ବନ ୧ମ—ପୃ୨୧୩ କ ଓ ଖ । (୬୫) ମୃ. ପୋ—ମଧ୍ୟ ୧ମ—ପୃ୧୯୩ଖ (୬୬) ସା. ମ.—ଉଦ୍—ପୃ୩୮ । ଖଣ୍ଡୁଆର ଅର୍ଥ ଓଢଣବସ୍ତ୍ରବିଶେଷ । (୬୭) S. E. N. N. I, B. P. Majumdar—

P. 193 (୬୮) H. C.I. P.—Vol II—P. 503 (୬୯) O. H. R. J—April 1954—P. 1-2 (୭୦) ସା. ଦ.—ବିଶ୍ୱନାଥ—ପୃ୧୧୪ । (୭୧) Historical Essays—Quanungo—P. 19-20 (୭୨) H. C. I. P—Vol V, P. 518 (୭୩) ରୁ. ସୁ. କ—ପୃ୫୦, ୫୫, ୬୧, ୯୬, ୯୭, ୧୫୭ । (୭୪) ରାମ ବଣ—ପୃ୧, ୨, ୩, ୯, ୧୪, ୬୨, ୬୩, ୬୮, ୭୧, ୭୯ ଓ ୮୧ । (୭୫) ଲ. ବ—ଉପେନ୍ଦ୍ର—ପୃ୪୮ । (୭୬) ଏକନ୍ । (୭୭) 'ରଜତଂ ବସ୍ତୁ' । ସଂ. ମ—ଆଦ୍ୟ ୧୧୩, ୩୪ (୭୮) 'ହୈମରଜତ ଭୌମେଷୁ' । ସଂ. ରା. ଅଯୋଧ୍ୟା ୮୮, ୫ । (୭୯) ଶ୍ରୀମଦ୍‌ଭାଗବତ, ଚିନ୍ତାମଣି ୪, ୬, ୨୭ । (୮୦) ଏକନ୍ ୭, ୧୦, ୫୪ । (୮୧) ସ. ମା—ବୃ. ପୁ—କଲ୍ୟାଣ—ପୃ୧୬୭-୧୬୭ । (୮୨) O. H. R. J. 1964—No.1—P. 37.

(୮୩) "କାଞ୍ଚନୈ ଘଟୈଃ ।" ସଂ. ରା—ଅଯୋଧ୍ୟା ୬୫, ୮ ।

(୮୪) "ସୌବର୍ଣ୍ଣ ମାସନମ୍ ।" ଏକନ୍ ୭୨, ୨ ।

(୮୫) "ପର୍ଯ୍ୟଙ୍କ ହେମଭୂଷିତଃ ।" ଏକନ୍ ୭୨, ୧୧ ।

(୮୬) ବି. ପୁ ୪, ୧, ୩୨ (୮୭) ବି. ପୁ ୪, ୪, ୪୮ (୮୮) ଏକନ୍ ୪, ୧୩, ୧୪୫-୧୪୬ । (୮୯) ସ୍ଥ. ର—ରାମଗୋବିନ୍ଦ ୩୨୦, ୮ । (୯୦) ଏକନ ୬୩୩, ୮ । (୯୧) ଉ. ଇ—କୃପାସିନ୍ଧୁ—ପୃ ୧୭୩ (୯୨) H. C. I. P—Vol V—P. 519 (୯୩) "ତଥୈବାଙ୍ଗାରକାରିଦୌ ।" ସା. ଦ—ବିଶ୍ୱନାଥ—ପୃ୨୦୪ (୯୪) ରାମବଣ—ପୃ ୨୨, ୨୭ ଓ ୯୯ । (୯୫) ଭାଗବତ—ଜଗନ୍ନାଥ ୧, ୧୨ । ୧, ୧୩ । ୧, ୮୩ । ୨, ୩୨ । ୩, ୮୪ । ୪, ୨୬ । ୬, ୫୬ । ୬, ୫୯ । ୯, ୮୧ । ୧୦, ୨୩୨ । (୯୬) ପା. ଖେ—କିହ୍ନାଇଚମ୍ପୂ—ପୃ ୧୩, ୨୫, ୩୬ । (୯୭) ସଂ. ମ—ବନ ୩, ୭୨ । (୯୮) ମନୁ ୪, ୬୫ । (୯୯) I. A. T. P—B. N. Puri—P. 118. (୧୦୦) ସା. ମ—ବନ—ପୃ୨୧୫ । ମୃ. ପୋ—ବନ ୧ମ—ପୃ୭୯ ଖ (୧୦୧) ଉ. ଇ—କୃପାସିନ୍ଧୁ—ପୃ ୧୭୫ । (୧୦୨) ଭାଗବତ—ଜଗନ୍ନାଥ ୧୦, ୭୪ । ୧୦, ୨୩୫ । (୧୦୩) E. O. L. S.—P. 263-264 (୧୦୪) ସଂ. ମ—ଶାନ୍ତି ୨୨୮, ୨୦ (୧୦୫) ମନୁ ୪, ୬୫ । (୧୦୬) ଉ. ଇ—କୃପାସିନ୍ଧୁ—ପୃ ୧୭୫ । (୧୦୭) ଉ.ଡ.ବ—ଗୋପାଳଚନ୍ଦ୍ର—ପୃ ୪୩ । (୧୦୮) I. A. T. P.—B.N. Puri—P. 117. (୧୦୯) ମୃ. ପୋ—ସଭା ୧ମ—ପୃ ୧୩୮ଖ । (୧୧୦) ଭାଗବତ—ଜଗନ୍ନାଥ ୧, ୫୯ । ୮, ୧୮ । (୧୧୧) ସ୍ଥ. ର—ରାମ ଗୋବିନ୍ଦ—୮୧୧, ୨୦ । (୧୧୨) ଏକନ୍ ୧୩୬୫, ୧୨ (୧୧୩) I. A. T. P—B. N. Puri—P. 117. । (୧୧୪) ମୃ. ପୋ—ସଭା ୧ମ—ପୃ ୫୪ଖ । (୧୧୫) ସା.ମ.—ଆଦ୍ୟ—ପୃ ୧୫୭ । ମୃ. ପୋ—ବନ ୨ୟ—ପୃ୨୫୧ କ । (୧୧୬) ମୃ. ପୋ—ମଧ୍ୟ ୧ମ—ପୃ୧୧୪ଖ । (୧୧୭) ମୃ. ପୋ—

ଆଦ୍ୟ ୧ମ—ପୃ ୧୪୪ ଖ । (୧୧୮) ମୂ. ପୋ—ମଧ୍ୟ ୧ମ—ପୃ ୧୭୧ କ । (୧୧୯) ମୂ. ପୋ—ମଧ୍ୟ ୧ମ—ପୃ ୯୫ କ । (୧୨୦) ମାଦଳା ପାଞ୍ଜି—ପ୍ରାଚୀ—ପୃ ୧୦୩ । (୧୨୧) ସା. ଦ—ବିଶ୍ୱନାଥ ୩, ୭୨ । (କାଷ୍ଠପାଦୋଜାବଷ୍ଟ) । (୧୨୨) ମୂ. ପୋ—ମଧ୍ୟ ୧ମ—ପୃ ୧୧୧ ଖ (୧୨୩) ହା. ମ.—ମଧ୍ୟ—ପୃ ୫୭ । ପୋଥିରେ ନାହିଁ । (୧୨୪) ଏକକ୍—ପୃ ୫୫ । ପୋଥିରେ ଅଭାବ । (୧୨୫) ସା. ମ.—ବନ—ପୃ ୨୧୫ । ମୂ. ପୋ—ବନ ୨ୟ—ପୃ ୮୫ କ ।

ଦ୍ରଷ୍ଟବ୍ୟ—ମୂଳଗାଁ ପୋଥିରେ ଅଛି "ଯେକ କୁଣ୍ଡୋଳ କୋଟିକରେ ଗାଉ ଗାଉଛନ୍ତି ।" (ଆଦ୍ୟ ୧ମ—ପୃ ୧୩୪ ଖ) କୁଣ୍ଡୋଇର ଅର୍ଥ 'କୋଡକେଇ' ହୁଏ । ଏହା ବାଉଁଶରେ ନିର୍ମିତ ପାତ୍ରବିଶେଷ ଅଟେ । (ଶ. ତ. କୋ. ଅ—୧ମ ଖଣ୍ଡ—ଗୋପୀନାଥ—ପୃ ୩୧୪) ।

(୧୨୬) E. L. N. I—S. K. Maity—P. 120 । (୧୨୭) ଜ. ଉ—ଶ୍ୟାମଗୋବିନ୍ଦ ୧୪୪୪,୩ । (୧୨୮) ସ. ମ—ସନ୍ଧି ୫, ୨୨ । (୧୨୯) Kautilya's Arthasastra—BII—Ch XVI—P. 104-105 । (୧୩୦) E.L.N.I. —P. 120 । (୧୩୧) Historical Essays—K. R. Quanungo—P.13-14 । (୧୩୨) ସା.ମ—ବନ—ପୃ ୨୦୧—ସ୍ୱର୍ଗ—ପୃ ୧୩ । (୧୩୩) ମୂ.ପୋ—ସଭା ୧ମ—ପୃ ୧୮୯ ଖ ଓ ୧୯୦କ । (୧୩୪) ମାଦଳା ପାଞ୍ଜି—ପ୍ରାଚୀ—ପୃ ୩୨ । (୧୩୫) ଭାଗବତ—ଜଗନ୍ନାଥ—୧୦ମ—ପୃ ୨୩୫ । (୧୩୬) ମୂ. ପୋ—ବନ ୨ୟ—ପୃ ୧୭୪ଖ-୧୭୯ଖ । (୧୩୭) ମୂ. ପୋ—ବନ ୧ମ—ପୃ ୧୨୬କ । (୧୩୮) ଗ୍ରା. ଗ—କୃପାସିନ୍ଧୁ—ପୃ ୧୮ (୧୩୯) H. C. I. P—Vol. III—P. 93 । (୧୪୦) E. L. N. I—S. K. Maity—P. 124 । (୧୪୧) ଜ. ଉ—ଶ୍ୟାମଗୋବିନ୍ଦ ୨୮, ୭ । (୧୪୨) H. C. I. P—Vol. I—P. 179 । (୧୪୩) O. O. H—Durant—P. 479 (୧୪୪) H. C. I. P—Vol II—P. 216 । (୧୪୫) ମୂ. ପୋ—ମଧ୍ୟ ୧ମ—ପୃ ୨୭୬ ଖ (୧୪୬) H. C. I. P—Vol II—P. 216 । (୧୪୭) ମ.ଗ—୧ମ—ମୁଖବନ୍ଧ—ପୃ ୨ । (୧୪୮) ପ୍ରାଚୀନ ଉତ୍କଳରେ ଜଳଯାତ୍ରା—ବିରୂପାକ୍ଷ—ପୃ ୨୮ । (୧୪୯) ଏକକ—ପୃ୪୪ । (୧୫୦) ହିନ୍ଦୀ ସାହିତ୍ୟ କା ଇତିହାସ—ସ୍ୱାମଚନ୍ଦ୍ର ଶୁକ୍ଳ—ପୃ ୧୦୦ । (୧୫୧) Historical Essays—Quanungo—P.21 । (୧୫୨) ପ୍ରାଚୀନ ଉତ୍କଳରେ ଜଳଯାତ୍ରା ପୃ୫୯-୬୦ । (୧୫୩) ଲ.ବ, ଉପେନ୍ଦ୍ର—ପୃ୧୫୩ । (୧୫୪) ପ୍ରା.ଉ ଜ, ବିରୂପାକ୍ଷ—ପୃ ୪୨ । (୧୫୫) ସଂ.ସ୍ର, ଅଯୋଧ୍ୟା—୫୨, ୭ । ୮୯, ୯—୧୯ । (୧୫୬) ସ୍ୱଂ. ମା. ତ୍ର. ସ୍ମ, ପୃ ୧୪୨ । (୧୫୭) ଶ୍ରୀମଦ୍ ଭାଗବତ, ଚିନ୍ତାମଣି—୪,୮,୭୯ । (୧୫୮) ଶୁ.ମା, ମଚ୍ଛ କାଶ୍ୟପ—ପୃ ୧୧୯ । (୧୫୯) O.O. H, Durant—P 479 । (୧୬୦) ମୂ.ପୋ—ସଭା ୧ମ—ପୃ୫୪ଖ । (୧୬୧) ଛ.ଛ.ଢ—

ଗୋପାଳଚନ୍ଦ୍ର—ପୃ ୨୮ । (୧୬୨) ସଂ.ମ—ଦ୍ରୋଣ ୧୭,୨୬ । (୧୬୩) ମନୁ ୮—୧୩୪-୧୩୬ । (୧୬୪) ଅ.ଇନ୍ ଆକବରୀ—ପୃ ୨୮ ଓ ୩୨ । (୧୬୫) ଓ.ଇ, ହରେକୃଷ୍ଣ—୧ମ—ପୃ ୨୫୧—୨୫୫ । (୧୬୬) ଏକନ୍—ପୃ ୨୫୧ । (୧୬୭) ବୃଦ୍ଧ ସାହିତ୍ୟ କା ଇତିହାସ—ପୃ ୬୪ । (୧୬୮) Historical Essays—P. 19-20 । (୧୬୯) E. O. L. S., K.B. Tripathy—P. 278—279 । (୧୭୦) ମା.ପା, ପ୍ରାଚୀ—ପୃ ୩୦ ଓ ୩୧ । (୧୭୧) H. C. I. P—Vol I, P—178—179. (୧୭୨) Further Excavations at Mahen-jo-daro, Vol I—Mackay, P. 666 । (୧୭୩) ସାଂ.ମ—ଆଦ୍ୟ ପୃ ୫ ।

(ଦ୍ରଷ୍ଟବ୍ୟ:—ଜନୈ ଅନାର୍ଯ୍ୟ କହନ୍ତି ଯେ ସେମାନେ 'ପଳ' ସୃଷ୍ଟି କରିଥିଲେ । ସାଂ ମ, ଆଦ୍ୟ, ପୃ ୪୫ । )

(୧୭୪) ଶ. ଜ. ବୋ. ଅ, ୨ୟ, ଗୋପୀନାଥ—ପୃ ୭୭୯ । (୧୭୫) ଭଗବତ, ଜଗନ୍ନାଥ, ଗୋପାଳ—୧୦,୭୬ । (୧୭୬) ହ୍ରି. ର୍, ସମଗୋବିନ୍ଦ ୩୫୨,୫ । (୧୭୭) ଏକନ୍ ୯୮୪,୧୨ । (୧୭୮) ଏକନ ୯୦୭,୨୩ । (୧୭୯) ଏକନ୍ ୧୩୧୫,୫ । (୧୮୦) ସଂ. ମ—ଆଦ୍ୟ ୧୪୩, ୮—୧୫ । (୧୮୧) ଏକନ୍ ୧୮୩, ୧୯—୨୩ । (୧୮୨) ସଂ. ମ, ଉଦ୍ ୧୯୫, ୧୨—୧୬ (୧୮୩) ସଂ. ମ, ସଭା—୩ୟ ଅଧ୍ୟାୟ । (୧୮୪) ସଂ. ସା, ଅନୁଶାସନ ୫୬, ୨୫ । (୧୮୫) ଏକନ୍ ୬୧, ୧୦ । (୧୮୬) ଶ୍ରୀମଦ୍ଭାଗବତ, ଚକ୍ରାମଣି ୪,୧୮,୩୧-୩୨ । (୧୮୭) ଶ. ପୃ. ୧,୬,୧୮—୧୯ । (୧୮୮) ଏକନ୍ ୧,୧୭,୯ । (୧୮୯) ଶ୍ରୀ. ମା, ମଲ୍ଲୁକ୍ରାଗ୍ରଫ, ପୃ ୬ । (୧୯୦) ମ.ପୋ, ସଖ୍ଯ ୧ମ—ପୃ ୭୩କ । (୧୯୧) ମ. ପୋ, ଓଖ ୧ୱ—ପୃ ୧୧୪ଖ । (୧୯୨) ସା. ମ, ମଧ୍ୟ, ପୃ ୧୨୭ । ଉଦ୍—ପୃ ୮୨ । (୧୯୩) ମ.ପୋ, ସଖ୍ଯ ୧ମ, ପୃ ୬୨ଖ । (୧୯୪) ମ.ପୋ, ମଧ୍ୟ ୧ମ, ପୃ ୯୫କ । (୧୯୫) ଭା. ସା, ବଳରାମ—ଲଙ୍କା—ପୃ ୪୫ । ସୁନ୍ଦର, ପୃ ୧୦ । (୧୯୬) ଭାଗବତ, ଜଗନ୍ନାଥ, ଗୋପ ୧୦,୩୫ । (୧୯୭) ସା.ମ, ସଭା, ପୃ ୧୩୯ । ମ.ପୋ, ସଖ୍ଯ ୧ମ, ପୃ ୧୮୯ ଖ ଓ ପୃ ୧୯୦କ । (୧୯୮) H. C. I. P, Vol II, P. 215 । ହି. ଇ, କୃପାସିନ୍ଧୁ, ପୃ ୩୫ । (୧୯୯) ଭା, ସ, ବଳରାମ, କିଷ୍କିନ୍ଧ୍ୟା, ପୃ ୮୮ । (୨୦୦) ମ. ପୋ, ମଧ୍ୟ ୧ମ, ପୃ ୧୮୫କ । (୨୦୧) ସା. ମ, ସଭା, ପୃ ୪୮—୫୦ । ମ. ପୋ, ସଖ୍ଯ ୧ମ, ପୃ ୬୨ଖ । (୨୦୨) ମ. ପୋ, ବନ ୨ୟ, ପୃ ୬୭ଖ । (୨୦୩) ବାରବାଟୀ ଦୁର୍ଗ, କୃପାସିନ୍ଧୁ, ପୃ ୧୪, ପୃ ୩୦-୪୨ । (୨୦୪) ଏକନ, ପୃ ୪୭-୫୦ । (୨୦୫) ମ. ପୋ, ସଖ୍ଯ ୧ମ, ପୃ ୭୩କ । (୨୦୬) ଏକନ, ପୃ ୬୩ କ ଓ ଖ । (୨୦୭) ମ. ପୋ, ସଖ୍ଯ ୧ମ, ପୃ ୭୨ଖ । (୨୦୮) ନୀଳକଣ୍ଠ, ଯୋଗୀ ମହାପାତ୍ର, ପୃ ୫ ।

---

# ସପ୍ତମ ଅଧ୍ୟାୟ

# ଅନ୍ୟାନ୍ୟ

## ୧ । ପର୍ବପର୍ବାଣୀ

ଭାରତବର୍ଷରେ ଧର୍ମପ୍ରାଣ ହିନ୍ଦୁ ନରନାରୀଗଣ ଯୁଗେ ଯୁଗେ ବହୁ ପର୍ବ, ବ୍ରତ ଓ ଉପବାସ ପାଳନ କରି ଆସୁଅଛନ୍ତି । ପୁରାଣରେ ବିଭିନ୍ନ ପର୍ବ ତଥା ବ୍ରତୋପବାସର ବର୍ଣ୍ଣନା ରହିଅଛି । ଭାଗବତ କହେ ଯେ, ହରିତୋଷଣ ବା ପୁଂସବନ ବ୍ରତ ପାଳନ କଲେ ନାରୀମାନେ ଉତ୍ତମ ସ୍ୱାମୀ, ସନ୍ତାନ ଓ ସଂପଦ ଲଭ କରନ୍ତି । (୧) ସ୍କନ୍ଦ ପୁରାଣ ମତରେ ପଞ୍ଚମୀରେ ନାଗରାଜା, ଷଷ୍ଠୀରେ କାର୍ତ୍ତିକେୟ, ସପ୍ତମୀରେ ସୂର୍ଯ୍ୟ, ଅଷ୍ଟମୀରେ ଶଙ୍କର, ନବମୀରେ ଦୁର୍ଗା, ଦଶମୀରେ ବ୍ରହ୍ମା, ଏକାଦଶୀରେ ରୁଦ୍ର, ଦ୍ୱାଦଶୀରେ ବିଷ୍ଣୁ, ତ୍ରୟୋଦଶୀରେ କାମଦେବ, ଚତୁର୍ଦ୍ଦଶୀରେ ଶିବଙ୍କ ପାଇଁ ଉପବାସ ବିଧେୟ । (୨) ନାରଦ ପୁରାଣରେ ବିଷ୍ଣୁ, ନାରାୟଣ, ମାଧବ, ଗୋବିନ୍ଦ, ମଧୁସୂଦନ, ତ୍ରିବିକ୍ରମ, ବାମନ, ଶ୍ରୀଧର, ହୃଷିକେଶ, ପଦ୍ମନାଭ, ଦାମୋଦର, ଲକ୍ଷ୍ମୀ-ନାରାୟଣ, ଧ୍ୱଜାରୋପଣ ଓ ହରିପଞ୍ଚକ ପ୍ରଭୃତି ବ୍ରତର ଉଲ୍ଲେଖ ମିଳେ । (୩)

ବ୍ରତମାନଙ୍କ ମଧ୍ୟରୁ କେତେକ ଶାସ୍ତ୍ରୀୟ ଓ କେତେକ ନାରୀବ୍ରତ । ନାରୀ-ବ୍ରତମାନଙ୍କ ମଧ୍ୟରୁ ପୁଣି କେତେକ କୁମାରୀବ୍ରତ । ଶାସ୍ତ୍ରୀୟ ବ୍ରତରେ ବୈଦିକ କର୍ମକାଣ୍ଡ ଅନୁସୃତ ହୁଏ । ନାରୀବ୍ରତରେ ଉଭୟ କର୍ମକାଣ୍ଡ ତଥା ଲୌକିକତାର ପ୍ରଭାବ ପରିଦୃଷ୍ଟ ହୋଇଥାଏ । କୁମାରୀବ୍ରତରେ କେବଳ ଲୌକିକତା ରହେ । (୪)

ଏହିପରି ଦେଖିଲେ ଜଣାଯିବ ଯେ, ହିନ୍ଦୁମାନେ ପ୍ରାୟ ଅଧିକାଂଶ ଦିନ ପର୍ବ, ବ୍ରତ ଓ ଉପବାସରେ ଅତିବାହିତ କରିଥାନ୍ତି । ପ୍ରତି ପର୍ବରେ ଦାନ, ଭୋଜ ନୃତ୍ୟ-ଗୀତ ଓ ଆମୋଦ-ପ୍ରମୋଦ ପ୍ରଧାନ ଅଙ୍ଗ । (୫) ଆଲ୍‌ବିରୁଣୀଙ୍କ ବିବରଣୀରୁ ଜଣାଯାଏ ଯେ, ତାଙ୍କ ସମୟରେ ହିନ୍ଦୁମାନେ ହିନ୍ଦୋଳ, ବସନ୍ତ, ମହାନବମୀ, ଦୋଳ ଓ ଦୀପାବଳୀ (୬) ଆଦି ପର୍ବ ତଥା ବହୁ ଉପବାସ ପାଳନ କରୁଥିଲେ । (୭)

ପଞ୍ଚଦଶ ଶତାବ୍ଦୀର ଉତ୍କଳୀୟ ସମାଜରେ ବହୁ ପର୍ବ, ବ୍ରତ ଓ ଉପବାସ ପାଳିତ ହେଉଥିବା କଥା ସାରଳା ଦାସଙ୍କ ମହାଭାରତରୁ ଜଣାଯାଏ । କେଉଁ କେଉଁ ପର୍ବ ଓ ବ୍ରତାଦି ସେ ଯୁଗରେ ମୁଖ୍ୟତଃ ପାଳିତ ହେଉଥିଲା ତାହା ନିମ୍ନ ଆଲୋଚନାରୁ ସ୍ପଷ୍ଟ ହେବ ।

## (କ) ଏକାଦଶୀବ୍ରତ

ପୁରାଣରେ ଏକାଦଶୀବ୍ରତର ମହିମା କୀର୍ତ୍ତନ କରାଯାଇଅଛି । ନାରଦ ପୁରାଣ ମତରେ ଏହି ବ୍ରତ ପାଳନ କଲେ ଦଶସହସ୍ର ଜନ୍ମର ପାପ ବିଦୂରିତ ହୁଏ । (୮) ସ୍ମୃତିଶାସ୍ତ୍ର କହେ ଯେ, ଯେଉଁ ବ୍ୟକ୍ତି ଏକାଦଶୀବ୍ରତ କରେ ନାହିଁ ସେ ରୌରବ ନାମକ ନର୍କରେ ପଡ଼େ । (୯) 'ପଣ୍ଡିତ ସର୍ବସ୍ୱ' ନାମକ ଗ୍ରନ୍ଥରେ ଉକ୍ତ ଅଛି—ଅଷ୍ଟମ ବର୍ଷଠାରୁ ଅଶୀତି ବର୍ଷ ହେବା ପର୍ଯ୍ୟନ୍ତ ଏକାଦଶୀ ବ୍ରତ ପାଳନୀୟ । (୧୦)

ଉତ୍କଳରେ ଏକାଦଶୀବ୍ରତର ବହୁ ପ୍ରସିଦ୍ଧି ଥିଲା । ଏହି ବ୍ରତ ପାଳନ କଲେ ବୈକୁଣ୍ଠ ଲାଭ ହୁଏ ଓ ମୁକ୍ତି ମିଳେ ବୋଲି ଲୋକେ ବିଶ୍ୱାସ କରୁଥିଲେ । ଏହି ବ୍ରତରେ ନାରାୟଣ ପୂଜା ପାଉଥିଲେ । ଶାନ୍ତନୁଙ୍କର ଗଙ୍ଗାଙ୍କ ପ୍ରତି ଉକ୍ତିରୁ ଏହା ସ୍ପଷ୍ଟ ।

"ଶାନ୍ତନୁ ବୋଇଲେ ପ୍ରିୟେ ଶୁଣ ମୋର ମତ
ମୁକତିର କାରଣ ଏ ଏକାଦଶୀବ୍ରତ ।"
"ତୁ ସଖି ରେ ଆଜ କର ଏକାଦଶୀବ୍ରତ
ଦୁହେଁ ଯାଇ ବଇକୁଣ୍ଠେ ବସିବା ସଙ୍ଗାତ ।
ନାରାୟଣ ଆମ୍ଭାଲୟ ମହାବ୍ରହ୍ମ ସିନା
ରାଗ ମୋହ ଅହଙ୍କାର ସଂସାର ରଚନା ।" (ଆ· ୯-୧୦ ପୃ ),

ଲୋକଦୃଷ୍ଟିରେ ଏକାଦଶୀବ୍ରତ ସମସ୍ତ ବ୍ରତମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି ବିବେଚିତ ହେଉଥିଲା । ଗଙ୍ଗାଦେବୀ ଏହି ବ୍ରତକୁ 'ବ୍ରତରାଜ' ଆଖ୍ୟା ଦେଇଥିଲେ ।

"ଦୁର୍ଭାର-ବଚନ ଯହୁଁ ବୋଇଲେ ଜାହ୍ନବୀ
ରାଜ୍ୟେ ପଶି ତୁ କ ପାଇଁ ବ୍ରତରାଜ ସେବି ।" (ଆ· ପୃ ୧୦)

ଧାର୍ମିକ ଲୋକମାନେ ଯେପରି ଏହି ବ୍ରତ ପାଳନ କରନ୍ତି, ତାହା ଦେଖିବା ରାଜାଙ୍କର କର୍ତ୍ତବ୍ୟ ବୋଲି ସେତେବେଳେ ମତ ନିର୍ଦ୍ଧାରିତ ହୋଇଥିଲା । ଭୀଷ୍ମ ଯୁଧିଷ୍ଠିରଙ୍କୁ ରାଜନୀତିର ଉପଦେଶ ଦେବା ବେଳେ କହିଥିଲେ —

"ଧାର୍ମିକଙ୍କୁ ଏକାଦଶୀ ବ୍ରତ କରାଇବୁ
ବିଦେଶୀ ଦୂତେ କଟକେ ପ୍ରବେଶି ନ ଦେବୁ ।" (୧୧)

ଏକାଦଶୀରେ ଆମିଷ ଭୋଜନ କରିବା ପାପ ବୋଲି ଲୋକେ ବିଶ୍ବାସ କରୁଥିଲେ । ସେଦିନ ଅନ୍ନ ଭୋଜନ କଲେ ଅଧର୍ମ ହେବ ବୋଲି ଲୋକେ ବିଶ୍ବାସ କରୁଥିଲେ ।

"ଚତୁର୍ଥୀ ଦଶମୀ ଏକାଦଶୀ ଯେ ପୂର୍ଣ୍ଣମୀ
ଆମିଷ ଭୁଞ୍ଜନ୍ତି ଯେହୁ ଆବର ପଞ୍ଚମୀ ।"
"ଏକାଦଶୀ ଶିବରାତ୍ରି ଗ୍ରହଣ କାଳରେ
ଯେ ନର ଭୁଞ୍ଜନ୍ତି ଅନ୍ନ ଏ ତିନ ଦିନରେ ।" (ଦ୍ରୋ: ପୃ ୫୭)

ଜଗନ୍ନାଥ ଦାସଙ୍କ ଭାଗବତରେ ଏକାଦଶୀ ବ୍ରତର ଉଲ୍ଲେଖ ଦେଖାଯାଏ । ରାଜା ଅମ୍ବରୀଷ ପତ୍ନୀସହ ଏକାଦଶୀ ଉପବାସ କରିଥିଲେ ବୋଲି ସେଠାରେ କୁହାଯାଇଅଛି ।

"ସେ ରାଜା ପତ୍ନୀର ସମେତେ ।
ଉପାସୀ ଏକାଦଶୀ ବ୍ରତେ ॥
କାର୍ତ୍ତିକ ଶୁକ୍ଳପକ୍ଷେ ହରି ।
ପୂଜଇ ଉପବାସ କରି ॥" (୧୨)

## (ଖ) କାର୍ତ୍ତିକ ବ୍ରତ ଓ କାର୍ତ୍ତିକ ପୂର୍ଣ୍ଣିମା

ସ୍ମୃତିକାରମାନଙ୍କ ମତରେ କାର୍ତ୍ତିକ ପରି ପୁଣ୍ୟ ମାସ ନାହିଁ । (୧୩) ଏହି ମାସରେ ଜପ ଓ ହବିଷ କଲେ ସର୍ବପାପ କ୍ଷୟ ହୁଏ । (୧୪) ପଣ୍ଡିତ-ସର୍ବସ୍ବ ଗ୍ରନ୍ଥରେ ଅଛି ଯେ, କାର୍ତ୍ତିକ ବ୍ରତ ପାଳନ କଲେ ଅଳ୍ପ ପରିଶ୍ରମରେ ଅଧିକ ଫଳ ମିଳେ । (୧୫) ସ୍କନ୍ଦ ପୁରାଣ ଅନୁସାରେ ଯେଉଁ ବ୍ୟକ୍ତି ଏହି ମାସରେ ସ୍ନାନ, ଦାନ, ପୂଜା ଓ ବିଷ୍ଣୁନାମ ସ୍ମରଣ କରେ ସେ କେବଳ ପାପରୁ ମୁକ୍ତ ହୁଏ ଏବଂ ତାହାର ପିତୃଗଣ ନର୍କରୁ ଉଦ୍ଧାର ଲାଭ କରନ୍ତି । (୧୬)

ସାରଳା ଦାସଙ୍କ ମହାଭାରତରେ କାର୍ତ୍ତିକ ମାସର ଜପ ଓ ହବିଷ କଥା ନାହିଁ । ତେବେ କେତେକ ବର୍ଣ୍ଣନାରୁ ଅନୁମିତ ହୁଏ ଯେ, କାର୍ତ୍ତିକବ୍ରତ ସେତେବେଳେ ପାଳନୀୟ ଥିଲା । ଏହି ମାସରେ ମଣିଷ ମଲେ ବୈକୁଣ୍ଠଧାମ ପ୍ରାପ୍ତ ହୁଏ । ସୁଜାଣେଶ୍ୱର ନାମକ ଶବର କାର୍ତ୍ତିକରେ ପ୍ରାଣତ୍ୟାଗ କରି ବୈକୁଣ୍ଠଲାଭ କରିଥିଲା ।

"ଏ ସମୟେ ପ୍ରାଣତ୍ୟାଗ କଲେ ସେହୁ ଯତି
ପୁଣ୍ୟମାସ କାର୍ତ୍ତିକରେ ସେ ଗତି ପାହାନ୍ତି ।
ସେହି ଦିନ ସେ ଶବର ପ୍ରାଣକୁ ଛାଡ଼ିଲା
ଅନ୍ତେ ଯତି ସଙ୍ଗେ ଯାଇ ବୈକୁଣ୍ଠେ ବସିଲା ।" (ସ୍ୱ. ୯ ପୃ)

କବି କାର୍ତ୍ତିକ ପୂର୍ଣ୍ଣିମାର ସ୍ନାନକଥା ଉଲ୍ଲେଖ କରନ୍ତି । ସେ କହନ୍ତି ଯେ, ଭୋଜରାଜ ଓ ଖ୍ରିଷ୍ଣ ଗଙ୍ଗାସ୍ନାନ ନିମିତ୍ତ କାର୍ତ୍ତିକ ପୂର୍ଣ୍ଣମୀରେ ଯାତ୍ରା କରିଥିଲେ ।

"କାର୍ତ୍ତିକ ଶୁକଳ ପକ୍ଷ ପୂର୍ଣ୍ଣିମାର ତିଥି
ଆକାମାବେ ସ୍ନାନେ ଗଲେ ଭୋଜ ନରପତି ।
ସେହି ଗଙ୍ଗାସ୍ନାନକୁ ଯେ ଖ୍ରିଷ୍ଣ ଆସିଥିଲେ
କୁନ୍ତଭୋଜ ସଙ୍ଗତରେ ମଇତ୍ର ହୋଇଲେ ।" (ଆ ୪୩ ପୃ)

କାର୍ତ୍ତିକ ପୂର୍ଣ୍ଣମୀ ଦିନ ଶ୍ରାଦ୍ଧାଦି କର୍ମ ବିହିତ ବୋଲି ଲୋକେ ବିଶ୍ବାସ କରୁଥିଲେ । ଧୃତରାଷ୍ଟ୍ର ତାଙ୍କର ମୃତ ପୁତ୍ରମାନଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ କରିବା ନିମିତ୍ତ ଏହି ଦିନଟି ବାଛୁଥିଲେ ।

"କାର୍ତ୍ତିକ ପୂର୍ଣ୍ଣିମା ରହିଲା ଯେ ଦିନ ଦଶ
ବିଧିମତେ ଶ୍ରାଦ୍ଧ କଲେ ସର୍ବେ ହେବେ ତୋଷ ।" (୧୭)

ପ୍ରକୃତପକ୍ଷରେ କାର୍ତ୍ତିକ ଅମାବାସ୍ୟା ଦିନ ପିତୃଶ୍ରାଦ୍ଧ କରିବା ବିଧି । (୧୮) ଏବେ ମଧ୍ୟ ଉତ୍କଳରେ କାର୍ତ୍ତିକ ବ୍ରତ ଓ କାର୍ତ୍ତିକ ପୂର୍ଣ୍ଣମୀ ଘରେ ଘରେ ପାଳିତ ହେଉଅଛି ।

## (ଗ) କାମାକ୍ଷୀବ୍ରତ

ସାରଳାଙ୍କ ମହାଭାରତରେ କାମାକ୍ଷୀ ନାମକ ବ୍ରତର ବର୍ଣ୍ଣନା ମିଳେ । ଏହାର ଅନ୍ୟ ନାମ 'କୃଷ୍ଣ-ଗୌରୀ ଓଷା' ବୋଲି କବି କହନ୍ତି ।

"କାମାକ୍ଷୀ ବୋଲି ଅଛଇ ଗୋଟିଏ ଯେ ବ୍ରତ
ସେ ବ୍ରତ କରିଲେ ଧର୍ମ ହୋଇବ ପ୍ରାପତ ।
× × ×
ତିଥିବାର ଯେବେ ଏକ ଯୋଗ ହିଁ ହୋଇବ
କୃଷ୍ଣଗଙ୍ଗା ସେ ଓଷା ନାମ ବୋଲାଇବ ।" (୧୯)

ଏହି ବ୍ରତ ପାଳନ କଲେ ଧର୍ମ ହେବ, ଭଗବାନ ଯୁଗେ ଯୁଗେ ପୁତ୍ର-ରୂପରେ ପ୍ରାପ୍ତ ହେବେ ବୋଲି ନାରଦ ଦେବକୀ ଓ ଯଶୋଦାଙ୍କୁ କହିଥିଲେ । ମାଘ ମାସର କୃଷ୍ଣ-ତ୍ରୟୋଦଶୀ ତିଥିରେ ବୃହସ୍ପତି ବାର ଓ ପୁଷ୍ୟା ନକ୍ଷତ୍ର ଏକତ୍ର ଯୋଗହେଲେ ଏହି ବ୍ରତ କରଣୀୟ ବୋଲି ନାରଦ ଜଣାଇଥିଲେ । କାମାକ୍ଷୀ-ବ୍ରତର ବିଧିବିଧାନ କବି ବିସ୍ତାରିତ ଭାବରେ ବର୍ଣ୍ଣନା କରିଅଛନ୍ତି; ଯଥା—

"ଅଯୋଡ଼ା ପୃଥ୍ୱୀ ଖଣ୍ଡିଏ ହେବ ଯଜ୍ଞଶାଳ
ଆହୁତି ଯେ ଆରୋପଣ ହେବ ଦିନ ଷୋଳ ।
ସାମବେଦୀ ଯେ ପଚିଶ ସହସ୍ର ବ୍ରାହ୍ମଣ,
ଯଜୁର୍ବେଦୀ ଯେ ପଚିଶ ସହସ୍ର ପ୍ରମାଣ ।
ପଚିଶ ସହସ୍ର ପୁଣ ଋକବେଦୀ ଜାଣ
ଅଥର୍ବବେଦୀ ପଚିଶ ସହସ୍ର ବରଣ ।
ଏମନ୍ତେ ଲକ୍ଷେ ବ୍ରାହ୍ମଣ ହେବେ ଚୁରି ବେଦୀ
ଅଜପା ମନ୍ତ୍ରେ ଲକ୍ଷେକ ଜପ ହେବ ସିଦ୍ଧି ।
ସୁବର୍ଣ୍ଣର ହେବ ପୁଣ ଲକ୍ଷେ ଦୀପାବଳୀ
ଲକ୍ଷେକ ହୋଇବ ପୁଣି ସୁବର୍ଣ୍ଣ ପିତୁଳି ।
ଲକ୍ଷେକ ସୁବର୍ଣ୍ଣ ନିତି ଦେଉଥିବ ଦାନ
ଷୋଳଦିନ ପରଯନ୍ତେ ଦେଉଥିବ ଅନ୍ନ ।
ଯେତେକ ଜନ ଭୁଞ୍ଜିବେ ଜାଣ ଯଜ୍ଞଶାଳେ
ସବୁଙ୍କୁ ହିଁ ବସ୍ତ୍ର ଦେବ ଭୁଞ୍ଜିବାର ବେଳେ ।" (ମ: ପୃ ୧୯୧)

ଏହି ବ୍ରତରେ ଅଷ୍ଟରତ୍ନଯୁକ୍ତ ଲକ୍ଷେ ହସ୍ତୀ, ଲକ୍ଷେ ଭାର ସୁବର୍ଣ୍ଣ, ରତ୍ନଯୁକ୍ତ ଲକ୍ଷେ ଅଶ୍ୱ ଦାନ କରିବା ବିଧି । ରତ୍ନାଳଙ୍କାରମଣ୍ଡିତ ଏକ କନ୍ୟା ନିଜ ବଂଶ ମଧ୍ୟରୁ ଦାନ କରିବା ବ୍ରତର ଅନ୍ୟତମ ନିୟମ । ଏକଲକ୍ଷ କୃଷ୍ଣ ଅଜିନ ଦାନ ଦେବା ଓ ଗଣ୍ଡାଟିଏ ବଧ କରି କାମ୍ୟଶ୍ରାଦ୍ଧ କରିବା ମଧ୍ୟ ଏଥିରେ

ବିଧେୟ । ଲକ୍ଷେ କାମାକ୍ଷୀ ମୂର୍ତ୍ତି ସୁବର୍ଣ୍ଣରେ ଗଠନ କରି, ପ୍ରତି ମୂର୍ତ୍ତି ପାଖରେ ଲକ୍ଷେ ଛାଗ ବଳିଦେବା ବ୍ରତର ଅନ୍ୟତମ ରୀତି । ଲକ୍ଷେ ସଂଖ୍ୟକ ସୁଗନ୍ଧିକା ପୁଷ୍ପ ଷୋଳ ଦିନ ପାଇଁ ସଂଗ୍ରହ କରି ଏହି ବ୍ରତରେ ନିଯୁକ୍ତ ହେବା ଉଚିତ୍ । ବ୍ରତର ପାଳନ କାଳରେ ଦିବାଗସ୍ତ ଉନ୍ନିଦ୍ର ରହିବା, ମୈଥୁନ ପରିତ୍ୟାଗ କରିବା, ମିଥ୍ୟାପବାଦ ତ୍ୟାଗ କରିବା, ତୈଳ ଓ ତାମ୍ବୁଳ ବ୍ୟବହାର ନକରିବା ବିଧେୟ ବୋଲି ନାରଦ ପ୍ରକାଶ କରିଥିଲେ । (୨୦) ମାଘ ମାସର ପବିତ୍ରତା ସ୍ମୃତିଶାସ୍ତ୍ରରେ ଅନୁମୋଦିତ । (୨୧) ଶତାନନ୍ଦଙ୍କ ମତରେ ମାଘ ମାସରେ 'ଗୌରୀବ୍ରତ' ପାଳନ କଲେ ପରମ ସୌଭାଗ୍ୟ ଲାଭ ହୁଏ । (୨୨) ଭକ୍ତକବି ଜଗନ୍ନାଥ ଦାସଙ୍କ ମହାଭାରତରେ କାମାକ୍ଷୀ ବ୍ରତର ବର୍ଣ୍ଣନା ଦେଖାଯାଏ । (୨୩)

## (ଘ) ବନଦୁର୍ଗା-ଓଷା

ଦୁର୍ଗାଙ୍କର ଅଷ୍ଟୋତ୍ତରଶତ ନାମ ମଧ୍ୟରୁ ବନଦୁର୍ଗା ଅନ୍ୟତମ । ଉକ୍ତ ଅଛି—"ବନଦୁର୍ଗା ଚ ମାତଙ୍ଗୀ ମତଙ୍ଗମୁନିପୂଜିତା ।" (୨୪) ସାରଳା ଦାସଙ୍କ ମହାଭାରତରେ ଏହି ନାମରେ ଗୋଟିଏ ଓଷାର କଥା କୁହାଯାଇଅଛି । କବି କହନ୍ତି ଯେ, ଏହି ବ୍ରତ ପାଳନ କଲେ ମାନବର ମନୋବାଞ୍ଛା ପୂର୍ଣ୍ଣ ହୁଏ । ଅର୍ଜୁନ ଅଜ୍ଞାତବାସରେ ଥିବାବେଳେ ଦ୍ରୌପଦୀ ଏହି ବ୍ରତ ପାଳନ କରିବାରୁ ସେ ସର୍ବଶୁଭରେ ଘରକୁ ଫେରିଆସିଥିଲେ ।

"ବନେ ଗଲି ଦିନୁଁ କଲି ବନଦୁର୍ଗା-ଓଷା
ସେ ମାହେଶ୍ୱରୀ କୃପାରେ ପୂରିଲି ମୋ ଆଶା ।" (୨୫)

ଏହି ଓଷା ଅଷ୍ଟାଦଶ ଶତାବ୍ଦୀରେ ମଧ୍ୟ ପାଳିତ ହେଉଥିବାର ଜଣାଯାଏ । ଅଷ୍ଟାଦଶ ଶତାବ୍ଦୀରେ ଜନୈକ ଲେଖକ ରଘୁନାଥ ଦାଶ 'ବନଦୁର୍ଗାପୂଜା' ନାମକ ଏକ ତନ୍ତ୍ରଗ୍ରନ୍ଥ ପ୍ରଣୟନ କରିବା କଥାରୁ ଏହା ଅବଧାରିତ ହୁଏ । (୨୬) ଆଧୁନିକ କାଳ ପର୍ଯ୍ୟନ୍ତ ଏହାର ସ୍ଥିତି ଲକ୍ଷ୍ୟ କରାଯାଇପାରେ । କବି ଗଙ୍ଗାଧର ମେହେର ତାଙ୍କର 'କୀଚକବଧ' କାବ୍ୟରେ ବନଦୁର୍ଗାପୂଜାର ଉଲ୍ଲେଖ କରି ଅଛନ୍ତି । (୨୭)

## (ଙ) ମଙ୍ଗଳବାର-ଓଷା

କବି ଲେଖାମାନରେ 'ମଙ୍ଗଳବାର-ଓଷା'ର ଉଲ୍ଲେଖ ମିଳେ । ଚନ୍ଦ୍ରାବତୀଙ୍କୁ ନାରଦ ଏହି ଓଷା ପାଳନ କରିବା ନିମିତ୍ତ ପରାମର୍ଶ ଦେଇଥିଲେ । (୨୮)

ଏଥିରେ ଗୌରୀଙ୍କୁ ପୂଜା କରିବା ବିଧି । ଏହି ପୂଜା ଚୈତ୍ର ମାସ ଶୁକ୍ଳପକ୍ଷ ମଙ୍ଗଳବାରରେ କରଣୀୟ । ମଙ୍ଗଳବାର-ଓଷା ପାଳନ କଲେ ନାରୀ ପୁତ୍ରବତୀ, ସୁଲକ୍ଷଣୀ ଓ ଭାଗ୍ୟବତୀ ହୁଏ ତଥା ବୈକୁଣ୍ଠଧାମ ପ୍ରାପ୍ତ ହୁଏ । ତାହାର ସମସ୍ତ ମନୋବାଞ୍ଛା ପୂର୍ଣ୍ଣ ହୋଇଥାଏ । ନାରଦ କନକଚମ୍ପା ପୁଷ୍ପ ଆଣି ବିଧି-ବିଧାନ ସହ ଓଷା ପାଳନ କରିବା ନିମିତ୍ତ ଚନ୍ଦ୍ରାବତୀଙ୍କୁ ଉପଦେଶ ଦେଇଥିଲେ ।

"କନକଚମ୍ପା ପୁଷ୍ପରୁ ଆଠୋଟି ଘେନିବ
ସୁବର୍ଣ୍ଣର ଆଠଗୋଟି ଗୃଷ୍ଠଳ ହୋଇବ ।
ନାରଙ୍ଗ କମଳା ରମ୍ଭା ଟଭା ନାରିକେଳ
ପଣସ ଲେମ୍ବୁ ଯେ ଚୂତ ଆବ ଅଷ୍ଟଫଳ ।
ପ୍ରତ୍ୟେକରୁ ଆଠଗୋଟି ଲେଖାଏଁ ଆଣିବ
ସୁବର୍ଣ୍ଣର ଅଷ୍ଟ ନାଡ଼ୀ ଭିଆଣ କରିବ ।
ଏହିପରି ଫଳମାନ କରିଣ ଭିଆଣ
ଶ୍ୱେତ ବସ୍ତ୍ରରେ କରିବ ଗୋଟିଏ ଆସନ ।
ଧଳା ଶାକରେ ଆଠୋଟି ଲଡ଼ୁ ଯେ କରିବ
ଶ୍ୱେତଖଣ୍ଡ ମଣ୍ଡା ଆଠଗୋଟି ଭିଆଇବ ।
ଗୁଆ ଫଳରୁ ପେଣ୍ଡାଏ ରଖିବ ତହିଁରେ
ତୁଳସୀର ଦଳ ନେଇ ଥୋଇବ ଉପରେ ।
× × ×
ଏକବର୍ଣ୍ଣ ଗାଈ କ୍ଷୀର ଏକଇ ଗୃଷ୍ଠଳ
ହାଣ୍ଡିରେ ପୂରାଇ ଧୀରେ ଧୀରେ ଦେବ ଜାଳ ।
ରାନ୍ଧି ପୂର୍ବ ଦିନକରୁ କ୍ଷେପିବ ଗର୍ଭରେ
ଆରଦିନ ସ୍ନାନ ସାରି ପୂଜିବ ସମ୍ଭାରେ ।" (୨୯)

ଏବେ ମଧ୍ୟ ଓଡ଼ିଶାରେ ଚୈତ୍ର ମାସ ମଙ୍ଗଳବାରରେ ଓଷା ପାଳନ କରାଯାଏ । 'ମଙ୍ଗଳାଙ୍କ ପୂଜା' କଥାରେ ଅଛି ଯେ, ବନବାସ କାଳରେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ବଣଫୁଲ ନେଇ ମଙ୍ଗଳା ବା ଭବାନୀଙ୍କ ପୂଜା କରିବା ପାଇଁ ଉପଦେଶ ଦେଇଥିଲେ । (୩୦)

## (ଚ) ଅକ୍ଷୟ ତୃତୀୟା ଓ ଚନ୍ଦନଯାତ୍ରା

ଉତ୍ତର-ଭାରତରେ ବୈଶାଖ ଶୁକ୍ଳ ଦ୍ୱିତୀୟା ତିଥିରେ ବାସୁଦେବଙ୍କ ଉଦ୍ଦେଶ୍ୟରେ ଉତ୍ସବ ପାଳିତ ହେଉଥିବାର ଜଣାଯାଏ ।(୩୧) ଆଲ୍‌ବିରୁଣୀ ଏହି

ଦିବସକୁ ପୂର୍ବାହ୍ନକାଳ ବୋଲି ଗ୍ରହଣ କରିଅଛନ୍ତି । (୩୨) 'ଗଦାଧର ପଦ୍ଧତି' ଅନୁସାରେ ଉକ୍ତ ଦିବସରେ ଅନ୍ନଦାନ, ହୋମ ଓ ଶ୍ରାଦ୍ଧ କରଣୀୟ । (୩୩) ଏହି ଦିବସରେ ରୁପା, ଧାନ ଓ ଘୃତ ଦାନ କଲେ ଅକ୍ଷୟ ପୁଣ୍ୟ ଲାଭ ହୁଏ । ତେଣୁ ଏହାର ନାମ 'ଅକ୍ଷୟ ତୃତୀୟା' । ଅକ୍ଷୟ ତୃତୀୟା ଦିନ ଚନ୍ଦନ ଦାନ କଲେ ବ୍ରହ୍ମା ପଦବୀ ଲାଭ ହୁଏ ବୋଲି 'ପଣ୍ଡିତ-ସର୍ବସ୍ୱ'ର ମତ । (୩୪) ତେଣୁ ଏହାର ନାମ 'ଚନ୍ଦନଯାତ୍ରା ।' ସ୍କନ୍ଦ ପୁରାଣ ଅନୁସାରେ ଅକ୍ଷୟ ତୃତୀୟା ଦିନ ସ୍ନାନ କରି ବିଷ୍ଣୁଙ୍କୁ ପୂଜା କଲେ ମୋକ୍ଷ ଲାଭ ହୁଏ । (୩୫)

ସାରଳା ମହାଭାରତରେ ଅକ୍ଷୟ ତୃତୀୟା ଓ ଚନ୍ଦନଯାତ୍ରା ପାଳନର କଥା ଅଛି । ବିରାଟପୁରରେ ଏହି ଉତ୍ସବ ପାଳନ କରିବା ପାଇଁ ବିନ୍ଧାଣିମାନେ ସୁବର୍ଣ୍ଣର ଏକ ନାରାୟଣ ପ୍ରତିମା ଗଠନ କରିଥିଲେ । ପ୍ରତିମାଙ୍କୁ ବିମାନରେ ବସାଇ ବାଦ୍ୟବାଜଣା ସହ ନଦୀତଟକୁ ନିଆଯାଇଥିଲା । ପ୍ରତିମାଙ୍କୁ ନୌକାରେ ବସାଇ ନୌକାବିହାର କରାଗଲା । ବୈଶାଖ ମାସ ଶୁକ୍ଳ-ତୃତୀୟା ତିଥିରେ ଏହି ଚନ୍ଦନୋତ୍ସବ ପାଳିତ ହୋଇଥିଲା ।

"ବୈଶାଖ ମାସ ତୃତୀୟା ଅଟେ ଚନ୍ଦ୍ରବାର<br>
ରୋହିଣୀ ନକ୍ଷତ୍ରକୁ ଯେ ଭୋଗ ଯେ ଦିନର ।<br>
ବାଣିଜ୍ୟ ନାମେ କରଣ ଶୁକ୍ଳ ନାମେ ଯୋଗ<br>
ଚନ୍ଦନଯାତ୍ରା ଉତ୍ସବ ସେଦିନକୁ ଭୋଗ ।" (୩୬)

'ନୀଳାଦ୍ରି ମହୋଦୟ' (ପୃ ୨୭୧) ଓ 'କଳ୍ପଲତା କାବ୍ୟ'ରେ (ପୃ ୮୩) ଚନ୍ଦନଯାତ୍ରାର କଥା ଅଛି ।

## (ଛ) ବିନାୟକବ୍ରତ ବା ଗଣେଶପୂଜା

ଗଣେଶପୂଜା ପାଇଁ ଚତୁର୍ଥୀ ତିଥି ପ୍ରଶସ୍ତ । (୩୭) ବିନାୟକବ୍ରତ ଭାଦ୍ର ଶୁକ୍ଳ ଚତୁର୍ଥୀରେ ପାଳିତ ହେବା ବିଧି । (୩୮) ଉତ୍ତର-ଭାରତରେ ଭାଦ୍ର ଶୁକ୍ଳ ଚତୁର୍ଥୀରେ ହରିତାଳିକା ଉପବାସ କରାଯାଏ ଏବଂ ଶିବ-ପାର୍ବତୀ ପୂଜିତ ହୁଅନ୍ତି । (୩୯)

ସାରଳାଙ୍କ ମହାଭାରତରେ ଗଣେଶପୂଜାର ବର୍ଣ୍ଣନା ରହିଛି । କବି ଲେଖିଛନ୍ତି ଯେ ବିଷ୍ଣୁ ନାମକ କୁମ୍ଭାର ମୃତ୍ତିକା-ନିର୍ମିତ ଅଷ୍ଟଭୁଜବିଶିଷ୍ଟ ଏକ ଗଣେଶ ମୂର୍ତ୍ତି ପ୍ରତିଷ୍ଠା କଲେ । (୪୦) ଲଡ଼ୁ, ମୁଆଁ ଓ ଗଜା ନୈବେଦ୍ୟସ୍ୱରୂପ

ଦେଇ ସେ ଗଣନାଥଙ୍କର ଆରାଧନା କରୁଥିଲେ । ଫଳରେ ସେ ଦୁରାରୋଗ୍ୟ କୁଷ୍ଠରୋଗରୁ ମୁକ୍ତ ହେଲେ । ଏହା ଦେଖି ସେହି ନଗରର ଲୋକେ ପାଞ୍ଚହନ-ଧର ଉଜାଗର ରହି ଗଣେଶଙ୍କ ପୂଜା କଲେ । ଗଣେଶଙ୍କ କୃପାରୁ ଅପୁତ୍ରକ ନାରୀଗଣ ପୁତ୍ରବତୀ ହେଲେ । ସେହି ରାଜ୍ୟର ରାଜା କାଶୀପତି ମନ୍ଦିର ତୋଳି ଗଣେଶଙ୍କୁ ପ୍ରତିଷ୍ଠା କଲେ । ସେ ବିନାୟକ ମନ୍ତ୍ର ଜପ କରି ବ୍ରତ ପାଳନ କରିବାକୁ ଲାଗିଲେ । କିନ୍ତୁ ସେ ଚଞ୍ଚଳମନା ଥିଲେ । ତାଙ୍କର ମନୋକାମନା ପୂରଣ ହେଉ ନଥିବାର ଦେଖି ସେ ଧୈର୍ଯ୍ୟ ହରାଇଲେ ଓ କ୍ରୋଧପରବଶ ହୋଇ ଗଣନାଥଙ୍କ ଉପରେ ପଦାଘାତ କଲେ । ଗଣେଶ କ୍ରୁଦ୍ଧ ହୋଇ କାଶୀପତି ରାଜାଙ୍କର ରାଜ୍ୟ ଧ୍ୱଂସ କରିଦେଲେ । (୪୧)

ବର୍ତ୍ତମାନର ଗ୍ରାମ ବଡ଼ ଶାରୋଳର ଜଳାଶୟ ନିକଟରେ 'ଲଣ୍ଡା ଦେଉଳ' ନାମକ ଏକ ପ୍ରାଚୀନ ଗଣେଶ ମନ୍ଦିର ଦେଖାଯାଏ । ଓଡ଼ିଶାର ବିଭିନ୍ନ ସ୍ଥାନରେ ଗଣେଶ ମୂର୍ତ୍ତିମାନ ମିଳେ । ଗଣେଶ ବ୍ରାହ୍ମଣ ସଂପ୍ରଦାୟ ଭିନ୍ନ ଅନ୍ୟ ଜାତିମାନଙ୍କର ଆରାଧ୍ୟ ଦେବତା । (୪୨) ଏବେ ମଧ୍ୟ ଓଡ଼ିଶାର ପୁରପଲ୍ଲୀରେ ଗଣେଶପୂଜା ମହାସମାରୋହରେ ପାଳିତ ହୁଏ ।

## (ଜ) ରଥଯାତ୍ରା

ସ୍କନ୍ଦ ପୁରାଣର ଉତ୍କଳଖଣ୍ଡ (୪୩), ବ୍ରହ୍ମପୁରାଣ (୪୪) ଓ ନାରଦ-ପୁରାଣରେ (୪୫) ରଥଯାତ୍ରାର ମହିମା କୀର୍ତ୍ତିତ । ଏହି ଯାତ୍ରାକାଳରେ ରଥାରୂଢ଼ ଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କଲେ ବୈକୁଣ୍ଠଧାମ ମିଳେ ବୋଲି ସମସ୍ତ ପୁରାଣର ମତ । (୪୬) ବ୍ରହ୍ମପୁରାଣରେ ଜଗନ୍ନାଥ ସାତଦିନକାଳ ଗୁଣ୍ଡିଚାଘରେ ରହନ୍ତି ବୋଲି ଉକ୍ତ ଅଛି । (୪୭) ପଦ୍ମପୁରାଣ (୪୮), ଭବିଷ୍ୟପୁରାଣ (୪୯) ଓ ନୀଳାଦ୍ରି ମହୋଦୟ (୫୦) ଗ୍ରନ୍ଥରେ ଗୁଣ୍ଡିଚାଯାତ୍ରାର ବର୍ଣ୍ଣନା ନାହିଁ । ଗୁଣ୍ଡିଚା ବା ରଥଯାତ୍ରା ଖ୍ରୀଷ୍ଟ ୧ମ ବା ୨ୟ ଶତାବ୍ଦୀଠାରୁ ଆରମ୍ଭ ହୋଇଥିବାର ଅନୁମିତ ହୁଏ । (୫୧) ଏହି ଯାତ୍ରାର କାଳ ହେଲା—ଆଷାଢ଼ ମାସର ଶୁକ୍ଳପକ୍ଷ ପୁଷ୍ୟା ନକ୍ଷତ୍ରଯୁକ୍ତ ଦ୍ୱିତୀୟା ତିଥି । (୫୨)

ସାରଳା ଦାସଙ୍କ ମହାଭାରତରେ ଗୁଣ୍ଡିଚାଯାତ୍ରାର କଥା ଅଛି । ସୁଦେଷ୍ଣା ନିଜର ପୂର୍ବଜନ୍ମ ବୃତ୍ତାନ୍ତ କହିଲାବେଳେ ଇନ୍ଦ୍ରଦ୍ୟୁମ୍ନ ଓ ଗୁଣ୍ଡିଚାଙ୍କ ବିଷୟ ଉଲ୍ଲେଖ କରିଅଛନ୍ତି । ଯଥା—

"ଏବେ ଆସି ଏଠୁ ହେଲେ ବରାଟର ରାଜା
ପୁଣି ମୁଁ ସୁଦେଷ୍ଣା ନାମେ ତାଙ୍କର ଭାରିଯା ।
କଳରେ ଏ ଜୁପୁଜବେ ଇନ୍ଦ୍ରଦ୍ୟୁମ୍ନ ହୋଇ
ଗୁଣ୍ଡିଚ୍ଚ ନାମେ ଯାଙ୍କର ହେବ ମହାଦେଈ ।" (ଉ ୧୫ ପୃ)

ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ଜଗନ୍ନାଥ ମନ୍ଦିର ସର୍ବପ୍ରଥମେ ପ୍ରତିଷ୍ଠା ହେବା କଥା ପୁରାଣ-ସମ୍ମତ । (୫୩) ତାଙ୍କର ଅନୁରୋଧକ୍ରମେ ଜଗନ୍ନାଥ ସାତଦିନ ପର୍ଯ୍ୟନ୍ତ ଅଶ୍ୱମେଧଯଜ୍ଞଦ୍ୱାରା ସୃଷ୍ଟ ପୁଷ୍କରିଣୀ ସମୀପରେ ଅବସ୍ଥାନ କରିବେ ବୋଲି ସମ୍ମତ ହୋଇଥିଲେ । (୫୪) ଇନ୍ଦ୍ରଦ୍ୟୁମ୍ନଙ୍କ ପତ୍ନୀଙ୍କ ନାମ ଗୁଣ୍ଡିଚ୍ଚ ଦେବୀ ଥିବାର ଜଣାଯାଏ । (୫୫)

କବି ଅନ୍ୟତ୍ର କହନ୍ତି ଯେ, ଶ୍ରୀକୃଷ୍ଣ ବିଭୀଷଣଙ୍କୁ ରଥଯାତ୍ରା କାଳରେ ବୁଦ୍ଧ ରୂପରେ ଦର୍ଶନ ଦେବେ ବୋଲି କହିଥିଲେ ।

"ବିଭୀଷଣ ବୋଲେ ଦେବ ଏ ଦ୍ୱାପର ଯୁଗେ
ଦେଖିଲି ମୁଁ କୃଷ୍ଣରୂପ ତୋର ଅନୁରାଗେ ।
କଳରେ ନାଥ ମୁଁ ତୋତେ ଦେଖିବଇଁ କାହିଁ
କେବଣ ଭୁବନେ ଥିବ ପଥକୁ ମୁଁ ଚାହିଁ ।
ଗୋବିନ୍ଦ ବୋଇଲେ କହେ ସଦ୍‌ଭାବେ ତୋତେ
ବାରାନିଧି ତଟରେ ଯମନିକ ତୀର୍ଥେ ।
ଯେବଣ କଳପବଟ ଅଛେ ନୀଳଗିରି
ତହିଁ ବିଜୟ କରିବୁ ବୌଦ୍ଧରୂପ ଧରି ।
ମିଥୁନ ଶୁକଳପକ୍ଷ ଦ୍ୱିତୀୟାର ତିଥି
ପୁନର୍ବସୁ ନକ୍ଷତ୍ର ଯେ ଦିନର ପାହାନ୍ତି ।
ସେ ଦିନ କରିବୁ ଆମ୍ଭେ ରଥଯାତ୍ରା ଖେଳ
ଦକ୍ଷିଣ ମୂର୍ତ୍ତିରେ ବିଜେ କରିବୁ ବାଳର ।
ଅର୍ଦ୍ଧଘଡ଼ିଯାଏ ହେବୁ ଦକ୍ଷିଣ ମୂରତି
ଦକ୍ଷିଣ ଦିଗ ତୋହର ଲଙ୍କାର ଜଗତି ।
ଆମ୍ଭେ ରହିଥିବୁ ନୀଳସୁନ୍ଦର ପର୍ବତେ
ଲଙ୍କାଗଡ଼କୁ ହୋଇବୁ ଅବକାଶ ତୋତେ ।" (ସ ୨୯୯ ପୃ)

ରଥଯାତ୍ରାର ଅନ୍ୟ ନାମ—ଗୁଣ୍ଡିଚାଯାତ୍ରା । ଜନଶ୍ରୁତି କୁହେ ଯେ ଇନ୍ଦ୍ରଦ୍ୟୁମ୍ନ ମହାରାଜାଙ୍କର ରାଣୀଙ୍କ ନାମାନୁସାରେ ରଥଯାତ୍ରାକାଳରେ ଜଗନ୍ନାଥ

ରହୁଥିବା ମନ୍ଦରରର ନାମ 'ଗୁଣ୍ଡିଗ୍ଧ ମନ୍ଦର' ହୋଇଅଛି । (୫୬) ଜଗନ୍ନାଥ ଏହି ଗୁଣ୍ଡିଗ୍ଧ ମନ୍ଦରରେ ସାତଦିନ ରହୁଥିବାରୁ ରଥଯାତ୍ରାର ଅନ୍ୟ ନାମ 'ଗୁଣ୍ଡିଗ୍ଧଯାତ୍ରା' ହୋଇଅଛି । 'କଳ୍ପଲତା କାବ୍ୟ' (୫୭) ଓ 'ଦାଣ୍ଡିରାମାୟଣ'ରେ ରଥଯାତ୍ରାର ଉଲ୍ଲେଖ ମିଳେ ।

## (୯) ଦୁର୍ଗାପୂଜା

'ଶ୍ରୀ ଦୁର୍ଗାସପ୍ତସଶ୍ତୀ'ରେ ପ୍ରତିବର୍ଷ ଦୁର୍ଗାଙ୍କର ପୂଜା କଲେ ମାନବ ନାନା ବାଧାବିଘ୍ନରୁ ମୁକ୍ତ ହୁଏ ବୋଲି କଥିତ । (୫୯) 'ସ୍ମୃତି' କହେ ଯେ ଚଣ୍ଡିକାଙ୍କ ପୂଜା ନ କଲେ ତାଙ୍କ କୋପାନଳରେ ମଣିଷ ଦଗ୍ଧୀଭୂତ ହୁଏ । (୬୦) ଦୁର୍ଗାପୂଜା ଆଶ୍ୱିନ କୃଷ୍ଣ-ଅଷ୍ଟମୀଠାରୁ ଶୁକ୍ଳାଷ୍ଟମୀ ପର୍ଯ୍ୟନ୍ତ ପାଳିତ ହେବା ବିଧି । ଏହା ଦୁଇ, ତିନି, ପାଞ୍ଚ, ନଅ ବା ଷୋଳ ଦିନବ୍ୟାପୀ କରାଯାଏ । (୬୧) ଗୋଟିଏ ଦିନରେ ଦୁର୍ଗାପୂଜା କରିବାକୁ ହେଲେ ତାହା ନବମୀ ତିଥିରେ କରଣୀୟ ହୁଏ । (୬୨) ଦୁର୍ଗାଷ୍ଟମୀବ୍ରତ ପାଳନ କଲେ ପାପ ନାଶ ହୁଏ ଓ ଯମଦଣ୍ଡରୁ ମୁକ୍ତି ମିଳେ ବୋଲି 'ପଣ୍ଡିତ-ସର୍ବସ୍ୱ'ର ମତ । (ପୃ ୧୧୩)

ଶରତ୍‌କାଳୀନ ଦୁର୍ଗାପୂଜା ଉତ୍କଳରେ ଷୋଳଦିନଧରି ପାଳିତ ହେବା କଥା କବିଙ୍କ ବର୍ଣ୍ଣନାରୁ ପ୍ରତିପାଦିତ ହୁଏ । ସେ କାଳରେ ଅଷ୍ଟମୀ ତିଥିର ନିଶା କାଳରେ ଦେବୀଙ୍କୁ ମହିଷ, ଛାଗଳ ବା ମେଷ ବଳିରୂପରେ ଅର୍ପଣ କରାଯାଉଥିଲା । କବି କହନ୍ତି ଯେ, ଜରାସନ୍ଧଙ୍କ ଦ୍ୱାରା ବନ୍ଦୀ ରାଜନ୍ୟବୃନ୍ଦ ଏହିଭଳି ପୂଜା କରିବେ ବୋଲି ଦେବୀଙ୍କ ପାଖରେ ପ୍ରତିଶ୍ରୁତି ଦେଇଥିଲେ ।

"କନ୍ୟାମାସ ଶୁକ୍ଳପକ୍ଷ ଅଷ୍ଟମୀର ତିଥି
ଶରଦ-ଉତ୍ସବେ ତୋତେ କରିବୁ ଗୋ ଭକ୍ତି ।
ବହୁ ସମ୍ଭାରେ କରିବୁ ନିଶାକାଳେ ପୂଜା
ଷୋଳଦିନ ଦେଉଥିବୁ ତୋତେ ବଳିଭୋଜା ।
ମହିଷ ମେଷ ଛାଗଳ ରକ୍ତମାଂସେ ପୂଜା
ନିଷ୍ଟୟ ଦେବୁ ମା ତୋତେ ଆମ୍ଭେ ସର୍ବ ରାଜା ।" (୬୩)

'ନୀଳାଦ୍ରି ମହୋଦୟ' ଗ୍ରନ୍ଥରେ ଦୁର୍ଗାଙ୍କୁ ଶରତ୍‌କାଳରେ ପୂଜା କରିବା କଥା ଅଛି । (୬୪) ଜଗନ୍ନାଥ ଦାସଙ୍କ ଭାଗବତରେ ଗୋପୀମାନେ ଶରତ୍‌କାଳରେ ଦୁର୍ଗାଙ୍କୁ ପୂଜା କରିଥିଲେ ବୋଲି କୁହାଯାଇଅଛି । (୬୫) ଦୁର୍ଗାପୂଜା ଉତ୍କଳରେ

ଲୋକପ୍ରିୟ ଥିବାରୁ ପ୍ରତାପରୁଦ୍ରଦେବଙ୍କ କାଳରେ ଜନୈକ ଲେଖକ ଗୋଦାବରୀ ମିଶ୍ର 'ଶ୍ରୀ ଶାରଦା ଶରଦର୍ଚ୍ଚନ ପଦ୍ଧତି' ନାମରେ ଏକ ଗ୍ରନ୍ଥ ପ୍ରଣୟନ କରିଥିଲେ । ତଦନୁଯାୟୀ ଝଙ୍କଡ଼ର ସାରଳା ପୀଠରେ ଦୁର୍ଗୋତ୍ସବ କରାଯାଉଥିବାର ଜଣାଯାଏ । (୭୭)

## (ଡ) କୁମାରପୂର୍ଣ୍ଣିମୀ

ଆଶ୍ୱିନ ମାସ ଶୁକ୍ଳପକ୍ଷ ପୂର୍ଣ୍ଣିମୀ ତିଥିରେ କୁମାରୋତ୍ସବ ପାଳିତ ହେବା ବିଧି । ଏହାର ଅନ୍ୟ ନାମ 'କୋଜାଗର ପୂର୍ଣ୍ଣିମା' ଉକ୍ତ ଦିବସରେ ରାତ୍ରରେ ଉଜାଗର ଏବଂ ଅକ୍ଷକ୍ରୀଡ଼ା କଲେ ଲକ୍ଷ୍ମୀ ବରଦାୟକ ହୁଅନ୍ତି ବୋଲି 'ପଣ୍ଡିତ-ସର୍ବସ୍ୱ' କହେ । (ପୃ୧୧୭) କୁମାର-ପୂର୍ଣ୍ଣିମୀ ଦିନ ପରସ୍ପରକୁ ତାମ୍ବୁଳ, ନାରିକେଳ, କଉଡ଼ି ଓ ନବବସ୍ତ୍ର ଦାନ କରିବା ବିଧି । (୭୭) ଶିବପୁରାଣରେ ଅଛି ଯେ, ଏହି ଦିବସରେ କାର୍ତ୍ତିକକୁମାରଙ୍କର ଜନ୍ମ ହୋଇଥିଲା । (୭୮)

ସାରଳା ଦାସଙ୍କ ମହାଭାରତରେ କୁମାରପୂର୍ଣ୍ଣିମୀର ଉଲ୍ଲେଖ ମିଳେ । କବି ଦର୍ଶାଇଅଛନ୍ତି ଯେ, ଆଶ୍ୱିନ ଶୁକ୍ଳପୂର୍ଣ୍ଣିମୀ ରବିବାର ଦିନ ଶ୍ରୀକୃଷ୍ଣ ଦ୍ୱାରକାରେ ଏହି ଉତ୍ସବ ପାଳନ କରିଥିଲେ ।

"ଆଶ୍ୱିନ ଶୁକ୍ଳ ପୂର୍ଣ୍ଣିମୀ ରବିବାର ଦିନ
କୁମାରୋତ୍ସବ ହୋଇଛି ଦ୍ୱାରକା ଭୁବନ ।
ଆସ୍ଥାନେ ବିଜୟ କରି ଦେବ ଚକ୍ରଧାରୀ
ଅନେକ ରତ୍ନ ଦେଲେ କଉତୁକ କରି ।
କେ ରୁଷନ୍ତି କେ ହସନ୍ତି ଧେନିଯାନ୍ତି ବଳେ
ସମୁଦ୍ର ଗର୍ଜନ ପ୍ରାୟେ ଶୁଭଇ ତହଲେ ।
ଆରିଷା କାକରା ପୁଣି ଶାକରାଦିମାନ
ସୁବର୍ଣ୍ଣର ଉପହାର ଦେବାଙ୍ଗ ବସନ ।
କର୍ପୂର ତାମ୍ବୁଳ ଆଦି ହୋଇଣ ଉତ୍ସୁକ
ପାଟର ବସନ ବିତରନ୍ତି ଏକ ଏକ ।" (ମୁ. ୨ ପୃ)

ପଣ୍ଡିତ ନୀଳକଣ୍ଠ ଦାସ କହନ୍ତି ଯେ, କୁମାରୋତ୍ସବ ଉତ୍କଳର ନିଜସ୍ୱ ପର୍ବ । (୭୯) ଏବେ ବି ଓଡ଼ିଶାରେ ଏହା ଏକ ପ୍ରଧାନ ଉତ୍ସବରୂପରେ ପାଳିତ ହେଉଅଛି ।

## (୫) ପୁଷ୍ୟାଭିଷେକ

'ପଣ୍ଡିତ-ସର୍ବସ୍ୱ' ଅନୁସାରେ ପୌଷ ପୂର୍ଣ୍ଣିମୀରେ ଉପବାସ କରିବା ବିଧି । (ପୃ ୫୦) ସ୍କନ୍ଦପୁରାଣ ମତରେ ପୌଷ ପୂର୍ଣ୍ଣିମୀରେ ପୁଷ୍ୟାନକ୍ଷତ୍ର ଯୋଗହେଲେ ଜଗନ୍ନାଥଙ୍କର ପୁଷ୍ୟା-ସ୍ନାନ ହୁଏ । ଏହି ଉତ୍ସବରେ ପୁଷ୍ଟିକର ଭୋଜନ, ରାଜାମାନଙ୍କର ସ୍ନାନ ଓ ବ୍ରତପାଳନ ବିଧି । (୭୦) 'ଏକାମ୍ର ପୁରାଣ'ରେ ପୌଷ ପୂର୍ଣ୍ଣିମୀ ଦିନ ରାଜାଙ୍କର ବନ୍ଦାପନା ବିଧି ବୋଲି ଉକ୍ତ । (୭୧) 'ଗଦାଧର ପଦ୍ଧତି'ରେ କୁହାଯାଇଅଛି ଯେ ପୁଷ୍ୟା ନକ୍ଷତ୍ର ଯୋଗରେ ବିପ୍ରଙ୍କୁ ଦାନ, ନବବସ୍ତ୍ର ପରିଧାନ, ଘୃତ-ପାୟସ ଭଳି ଉତ୍ତମ ଭୋଜନ କରଣୀୟ । (ପୃ ୧୪୪)

ସାରଳା ଦାସ କହନ୍ତି ଯେ, ଧନୁ ମାସ ପୂର୍ଣ୍ଣିମୀ ତିଥି ପୁଷ୍ୟା ନକ୍ଷତ୍ରରେ ଶ୍ରୀକୃଷ୍ଣଙ୍କର ପୁଷ୍ୟାଭିଷେକ ଅନୁଷ୍ଠିତ ହୋଇଥିଲା । ଏହି ଉତ୍ସବରେ ଯୋଗଦେବା ପାଇଁ ଜଗନ୍ନାଥଙ୍କ ଆଦେଶରେ ଅକ୍ରୂର ଅର୍ଜୁନ ଓ ସୁଭଦ୍ରାଙ୍କୁ ଦ୍ୱାରକାକୁ ଆନୟନ କରିଥିଲେ । କବି ପୁଷ୍ୟାଭିଷେକର ଦୃଶ୍ୟ ବର୍ଣ୍ଣନା କରି ଲେଖିଛନ୍ତି—

"ଶ୍ରୀରାମର ଅଭିଷେକ ଯେସନ ବିଧାନେ
ରଙ୍ଗଯାତ୍ରା ଭିଆଇଲେ ଦ୍ୱାରକା ଭୁବନେ ।
× × ×
ଜଗନ୍ନାଥ ବନ୍ଦାପନା ପୁଷ୍ୟା ଅଭିଷେକ
ବାହନ ଚଢ଼ି ଦେଖନ୍ତି ଶୂନ୍ୟେ ବୃନ୍ଦାରକ ।
ଆକାଶରେ ପୁଷ୍ପବୃଷ୍ଟି କଲେ ମଘବାନ
ଜୟ ଜୟ ଶବଦରେ ପୂରିଲା ଗଗନ ।" (ମ. ୧୯୦ ପୃ)

ଦାଣ୍ଡି ରାମାୟଣ (୭୨) ଓ ଜଗନ୍ନାଥ ଦାସଙ୍କ ମହାଭାରତରେ (୭୩) ଶ୍ରୀଜଗନ୍ନାଥଙ୍କ ପୁଷ୍ୟାଭିଷେକର ବର୍ଣ୍ଣନା ମିଳେ ।

## (୦) ଭୀଷ୍ମପଞ୍ଚକ

ସ୍ମୃତିକାର ଭୀଷ୍ମପଞ୍ଚକର ବିଧି, କାଳ ଓ ଫଳ ପ୍ରଦର୍ଶନ କରିଯାଇଅଛନ୍ତି । କାର୍ତ୍ତିକ ଶୁକ୍ଳପକ୍ଷର ଏକାଦଶୀଠାରୁ ପାଞ୍ଚଦିନ ପର୍ଯ୍ୟନ୍ତ ଏହି ବ୍ରତ ପାଳନ କରିବା ବିଧି । ଭଗବାନଙ୍କଠାରୁ ଭୀଷ୍ମ ଏହି ପଞ୍ଚଦିନାତ୍ମକ ବ୍ରତ ପ୍ରାପ୍ତ ହୋଇଥିବାରୁ ଏହାର ନାମ 'ଭୀଷ୍ମ ପଞ୍ଚକ ବ୍ରତ' । ଏହି ବ୍ରତର ଗୁଣ କେବଳ ନାରାୟଣ କହିବା ପାଇଁ ସମର୍ଥ । ଏହା ପାଳନ କଲେ ମହାପାତକ ନାଶ ହୋଇ ପୁଣ୍ୟ ଲାଭ ହୁଏ । (୭୪)

ସାରଳା ଦାସ କହନ୍ତି ଯେ, ଶ୍ରୀକୃଷ୍ଣ ଖ୍ରୀଷ୍ଟଙ୍କୁ ପାଞ୍ଚଗୋଟି ବ୍ରତ ଦେଇଥିଲେ ।

"ଆଜହୁଁ ଖ୍ରୀଷ୍ମଦଶମୀ ଆଉ ଏକାଦଶୀ
ଦ୍ୱାଦଶୀ ତ୍ରୟୋଦଶୀ ଯେ ଆଉ ଚତୁର୍ଦ୍ଦଶୀ ।
ଏହି ପାଞ୍ଚଗୋଟି ବ୍ରତ ତୋତେ ମୁଁ ଦେଲଇଁ
ଏହିପରି ବୋଇଲେ ଯେ ଦେବ ଯଦୁସାଇଁ ।"

କବି ଦର୍ଶାଇଅଛନ୍ତି ଯେ ଖ୍ରୀଷ୍ମଙ୍କ ଉଦ୍ଦେଶ୍ୟରେ ମକର ଶୁକ୍ଳ-ଦଶମୀରେ ଶ୍ରାଦ୍ଧ କଲେ ପ୍ରୟାଗରେ ପିଣ୍ଡଦାନ କରିବାର ଫଳ ମିଳେ । ତାଙ୍କ ମତରେ 'ଖ୍ରୀଷ୍ମ-ଏକାଦଶୀ' ଏକାଦଶୀମାନଙ୍କ ମଧ୍ୟରେ ଶ୍ରେଷ୍ଠ । ସେ ପୁଣି କହନ୍ତି ଯେ ଏହି ବ୍ରତ ପୁଣ୍ୟଦାୟକ ଓ ବ୍ରତମାନଙ୍କ ମଧ୍ୟରେ ରାଜା । (ଖ୍ରୀ. ୧୪୧ ପୃ)

ଏଠାରେ ଉଲ୍ଲେଖଯୋଗ୍ୟ ଯେ ପଣ୍ଡିତ-ସର୍ବସ୍ୱରେ ଖ୍ରୀଷ୍ମପଞ୍ଚକ ବ୍ରତଟି ଏକାଦଶୀଠାରୁ ଆରମ୍ଭ ହୁଏ ବୋଲି କୁହାଯାଇଥିଲେ ହେଁ କବି ତାହାର ଆରମ୍ଭ ଦଶମୀଠାରୁ କରଣୀୟ ବୋଲି ଦର୍ଶାଇଅଛନ୍ତି । ପୁନଶ୍ଚ କବି ଦଶମୀ ତିଥିରେ ଖ୍ରୀଷ୍ମ-ଶ୍ରାଦ୍ଧ କର୍ତ୍ତବ୍ୟ ବୋଲି କହନ୍ତି । କିନ୍ତୁ ପଣ୍ଡିତ-ସର୍ବସ୍ୱରେ ଅଷ୍ଟମୀ ତିଥିରେ ଶ୍ରାଦ୍ଧ ବିଧେୟ ବୋଲି ଉକ୍ତ । (ପୃ ୭୪) ଖ୍ରୀଷ୍ମ-ପଞ୍ଚକ ବ୍ରତଟି କାର୍ତ୍ତିକ ମାସରେ କରଣୀୟ ବୋଲି ପଣ୍ଡିତ-ସର୍ବସ୍ୱ କହେ । କବିଙ୍କ ବର୍ଣ୍ଣନାରେ ତାହାର କାଳ ମକର ବା ମାଘ ମାସ ।

## (ଓ) ମାଘସ୍ନାନ

ସ୍ମୃତିଶାସ୍ତ୍ରର ମତରେ ମାଘ ମାସ ଶୁକ୍ଳପକ୍ଷ ସପ୍ତମୀ ତିଥିରେ ସ୍ନାନ ଓ ଉପବାସ (୭୫) କଲେ ମହାନ୍ ଫଳ ଲାଭ ହୁଏ । ବ୍ରହ୍ମପୁରାଣ କହେ, ଉକ୍ତ ଦିବସରେ ସ୍ନାନ କରି ସୂର୍ଯ୍ୟଦେବତାଙ୍କୁ ଅର୍ଘ୍ୟ ପ୍ରଦାନ କଲେ ଧନ, ବିଦ୍ୟା ଓ ପୁତ୍ର ଲାଭ ହୁଏ ତଥା ରୋଗରୁ ମୁକ୍ତି ମିଳେ । (୭୬) ପୁରାଣକାର କହନ୍ତି— ସମୁଦ୍ରରେ ସ୍ନାନ କରି କୋଣାର୍କର କୋଣାଦିତ୍ୟଙ୍କୁ ଦର୍ଶନ ଓ ପୂଜନ କଲେ ଅଶ୍ୱମେଧ ଯଜ୍ଞାନୁଷ୍ଠାନର ଫଳ ଲାଭ ହୁଏ । (୭୭) ସ୍କନ୍ଦ ପୁରାଣ ମତରେ ମାଘ ସପ୍ତମୀରେ ଦାନଧର୍ମ କଲେ ଦାରିଦ୍ର୍ୟ ଦୂର ହୁଏ ଓ ସୂର୍ଯ୍ୟଦେବତା ପ୍ରସନ୍ନ ହୁଅନ୍ତି । (୭୮) ସୁତରାଂ ମାଘସପ୍ତମୀ ଏକ ପବିତ୍ର ଦିବସ ।

ମାଘସପ୍ତମୀ ଦିବସର ମାହାତ୍ମ୍ୟ ସାରଳା ଦାସଙ୍କ ଲେଖାଗରେ ନିହିତ । ଉକ୍ତ ଦିବସରେ ଚନ୍ଦ୍ରଭାଗାରେ ସ୍ନାନ, ସୂର୍ଯ୍ୟ-ଦର୍ଶନ ଓ ଦାନଧର୍ମ କଲେ ଅପାର ପୁଣ୍ୟ ମିଳେ ବୋଲି କବିଙ୍କ ମତ ।

"ଦକ୍ଷିଣ ସମୁଦ୍ର ଚନ୍ଦ୍ରଭାଗା ଉତ୍ତରରେ
କୋଟି ତୀର୍ଥ ଘେନି ଗଙ୍ଗା ଅଛନ୍ତି ସେଠାରେ ।
ତହିଁ ସ୍ନାହାନ କରି ଯେ ବିରଞ୍ଚି ଦେଖଇ
ଦେହ ନିଷ୍କଳଙ୍କ ହୋଇ ପାପ ନାଶ ଯାଇ ।" (ଶା. ୧୧ ପୃ)
"ସେ ଦିନ ସେଠାରେ ଯେହୁ ହୋଇ ଉଜାଗର
କାଳ ଯାପଇ ତା ପୁଣ୍ୟ ଅଟଇ ଅପାର ।
ସପ୍ତମୀରେ ସ୍ନାନ ଦାନ ଧର୍ମ ଯେହୁ କରେ
ତାହା ସମ ପୁଣ୍ୟାତ୍ମା କେ ନାହିଁ ଏ ସଂସାରେ ।" (ଶା. ୧୨ ପୃ)

ସାରଳା ଦାସ ଚନ୍ଦ୍ରଭାଗା ତୀର୍ଥରେ ବିରଞ୍ଚିନାରାୟଣଙ୍କୁ ଦର୍ଶନ କରିବା ଓ ପିଣ୍ଡଦାନ ଦେବା ପାଇଁ ଉପଦେଶ ଦେଇଛନ୍ତି ।

"ଅଶେଷ କୋଟି ତୀର୍ଥ ବିଜୟେ ତହିଁ ସବୁ
ଚନ୍ଦ୍ରଭାଗା ତୀର୍ଥେ ବିରଞ୍ଚିନାରାୟଣ ଦେଖିବୁ ।
ମକର ମାସରେ ଯେହୁ ଚନ୍ଦ୍ରଭାଗାରେ ଦିଅଇ ପିଣ୍ଡଦାନ
ଦ୍ୱାଦଶ ପୁରୁଷେ ପିତୃଲୋକେ ପାନ୍ତି ସ୍ୱର୍ଗସ୍ଥାନ ।" (୭୯)

'ଗଦାଧର ପଦ୍ଧତି'ରେ ଅଛି ଯେ, ମାଘ ମାସରେ ଗୋଷ୍ପଦ ପରିମାଣ ଜଳରେ ସ୍ନାନ କଲେ ପାପରୁ ମୁକ୍ତ ମିଳେ । (ପୃ୨୭) ଭବିଷ୍ୟପୁରାଣ, ବ୍ରହ୍ମାଣ୍ଡ-ପୁରାଣ ଓ ମହାଭାରତ ଆଦିରେ ମାଘସ୍ନାନର ଫଳ ପ୍ରଭୂତ ବୋଲି କଥିତ । (୮୦) ସାରଳା ଦାସଙ୍କ ଲେଖାରେ ମାଘସ୍ନାନର କଥା ଅଛି । ସେ ମାଘସ୍ନାନର ବିଧି-ବିଧାନ ବର୍ଣ୍ଣନା କରିଅଛନ୍ତି । କବି କହନ୍ତି ଯେ, ମାର୍କଣ୍ଡ ଋଷି ଯୁଧିଷ୍ଠିରଙ୍କୁ ମାଘସ୍ନାନର ବିଧାନ ବୁଝାଇଥିଲେ । (ବି. ୨୦୭ ପୃ) ମାଘସ୍ନାନର ମହତ୍ତ୍ୱ ପ୍ରଦର୍ଶନ କରିବା ଛଳରେ ସାରଳା ଦାସ ବର୍ଣ୍ଣନା କରିଅଛନ୍ତି ଯେ, ମାଘସ୍ନାନ କରି ବୃହସ୍ପତି ତିନିକାଳର ଜ୍ଞାତା ହେଲେ, ଇନ୍ଦ୍ର ଦେବତାଙ୍କ ରାଜା ହେଲେ, ଯମ ମୃତ୍ୟୁଦେବତା ହେଲେ, ରୁଦ୍ର ମାତୃହରଣ ଦୋଷରୁ ମୁକ୍ତ ହେଲେ, ବରୁଣ ସାଗରର ସ୍ୱାମୀ ହେଲେ, କୁବେର ଧନପତି ହେଲେ, ସୂର୍ଯ୍ୟ ଦିବସର ପତି ପଦବୀ ପାଇଲେ, ବାସୁକୀ ବସୁନ୍ଧରାଙ୍କୁ ଧାରଣ କରିପାରିଲେ, ବେଶ୍ୟାପୁତ୍ର ବଶିଷ୍ଠ

କଳ୍ପବାସୀ ହେଲେ, ଦ୍ୱାଦଶ ବିଶ୍ୱଦେବା ପରମଗତି ପ୍ରାପ୍ତ ହେଲେ, ବ୍ରହ୍ମାଙ୍କ ଦଶପୁତ୍ର ଅମର ହେଲେ, ଯୁବନାଶ୍ୱ ରାଜା ପୁତ୍ରଲାଭ କଲେ, ମାନ୍ଧାତା ସପ୍ତଦ୍ୱୀପରେ ରାଜା ହେଲେ, ଅର୍ଗଳା ଚଣ୍ଡାଳ ରାଜବଂଶରେ ଜାତ ହେଲା, ବେଦପୁର ଗ୍ରାମର ଅଷ୍ଟ-କନ୍ୟା ଅପ୍‌ସରା ହେଲେ, ବଶିଷ୍ଠ ବସୁଙ୍କ ପତ୍ନୀ ପ୍ରିୟବଚ୍ଛା କନ୍ୟାଲାଭ କଲେ, ଧର୍ମପାଳ ନାମକ ପକ୍ଷୀ ଗୃହଗୋଟି ତେଜସ୍କର ମୂର୍ତ୍ତିରେ ପରିଣତ ହେଲା ଏବଂ ମଦନା ନାମକ ନାରୀ ପୁତ୍ରବତୀ ହୋଇ ସଦ୍‌ଗତି ଲାଭକଲା । (୮୧)

କବି କହନ୍ତି ଯେ, ନିଷ୍ଠାର ସହ ମାଘସ୍ନାନ କର୍ତ୍ତବ୍ୟ । ସତ୍ୟରେ ରହିବ, ମିଥ୍ୟା ନ କହିବ, ତୈଳ ଗ୍ରହଣ ନ କରି ସ୍ନାନ କରଣୀୟ । ହବିସ୍ୟ ଭୋଜନ ଏଥିରେ ବିଧି । ସ୍ତ୍ରୀସଙ୍ଗମ ମାଘସ୍ନାନ କାଳରେ ନିଷିଦ୍ଧ । ଦେବତାଙ୍କୁ ଭୋଗ ଅର୍ପଣ କରିବା ଓ ବ୍ରାହ୍ମଣଙ୍କୁ ଭୋଜନ ଦେବା ବ୍ରତକାରୀର କର୍ତ୍ତବ୍ୟ । ଅତିଥିଙ୍କୁ ଭୋଜନରେ ଆପ୍ୟାୟିତ କରିବା ମଧ୍ୟ ବିଧି । ବ୍ରତକାରୀ ଭୋଜନବେଳେ ମୌନ ରହିବେ, ରାତ୍ରିରେ ମାଧବଙ୍କ ନାମ ଓ ଗୁଣ କୀର୍ତ୍ତନ କରିବେ ଓ ଉଜାଗର ରହି ଦୀପଦାନ କରିବେ । ନିଷ୍ଠାରେ ଏସବୁ ନ କଲେ ଫଳ ମିଳେ ନାହିଁ । କବି ଦର୍ଶାଇଅଛନ୍ତି ଯେ ଇନ୍ଦ୍ରଙ୍କ ପୁତ୍ର ଚିତ୍ରସେନ ମକର-ସ୍ନାନ କାଳରେ ତୈଳ ବ୍ୟବହାର କରିବାରୁ ବ୍ୟାଘ୍ରରୂପ ପ୍ରାପ୍ତ ହେଲେ, ବୃହସ୍ପତିଙ୍କ କନ୍ୟା ସ୍ନାନକାଳରେ ମିଥ୍ୟା କହିବାରୁ ପିଶାଚୁଣୀ ଜନ୍ମଲାଭ କଲେ, ଉମାବସୁ ଓ ପରିବସୁ ପରଦାରାସକ୍ତ ହେବାରୁ ମତ୍ସ୍ୟ ଓ କଚ୍ଛପ ଜନ୍ମ ପ୍ରାପ୍ତ ହେଲେ । (ବ. ୨୧୨ ପୃ)

## (ଡ) ଶିବରାତ୍ରି

ମାଘ ମାସ କୃଷ୍ଣ-ଚତୁର୍ଦ୍ଦଶୀରେ ଶିବରାତ୍ରି ପାଳନ କରିବା ବିଧି । ଶିବରାତ୍ରି ନାମକ ବ୍ରତ ପାଳନ କଲେ ପାପନାଶ ହୁଏ । ଉପବାସ ସହ ରାତ୍ରିରେ ଉଜାଗର ରହି ଶିବଙ୍କୁ ପୂଜା କଲେ ଅକ୍ଷୟ ପୁଣ୍ୟ ଲାଭ ହୁଏ ଓ ମନୋବାଞ୍ଛା ସିଦ୍ଧ ହୁଏ । (୮୨)

ସାରଳାଙ୍କ ମହାଭାରତରେ ଶିବରାତ୍ରିର ଉଲ୍ଲେଖ ଦେଖାଯାଏ । ସେଥିରୁ ଜଣାଯାଏ ଯେ, ସେ ଦିନ ଲୋକେ ଉପବାସ କରୁଥିଲେ । ଜୟଦ୍ରଥଙ୍କୁ ବଧ କରିବା ପାଇଁ ଅର୍ଜ୍ଜୁନ ଯେଉଁ ଶପଥ କଲେ, ତହିଁରୁ ଏହା ସ୍ପଷ୍ଟ ।

"ଏକାଦଶୀ ଶିବରାତ୍ରି ଗ୍ରହଣ କାଳରେ
ଯେ ଜନ ଭୁଞ୍ଜନ୍ତି ଅନ୍ନ ଏ ତିନି ବେଳରେ ।
× ×

ବିଧବା ବ୍ରାହ୍ମଣୀକି ଯେ ହରଇ କୁତୂହଳେ
ସେ ପାପ ଭୋଗିବ ଜମ୍ବୁଦ୍ୱୀପେ ନ ମାଇଲେ ।'' (ଦ୍ରୋ. ୫୭ ପୃ)

'ଏକାମ୍ରପୁରାଣ'ରେ ମାଘ କୃଷ୍ଣ-ଚତୁର୍ଦ୍ଦଶୀରେ ଶିବରାତ୍ରି ବ୍ରତ କରଣୀୟ ବୋଲି ଉକ୍ତ । (୮୩) ଭୁବନେଶ୍ୱରରେ ଶିବରାତ୍ରି ଉତ୍ସବ ବହୁଦିନ-ଧରି ପାଳିତ ହୋଇଆସୁଥିବା କଥା ଷ୍ଟର୍ଲିଂଙ୍କ ବିବରଣୀରୁ ଜଣାଯାଏ । (୮୪)

ଉପରୋକ୍ତ ଆଲୋଚନାରୁ ପ୍ରତିପାଦିତ ହୁଏ ଯେ, ସେ ଯୁଗରେ ଓଡ଼ିଶାର ଧର୍ମପ୍ରାଣ ନରନାରୀଗଣ ନାନାବିଧ ବ୍ରତ ପାଳନ କରୁଥିଲେ । ସେଗୁଡ଼ିକ ମଧ୍ୟରେ ପ୍ରଧାନ ହେଲି ଏକାଦଶୀବ୍ରତ, ମାଘବ୍ରତ, ବିନାୟକବ୍ରତ, ଭୀଷ୍ମପଞ୍ଚକ, ଦୁର୍ଗା-ଷ୍ଟମୀ ଓ ଶିବରାତ୍ରି । ନାରୀମାନେ କୃଷ୍ଣ-ଗୌରୀ ଓଷା, ମଙ୍ଗଳବାର ଓଷାଭଳି ଓଷାମାନ ପାଳନ କରୁଥିଲେ । କାର୍ତ୍ତିକ ପୂର୍ଣ୍ଣିମା, କୁମାର ପୂର୍ଣ୍ଣିମା, ଚନ୍ଦନଯାତ୍ରା, ରଥଯାତ୍ରା ଓ ପୁଷ୍ୟାଭିଷେକ ପ୍ରଧାନ ପର୍ବ ଦିବସ ଥିଲି ।

## ୨. କ୍ରିଡ଼ା-ବିନୋଦ

କ୍ରୀଡ଼ା ବ୍ୟକ୍ତିତ୍ୱ ବିକାଶର ପ୍ରଧାନ ସହାୟକ । ଏହା ମାନବକୁ କର୍ମକ୍ଷମ କରାଏ । (୮୫) ସମାଜର ସୁସ୍ଥତା ସଂପାଦନ ଦିଗରେ ଏହାର ଦାନ ମହତ୍ତ୍ୱପୂର୍ଣ୍ଣ । ଧର୍ମ, ଶିକ୍ଷା, ସ୍ୱାସ୍ଥ୍ୟ ଓ କର୍ମ ଭଳି କ୍ରୀଡ଼ା ମଧ୍ୟ ବ୍ୟକ୍ତିତ୍ୱବିକାଶର ଏକ ମାଧ୍ୟମ । ସମାଜରେ ଏହା ପ୍ରାଣ-ପ୍ରାଚୁର୍ଯ୍ୟ ଆନୟନ କରେ । (୮୬) କ୍ରୀଡ଼ା ସମାଜରେ ଏକ ସାର୍ବଜନୀନ ବସ୍ତୁ । ଚରିତ୍ର-ଗଠନ ପାଇଁ ଏହାର ଆବଶ୍ୟକତା ରହିଛି । (୮୭) ସାରଳା ଦାସଙ୍କ ମହାଭାରତରେ କେତେକ କ୍ରୀଡ଼ା-ବିନୋଦର ଚିତ୍ର ପରିଦୃଷ୍ଟ ହୁଏ ।

### (କ) ପଶାଖେଳ

ଅକ୍ଷକ୍ରୀଡ଼ା ଏକ ମହାଭାରତୀୟ ବିଳାସ । ସଂସ୍କୃତ ମହାଭାରତରେ- ଅଛି ଯେ, ଦୁର୍ଯୋଧନ ଓ ଯୁଧିଷ୍ଠିରଙ୍କ ମଧ୍ୟରେ ଅକ୍ଷକ୍ରୀଡ଼ା ହୋଇଥିଲି । (୮୮) ବିଷ୍ଣୁପୁରାଣରେ କଳିଙ୍ଗରାଜା ଅନ୍ୟାନ୍ୟ ରାଜାମାନଙ୍କ ସହ ମିଳିତ ହୋଇ ଅକ୍ଷ-କ୍ରୀଡ଼ାରେ ବଳରାମଙ୍କୁ ପରାଜିତ କରିଥିଲେ ବୋଲି କୁହାଯାଇଅଛି । (୮୯) ଆଲ୍‌ବିରୁଣୀ ଏହି କ୍ରୀଡ଼ା ତାଙ୍କ ସମୟର ଭାରତବର୍ଷରେ ପ୍ରଚଳିତ ଥିଲି ବୋଲି ଦର୍ଶାଇଅଛନ୍ତି । (୯୦) ଆକବରଙ୍କ କାଳରେ ପଶାଖେଳର ପ୍ରଭୂତ ପ୍ରଚଳନ ଥିବାର ଜଣାଯାଏ । (୯୧)

ପଞ୍ଚଦଶ ଶତାବ୍ଦୀର ରାଜାମାନଙ୍କ ସମାଜରେ ଏହି ଅକ୍ଷକ୍ରୀଡ଼ା ଥିଲା ପ୍ରଧାନ ବ୍ୟସନ । ସାରଳା ଦାସ ଲେଖିଛନ୍ତି ଯେ, ଶକୁନି ଦଶୋକାଠି ଧରି ନିଜେ ନିଜେ ଖେଳୁଥିଲେ । ଯୁଧିଷ୍ଠିର ତାହା ଦେଖି ଖେଳିବାକୁ ଆଗ୍ରହ ପ୍ରକାଶ କଲେ ଏବଂ ଅଣ୍ଟାରୁ ଖଡ଼ି ବାହାର କରି ପଶାପାଲିଟିଏ କାଟିଲେ । ଦୁର୍ଯ୍ୟୋଧନ ଶକୁନିଙ୍କୁ ପଛକୁ ହଟାଇ ଦେଇ ନିଜେ ଖେଳିବସିଲେ । ଯୁଧିଷ୍ଠିର 'ପଣଜା' ରଖିବାକୁ କହିବାରୁ ଦୁର୍ଯ୍ୟୋଧନ ନିଜର ଅଳଙ୍କାରକୁ ପଣଜାରୂପେ ରଖିଲେ । (୯୨) ମୂଳ ମହାଭାରତରେ କଥାଟି ଭିନ୍ନ । ସେଠାରେ କୁହାଯାଇଛି ଯେ, ଶକୁନିଙ୍କ ପରାମର୍ଶକ୍ରମେ ଧୃତରାଷ୍ଟ୍ରଙ୍କ ଅନୁମତି ସହ ଦୁର୍ଯ୍ୟୋଧନ ଯୁଧିଷ୍ଠିରଙ୍କୁ ଅକ୍ଷକ୍ରୀଡ଼ା ପାଇଁ ନିମନ୍ତ୍ରଣ କରି ଆଣିଥିଲେ । (୯୩)

କବି କହିଛନ୍ତି ଯେ, ଯୁଧିଷ୍ଠିର ବିରାଟପୁରରେ ବିରାଟଙ୍କ ସହ ପ୍ରତ୍ୟହ ଅକ୍ଷକ୍ରୀଡ଼ା କରୁଥିଲେ । (ବି. ୬୫ ପୃ) ନଳରାଜା ନିଜର ପତ୍ନୀଙ୍କ ସହ ପ୍ରତ୍ୟହ ପଶାଖେଳରେ ରତ ହେଉଥିଲେ । ସେ ପୁଷ୍କରଙ୍କ ସହ ପଶା ଖେଳି ରାଜ୍ୟ ହରାଇ ଥିଲେ । (ବ. ୨୪୭ ପୃ) ଶ୍ରୀକୃଷ୍ଣ ପଶାଖେଳରେ ରତଥିବାବେଳେ ଦ୍ରୌପଦୀଙ୍କର ଆହ୍ୱାନ ଶ୍ରବଣ କରିପାରିଥିଲେ । (ସ. ୩୨୭ ପୃ)

ବିଶ୍ୱନାଥ କବିରାଜଙ୍କ 'ସାହିତ୍ୟ-ଦର୍ପଣ' (୯୪) ଓ ଭକ୍ତକବି ଜଗନ୍ନାଥ ଦାସଙ୍କ ମହାଭାରତରେ ପଶାଖେଳର କଥା ରହିଛି । (୯୫)

## (ଖ) ଝିମାଣି ଖେଳ

ଝିମାଣି ବା ଡୁଡୁ ଖେଳ ସେ କାଳରେ ପ୍ରଚଳିତ ଥିଲା । ଏଭଳି କି ରାଜପୁତ୍ରମାନେ ଏହି ଖେଳ ଖେଳୁଥିଲେ । ସାରଳା ଦାସ ବର୍ଣ୍ଣନା କରିଅଛନ୍ତି ଯେ, କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ଏହି ଖେଳ ହୋଇଥିଲା ।

"ଇନ୍ଦ୍ରପ୍ରସ୍ଥ ଆଖଡ଼ାରେ ହୋଇ କୁତୂହଳ
ଭିଆଇଲେ ସେ ଝିମାଣି ନାମେ ଏକ ଖେଳ ।
ଯୁଧିଷ୍ଠିର ଦୁର୍ଯ୍ୟୋଧନ ହେଲେ ମୂଳ ଗଣ୍ଡି
ଭୀମ ଦୁଃଶାସନ ଧରି କାଠି ଖଣ୍ଡି ଖଣ୍ଡି ।
କର୍ଣ୍ଣ ଅର୍ଜ୍ଜୁନ ଏ ଦୁହେଁ ଗଲେ ଏକଯୋଗେ
ଦୁଃଶାସନ ପଡ଼ିଲେ ଏ ଦୁର୍ଯ୍ୟୋଧନ ଭାଗେ ।" (ଆ. ୧୨୪ ପୃ)

ଓଡ଼ିଶାରେ ଏବେ ବି କହନ୍ତି—ଝିମାଣି ଖେଳରୁ ମହାଭାରତ ଜାତ । ବର୍ତ୍ତମାନ ମଧ୍ୟ ଓଡ଼ିଶାର ଗାଁଗହଳରେ ଏହା ଏକ ଜନପ୍ରିୟ କ୍ରୀଡ଼ା ।

## (ଗ) ନାଟଖେଳ

ସାରଳାଙ୍କ ଯୁଗରେ ବାଳକମାନଙ୍କ ମଧ୍ୟରେ ନାଟଖେଳ ( ଶର ବା କାଣ୍ଡର ଖେଳ ) ବଡ଼ ପ୍ରିୟ କ୍ରୀଡ଼ା ଥିଲା । ରାଜପୁତ୍ରଗଣ ମଧ୍ୟ ଏହି କ୍ରୀଡ଼ାକୁ ଭଲ ପାଉଥିଲେ । ଦୁର୍ଯ୍ୟୋଧନ ପ୍ରମୁଖ ନାଟଖେଳ ଖେଳିବା, ନାଟକୂପରେ ପତିତ ହେବା, ଦ୍ରୋଣାଚାର୍ଯ୍ୟ ମନ୍ତ୍ରବଳରେ ନାଟକୁ ଉପରକୁ ଆଣିବା ବୃତ୍ତାନ୍ତ କବି-ଲେଖମାରେ ବିବୃତ । (୯୬) କବି କହିଅଛନ୍ତି ଯେ, ହିମାଳୟଙ୍କ ପୁତ୍ର ଚନ୍ଦ୍ରଧ୍ୱଜ ଓ ଶିବଙ୍କ ପୁତ୍ର କାର୍ତ୍ତିକକୁମାର ପିଲାଦିନରେ ନାଟ ଖେଳୁଥିଲେ । (ବ. ପୃ ୨୬)

## (ଘ) ଧୂଳିଖେଳ

ସେ କାଳର ଶିଶୁମାନେ ଧୂଳିଖେଳରେ କାଳ ଅତିବାହିତ କରୁଥିଲେ । ସାରଳା ଦାସ ବର୍ଣ୍ଣନା କରିଅଛନ୍ତି ଯେ ପାର୍ବତୀ, ବେଦପୁର ଗ୍ରାମର ବାଳିକାଗଣ ଓ କୁଶବତୀ ପାଟଣାର ଅଷ୍ଟକନ୍ୟା ଧୂଳିଖେଳରେ ରତ ଥିଲେ ।

"ଜମ୍ବୁଦ୍ୱୀପ ଭରତଖଣ୍ଡ ଓଡ଼ୁରାଷ୍ଟ୍ର ମଣ୍ଡଳେ
ବ୍ରହ୍ମାଙ୍କର କୁଶସ୍ଥଳୀ ବୈତରଣୀକୂଳେ ।
ବେଦପୁର ବୋଲି କରି ଏକଇ ଶାସନ
ତହିଁ ଲକ୍ଷେବାଆସ୍ତର ଥାନ୍ତି ମହାଜନ ।
ସେହି ନଗର-ନିବାସୀ ଆଠଗୋଟି ବାଳୀ
ବୟସ ଧର୍ମରେ ସର୍ବେ ଧୂଳିଖେଳ ଖେଳି ।
× × ×
ପାର୍ବତୀ ବୋଲନ୍ତି ଏହା ବାଲ୍ୟକାଳ ଖେଳ
ଏ ଖେଳ ଖେଳନ୍ତି ସଦା କୁମାରୀ ସକଳ ।
ପିତାଙ୍କ ଗୃହରେ ଆମ୍ଭେ ଥିଲୁ ଯେତେବେଳେ
ଏହି ଖେଳ ଖେଳୁଥିଲୁ କୁମାରୀଙ୍କ ମେଳେ ।" (ଉ. ପୃ ୫୨)
"ବାଲିଘର ଗୋଟିଏକ ନଦୀକୂଳେ କରି
ତହିଁ ଖେଳୁଥିଲେ ବସି ଆଠୋଟି କୁମାରୀ ।

କୁନ୍ଦ ଝୋକାଇ କୁଣ୍ଢାଇ ଆଣି ଖେଳ ଖେଳ
କୁଣ୍ଢାଇ କ ବସ୍ତ୍ର କରି ଦ୍ୟନ୍ତ ହୁଳହୁଳ ।" (୯୭)

ହରିବଂଶ ମହାକାବ୍ୟରେ ଗୋପୀମାନେ କୁମାରୀ ଅବସ୍ଥାରେ ବାଲିରେ କ୍ରୀଡ଼ା କରୁଥିଲେ ବୋଲି ଉକ୍ତ ଅଛି । (୯୮)

## (ଡ) ଶିକାର

କ୍ଷତ୍ରିୟ ରାଜାମାନଙ୍କ ମଧ୍ୟରେ ଶିକାର ଏକ ପ୍ରଧାନ ବ୍ୟସନ । ପ୍ରାଚୀନ କାଳରେ ରାଜାମାନେ ଶିକାର ପାଇଁ ବନକୁ ଗମନ କରୁଥିଲେ । ତାହା ସେମାନଙ୍କର ବୀରତ୍ୱ, ସାହସ ଓ ଲକ୍ଷ୍ୟସିଦ୍ଧିର ପରିଚୟ ପ୍ରଦାନ କରୁଥିଲା । ସାରଳା ଦାସଙ୍କ ଯୁଗରେ ରାଜାମାନେ ମଧ୍ୟେ ମଧ୍ୟେ ଶିକାର ଉଦ୍ଦେଶ୍ୟରେ ବନଗମନ କରୁଥିବାର ଜଣାଯାଏ । ସାରଳା ଦାସ ଲେଖିଅଛନ୍ତି ଯେ, ଭାଗ୍ୟବାନ ନାମକ ରାଜା ପ୍ରଜାପାଠକ ଓ ନିଯୋଗମାନଙ୍କୁ ନେଇ ପାରିଧି ନିମିତ୍ତ ବନଭୂମିକୁ ଗମନ କରିଥିଲେ । (ଆ. ପୃ ୧୭୭) ଯଶୋବନ୍ତ ନଗରର ରାଜା ଚକ୍ରାଙ୍କୁରଙ୍କ ପୁତ୍ର ଚନ୍ଦ୍ରଧ୍ୱଜ ସୈନ୍ୟସାମନ୍ତ ସହ ମୃଗୟା କରିବାକୁ ଯାଇଥିଲେ । (୯୯) ଭୀଷ୍ମ ଯୁଧିଷ୍ଠିରଙ୍କୁ ପାରିଧିରେ ବହିର୍ଗତ ହେବାକୁ ପରାମର୍ଶ ଦେଇଥିଲେ ।

"ପାରିଧିକ ଏକାବେଳେ ନ ଛେଳିବୁ ରାଜା
ଦେବତା ବ୍ରାହ୍ମଣ ନିତ୍ୟ କରୁଥିବୁ ପୂଜା ।" ( ଶା. ପୃ ୨ )

## (ଚ) ମାଲ-ଲଢ଼େଇ

ମଲ୍ଲଯୁଦ୍ଧ ବା ମାଲ-ଲଢ଼େଇ ସେ ଯୁଗର ଅନ୍ୟତମ ରାଜକୀୟ ବିଳାସ । ପ୍ରାଚୀନ ଯୁଗରେ ଏହାର ପ୍ରଚଳନ ଥିବା କଥା ସଂସ୍କୃତ ମହାଭାରତରୁ ଅବଧାରିତ ହୁଏ । ମହାଭାରତରେ ଜୀମୂତମଲ୍ଲଙ୍କ ସହ ଭୀମସେନଙ୍କର ମଲ୍ଲଯୁଦ୍ଧ ହେବାର ଦୃଶ୍ୟ ନିହିତ । (୧୦୦) ସାରଳା ଦାସଙ୍କ କାଳରେ ମାଲ-ଲଢ଼େଇ ପ୍ରଚଳିତ ଥିଲା । ସେ ଭୀମସେନ ଓ ପ୍ରଦେଶୀ ମଲ୍ଲଙ୍କ ଲଢ଼େଇ ବର୍ଣ୍ଣନା କରିଅଛନ୍ତି ।

"ଭୁଜେ ଭିଡ଼ାଭିଡ଼ି ପାଦେ କରି ଛନ୍ଦାଛନ୍ଦ
ଭୁଜେ ପରିତାଳ ପାଦେ ପାଦ କଲା ବନ୍ଦୀ ।
ହୃଦେ ହୃଦ ମାରି ଭୀମ ଭୁଜେ ଭୁଜ ତାଡ଼ି
ଶିରେ ଶିର ପଟେତାଳ ଅଷ୍ଟା ପ୍ରତି ମାଡ଼ି ।" (ବି. ପୃ. ୪୮ )

ବ୍ୟାଘ୍ର-ହସ୍ତୀ ଓ ବ୍ୟାଘ୍ର-ମହିଷର ଲଢ଼େଇ ସେ ଯୁଗର ଅନ୍ୟତମ ବିଳାସ ଥିଲା । କବି ଲେଖିଅଛନ୍ତି ଯେ, ଜାରା ନାମକ ଏକ ଶବର ଆଣିଥିବା ଏକ ବ୍ୟାଘ୍ର ସହ ଗୋଟିଏ ହସ୍ତୀର ଲଢ଼େଇ ବିରାଟଙ୍କ ରାଜସଭାରେ ପ୍ରଦର୍ଶିତ ହୋଇଥିଲା । ବ୍ୟାଘ୍ରଟି ସହ ଭୀମସେନ ମଧ୍ୟ ଲଢ଼େଇ କରିଥିଲେ । (ବି. ପୃ. ୩୩-୩୪)

## (ଛ) ଜଳକ୍ରୀଡ଼ା

ପଞ୍ଚଦଶ ଶତାବ୍ଦୀରେ ନାରୀଗଣ ମଧ୍ୟେ ମଧ୍ୟେ ସମ୍ମିଳିତ ହୋଇ ଜଳ-କ୍ରୀଡ଼ାରେ ନିମଜ୍ଜିତ ହେଉଥିଲେ । ଏହା ସେମାନଙ୍କର ଏକ ବିଳାସ ଥିଲା । କବି ବର୍ଣ୍ଣନା କରିଅଛନ୍ତି ଯେ, ଦ୍ୱାରକାର ଅଷ୍ଟପାଟବଂଶୀ, ରେବତୀ, ସୁଭଦ୍ରା ଓ ଷୋଡ଼ଶ-ସହସ୍ର କନ୍ୟା ଏକତ୍ର ଜଳକ୍ରୀଡ଼ା କରିଥିଲେ ।

"ସମସ୍ତ କନ୍ୟା ହୋଇଣ ଚଳିଁ ଏକମେଳ
କ୍ରୀଡ଼ା କରନ୍ତି ଏକକୁ ଆର ଶିର ତୋଳ ।
ଜଳ ଅର୍ଦ୍ଧଂନା ସହିତ ଚତୁଃସମ ଗୋଳ
ପରିହାସରେ ହସନ୍ତି ସର୍ବେ ବୋଳାବୋଳ ।
କେ ଜଳ ଭିତରେ ଥାଇ ଜଳ ଫିଙ୍ଗି ଦିଅନ୍ତି
କେହି ବୁଡ଼ି ଯାଇ କାହା ଗୋଡ଼କୁ ଧରନ୍ତି ।" (୧୦୧)

ଲୋକେ ସେ ଯୁଗରେ ନୌକାବିହାର ମଧ୍ୟ କରୁଥିଲେ । ତାହାର କେତେକ ଦୃଷ୍ଟାନ୍ତ ସାରଳାଙ୍କ ବର୍ଣ୍ଣନାରୁ ଦିଆଯାଇପାରେ । ବସନ୍ତୋତ୍ସବ କାଳରେ ଶ୍ରୀକୃଷ୍ଣ ଅନ୍ୟମାନଙ୍କ ସହ ନୌକାବିହାର କରିଥିଲେ । (୧୦୨) ବିରାଟପୁରରେ ଚନ୍ଦନଯାତ୍ରା କାଳରେ କୀଚକ ପ୍ରଭୃତି ନୌକାବିହାରରେ ରତ ଥିଲେ । (ବି. ପୃ ୫୫) 'କଳସା ଚଉତିଶା'ରେ କାଦ ବା ନାବ ଖେଳର କଥା ଅଛି । (୧୦୩) ଜଗନ୍ନାଥ ଦାସଙ୍କ ମହାଭାରତରେ ନୌକାବିହାରର ବର୍ଣ୍ଣନା ମିଳେ ।

"ପାର୍ଥିକୁ ଘେନି ବଳଦେବ ।
କ୍ରୀଡ଼ା କରନ୍ତି ବସି ନାବ ।" (୧୦୪)

## (ଜ) ବନବିହାର

ସାରଳା ଦାସଙ୍କ ଯୁଗରେ ଲୋକେ ସାମୟିକଭାବେ ବନବିହାରରେ ନିର୍ଗତ ହେଉଥିଲେ । କବିଙ୍କ ବର୍ଣ୍ଣନାରେ ଏହାର ଚିହ୍ନ ମିଳେ । ସେ ଯୁଗର

ନାରୀମାନେ ମଧ୍ୟ ପତିଙ୍କ ସହ ବନବିହାର କରୁଥିଲେ । କବି କହନ୍ତି ଯେ, କୁନ୍ତୀ ଓ ମାଦ୍ରୀ ପଣ୍ଡୁଙ୍କ ସହ ବନବିହାର କରୁଥିଲେ । (ଆ. ପୃ୪୭) ପାର୍ବତୀ ଶିବଙ୍କ ସହ ବନଭ୍ରମଣ କରୁଥିବାବେଳେ ଗୋରୁଦ୍ୟମାନା ବରୁଣ-ପତ୍ନୀଙ୍କୁ ଭେଟିଥିଲେ । (ମ. ପୃ ୨୧୩) ଅପ୍ସରାମାନେ ବନବିହାରଛଳରେ ଆସି ନୃତ୍ୟଗୀତଦ୍ୱାରା ତପସ୍ୟା-ନିରତ ବ୍ରହ୍ମାଙ୍କୁ ଆକୃଷ୍ଟ କରୁଥିଲେ । (ସ. ପୃ୨୯୭)

ପ୍ରାଚୀନ କାଳରେ ନାରୀମାନେ ଏତାଦୃଶ ବିନୋଦ କରୁଥିବା କଥା ଅନ୍ୟ କେତେକ ଲେଖାରୁ ଅବଧାରିତ ହୁଏ । ବିଶ୍ୱନାଥ କବିରାଜଙ୍କ 'ଚନ୍ଦ୍ରକଳା' ନାଟକରେ ବର୍ଣ୍ଣିତ ଅଛି ଯେ, ପାଣ୍ଡ୍ୟ-ରାଜାଙ୍କ କନ୍ୟା ଚନ୍ଦ୍ରକଳା ସଖୀମାନଙ୍କ ସହ ବନବିହାର କରୁଥିବାବେଳେ ଜନୈକ ଶବର ତାଙ୍କୁ ଧରିନେଇଯାଇଥିଲା । (ପୃ୫୪) କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ-ନାୟିକା ଲାବଣ୍ୟବତୀ ସଖୀମାନଙ୍କ ସହ ଉପବନରେ ବିହାର କରୁଥିଲେ । (୧୦୫)

ଉପରୋକ୍ତ ଆଲୋଚନାରୁ ପ୍ରତିପାଦିତ ହୁଏ ଯେ, ଓଡ଼ିଶାରେ କ୍ରୀଡ଼ା-କୌତୁକ ମଧ୍ୟରେ ମୁଖ୍ୟ ଥିଲା—ପଶାଖେଳ, ନାଟଖେଳ, ଝିମାଣିଖେଳ, ଶିକାର, ମଲ୍ଲଯୁଦ୍ଧ, ବ୍ୟାଘ୍ର-ହସ୍ତୀ ଯୁଦ୍ଧ, ବ୍ୟାଘ୍ର-ମନୁଷ୍ୟ ଯୁଦ୍ଧ, ଧୂଳିଖେଳ, ନୌକାବିହାର, ବନବିହାର ଓ ଜଳକ୍ରୀଡ଼ା ।

## ୩ । ପ୍ରସାଧନ

ଅଙ୍ଗ-ପ୍ରତ୍ୟଙ୍ଗ ତଥା କେଶ-ପ୍ରସାଧନ ଭାରତୀୟ ସମାଜରେ ଏକ ପ୍ରାଚୀନ କଥା । ରାମାୟଣରେ କଙ୍କୁକ (୧୦୬), ଅଲକ୍ତକ (୧୦୭), ଚନ୍ଦନ (୧୦୮), ପୁଷ୍ପମାଲ୍ୟ (୧୦୯) ଓ ଅଙ୍ଗରାଗର (୧୧୦) ଉଲ୍ଲେଖ ଦେଖାଯାଏ । ବିଷ୍ଣୁପୁରାଣରେ ସୁଗନ୍ଧମୟ ଅନୁଲେପନ (୧୧୧) ଓ ଅଞ୍ଜନର (୧୧୨) ବର୍ଣ୍ଣନା ମିଳେ । କାଳିଦାସଙ୍କ ମେଘଦୂତରେ ଅଙ୍ଗରାଗ (୧୧୩) ଓ କେଶ-ପ୍ରସାଧନର କଥା (୧୧୪) ଅଛି । ଭାଗବତରେ ନାରୀଗଣ ସ୍ତନରେ କୁଙ୍କୁମ ଲଗାଇବା ବିଷୟ ନିହିତ । (୧୧୫) ସାରଳା ଦାସଙ୍କ ମହାଭାରତରୁ ପଞ୍ଚଦଶ ଶତାବ୍ଦୀରେ ପ୍ରଚଳିତ ପ୍ରସାଧନ-ପ୍ରକ୍ରିୟାର ପରିଚୟ ମିଳେ ।

### (କ) କେଶପ୍ରସାଧନ

ପଞ୍ଚଦଶ ଶତାବ୍ଦୀରେ ଉତ୍କଳୀୟ ନାରୀଗଣ କେଶପ୍ରସାଧନରେ ଖୁବ୍ ଯତ୍ନଶୀଳ ଥିବାର ଜଣାଯାଏ । କବି କହିଅଛନ୍ତି ଯେ, ଦ୍ରୌପଦୀ ବିବାହକାଳରେ କେଶପ୍ରସାଧନ କରିଥିଲେ ।

"ଆଳଟ ଢାଳ ଶୁଖାନ୍ତ ଚିରନ୍ତ ତା କେଶ
ପରିଧାନ କରନ୍ତ ସରୁ କ୍ଷୀନବାସ ।
ଜାଇ ଯୂଈ ମଲ୍ଲୀମାଳ ସେବତୀ ପାଟୁଳି
ମାଳତୀ କୁସୁମ ଦେଇ ବାନ୍ଧନ୍ତ ତା ଜୂଡ଼ା ।
ସୁଗନ୍ଧ ଗନ୍ଧ ଲଗାଇ ସାଜିଲେ କବରୀ
ମୁକୁତାର ଜାଲ ଖୋଷା ଖୋଷି ଯତ୍ନ କରି ।
ନାନାଦି କୁସୁମ ଖଞ୍ଜି ବାନ୍ଧିସାରି କେଶ
ଗନ୍ଧଲୋଭରେ ଭ୍ରମରେ ନ ଛାଡ଼ନ୍ତ ପାଶ ।" (ଆ· ପୃ୨୫୧)

'ରୁଦ୍ରସୁଧାନିଧି'ରେ ଗଭାମଣ୍ଡନ (୧୧୬), 'ଦମବତୀ'ରେ କବରୀସଜ୍ଜା (୧୧୭) ଓ 'କଳ୍ପଲତା'ରେ ଜୂଡ଼ାବନ୍ଧା (୧୧୮)ର ଚିତ୍ର ଅଙ୍କିତ ।

ସେତେବେଳେ ପୁରୁଷମାନେ ମଧ୍ୟ ନାରୀମାନଙ୍କ ଭଳି କେଶ-ପ୍ରସାଧନ କରୁଥିଲେ । ବେଶ୍ୟା ମୁଦ୍‌ଗୁଲ ବ୍ରାହ୍ମଣର କେଶ ପ୍ରସାଧନ କରିବା (୧୧୯), ଦୁର୍ଯୋଧନ ଶକୁନିଙ୍କର କେଶ ସଜାଇବା (ଆ. ପୃ୧୩୮), ଶ୍ରୀକୃଷ୍ଣ ଦ୍ୱାରକାରେ ଅର୍ଜ୍ଜୁନଙ୍କର ଗଭା ବାନ୍ଧିବା (ମ. ପୃ ୧୧୦), ସହଦେବ ବିରାଟଙ୍କ ସଭାକୁ ଜୂଡ଼ା ପକାଇ ଯିବା (୧୨୪), ଅର୍ଜ୍ଜୁନ ବିରାଟଙ୍କ ସମୀପକୁ କବରୀ ଓ ଖୋଷାସହ ଯାତ୍ରା କରିବା (ବି. ପୃ୧୨) ବୃତ୍ତାନ୍ତରୁ ଏହା ପ୍ରତିପାଦିତ ହୁଏ ।

'ଦାଣ୍ଡି ରାମାୟଣ'ରେ କବି ଲେଖିଛନ୍ତି ଯେ ଶ୍ରୀରାମ ବରବେଶ ହେଲା-ବେଳେ ତାଙ୍କର ଗଭା ମଣ୍ଡନ କରାଯାଇଥିଲା । (୧୨୧)

## (ଖ) ଅଙ୍ଗପ୍ରସାଧନ

ସେ କାଳରେ ନରନାରୀଗଣ ଦେହରେ ଅଙ୍ଗରାଗର ବ୍ୟବହାର କରୁଥିଲେ । ସାରଳା ଦାସ ଲେଖିଛନ୍ତି ଯେ, ବ୍ୟାସଦେବ ଅମ୍ବାଳିକାଙ୍କ ସମୀପକୁ ଗଲାବେଳେ ଚନ୍ଦନ, ଅଗୁରୁ ଓ କସ୍ତୁରୀ ଆଦି ସୁଗନ୍ଧି ଦ୍ରବ୍ୟ ସ୍ୱ ଶରୀରରେ ଲେପନ କରିଥିଲେ । (ଆ. ପୃ୩୧) ଇନ୍ଦ୍ର ମୃଗନାଭି କସ୍ତୁରୀ ବୋଳି ହୋଇ କୁନ୍ତୀଙ୍କ ସମୀପକୁ ଆଗମନ କରିଥିଲେ । (ଆ. ପୃ୭୨) ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କ ଶରୀରରେ ଚନ୍ଦନ ଓ କସ୍ତୁରୀ ଲେପନ କରିଥିଲେ । (ମ. ପୃ୧୧୦) କାମିନୀ ଓ କାମସେଣା ଆଦି ଅପ୍ସରାଗଣ ସ୍ନାନ ପରେ ଦେହରେ କୁଙ୍କୁମ ବୋଳିହୋଇଥିଲେ । (ସ. ପୃ୨୪୯)

ବିବାହକାଳରେ ଦ୍ରୌପଦୀଙ୍କ ଶରୀରରେ ସୁଗନ୍ଧ ଦ୍ରବ୍ୟ ଓ ପାଣ୍ଡବଙ୍କ ଶରୀରରେ କୁଙ୍କୁମ-କର୍ପୂର ଲେପନ କରାଯାଇଥିଲା । (ଆ· ପୃ୩୧୦) ଉତ୍ତରାଙ୍କ ଶରୀରରେ ବିବାହକାଳରେ ହଳଦୀ ଓ ଚନ୍ଦନ ଲେପନ କରାଯାଇଥିଲା । (ବି· ପୃ୧୮୪)

'ରାମବିଭା' କାବ୍ୟରେ ଶ୍ରୀରାମ ତଥା ସୀତାଙ୍କ ଶରୀରରେ କର୍ପୂର, କସ୍ତୁରୀ ଓ ଚନ୍ଦନ ବୋଳା ହେବା କଥା ଅଛି । (୧୨୨) 'ଦାଣ୍ଡି ରାମାୟଣ'ରେ ସୀତାଙ୍କ ଦେହରେ ଚତୁଃସମ (୧୨୩) ଓ ଶ୍ରୀରାମଙ୍କ ଦେହରେ ଚନ୍ଦନ, କର୍ପୂର ଓ ଚତୁଃସମ ଲେପନ କରାହେବା କଥା କୁହାଯାଇଅଛି । (୧୨୪)

ଆଖିରେ କଜ୍ଜ୍ୱଳ, କପାଳରେ କୁଙ୍କୁମ ବା ସିନ୍ଦୂର, ପାଦରେ ଅଲକ୍ତକ-ରାଗ ଥିଲା ସେକାଳର ଓଡ଼ିଆ ନାରୀର ସାଧାରଣ ପ୍ରସାଧନ । ପାର୍ବତୀଙ୍କ ବେଶ-ବର୍ଣ୍ଣନା ପ୍ରସଙ୍ଗରେ କବି ଅଞ୍ଜନରେଖା, ଅଲକ୍ତକରାଗ ଓ କୁଙ୍କୁମର ଉଲ୍ଲେଖ କରିଅଛନ୍ତି ।

"ନୟନେ ଅଞ୍ଜନ-ଲଞ୍ଜ ପାଦରେ ଅଳତା
ନବବସନ କୁଙ୍କୁମ ଭୁଜେ ସୁନାସୂତା ।" (ଆ· ପୃ୧୮)

ସତୀ ସ୍ତ୍ରୀ ଉପାଖ୍ୟାନରେ କୁଙ୍କୁମ, ଅଳତା ଓ ସୁବାସିତ ତୈଳର ଉଲ୍ଲେଖ ମିଳେ । (ବ. ପୃ୨୮୪) ଚନ୍ଦ୍ରାବତୀ ପରିଣୟ ଦୃଶ୍ୟରେ ଲଲାଟରେ ସିନ୍ଦୂର ଲଗାଇବା କଥାର ଉଲ୍ଲେଖ ଦେଖାଯାଏ । (୧୨୫) 'ରାମବିଭା' କାବ୍ୟରେ ସୀତାଙ୍କ ବେଶବିନ୍ୟାସକ୍ରମରେ କଜ୍ଜ୍ୱଳ (ପୃ୮୦) ଓ 'ଦାଣ୍ଡି ରାମାୟଣ'ରେ ସିନ୍ଦୂର, କଜ୍ଜ୍ୱଳ ତଥା ଅଳତାର କଥା ରହିଅଛି । (୧୨୬)

ଉପରୋକ୍ତ ଆଲୋଚନାରୁ ପ୍ରତିପାଦିତ ହୁଏ ଯେ, ପଞ୍ଚଦଶ ଶତାବ୍ଦୀର ନରନାରୀ ଉଭୟ ପ୍ରସାଧନରତ ଥିଲେ । ପ୍ରସାଧନର ସାମଗ୍ରୀ ଥିଲା—ପୁଷ୍ପ, ଚନ୍ଦନ, କର୍ପୂର, ସିନ୍ଦୂର, କୁଙ୍କୁମ, ଅଳତା, କସ୍ତୁରୀ, ଅଗୁରୁ, ହଳଦୀ ଓ ସୁଗନ୍ଧ ତୈଳ । ପୁରୁଷ ତଥା ନାରୀ ଉଭୟେ ମୁଣ୍ଡରେ ଜୁଡ଼ା ପକାଉଥିଲେ ।

## ୪ । ରାଜ୍ୟଶାସନ

ସମାଜ-ଅଧ୍ୟୟନକ୍ଷେତ୍ରରେ ରାଜନୀତି ଓ ରାଜ୍ୟଶାସନ ସମ୍ବନ୍ଧୀୟ ତତ୍ତ୍ୱ ମାନଙ୍କର ବହୁତ ମହତ୍ତ୍ୱପୂର୍ଣ୍ଣ । ବିକାଶପ୍ରାପ୍ତ ସମାଜରେ ଗୋଟିଏ ଦୃଢ଼ ଶାସନ-ସଂସ୍ଥା ଥାଏ । ଶାସନ ସମ୍ବନ୍ଧୀୟ ସମସ୍ୟା ଏତେ ଜଟିଳ ଯେ ତାହାର ବିଚାର ପାଇଁ ଗୋଟିଏ ସ୍ୱତନ୍ତ୍ର ବିଜ୍ଞାନର ଦରକାର ପଡ଼େ । ସମାଜ-ଦର୍ଶନରେ କେବଳ କେତେକ ସାଧାରଣ କଥାର ଆଲୋଚନା କରାଯାଇଥାଏ । (୧୨୭)

## (କ) ପ୍ରଜାପାଳନ

ଭାରତୀୟ ରାଜନୀତିରେ ପ୍ରଜାପାଳନ ଯୁଗ ଯୁଗ ପ୍ରମୁଖ ସ୍ଥାନ ଅଧିକାର କରିଆସିଅଛି । ଶୁକ୍ରନୀତିରେ ଅଛି—ପ୍ରଜାପାଳନ ଓ ଦୁଷ୍ଟ-ଦମନ ରାଜାର ପରମ ଧର୍ମ; ଏହି ଦୁଇଟିକୁ ଛାଡ଼ି ରାଜା ରହିପାରନ୍ତି ନାହିଁ । (ପୃ୨) ସାରଳା ଦାସଙ୍କ ମହାଭାରତରୁ ଜଣାଯାଏ ଯେ, ତାଙ୍କ କାଳରେ ପ୍ରଜାପାଳନ ଶାସନତନ୍ତ୍ରର ମୂଳ ଧର୍ମ ଥିଲା । ଯୁଧିଷ୍ଠିର ପରୀକ୍ଷିତଙ୍କୁ ଉପଦେଶ ଛଳରେ ତେଣୁ କହିଥିଲେ— ପ୍ରଜାପାଳନ କଲେ ରାଜାର ଆୟୁଷ ବୃଦ୍ଧି ହୁଏ, ଇନ୍ଦ୍ର ସୁବୃଷ୍ଟି କରନ୍ତି ଓ ରାଜକୋଷ ପରିପୂର୍ଣ୍ଣ ରହେ । (ସ୍ୱ. ପୃ୨) ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କୁ ସେହି ମର୍ମରେ ଉପଦେଶ ଦେଇଥିଲେ ।

> "ବାରୁ ତପତ ପବନ ଶୀତ ବୃଷ୍ଟି ସହି
> ଯେ ରାଜ୍ୟ ପାଳଇ ତାକୁ ଧନ୍ୟ ଧନ୍ୟ କହି ।" (ଆ.ଶ୍ର.ପୃ୪୫)

ଭୀଷ୍ମ ଯୁଧିଷ୍ଠିରଙ୍କୁ ପ୍ରଜାପାଳନର ଯେଉଁ ମୂଳ ମନ୍ତ୍ର ବୁଝାଇଥିଲେ, ତାହା ସେ ଯୁଗର ଆଦର୍ଶର କେତେକ ବଶିଷ୍ଟ ଦିଗର ସୂଚନା ପ୍ରଦାନ କରେ । ସେ କହିଥିଲେ ଯେ, ରାଜ୍ୟରେ ଏକତାରକ୍ଷା କରିବା ଏକାନ୍ତଭାବରେ ପ୍ରୟୋଜନ । ପରଜା 'ଅଭୁଟ' ରହିଲେ ରାଜା ଯେ କୌଣସି କାର୍ଯ୍ୟ କରିବାକୁ ସମର୍ଥ ହୁଏ । ରାଜା ଧର୍ମ ଓ ଅଧର୍ମ ବିଚାର କରି ଦଣ୍ଡ ଦେବା ଉଚିତ । ପ୍ରଜାର ଦୋଷ ବିଚାର କରିବା ପୂର୍ବରୁ ଚାର ପ୍ରେରଣ କରି 'ବଧ୍ୟ-ଅବଧ୍ୟ' ପରୀକ୍ଷା କରିବା ବାଞ୍ଛନୀୟ । କୌଣସି ବ୍ୟକ୍ତି 'ଦଣ୍ଡ-ଅବଧ୍ୟ' କଲେ ତାହାକୁ ମୃତ୍ୟୁଦଣ୍ଡ ଦିଆଯାଇପାରେ । ଅନୀତି ଆଚରଣ କଲେ ସ୍ୱ ଦାର ମଧ୍ୟ ଦଣ୍ଡିତ ହେବା ଦରକାର । କିନ୍ତୁ ରାଜଦଣ୍ଡ ପ୍ରଜାପୀଡ଼ନ ପାଇଁ ଉଦ୍ଦିଷ୍ଟ ନୁହେଁ । ତାହାର ଲକ୍ଷ୍ୟ ପ୍ରଜାପାଳନ । ଏଥିରେ ପ୍ରଜା ସୁଖୀ ହୁଅନ୍ତି ଓ ରାଜ୍ୟର ସଂପଦ ବୃଦ୍ଧି ପାଏ । ଯେଉଁ ଦେଶର ପ୍ରଜାଗଣ ରାଜାଙ୍କର ବହୁ ଆୟୁଷ କାମନା କରନ୍ତି, ସେହି ରାଜା ହିଁ ଆଦର୍ଶ ରାଜା । (୧୨୮)

## (ଖ) ମନ୍ତ୍ରୀ

ଶୁକ୍ରନୀତି ଅନୁଯାୟୀ ରାଜ୍ୟର ସପ୍ତାଙ୍ଗ ମଧ୍ୟରେ ମନ୍ତ୍ରୀ ଏକତମ । (୧୨୯) ଉତ୍କଳର ଶାସନ-ସଂସ୍ଥାରେ ମନ୍ତ୍ରୀଙ୍କର ସ୍ଥାନ ମହତ୍ତ୍ୱପୂର୍ଣ୍ଣ ଥିଲା । ଉତ୍କଳୀୟ ନରପତିମାନେ ମନ୍ତ୍ରୀ ନିଯୁକ୍ତ କରୁଥିଲେ ଏବଂ ଶାସନକାର୍ଯ୍ୟରେ ସେମାନଙ୍କର

ପରାମର୍ଶ ନେଉଥିଲେ । ସୁଦକ୍ଷ ବ୍ୟକ୍ତିଙ୍କୁ ମନ୍ତ୍ରୀପଦ ପ୍ରଦାନ କରାଯାଉଥିଲା । ଖ୍ରିଷ୍ଣୁ ଏହା ମର୍ମରେ ଯୁଧିଷ୍ଠିରଙ୍କୁ ପରାମର୍ଶ ଦେଇଥିଲେ ।

"ମନ୍ତ୍ରୀପଣେ ସୁଚତୁର ଲୋକଙ୍କୁ ରଖିବୁ
ତାଙ୍କ ପରାମର୍ଶ ଘେନ କାର୍ଯ୍ୟ କରୁଥିବୁ ।" (ଶା. ପୃ ୨)

କେବଳ ମନ୍ତ୍ରୀ କାହିଁକି, ପ୍ରତ୍ୟେକ ରାଜକର୍ମରେ ଯୋଗ୍ୟ ବ୍ୟକ୍ତିଙ୍କୁ ନିଯୁକ୍ତ ଦେବା ନୀତି ଥିଲା । ଯୁଧିଷ୍ଠିର ତେଣୁ ପରୀକ୍ଷିତଙ୍କୁ କହିଥିଲେ—"ସୁଜନ ଦେଖିଲେ ତାଙ୍କୁ ନିଯୋଗ ତୁ ଦେବୁ ।" (ସ୍ୱ. ପୃ୨) ରାଜା ମନ୍ତ୍ରୀଙ୍କର ସଂପୂର୍ଣ୍ଣ ବଶୀଭୂତ ନ ଥିଲେ, କି ତାଙ୍କୁ ସମସ୍ତ ଅଧିକାର ପ୍ରଦାନ କରି ନ ଥିଲେ । ଖ୍ରିଷ୍ଣୁ ଏହା ନୀତିର ଉପଦେଶ ଯୁଧିଷ୍ଠିରଙ୍କୁ ଦେଇଥିଲେ ।

"ରାଜ୍ୟଭାର ସମର୍ପିବୁ ମନ୍ତ୍ରୀର ହସ୍ତରେ
ସମୁଦାୟ ଅଧିକାର ନ ଦେବୁ ତାହାରେ ।" (ଶା.ପୃ୨)

## (ଗ) କୋଟୁଆଳ, ଚରର ଓ ଦୂତ

ରାଜ୍ୟରେ ଶାନ୍ତି ରଖିବା ପାଇଁ ସବଂଶ କୋଟୁଆଳ ନିଯୁକ୍ତ କରଯାଇଥିଲେ । ସେମାନେ ସତତ ଜାଗ୍ରତ ଥାଇ କାର୍ଯ୍ୟ କରୁଥିଲେ । (୧୩୦) ରାଜ୍ୟରେ ଗୁପ୍ତଚର ରଖାଯାଉଥିଲେ ଏବଂ ସେମାନେ ରାଜ୍ୟର ଭଲମନ୍ଦ ରାଜାଙ୍କୁ ଜଣାଉଥିଲେ । (୧୩୧) ଚରରମାନଙ୍କଠାରୁ ପ୍ରତ୍ୟହ ତିନିଥର ସମ୍ବାଦ ରାଜା ଗ୍ରହଣ କରୁଥିଲେ । (୧୩୨) ପରରାଷ୍ଟ୍ରର ସମ୍ବାଦ ରଖିବା ରାଜାଙ୍କର କର୍ତ୍ତବ୍ୟ ଥିଲା ଏବଂ ସେ ସେଥି-ପାଇଁ ଦେଶାନ୍ତର ବା ଦୂତ ନିଯୁକ୍ତ କରୁଥିଲେ । (୧୩୩) ଦୂତଙ୍କୁ ରାଜାଙ୍କର ଚକ୍ଷୁ ବୋଲି ବିବେଚନା କରାଯାଉଥିଲା । (୧୩୪) ବିଦେଶୀ ଦୂତଙ୍କୁ ରାଜ୍ୟରେ ପ୍ରବେଶ କରିବା ପାଇଁ ଅନୁମତି ଦିଆଯାଉ ନ ଥିଲା । (୧୩୫) ରାଜା ସାମୟିକଭାବେ ଅନ୍ଧାରିବାଜେ କରି ସ୍ୱଚକ୍ଷୁରେ ରାଜ୍ୟର ଅବସ୍ଥା ଦେଖିଆସୁଥିଲେ । ନିଜେ ଆଖିରେ ନ ଦେଖି କାହାରି କଥାରେ ବିଶ୍ୱାସ ସ୍ଥାପନ କରିବା ରାଜାଙ୍କ ପକ୍ଷରେ ଅନୁଚିତ ବୋଲି ବିବେଚିତ ହେଉଥିଲା । (୧୩୬)

## (ଘ) ରାଜ୍ୟବିଭାଗ

ଶାସନର ସୁବିଧା ପାଇଁ ରାଜ୍ୟକୁ ବିଭିନ୍ନ ଭାଗରେ ବିଭକ୍ତ କରାଯାଇଥିଲା । ଦୁର୍ଯ୍ୟୋଧନ ସିଂହାସନାରୋହଣ କଲାପରେ ରାଜ୍ୟକୁ ଛତିଶଗୋଟି ମଣ୍ଡଳରେ ବିଭକ୍ତ କରିଥିଲେ । (୧୩୭)

## (ଙ) ରାଜାଙ୍କ କର୍ତ୍ତବ୍ୟ

ରାଜା କଣ କରିବେ ବା ନକରିବେ ସେଥିପାଇଁ ନୀତିନିୟମ ନିର୍ଦ୍ଧାରିତ ହୋଇଥିଲା । ରାଜାଙ୍କର କର୍ତ୍ତବ୍ୟ ଥିଲା—ଗୋଚର ଓ ଗୋଦାଣ୍ଡି ଛାଡ଼ି କେବଳ ମାଳ ଉଠିଆ ଜମିରୁ କର ଗ୍ରହଣ କରିବା (୧୩୮), ଆନ ଜାଗିରରୁ କର ନନେବା (୧୩୯), ଦେବତା ଓ ବ୍ରାହ୍ମଣଙ୍କୁ କରରୁ ଅବ୍ୟାହତି ଦେବା (୧୪୦), ପଣ୍ଡିତଙ୍କ ମୁଖରୁ ପୁରାଣ ଶ୍ରବଣ କରିବା, ଆବଶ୍ୟକ ବେଳେ ପ୍ରଜାଙ୍କୁ ଧନ ଦାନ କରିବା, ଦେବତା ଓ ବ୍ରାହ୍ମଣଙ୍କୁ ପୂଜା କରିବା, ଧାର୍ମିକମାନଙ୍କୁ ଏକାଦଶୀବ୍ରତ କରାଇବା, କେବଳ ବିବାହିତ ନାରୀସଙ୍ଗ କରିବା, ଶତ୍ରୁ ଓ ଦୁଷ୍ଟଲୋକଙ୍କୁ ଦଣ୍ଡ ଦେବା, ଶରଣାର୍ଥୀଙ୍କୁ ଶରଣ ଦେବା, ତୀର୍ଥରେ ଅନ୍ନଦାନ କରିବା, ଯଥାଯୋଗ୍ୟ ସ୍ଥାନରେ ସେନାପତି ନିଯୁକ୍ତ କରିବା (୧୪୧),ଗଜ ଓ ଅଶ୍ୱଙ୍କ ପାଇଁ ଧନ ଦାନ କରିବା (୧୪୨), ବିଦ୍ରୋହ ଦମନ ପାଇଁ ଭ୍ରାତାମାନଙ୍କୁ ପ୍ରେରଣ କରିବା, ଗୁଣୀ ଓ କବିଙ୍କୁ ଆଦର କରିବା (୧୪୩), ମୃଗୟା କରିବା, ତୀର୍ଥ କରିବା, ଭୃତ୍ୟଙ୍କୁ ବଶୀଭୂତ କରି ରଖିବା (୧୪୪), ସନ୍ଦେହ ସ୍ଥଳରେ ପଣ୍ଡିତମାନଙ୍କର ପରାମର୍ଶ ନେବା, ଜମିଜମାର ମାପଚୁପ୍ କରିବା, କୃଷିପ୍ରତି ଧ୍ୟାନ ଦେବା (୧୪୫) ଓ ଯଜ୍ଞଶୀଳ ହେବା । (୧୪୬)

ରାଜାଙ୍କ ପକ୍ଷରେ ଅକର୍ତ୍ତବ୍ୟ ଥିଲା—କୃଷକ ପ୍ରତି ଅର୍ଥଦଣ୍ଡ ଦାନ, ପରରାଜ୍ୟ ବିଷୟରେ ଆଳସ୍ୟ ଆଚରଣ, ସ୍ତ୍ରୀଲିଙ୍ଗରେ ବିଶ୍ୱାସ ସ୍ଥାପନ, ଅସୁର-ଭୋଗୀ ତୀର୍ଥରେ ସ୍ନାନ, ଧନସଂଚୟ, ଏକାବେଳକେ ମୃଗୟାତ୍ୟାଗ, ପରଧନ ତଥା ପରଦାରପ୍ରତି ଲୋଭ, ଗୋବ୍ରାହ୍ମଣଙ୍କୁ କଷ୍ଟଦାନ ଓ କବିଙ୍କ ପ୍ରତି କୃପଣତା (୧୪୭) ।

## (ଚ) ସେନାପତି

ସେନାପତିଙ୍କ ନିଯୁକ୍ତି ଓ କାର୍ଯ୍ୟ ସମ୍ବନ୍ଧରେ ସେ କାଳରେ ମହତ୍ତ୍ୱପୂର୍ଣ୍ଣ ନୀତି ଥିଲା । ରାଜା ସେନାପତି ନିଯୁକ୍ତ କରୁଥିଲେ ହେଁ, ମନ୍ତ୍ରୀଙ୍କ ପରାମର୍ଶ ବା ଜ୍ଞାତସାରରେ ସେହି ନିଯୁକ୍ତି ଦେବା ବିଧି ଥିଲା । ପୁଣି ସେନାବାହିନୀ ସେନାପତିଙ୍କ ଦାୟିତ୍ୱରେ ରହୁଥିଲେ ଏବଂ ତାଙ୍କର ନିର୍ଦ୍ଦେଶକ୍ରମେ ସେମାନେ କାର୍ଯ୍ୟ କରୁଥିଲେ । କୃଷ୍ଣ ଏହି ନୀତିର ବିଶ୍ଳେଷଣ କରି ଯୁଧିଷ୍ଠିରଙ୍କୁ ବୁଝାଇଥିଲେ :

"ମନ୍ତ୍ରୀ ଗୋଚରେ ସମର୍ପିଥିବୁଟି ସେନାପତି
ସେନାପତିଙ୍କ ବଚନେ ଚଳବେ ମାହୁନ୍ତ ରଥୀ ।" (୧୪୮)

## (ଛ) ଯୁଦ୍ଧାଭିଯାନ

ସେତେବେଳେ ରାଜାଙ୍କ ପକ୍ଷରେ ସାମୟିକ ଯୁଦ୍ଧାଭିଯାନ ଆବଶ୍ୟକ ବୋଲି ବିବେଚିତ ହେଉଥିଲା । ତାହା ନ କଲେ ଶତ୍ରୁ ରାଜାଙ୍କର ଶକ୍ତି-ସାମର୍ଥ୍ୟ ପ୍ରତି ଲଘୁଭାବ ପୋଷଣ କରିବାର ସମ୍ଭାବନା ରହିଥିଲା । ତେଣୁ ଯୁଧିଷ୍ଠିର ଯୁଦ୍ଧାଭିଯାନ କରିବା ନିମିତ୍ତ ବିରାଟ ରାଜାଙ୍କୁ ଉପଦେଶ ପ୍ରଦାନ କରିଥିଲେ । (ବି. ପୃ ୮୬) ଯୁଦ୍ଧର କାଳ ମଧ୍ୟ ସେ ଯୁଗରେ ନିର୍ଦ୍ଦିଷ୍ଟ କରାଯାଇଥିଲା । ସଂସ୍କୃତ ମହାଭାରତରେ ଶିଶିର କାଳକୁ ଯୁଦ୍ଧର ଯଥାର୍ଥ ସମୟ ବୋଲି ବିବେଚନା କରା-ଯାଇଅଛି । (୧୪୯) କୌଟିଲ୍ୟଙ୍କ ମତରେ ବର୍ଷା ତଥା ଶୀତ ଉଭୟ ଯୁଦ୍ଧାଭି-ଯାନର କାଳ । (୧୫୦) ସାରଳା ଦାସଙ୍କ ବର୍ଣ୍ଣନାରେ ଅଛି ଯେ ବିରାଟ ରାଜା ମିଥୁନ (ଆଷାଢ଼), କର୍କଡ଼ା (ଶ୍ରାବଣ) ଓ ସିଂହ (ଭାଦ୍ର) ମାସରେ ଯୁଦ୍ଧାଭିଯାନ କରିଥିଲେ । ଅର୍ଥାତ୍ ସେ ବର୍ଷା ଓ ଶରତ୍‌କାଳ ପ୍ରାରମ୍ଭରେ ଯୁଦ୍ଧାଭିଯାନରେ ନିଯୁକ୍ତ ଥିଲେ । (ବି. ପୃ ୮୬) କିନ୍ତୁ କବିଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ମାଘ ମାସ ଯୁଦ୍ଧାନୁକୂଳର ପ୍ରଶସ୍ତ ସମୟରୂପେ ଗୃହୀତ ହେଉଥିଲା । ମହାଭାରତ ସମରର ଅନୁକୂଳ ମାଘ ମାସ କୃଷ୍ଣପକ୍ଷ ଭୃଗୁବାରରେ ହୋଇଥିଲା ବୋଲି ସାରଳା ଦାସ ଲେଖିଯାଇଅଛନ୍ତି । (ଖି. ପୃ ୨୧) ବାମଦେବ ଭୀଷ୍ମଙ୍କୁ ଏହି ମାଘ ମାସରେ ସମର ପାଇଁ ଅନୁକୂଳ କରିବା ଉଚିତ୍ ବୋଲି ଜଣାଇଥିଲେ ।

"ଯାଗ ଯଜ୍ଞ ତୀର୍ଥ ଧର୍ମ ମାଘ ମାସ ମଧ୍ୟେ
ଶକ୍ତି ସଙ୍ଗେ ଝାସଦେବା ଅବା ମର ଯୁଦ୍ଧେ ।
ମରିଲେ ବୈକୁଣ୍ଠ ବାସ ଜିଣିଲେ ମଙ୍ଗଳ
ଏହି ମାସେ ସମରକୁ କର ଅନୁକୂଳ ।" (ଖି. ପୃ ୧୬)

ଦାଣ୍ଡି ରାମାୟଣରେ ଦଶରଥ ଶ୍ରୀରାମଙ୍କୁ ପ୍ରଜାପାଳନ କରିବା, ମନ୍ତ୍ରୀଙ୍କର ପରାମର୍ଶ ନେବା, ହୋମାନୁଷ୍ଠାନ କରିବା, ଗଜ ଓ ଅଶ୍ୱଙ୍କର ଯତ୍ନ ନେବା, ପୁରାଣ ପାଠ କରିବା, ଯୁଦ୍ଧ ପାଇଁ ସର୍ବଦା ପ୍ରସ୍ତୁତ ହୋଇ ରହିବା, ଅନ୍ନ ଦାନ ଦେବା, ଦୁର୍ଗରେ ଯୋଗ୍ୟ ଲୋକ ରଖିବା, ବ୍ରାହ୍ମଣଙ୍କର ପ୍ରିୟ ହେବା, ପଣ୍ଡିତଙ୍କୁ ସମ୍ମାନ

ଦେଖାଇବା, ଭୃତ୍ୟଙ୍କର ଦୁଃଖ ହରଣ କରିବା, ପର ରାଜ୍ୟକୁ ଡଗର ପଠାଇବା, ଦୋସାଧ୍ୟ ବା କଟୁଆଳ ରଖିବା ଓ ଅନ୍ଧାରିବିଜେ କରିବା ପାଇଁ ଉପଦେଶ ଦେବା କଥା ବର୍ଣ୍ଣନା କରାଯାଇଅଛି । (୧୫୧) ବଳରାମ ଦାସଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ମାର୍ଗଶିର ମାସ ପରେ ଅର୍ଥାତ୍ ଶୀତକାଳରେ ସୁଗ୍ରୀବ ରାମାୟଣ ଯୁଦ୍ଧ ପାଇଁ ସୈନ୍ୟ ସଂଗ୍ରହ ଆରମ୍ଭ କରିଥିଲେ । (୧୫୨)

ଉକ୍ତ ଆଲୋଚନାରୁ ପ୍ରତିପାଦିତ ହୁଏ ଯେ, ଶାରଳାଙ୍କ ଯୁଗରେ ଉତ୍କଳରେ ସୁଶାସନ ପ୍ରତିଷ୍ଠିତ ଥିଲା । ପ୍ରଜାପାଳନ ରାଜାଙ୍କର ପ୍ରଧାନ କର୍ତ୍ତବ୍ୟ ଥିଲା । ରାଜା ରାଜ୍ୟରେ ସର୍ବେସର୍ବା ଥିଲେହେଁ ମନ୍ତ୍ରୀମାନଙ୍କର ପରାମର୍ଶ ଗ୍ରହଣ କରୁଥିଲେ । କଟୁଆଳ, ଗୁପ୍ତଚର ଓ ଦୂତଗଣ ସ୍ୱ ସ୍ୱ କର୍ମରେ ନିଯୁକ୍ତ ଥିଲେ । ଶାସନର ସୁବିଧା ପାଇଁ ରାଜ୍ୟକୁ ବିଭିନ୍ନ ଭାଗରେ ବିଭକ୍ତ କରାଯାଇଥିଲା । ରାଜା ଧର୍ମ, ନ୍ୟାୟ ଓ ନୀତି-ସମ୍ମତ ଶାସନ ପ୍ରତିଷ୍ଠା କରିଥିଲେ । ରାଜଦ୍ୱାରରେ ପଣ୍ଡିତ, ଗୁଣୀ ଓ ବ୍ରାହ୍ମଣଙ୍କର ଆଦର ରହିଥିଲା । ସ୍ଥୂଳତଃ ସେ କାଳର ଶାସନ ସଂସ୍ଥା ଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇଥିଲା ।

———

# ପାଦଟୀକା

(୧) ଶ୍ରୀମଦ୍ ଭାଗବତ, ଚତୁର୍ଥାଂଶ ୧୯, ୧-୨୮ (୨) ସ୍କ. ସ୍କ. ପୁ, କଲ୍ୟାଣ, ପୃ ୭୧ । (୩) ସ୍କ. ନା. ବ. ପୁ, କଲ୍ୟାଣ, ପୃ୭୧-୭୯ (୪) ବାଲୁର ବ୍ରତ, ଅଚ୍ୟୁତାନନ୍ଦ-ନାଥ, ପୃ୧-୨ (୫) S. E. H. N. I, B. P. Majumdar, P. 307-308 (୬) Alberuni's India, Sachhau, Ch, LXXVI, P. 178-179 (୭) Ibid, P. 175-176 । (୮) ସ୍କ. ନା, ବ. ପୁ, ପୃ୮୦-୮୧ । (୯) ଗ. ପ, ପୃ୧୦୦ (୧୦) ପ. ସ, ପୃ ୭୪ । (୧୧) ସା. ମ, ଶାନ୍ତି, ପୃ.୨ । ମୂ. ପୋ, ଶାନ୍ତି, ପୃ୧୮୫ କ୍ଷ ।

"ଧାର୍ମିକେ କରଇବୁ ସ୍ୱଜା ବ୍ରତ ସ୍ୱେକାଦଶୀ ।"

(୧୨) ଭାଗବତ, ଜଗନ୍ନାଥ, ୯ମ, ପୃ୨୦ (୧୩) ଗ: ପ, ପୃ ୧୭ (୧୪) ଏକନ୍ ପୃ୧୯ (୧୫) ପ. ସ, ପୃ୧୧୬-୧୧୭ (୧୬) ସ୍କ, ସ୍କ. ପୁ, କଲ୍ୟାଣ, ପୃ ୩୨୫ (୧୭) ସା. ମ., ଅଶ୍ୱମେଧ ଓ ଆଶ୍ରମିକ, ପୃ୪୫ (୧୮) ପ. ସ୍କ. ପୃ୧୮୭-୧୮୮ (୧୯) ସା. ମ, ମଧ୍ୟ, ସ୍କ. ର ପୃ୧୯୧ । ସା. ମ, ମଧ୍ୟ, ପୁ. କ°, ପୃ୨୧୯ ।

ଦ୍ରଷ୍ଟବ୍ୟ—କାମାକ୍ଷୀ ବ୍ରତର ବର୍ଣ୍ଣନା ମୂଳ୍ଡୁ ଗାଁ ପୋଥିରେ ନାହିଁ । (୨୦) ସା. ମ, ମଧ୍ୟ, ପୃ୧୯୧ (୨୧) ଗ. ପ, ପୃ୨୭-୨୯ (୨୨) ଏକନ୍, ପୃ୫୩ । (୨୩) ମହାଭାରତ, ଜଗନ୍ନାଥ, ମଧ୍ୟ, ପୃ୧୩୬-୧୩୭ ।

ଦ୍ରଷ୍ଟବ୍ୟ—ଏଠାରେ ଶ୍ରବଣା ନକ୍ଷତ୍ର ଯୋଗରେ କାମାକ୍ଷୀ ବ୍ରତ କରଣୀୟ ବୋଲି ଉକ୍ତ ।

(୨୪) ଶ୍ରୀ ଦୁର୍ଗା ସପ୍ତଶତ୍ୟାମ୍, ପୃ୧୦ (୨୫) ସା. ମ, ମଧ୍ୟ, ପୃ୧୫୫ (ପୋଥିରେ ନାହିଁ) (୨୬) O. H. R. J, No 1, 1964, P. 56 (୨୭) ଗଙ୍ଗାଧର ଗ୍ରନ୍ଥାବଳୀ, ପୃ୧୩୩ (୨୮) ସା. ମ, ମଧ୍ୟ, ସ୍କ. ର, ପୃ୩୩୩ । ସା. ମ, ମଧ୍ୟ, ପୁ. କ°, ପୃ୩୬୭ (୨୯) ସା. ମ, ମଧ୍ୟ, ପୃ୩୩୩-୩୩୪ (୩୦) ମଙ୍ଗଳାଙ୍କ ପୂଜା, ପୃ୨ । (୩୧) S. E. H. N. I., B. P. Majumdar, P. 275. (୩୨) Alberuni's India, Sachau, Vol II, Ch. LXXVI, P. 178-179. (୩୩) ଗ. ପ, ପୃ୫୧-୫୨ (୩୪) ପ. ସ, ପୃ୮୬ (୩୫) ସ୍କ. ସ୍କ. ପୁ, କଲ୍ୟାଣ, ପୃ ୩୮୪ । (୩୬) ସା. ମ. ବିରାଟ. ପୃ ୫୪-୫୫ । (୩୭) ସ୍କ. ସ୍କ. ପୁ. କଲ୍ୟାଣ, ପୃ ୭୧ । (୩୮) ପ. ସ, ପୃ ୧୦୩ । ଗ. ପ, ପୃ ୫୫ (୩୯) S. E. H. N. I, B. P. Majumdar, P. 276-277 (୪୦) ସା. ମ, ବନ, ପୃ ୩୧ ।

(ଦ୍ରଷ୍ଟବ୍ୟ—ସବୁଠାରେ ଚତୁର୍ଭୁଜବିଶିଷ୍ଟ ଗଣେଶ ମୂର୍ତ୍ତି ଅଛନ୍ତି । କିନ୍ତୁ ଏଠାରେ ଅଷ୍ଟଭୁଜ ବିଶିଷ୍ଟ ମୂର୍ତ୍ତି କଥା କହନ୍ତି । ଓଡ଼ିଶାର କୌଣସି କୌଣସି ସ୍ଥାନରେ ଅଷ୍ଟଭୁଜ-ବିଶିଷ୍ଟ ଗଣେଶ ମୂର୍ତ୍ତି ଦେଖାଯାନ୍ତି । ଦୃଷ୍ଟାନ୍ତ ସ୍ୱରୂପ ପୁରୀର କମଳା ମନ୍ଦିରରେ ଥିବା ଗଣେଶଙ୍କ ମୂର୍ତ୍ତି ଗ୍ରହଣ କରାଯାଇପାରେ । ) (୪୧) ସ୍କା. ପୁ, ବନ, ପୃ ୩୨-୩୩ (୪୨) ଶା. ଚ, ମୃତ୍ୟୁଞ୍ଜୟ, ପୃ ୪୮-୪୯ । (୪୩) ଦ୍ର. ସ୍କ. ପୁ, ପୃ ୨୯୦-୨୯୨ (୪୪ ସଂ. ମା. ବ୍ର. ପୁ, ପୃ ୩୮୦-୩୮୧ (୪୫) ସଂ. ନା. ବି. ପୁ, ପୃ ୫୭୨ (୪୬) ସଂ. ମା. ବ୍ର. ପୁ, ପୃ ୩୮୦-୩୮୧ । (୪୭) ଏଜନ୍ (୪୮) ଶ୍ରୀକ୍ଷେତ୍ର, ପୃ ୧୩୪ (୪୯) ଏଜନ୍, ପୃ ୧୩୧ (୫୦) ସ୍କା. ପୁ, ୧୬ ଅଧ୍ୟାୟ, ପୃ ୧୪୮-୧୪୯ (୫୧) ଜାମସେଦପୁର କୋପରେଟିଭ କଲେଜରୁ ପ୍ରକାଶିତ 'Histoire'ରେ 'Origin of Car Festival at Puri ପ୍ରବନ୍ଧ ଦ୍ରଷ୍ଟବ୍ୟ । (୫୨) ଗ. ପ., ପୃ ୧୫୧ (୫୩) ପ. ସ., ପୃ ୯୦ (୫୪) ସଂ. ମା. ବ୍ର. ପୁ, ପୃ ୩୮୧ (୫୫) ଦା. ଦେ., ବେଣୀମାଧବ, ପୃ ୨୦୨-୨୦୩ (୫୬) ଶ୍ରୀକ୍ଷେତ୍ର, ପୃ ୧୨୪ (୫୭) କଳ୍ପଲତା, ୧୩ଶ ଗୁଚ୍ଛ (୫୮) ଦା. ରା., ଲଙ୍କା, ପୃ ୩ (୫୯) ଦୁ. ସ. ଶ, ପୃ ୧୭୨ (୬୦) ଗ. ପ, ପୃ ୮୦ (୬୧) ପ. ସ, ପୃ ୧୦୯-୧୧୦ (୬୨) ଗ. ପ, ପୃ ୮୩ (୬୩) ସ୍କା. ପୁ, ସଭା, ପୃ ୨୨-୨୩ । ମୂ. ପୋ., ସଭା ୧ମ, ପୃ ୩୩ ଖ (୬୪) ସ୍କା. ପୁ, ୧୮ ଅ, ପୃ ୨୦୬ (୬୫) ଶ୍ରୀଗୀତ, ଜଗନ୍ନାଥ, ଗୋପ, ୧୦, ୧୨୫ (୬୬) 'ପ୍ରଜାତନ୍ତ୍ର'ରେ ପ୍ରକାଶିତ (୧୨।୨।୭୦) ଶ୍ରୀ କେଦାର ନାଥ ମହାପାତ୍ରଙ୍କ ପ୍ରବନ୍ଧ ଦ୍ରଷ୍ଟବ୍ୟ । (୬୭) ଗ. ପ, ପୃ ୧୪୩ (୬୮) ଏଜନ୍, ପୃ ୧୪୪ (୬୯) ଓ. ସା. ଜ. ପ, ୨ୟ, ପୃ ୪୭ (୭୦) ସଂ. ସ୍କ. ପୁ, ପୃ ୨୯୬ । ପ. ସ, ପୃ ୭୧ (୭୧) ଏକାମ୍ର ପୁରାଣ, ପତ୍ର ୧୪ ଖ । (୭୨) ଦା. ରା. ଲଙ୍କା, ପୃ ୨ (୭୩) ମ. ଭା., ମଧ୍ୟ, ପୃ ୧୩୫ (୭୪) ପ. ସ, ପୃ ୧୧୯ (୭୫) ଗ. ପ, ପୃ. ୭୪, ପୃ ୭୫ (୭୬) ସଂ. ମା. ବ୍ର. ପୁ, ପୃ ୩୨୦ (୭୭) ଏଜନ୍, ପୃ ୩୨୧ (୭୮) ସଂ. ସ୍କ. ପୁ. ପୃ ୮୯ (୭୯) ମୂ. ପୋ, ବନ ୨ୟ, ପୃ ୨୩ କ (୮୦) ଗ. ପ. ପୃ ୨୬, ପୃ ୭୫-୭୬ (୮୧) ଶା. ମ, ବନ; ପୃ ୨୧୩-୨୧୬ । ମୂ. ପୋ, ବନ ୨ୟ, ୮୫ କ (୮୨) ପ. ସ, ପୃ ୮୦-୮୧ (୮୩) ଏକାମ୍ର ପୁରାଣ, ପତ୍ର ୧୪ ଖ (୮୪) History of Orissa, N. K. Sahoo, P. 268. (୮୫) Sociology, Bogardus, P. 215 (୮୬) Social Control, Roucek, P. 260 (୮୭) An Introductory Sociology, Young, P. 304, P. 312. (୮୮) ସଂ. ମ, ସଭା, ୬୦ ଅଧ୍ୟାୟ (୮୯) ବି. ପୁ. ୫, ୨୮, ୧୧ (୯୦) Alberuni's India, Ch. XVI, P. 182 (୯୧) A-in-Akabari, Abul Fazl, P. 315 (୯୨) ସା. ମ, ସଭା, ପୃ ୩୧୧ । ମୂ. ପୋ, ସଭା ୨ୟ, ପୃ ୧୮୦ କ (୯୩) ସଂ. ମ, ସଭା ୫୬ ଅଧ୍ୟାୟ (୯୪) ସା. ଭ. ୩, ୨୬ (୯୫) ମ. ଭା, ପଶ୍ଚା, ପୃ. ୫୯-୬୦, ପୃ ୮୮-୮୯ (୯୬) ସା. ମ, ଆଦ୍ୟ, ପୃ ୯୯ । ମୂ.ପୋ. ଆଦ୍ୟ ୧ମ, ପୃ ୧୪୩ କ, ପୃ ୧୪୪କ (୯୭) ସା.ମ, ବନ, ପୃ ୨୧୫ । ମୂ.ପୋ, ବନ ୨ୟ, ପୃ ୮୫କ (୯୮) ଦ୍ର. ଚ, ଅଚ୍ୟୁତାନନ୍ଦ

ପୃ ୧୧୫ଖ (୯୯) ସା· ମ, ମଧ୍ୟ, ପୃ. ୪୯ । (ଏହା ପୋଥିରେ ନାହିଁ) (୧୦୦) ସଂ· ମ, ବିରାଟ, ୧୩ ଅଧ୍ୟାୟ (୧୦୧) ସା·,ମ., ମଧ୍ୟ, ପୃ ୧୩୧ । ମୂ· ପୋ, ମଧ୍ୟ ୧ମ, ପୃ ୧୨୦ ଖ ଓ ପୃ ୧୨୧ କ (୧୦୨) ସା· ମ, ମଧ୍ୟ, ପୃ ୧୨୦, ପୃ ୧୩ଖ (୧୦୩) ପ୍ରା· ଗ· ପ· ଭ, ପ୍ରାଚୀ, ପୃ ୬୯ (୧୦୪) ମ· ଭା, ଜଗନ୍ନାଥ, ମଧ୍ୟ, ପୃ ୮୧ (୧୦୫) ଲ. ବ., ଉପେନ୍ଦ୍ର, ପୃ ୫୦-୫୯ (୧୦୬) ସଂ· ରା, ଅଯୋଧ୍ୟା, ୫୯,୧୩ (୧୦୭) ଏଜନ୍, ୭୦, ୧୮ (୧୦୮) ଏଜନ, ୯୧- ୭୫ । (୧୦୯) ଏଜନ୍, ୧୧୪, ୨୦ ଓ ୨୩ (୧୧୦) ଏଜନ୍, ୧୧୮, ୧୮ (୧୧୧) ବି· ପୁ· ୨, ୬, ୧୧-୧୨ । ୨, ୮, ୧୧୦ । ୫, ୧୯, ୪ । (୧୧୨) ଏଜନ୍ ୩, ୧୧, ୨୧ (୧୧୩) କା· କା· ସଂ, ସୀତାରାମ, ପୃ ୪୦୦ (୧୧୪) ଏଜନ୍ (୧୧୫) ଶ୍ରୀ· ଭା· (ସଂ)· ୭, ୨, ୩୨ (୧୧୬) ରୁ· ସୁ· ନ, ନାରାୟଣାନନ୍ଦ, ପୃ ୧୫୯ (୧୧୭) ରା· ବି, ଅର୍ଜୁନ, ପୃ ୭୨ (୧୧୮) କ· ଲ, ଅର୍ଜୁନ ପୃ. ୬୩ (୧୧୯) ସା· ମ, ବନ, ପୃ ୧୩୭ । ମୂ· ପୋ, ବନ ୧ମ, ପୃ ୨୧୫ କ (୧୨୦) ସା· ମ· ବିରାଟ, ପୃ ୨୩ । ମୂ· ପୋ, ବିରାଟ, ପୃ ୨୯ ଖ । (୧୨୧) ଦା· ରା, ବଳରାମ, ଅଯୋଧ୍ୟା, ପୃ ୧୯୧ (୧୨୨) ର. ବ, ଅର୍ଜୁନ, ପୃ ୭୩, ୮୦, ୮୧ । (୧୨୩) ଦା· ରା, ବଳରାମ, ଆଦି, ପୃ ୧୮୫ (୧୨୪) ଏଜନ୍, ପୃ ୧୯୨ ।

ଦ୍ରଷ୍ଟବ୍ୟ—ପୋଥିରେ ଗଜମୋତି ଚୂର ଲଗାଇବା; ଅଗୁରୁ, ଚନ୍ଦନ, କସ୍ତୁରୀ, କର୍ପୂର, ହଳଦୀ ଲଗାଇବା କଥା ରହିଛି । ହେଠାରେ ଅଁଳା ତେଲ ଲଗାଇବା ବିଷୟ ବି ଅଛି ।

"ଗଜମୋତି ଚୁର ନମାଣ କଲେ ଗୁଣ୍ଡି ।
ତାହା ଯେ ଲେପନ କଲେ ବସି ବାରଦଣ୍ଡି ।"
"ଅଗୁରୁ ଚନ୍ଦନ କପୁର ଚନ୍ଦନ ହଳଦୀ"
"ଉତ୍ତମ୍ୟେ ପରହାସ ହୋଏକ ଯେନଣ କସ୍ତୁରୀ ।"

(ମୂ. ପୋ, ମଧ୍ୟ ୧ମ, ପୃ ୧୫୫ଖ ଓ ପୃ ୧୫୬କ)

(୧୨୫) ସା. ମ. ମଧ୍ୟ, ପୃ ୨୬୧ । (ମୂଳରୁ ଗାଁ ପୋଥିର ସୁଭଦ୍ରା ପରିଣୟ ଦୃଶ୍ୟରେ ସିନ୍ଦୂର ଟୋପାର ଉଲ୍ଲେଖ ମିଳେ । ) (୧୨୬) ଦା.ରା, ବଳରାମ, ଆଦି, ପୃ ୧୮୫ (୧୨୭) Outlines of Social Philosophy, J. S. Mackenjee, P—17 (୧୨୮) ସା. ମ, ଶାନ୍ତି, ପୃ ୧-୨ । ମୂ. ପୋ, ଶାନ୍ତି, ପୃ ୧୮୪କ-୧୮୬କ (୧୨୯) ଶୁ. ନୀ, ମଲ୍ଲିକାରାଜସିଂ, ପୃ ୬ (୧୩୦) ସା.ମ, ଶାନ୍ତି, ପୃ ୨ । ମୂ. ପୋ, ଶାନ୍ତି, ପୃ ୧୮୫କ (୧୩୧) "ଡଗର ମୁଖୁ ରାଜ୍ୟର ଖବର ବୁଝିବୁ ।" ସା.ମ, ଶାନ୍ତି, ପୃ. ୨ । (୧୩୨) "ଡଗର ମୁଖେ ବୁଝିବୁ ଜନଓଳ ।" ମୂ. ପୋ, ଶାନ୍ତି, ପୃ ୧୮୫ କ । (୧୩୩) "ଦେଶାନ୍ତର ବଅନ୍ତ ନା ପରରାଷ୍ଟ୍ର ବାର୍ତ୍ତା ।" (ସା.ମ. ଆଦ୍ୟ, ପୃ ୨୦୭) (୧୩୪) "ରାଜାଙ୍କର ଦେଶାନ୍ତର ସିନା ଦ୍ରବ୍ୟଚକ୍ଷୁ ।" ସା. ମ. ଆଦ୍ୟ, ପୃ ୧୦୮ । (୧୩୫) "ବିଦେଶର ଦୂତ ରାଜା କଟକେ ନ

ଦେବୁ ପଣି ।" ମ୍ୟୁ. ପୋ· ଶାନ୍ତି, ପୃ ୯୮୫ଖ । (୧୩୬) "ଅନ୍ଧାର ବଳେ ନ କର ବିଶ୍ୱାସ ନ ଯିବୁ ।" ସା. ମ. ଶାନ୍ତି, ପୃ ୨ । (୧୩୭) ""ଏ ବିଧି ଭିଆଣ ହେଲ ଛଡଣ ମଣ୍ଡଳେ ।" ସା. ମ. ଆଦ୍ୟ. ପୃ ୨୦୧ । (୧୩୮) ସା· ମ· ଆଦ୍ୟ, ପୃ ୨୦୧ (୧୩୯) "ଆନ୍ନ ଜାଗିରର କର ଗୁଡ଼ି ପରଜାଙ୍କୁ ।" ଏଜନ୍ । (୧୪୦) "ଦେବ ବ୍ରାହ୍ମଣଙ୍କୁ କରଗୁଡ଼ି ସବକାଳେ ।" ଏଜନ୍ । (୧୪୧) ସା. ମ, ଶାନ୍ତି, ପୃ, ୨ । (୧୪୨) "ଗୋପାଳେ ବିଶ୍ୱାସ କର ଅର୍ପିବୁ ଗୋଧନ ।" ସା.ମ. ଶାନ୍ତି, ପୃ ୨ । "ଗୋପାଳେ ବିଶ୍ୱାସ କରଥିବୁ ସର୍ବସ୍ଥାନ ।" ମ୍ୟୁ.ପୋ, ଶାନ୍ତି, ପୃ୯୮୬କ । (୧୪୩) ସା·ମ.ଶାନ୍ତି, ପୃ୨ (୧୪୪) ସା·ମ,ଆଶ୍ରମ, ପୃ୪୫-୪୬ (୧୪୫) ସା· ମ, ସ୍ୱର୍ଗ, ପୃ ୨ (୧୪୬) ସା·ମ, ଶାନ୍ତି, ପୃ ୨ । ମ୍ୟୁ· ପୋ, ଶାନ୍ତି, ପୃ ୯୮୫କ (୧୪୭) ମ୍ୟୁ· ପୋ, ଶାନ୍ତି, ପୃ ୯୮୫ଖ । (୧୪୮) ଏଜନ୍ (୧୪୯) ସ୦· ମ, ଉଦ୍. ୧୪୨, ୧୬-୧୮ (୧୫୦) Kautilya's Arthasastra, P. 369 (୧୫୧) ଧା· ଗ୍ର· ବଳରାମ, ଆଦ୍ୟ, ପୃ ୬୦-୬୧ (୧୫୨) ଏଜନ, କୃଷ୍ଣକ୍ରିୟା, ପୃ ୫୨-୫୩ ।



# ଅଷ୍ଟମ ଅଧ୍ୟାୟ

# ଉପସଂହାର

ସାରଳା ଦାସ ଅନେକ ବିବାହ-ଦୃଶ୍ୟ ବର୍ଣ୍ଣନା କରିଅଛନ୍ତି । ସେଥି ମଧ୍ୟରୁ କେତେକ ମୂଳ ସଂସ୍କୃତ ମହାଭାରତରେ ରହିଛି ଏବଂ ଅନ୍ୟ କେତେକ ତାଙ୍କର ମୌଳିକ ସୃଷ୍ଟି । ମୂଳ ମହାଭାରତର ବିବାହ-ଦୃଶ୍ୟମାନଙ୍କୁ ସେ ଅନୁବାଦ କରିନାହାନ୍ତି । ସେ ସମସ୍ତ ସ୍ଥଳରେ କବି କଳ୍ପନାରୁ ନାନା ବିଷୟ ଉଲ୍ଲେଖ କରିଯାଇଅଛନ୍ତି । ସେହି ସମସ୍ତ ଚିତ୍ରରୁ ତଦାନୀନ୍ତନ ଯୁଗରେ ଉତ୍କଳୀୟ ସମାଜରେ ପ୍ରଚଳିତ ଥିବା ବିବାହ-ବିଧିର ପ୍ରଭୂତ ପରିଚୟ ମିଳେ ।

କବିଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, କ୍ଷତ୍ରିୟମାନଙ୍କ ସମାଜରେ ଯୌବନ ପ୍ରବେଶର ଅବ୍ୟବହିତ ପୂର୍ବରୁ କନ୍ୟାର ବିବାହ କାର୍ଯ୍ୟ ସମ୍ପନ୍ନ କରିବା ସେ କାଳର ଆଦର୍ଶ ରୀତି ଥିଲା । ଉଚ୍ଚବଂଶଜ କ୍ଷତ୍ରିୟ ରାଜାମାନେ ଏହି ନୀତି ଅବଲମ୍ବନ କରୁଥିଲେ । କବି ସ୍ୱୟଂବର ପ୍ରସଙ୍ଗରେ ଦ୍ରୁପଦ-କନ୍ୟା ଦ୍ରୌପଦୀଙ୍କର ଯେଉଁ ରୂପ-ସମ୍ଭାର ପ୍ରଦର୍ଶନ କରିଅଛନ୍ତି ସେଥିରୁ ପ୍ରତିପାଦିତ ହୁଏ ଯେ, ବିବାହ କାଳକୁ ସେ ଯୌବନର ପାଦଦେଶରେ ଉପନୀତା ହୋଇଥିଲେ ।

"ମେଡ଼ ଉପରେ ବିଜେ କଲେ ମହାସତୀ
ପୂର୍ଣ୍ଣିମାର ଚନ୍ଦ୍ର ଜିଣି ବିକାଶିଲା କାନ୍ତି ।
× × ×
ଋଷାଣିଲ ପଦ୍ମ ପ୍ରାୟେ ଲଲାଟର ପାଟି
ବିଧୂଳ ଡାଳିମ୍ବ ବିମ୍ବ ପ୍ରାୟ ଓଷ୍ଠ ଫୁଟି ।
× × ×
ଆରକ୍ତନୟନା କି ସେ ନୀଳ ଉତ୍ପଳ
କଜ୍ଜଳ ମାହେ ଗୁହାଁଲେ ଟଳିବେ ସକଳ ।
ଗୁହାନ୍ତେ ବଦନପୁନେ ହୃଦ ଯିବ ଫୁଟି
ଜଗତ୍ରେ ପୃଥିବୀରେ ରଖିଅଛି ଦୃଷ୍ଟି ।" (ଆ ୨୫୨ ପୃ)

ଦୁର୍ଯ୍ୟୋଧନଙ୍କ କନ୍ୟା ଚନ୍ଦ୍ରାବତୀ ତ୍ରୟୋଦଶ ବର୍ଷ ବୟସ ସମ୍ପୂର୍ଣ୍ଣ ହେବା ପରେ, ଅର୍ଥାତ୍ ଚତୁର୍ଦ୍ଦଶ ବର୍ଷ ବୟଃକ୍ରମ କାଳରେ ବିବାହ କରିଥିଲେ ବୋଲି କବି ଦର୍ଶାଇଅଛନ୍ତି । (୧) କବି ଚନ୍ଦ୍ରାବତୀଙ୍କର ଯେଉଁ ରୂପ ବର୍ଣ୍ଣନା କରିଅଛନ୍ତି, ସେଥିରୁ ଜଣାଯାଉଅଛି ଯେ ସେ ମଧ୍ୟ ବିବାହ ବେଳକୁ ଯୌବନର ପାଦଦେଶରେ ଉପନୀତା ହୋଇଥିଲେ ।

"ନୟନରେ ଭ୍ରୂଲତା କି କାମଧେନୁ ଧନୁ
ପୁରୁଷ ମାନ ଦେଖିଲେ ଧରିବ କି ତନୁ ।
ତହିଁକି ସେ ତୀକ୍ଷ୍ଣଶର ନୟନର ବାଣି
ତଡ଼ିତ ସୁନାକୁ ଜିଣି ଦିଶଇ ରସାଣି ।
×        ×        ×
ନାସାକୁ ତା ପଟାନ୍ତର ତିଳପୁଷ୍ପ ପ୍ରଭା
ମାଳ ଉପ୍ତଳକୁ ଜିଣି ଦିଶେ ମୁଖଶୋଭା ।
ଅଳପ ଅପାଙ୍ଗେ ଯେବେ କରଇ ସେ ଦୃଷ୍ଟି
ଦେଖିଲେ ମଦନ ଶରେ ଧୈର୍ଯ୍ୟ ଯାଏ ତୁଟି ।
ମଧ୍ୟଭାଗ ଅଟଇ ତା ଅତି ହିଁ ସଂକୀର୍ଣ୍ଣ
ପଟାନ୍ତର କସ ମତ୍ତଗଜ ଗତି ପୂଣ ।"          (ମ ୨୬୧ ପୃ)

ସେତେବେଳେ ବ୍ରାହ୍ମଣଙ୍କ ସମାଜରେ ବାଲ୍ୟବିବାହ ପ୍ରଥା ପ୍ରଚଳିତ ଥିଲା । ଶଶିକର ବିପ୍ରର ପତ୍ନୀ ଶ୍ରୀୟା ବାଳବିଧବା ଥିବା କଥାରୁ ଏହା ପ୍ରତିପନ୍ନ ହୁଏ । (ଆ ୧୭୬ ପୃ) ବୈଶ୍ୟଙ୍କ ସମାଜରେ ମଧ୍ୟ ବାଲ୍ୟବିବାହ ଚଳଣିରେ ରହିଥିଲା । ତେଣୁ ଯୁଧିଷ୍ଠିର ବୈଶ୍ୟ ହରି ସାହୁଙ୍କ କନ୍ୟା ସୁହାଣୀ ପଞ୍ଚଦଶ ବର୍ଷ ବୟସ ହେବା ପର୍ଯ୍ୟନ୍ତ ବିବାହ ନ କରିଥିବାରୁ ବିସ୍ମୟ ପ୍ରକାଶ କରି କହିଥିଲେ—"କିପରି ହୋଇଲୁ ତୁ ହରି ବୈଶ୍ୟ ଜାତି ।" (ସ୍ୱ ୫ ପୃ)

ଅଯୌକ୍ତର ସମାଜରେ ସେ କାଳରେ ଯୁବତୀ-ବିବାହ ପ୍ରଚଳିତ ଥିଲା । ଅସୁର-କନ୍ୟା ହିଡ଼ମ୍ବିକା ଯୁବତୀ ଅବସ୍ଥାରେ ଥାଇ ଭୀମସେନଙ୍କୁ ବିବାହ କରିଥିଲେ । (୨) ଅସୁର-କନ୍ୟା କାଳଞ୍ଜୀ ମଧ୍ୟ ଭୀମସେନଙ୍କୁ ଯୁବତୀ ଅବସ୍ଥାରେ ପତି ପଦରେ ବରଣ କରିଥିଲେ । (୩)

କ୍ଷତ୍ରିୟ ସମାଜରେ କେତେକ ସ୍ଥଳରେ ଯୁବତୀ କନ୍ୟାର ବିବାହ ମଧ୍ୟ ହେଉଥିଲା । ସୁଭଦ୍ରା ଅର୍ଜୁନଙ୍କୁ, ଗଙ୍ଗାଦେବୀ ଶାନ୍ତନୁଙ୍କୁ, ମାଳେନ୍ଦ୍ରୀ ଆନନ୍ଦାନନ୍ଦଙ୍କୁ ଓ ତ୍ରିପୁରମୋହିନୀ ପ୍ରଦ୍ୟୁମ୍ନଙ୍କୁ ଯୌବନରେ ହିଁ ବିବାହ କରିଥିଲେ । (୪)

ପଞ୍ଚଦଶ ଶତାବ୍ଦୀ ବେଳକୁ ମହାଭାରତୀୟ ସ୍ୱୟମ୍ବର ପ୍ରଥା ଆଉ ଚଳଣିରେ ନ ଥିଲା । ସାରଳା ଦାସ ମୂଳ ପ୍ରସଙ୍ଗର ଅନୁରୋଧରେ ଦ୍ରୌପଦୀ ଓ ଭାନୁମତୀଙ୍କ ସ୍ୱୟମ୍ବର ଦୃଶ୍ୟ ପରିବେଷଣ କରିଅଛନ୍ତି । ସେ କାଳର ସମାଜ ସ୍ୱୟମ୍ବର ପ୍ରଥାର ବିରୋଧୀ ଥିବା କଥା କବିଙ୍କ ବର୍ଣ୍ଣନାରୁ ହିଁ ପ୍ରତିପାଦିତ ହୁଏ । ରାଜା ଭୂମନ୍ୟୁ ସ୍ୱ କନ୍ୟା ଭାନୁମତୀଙ୍କ ସ୍ୱୟମ୍ବର ପ୍ରସ୍ତାବକୁ ପ୍ରଥମେ ଅସ୍ୱୀକାର କରିଥିଲେ । ସେ ଦର୍ଶାଇଥିଲେ ଯେ, ଲକ୍ଷେ ରାଜାଙ୍କୁ ନିମନ୍ତ୍ରଣ କରି ଆଣିବା ଏବଂ ଚର୍ଚ୍ଚା କରିବା ଆୟାସସାଧ୍ୟ । କେବଳ ସେ ଭାନୁମତୀଙ୍କ ବାଧ୍ୟବାଧକତାରେ ପଡ଼ି ସ୍ୱୟମ୍ବର ସଭା ଆହ୍ୱାନ କଲେ । (ଆ ୧୧୪ ପୃ) ପୁନଶ୍ଚ, ଏହି ସ୍ୱୟମ୍ବର ଅସଫଳ ମଧ୍ୟ ହେଲା । ଭାନୁମତୀ ସ୍ୱ ଇଚ୍ଛାରେ ଦୁର୍ଯ୍ୟୋଧନଙ୍କୁ ବରଣମାଳା ଦେଇ ନାହାନ୍ତି । କର୍ଣ୍ଣ ମଧ୍ୟସ୍ଥ ହୋଇ ଭାନୁମତୀଙ୍କ ସହ ଦୁର୍ଯ୍ୟୋଧନଙ୍କ ପରିଣୟ ସମ୍ପାଦନ କରିଅଛନ୍ତି । ଫଳରେ ଏହା ଏକ ଅଭିଭାବକମାନଙ୍କ ଦ୍ୱାରା ପ୍ରସ୍ତାବିତ ଓ ଆୟୋଜିତ ବିବାହରେ ପରିଣତ ହୋଇଅଛି । (ଆ ୧୧୮-୧୨୦ପୃ) ଦୁର୍ଯ୍ୟୋଧନ-କନ୍ୟା ଚନ୍ଦ୍ରାବତୀଙ୍କ ସ୍ୱୟମ୍ବର ପ୍ରସ୍ତାବକୁ ଯୁଧିଷ୍ଠିର ଅନୁମୋଦନ କରି ନଥିଲେ । ବଳରାମଙ୍କ ପୁତ୍ରମାନଙ୍କ ମଧ୍ୟରୁ ଜଣକୁ କନ୍ୟା ସଂପ୍ରଦାନ କରିବା ନିମିତ୍ତ ସେ ପରାମର୍ଶ ଦେଇଥିଲେ । ଏହି ସ୍ୱୟମ୍ବର ସଭା ମଧ୍ୟ ଫଳବତୀ ହେଲା ନାହିଁ । ନାରଦ ମଧ୍ୟସ୍ଥ ହୋଇ ଚନ୍ଦ୍ରାବତୀଙ୍କ ସହ ଶାମ୍ବଙ୍କ ପରିଣୟ କରାଇ ଦେଇଥିଲେ । (ମ ୨୫୪-୨୬୩ ପୃ) ମାଳେନ୍ଦ୍ରୀ-ବିବାହ କବି-ବର୍ଣ୍ଣିତ ଏକ ମୌଳିକ ବର୍ଣ୍ଣନା । ଏ ସ୍ଥଳରେ ସ୍ୱୟମ୍ବର କଥା ନାହିଁ । ଏଠାରେ ପିତାଙ୍କ ନିର୍ବାଚିତ ପୁରୁଷଙ୍କ ସହ କନ୍ୟା ବିବାହ କରିବା ବୃତ୍ତାନ୍ତ ନିହିତ । (ମ ୨୧୪ ପୃ)

ନାରୀର ବହୁ ସ୍ୱାମୀଗ୍ରହଣ ପ୍ରଥା ସେ ଯୁଗରେ ଅପ୍ରଚଳିତ ହୋଇଥିଲା । ରାଜା ଦ୍ରୁପଦ ଏହାର ନିନ୍ଦା କରିଥିଲେ । (ଆ ୩୦୭ ପୃ) ହିଡ଼ିମ୍ବିକା ଦ୍ରୌପଦୀଙ୍କୁ ଅସତୀ ବୋଲି ଭର୍ତ୍ସନା କରିଥିଲେ । ହିଡ଼ିମ୍ବିକାଙ୍କ ମୁଖରେ କବି କହନ୍ତି ଯେ, ପୁରୁଷ ବହୁପତ୍ନୀ ଗ୍ରହଣ କରିପାରେ; କିନ୍ତୁ ନାରୀ ବହୁ ସ୍ୱାମୀ ଗ୍ରହଣ କରିପାରିବ ନାହିଁ । (ସ ୨୫୫ ପୃ) ନିୟୋଗପ୍ରଥା ମଧ୍ୟ ସେ କାଳରେ ଅପ୍ରଚଳିତ ଥିଲା । ତାହା ଥିଲା—ଇତିହାସ ବା ପୁରାଣର କାହାଣୀ । ସାରଳାଙ୍କ ବ୍ୟାସଦେବ

ତାହାକୁ 'ଅଲେକ୍ୟ ଯାପନ' ଆଖ୍ୟା ଦେଇଛନ୍ତି । (ଆ ୩୦-୩୨ ପୃ) ଏହି ସମସ୍ତ ପ୍ରଥା ଭାରତବର୍ଷରୁ ଦଶମ ଶତାବ୍ଦୀ ପୂର୍ବରୁ ଲୋପ ପାଇଥିବାର ଜଣାଯାଏ । (୫) ବ୍ରାହ୍ମଣ୍ୟ ସମାଜରେ ବହୁ ପ୍ରାଚୀନ କାଳରୁ ବହୁ ସ୍ୱାମୀଗ୍ରହଣର ରୀତି ଅସ୍ୱୀକୃତ ହୋଇଥିଲା । (୬)

ଉତ୍କଳୀୟ ସମାଜରେ ବିବାହ କାଳରେ ବୈଦିକ କର୍ମକର୍ମାଣି ଉପରେ ଲୋକେ ପ୍ରାଧାନ୍ୟ ଦେଉଥିଲେ । ମହାଭାରତୀୟ ବୈଦିକ କର୍ମକର୍ମାଣି ବ୍ୟତୀତ କେତେକ ଲୋକାଚାର ମଧ୍ୟ ପାଳିତ ହେଉଥିଲା । ସେଗୁଡ଼ିକ ହେଉଛି—ପଞ୍ଚ ଗ୍ରାସୀ, ବରକନ୍ୟାଙ୍କର ଏକତ୍ର ଘୃତପାନ, ଦୁଇ ମଙ୍ଗଳା ଦିନର ବନ୍ଦାପନା ଓ ଇନ୍ଦ୍ରାଣୀ ବ୍ରତ, ପାଞ୍ଚ ମଙ୍ଗଳା ଦିନର ଉତ୍ସବ, ସାତ ମଙ୍ଗଳା ଦିନର ଚନ୍ଦ୍ରପୂଜା, ଆଠ ମଙ୍ଗଳା ଦିନର ମଙ୍ଗଳା ପୂଜା ଏବଂ ବିବାହ ପୂର୍ବରୁ କନ୍ୟାର ଦେଖା-ଦର୍ଶନ ।

ବିବାହ କାଳରେ ବ୍ରହ୍ମାବରଣ ଏକ ପ୍ରଧାନ କର୍ମ । କର୍ମକାଣ୍ଡରେ କୁହାଯାଇଅଛି ଯେ, ବ୍ରହ୍ମାଙ୍କୁ ବରଣ କଲେ ତ୍ରୈଲୋକ୍ୟର ସ୍ଥିତି ହୁଏ । ବ୍ରହ୍ମା ଦକ୍ଷିଣ ଦିଗରେ ଅବସ୍ଥାପିତ ହୁଅନ୍ତି । ଦକ୍ଷିଣ ଦିଗ ଯମଙ୍କର ଅଧିଷ୍ଠାନ ସ୍ଥଳ । ସେଠାରେ ବ୍ରହ୍ମା ଅବସ୍ଥାପିତ ହେଲେ ଯମଙ୍କ ଦର୍ପ ଧ୍ୱଂସ ହୁଏ । (୭) ସାରଳା ଦାସ ଦ୍ରୌପଦୀଙ୍କ ବିବାହ ବର୍ଣ୍ଣନା ସ୍ଥଳରେ ବ୍ରହ୍ମାଙ୍କ ବରଣ କଥା ଉଲ୍ଲେଖ କରନ୍ତି ।

"ବ୍ରହ୍ମା ବରଣ ଆବର କୁଳ ପୁରୋହିତ
ପାତାଳର ଅଷ୍ଟକୁଳ ନାଗ ଦଇବତ ।
× × ×
ସଂକଳ୍ପ ବାକ୍ୟରେ ଯହିଁ ସୀଉକାର କରି
ସମସ୍ତେ ଆନନ୍ଦେ ବେଦ ଧ୍ୱନିକି ଉଚ୍ଚାରି ।" (ଆ ୩୧୦ ପୃ)

ବିବାହ ଶେଷରେ ବର ବ୍ରାହ୍ମଣଙ୍କୁ ଦକ୍ଷିଣା ଦେବା କର୍ମକାଣ୍ଡୋକ୍ତ ବିଧି । (୮) ଏହି ବିଧିଟିର ବର୍ଣ୍ଣନା ସାରଳା ଦାସ ପ୍ରଦାନ କରିଅଛନ୍ତି । ଦ୍ରୌପଦୀଙ୍କ ବିବାହ ପରେ ପାଣ୍ଡବମାନେ ବିପ୍ରଙ୍କୁ ନାନା ଦ୍ରବ୍ୟ ଦାନ କରିବା କଥା କବି ଦର୍ଶାଇ ଅଛନ୍ତି ।

"ଅପାର ଧନ ସେ ଯଜ୍ଞଭୂକ ପାଇଥିଲେ
କନ୍ୟାର ନିମନ୍ତେ ତାହା ବିପ୍ରେ ଦାନ ଦେଲେ ।
ଗୋଧନ ଦାନ ଦେଇ ସେ ବସ୍ତ୍ର ଅଳଙ୍କାର
ସମସ୍ତ ଦାନ ଦେଲେକ ପଣ୍ଡୁର କୁମର ।" (୯)

ସାରଳା ଦାସ କହନ୍ତି ଯେ, ଦ୍ୱାରକାର ଲୋକେ ଚନ୍ଦ୍ରାବତୀ ଓ ଶାମ୍ବଙ୍କୁ ଘରେ ଘରେ ବନ୍ଦାପନା କରିଥିଲେ । ଏହି ପ୍ରଥାଟି ଏବେ ଆଉ ଚଳଣିରେ ନାହିଁ । ସାରଳାଙ୍କ ଯୁଗରେ ତାହା ପ୍ରଚଳିତ ଥିଲା । ତେଲୁଗୁଭାଷୀ ଅଞ୍ଚଳରେ ଏପରି ପ୍ରଚଳନ ଏବେ ମଧ୍ୟ ରହିଅଛି । କବି ଏହି ବିଧିଟିକୁ ବର୍ଣ୍ଣନା କରି ଲେଖିଛନ୍ତି—

"ଲକ୍ଷେ ଷାଠିଏ ସହସ୍ର ଯଦୁବଂଶ ସାଥି
ଘରେ ଘରେ କନ୍ୟାକୁ ଅର୍ଘ୍ୟ ଯେ ବନ୍ଦାଇ ।" (୧୦)

ସେ ଯୁଗରେ ବରୁଣଙ୍କ ପୂଜା ପ୍ରଚଳିତ ଥିଲା ବୋଲି କବି-ଲେଖମାରୁ ପ୍ରତିପାଦିତ ହୁଏ । କର୍ମକାଣ୍ଡ ଅନୁସାରେ ବରୁଣଙ୍କ ପୂଜା ବିବାହ କାଳରେ ଆଭ୍ୟୁଦୟିକ ଏବଂ କନ୍ୟା-ପିତା ବୈଶ୍ୱଦେବ କଳ୍ପରେ ବରୁଣାଦିଙ୍କ ପୂଜା କରିବା ବିଧି । (୧୧) ରାଜା ଦ୍ରୁପଦ ବିବାହର ପ୍ରାରମ୍ଭରେ ଦଶଦିଗପାଳଙ୍କୁ ପୂଜା କରିଥିଲେ । ବରୁଣ ଦିଗପାଳମାନଙ୍କ ମଧ୍ୟରେ ଅନ୍ୟତମ ଓ ପଶ୍ଚିମଦିଗର ଅଧିପତି ଅଟନ୍ତି । ଦ୍ରୌପଦୀଙ୍କ ପରିଣୟ ବେଳେ ବରୁଣ ଉପସ୍ଥିତ ଥିଲେ ବୋଲି କବି କହନ୍ତି । (ଆ ୩୧୧ ପୃ) ଏତଦ୍‌ଭିନ୍ନ କବି ଦର୍ଶାଇ ଅଛନ୍ତି ଯେ, ଯୁଧିଷ୍ଠିର ଧର୍ମ ଯଜ୍ଞର ପ୍ରାରମ୍ଭରେ ବରୁଣଙ୍କର ପୂଜା କରିଥିଲେ । (ମ ୩୩୦ ପୃ) 'ରାଧାରମଣ ପୁସ୍ତକାଳୟ' ପ୍ରକାଶିତ ଉଷାବିବାହ ଦୃଶ୍ୟରେ ବରୁଣ ପୂଜାର ଉଲ୍ଲେଖ ଦେଖାଯାଏ । (୧୨) କୁମ୍ଭ ଉପରେ ଆମ୍ବପତ୍ର ଓ ନାରିକେଳ ରଖି ବରୁଣଙ୍କ ପୂଜା କରିବା କଥା 'ରାଧାରମଣ ପୁସ୍ତକାଳୟ' ପ୍ରକାଶିତ ମହାଭାରତର ସୁରେଖା ବିବାହ ଦୃଶ୍ୟରେ ବର୍ଣ୍ଣିତ । (୧୩) ଦାଣ୍ଡିରାମାୟଣରେ ପୂର୍ଣ୍ଣକୁମ୍ଭ ସ୍ଥାପନ କରି ବରୁଣ ପୂଜା କରିବା ଚିତ୍ର ନିହିତ । (ଆଦି ୧୯୪ ପୃ) ରୁକ୍ମଣୀ ବିଭା (ପୃ୪୭) ଓ ପରିମଳା କାବ୍ୟରେ (ପୃ ୪୩) ବରୁଣପୂଜାର ଉଲ୍ଲେଖ ମିଳେ । ପଣ୍ଡିତ ନୀଳକଣ୍ଠ ଦାସ କହନ୍ତି—"ଉତ୍କଳର ସବୁ କର୍ମରେ ବରୁଣପୂଜା କରାଯାଏ । ନଡ଼ିଆ ବା ଗୁଆ ରୂପରେ ବରୁଣଙ୍କୁ ଆବାହନ କରାଯାଇଥାଏ । ଭାରତରେ ବହୁ କାଳରୁ ଏହି ପୂଜା ଲୋପପାଇଅଛି; କିନ୍ତୁ ଓଡ଼ିଶାରେ ବରୁଣ ସ୍ଥାନଭ୍ରଷ୍ଟ ହୋଇନାହାନ୍ତି ।" (୧୪)

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ସୁରେଖା ହରଣ ଓ ବିବାହ ବୃତ୍ତାନ୍ତଟି ସାରଳା ମହାଭାରତର ପ୍ରସିଦ୍ଧ ସମୀକ୍ଷକ ଶ୍ରୀ ଗୋପୀନାଥ ନନ୍ଦ ଶର୍ମାଙ୍କ ପରିଦୃଷ୍ଟ ପୋଥିଦ୍ୱୟରେ ନଥିଲା । ତଥାପି ସେ କହନ୍ତି—"ଲେଖା ଓ ଭାଷାରେ ତାଦୃଶ କିଛି ପ୍ରଭେଦ ରହି ନ ଥିବାରୁ ସାରଳା ଦାସ କବି ଯେ ନିଶ୍ଚେ ଏ ସବୁ ଲେଖି-ନାହାନ୍ତି ଏହା ସତ୍ୟ ବୋଲି କହି ନ ପାରୁ ।" (ଭା. ଦ. ପୃ ୬୦) ଏହି ବୃତ୍ତାନ୍ତ

'ପୁରାଣ ପ୍ରକାଶିକା କମ୍ପାନୀ'ଙ୍କ ମହାଭାରତରେ ମିଳେ । (ମଧ୍ୟ, ପୃ ୪୭୬-୫୦୦) ଶ୍ରୀଯୁକ୍ତ ନନ୍ଦ ଉଷା ପରିଣୟ ବୃତ୍ତାନ୍ତ ଶାରଳାଙ୍କ ଲେଖା ବୋଲି ସ୍ୱୀକାର କରନ୍ତି । (ଭା. ଦ. ପୃ୫୬) ପଣ୍ଡିତ ଶ୍ରୀ ସୂର୍ଯ୍ୟନାରାୟଣ ଦାଶ ତାଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' (ପ୍ରଥମ ଭାଗ) ଗ୍ରନ୍ଥରେ ଉଷାହରଣ ଓ ବିବାହ କଥାକୁ ସାରଳାଙ୍କ ଲେଖା ବୋଲି ଗ୍ରହଣ କରିଛନ୍ତି । (ପୃ ୩୩୨) ଶୋଭାବତୀ ପରିଣୟ ସମ୍ପର୍କରେ ଶ୍ରୀଯୁକ୍ତ ନନ୍ଦଙ୍କ ମତ ହେଲା—"ସାରଳା ଦାସ କବି ମହୋଦୟ ହରିବଂଶ ବିଷ୍ଣୁପର୍ବରେ ଏବଂ ଶ୍ରୀମଦ୍ ଭାଗବତ ଦଶମସ୍କନ୍ଧରେ ଉକ୍ତ ପାରିଜାତ ହରଣ ସନ୍ଦର୍ଭକୁ ଅନୁସରି ଶୋଭାବତୀ-ହରଣ ପ୍ରକରଣର ଅବତାରଣା କରିଥିବେ ଅଥବା ଅନ୍ୟ କେହି ମିଶାଇ ଦେଇଥିବେ ।" (ପୃ ୫୯) ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଶୋଭାବତୀ-ହରଣ ପ୍ରସଙ୍ଗକୁ ସାରଳାଙ୍କ କପୋଳକଳ୍ପିତ ମୌଳିକ ସୃଷ୍ଟି ଉପରେ ଗ୍ରହଣ କରିଛନ୍ତି । (ଓ. ସା. ଇ ୧ମ ଭାଗ, ପୃ ୨୮୩) ଉଷାହରଣ ଓ ଶୋଭାବତୀ-ହରଣ ବୃତ୍ତାନ୍ତ 'ପୁରାଣ ପ୍ରକାଶିକା କମ୍ପାନୀ'ଙ୍କ ଗ୍ରନ୍ଥରେ ମିଳେ । (ମଧ୍ୟପର୍ବ) ଶ୍ରୀଯୁକ୍ତ ଗୋପୀନାଥ ନନ୍ଦ ଦର୍ଶାଇଛନ୍ତି ଯେ, ସାରଳା ମହାଭାରତରେ ବୈରିଷ୍ଟ ନୃପତିଙ୍କ କନ୍ୟା ଲମ୍ବିତା ଓ ଚିତ୍ରପଦାଙ୍କ ସହ ଅର୍ଜୁନଙ୍କର ବିବାହ ହେବା କଥା ଅଛି । (ଭା. ଦ: ପୃ ୪୩) ଏଥିରୁ ସ୍ପଷ୍ଟ ଯେ ସେ ଚିତ୍ରାଙ୍ଗଦା ବିବାହକୁ ସାରଳାଙ୍କ ଲେଖା ଭାବରେ ଗ୍ରହଣ କରନ୍ତି ନାହିଁ; କିନ୍ତୁ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ବୈରିଷ୍ଟ ନୃପତିଙ୍କ କନ୍ୟା ଚିତ୍ରାଙ୍ଗଦାଙ୍କ ବିବାହ କଥାକୁ ସାରଳାଙ୍କ ଲେଖା ଭାବରେ ପ୍ରଦର୍ଶନ କରନ୍ତି । (ଓ. ସା.ଇ., ୧ମ ଭାଗ, ପୃ ୨୭୮) ରାଧାରମଣଙ୍କ ଗ୍ରନ୍ଥରେ ସୁରେଖା ବିବାହ, ଉଷାପରିଣୟ, ଶୋଭାବତୀ ପରିଣୟ ଓ ଚିତ୍ରାଙ୍ଗଦା ପରିଣୟ ବୃତ୍ତାନ୍ତ ମିଳେ । (ମଧ୍ୟପର୍ବ) ପୁରାଣ ପ୍ରକାଶିକା କମ୍ପାନୀଙ୍କ ଗ୍ରନ୍ଥରେ ଶୋଭାବତୀ ପରିଣୟ, ଉଷାବିବାହ ଓ ଚିତ୍ରାଙ୍ଗଦା-ବିବାହ କଥା ଅଛି । (ମଧ୍ୟପର୍ବ) କିନ୍ତୁ ଏହିସବୁ ବୃତ୍ତାନ୍ତ ମୂଳଗାଁ ଓ ପଞ୍ଚପଲ୍ଲୀ ପୋଥିରେ ନାହିଁ । ତେଣୁ ଏହି ସମସ୍ତ ହରଣ ଓ ବିବାହ କାହାଣୀକୁ ପ୍ରକ୍ଷେପ ବୋଲି ଗ୍ରହଣ କରାଯାଇପାରେ । ବଳିଷ୍ଠ ପ୍ରମାଣ ନ ମିଳିବା ପର୍ଯ୍ୟନ୍ତ ସୁରେଖା ଆଦି କନ୍ୟାଙ୍କ ବୃତ୍ତାନ୍ତକୁ ପ୍ରକ୍ଷିପ୍ତ ବୋଲି ସ୍ୱୀକାର କରିବାକୁ ହେବ । କେତେକ ପୋଥିରେ ତଥା ମୁଦ୍ରିତ ଗ୍ରନ୍ଥ ଦୁଇଟିରେ ଏହି ବିଷୟମାନ ମିଳୁଥିବାରୁ, ସେଥିରେ ନିହିତ କେତେକ ବିଧି-ବିଧାନ ଓ ରୀତିନୀତିର ପ୍ରଦର୍ଶନ ଏଠାରେ କରାଯାଇପାରେ ।

'ରାଧାରମଣ ପୁସ୍ତକାଳୟ' ପ୍ରକାଶିତ ମହାଭାରତରେ ମଙ୍ଗଳନାଭ

ବିଶେଷ ବର୍ଣ୍ଣନା ପରିଦୃଷ୍ଟ ହୁଏ । ଏହି ଗ୍ରନ୍ଥର ଚନ୍ଦ୍ରାଙ୍ଗଦା-ପରିଣୟ ସ୍ଥଳରେ ଅଛି ଯେ, ସେ କାଳରେ ମଙ୍ଗଳନ ଦିବସର ରାତ୍ରରେ ମଙ୍ଗଳ ବେଳା ଦେଖି ସଧବା ନାରୀଗଣ ଦୁର୍ବାକ୍ଷତ, ଧୂପ, ଦୀପ ନେଇ ଶୁଭଗୀତ ଗାଇ ଗ୍ରାମଦେବତାଙ୍କୁ ମଙ୍ଗୁଳିବା ନିମିତ୍ତ ଯାତ୍ରା କରୁଥିଲେ । ସେମାନେ ଶତମୁଖୀ କଳସୀ ନେଇ ଦ୍ୱାରେ ଦ୍ୱାରେ ଜଳଭିକ୍ଷା ମାଗୁଥିଲେ । ଏହି ପ୍ରକାରରେ ସଂଗୃହୀତ ଜଳକୁ 'ଗୈରପାଣି' କୁହାଯାଉଥିଲା । ସେହି ଜଳରେ ବିବାହ ଦିବସର ପ୍ରତ୍ୟୁଷରେ ବରକନ୍ୟାଙ୍କୁ ସ୍ନାନ କରାଇ ଦିଆ ଯାଉଥିଲା । (୧୫) ଏହି ଗ୍ରନ୍ଥର ସୁରେଖା-ବିବାହ ଦୃଶ୍ୟରେ ନାରୀମାନେ ସାତଜଣଙ୍କ ଗୃହରୁ ପାଣିତୋଳା ଆଣିବା ଏବଂ ସେଥିରେ ବର-କନ୍ୟାଙ୍କୁ ସ୍ନାନ କରାଇବା କଥା ଅଛି । (ମ ୩୦୫ପୃ) କଳସା ଚଉତିଶା (୧୬), ଦାଣ୍ଡି ରାମାୟଣ (୧୭), କଳ୍ପଲତା (ପୃ ୬୨), ରାମବିଭା (ପୃ ୭୧), ରୁକ୍ମଣୀବିଭା (ପୃ ୪୬) ଓ ଲାବଣ୍ୟବତୀ କାବ୍ୟରେ (ବିଂଶ ଛାନ୍ଦ) ଏତାଦୃଶ ପାଣିତୋଳା ଓ ସ୍ନାନର କଥା ଅଛି ।

ଏହି ମୁଦ୍ରିତ ମହାଭାରତର ସୁରେଖା-ବିବାହ ଦୃଶ୍ୟରେ ମଙ୍ଗଳାଚରଣର ଏକ ବିଶେଷ ଚିତ୍ର ଅଙ୍କିତ । ସେଠାରେ କଥିତ ହୋଇଅଛି ଯେ, ସାତଜଣ ଅହ୍ୟ (ସଧବା) ନାରୀ ଆସି ବରକନ୍ୟାଙ୍କୁ ଏକ ନୂତନ ମଞ୍ଚିଣା ଉପରେ ବସାଇଲେ, ତାଙ୍କ ଶରୀରରେ ହଳଦୀ-କୁଙ୍କୁମ ଲେପନ କଲେ, ସେମାନଙ୍କର ମସ୍ତକରେ ସୁବର୍ଣ୍ଣର ଶିଳପୁଆ ସ୍ପର୍ଶ କରାଇଲେ । (ମ. ୩୦୫ ପୃ) ମଙ୍ଗଳନର ଏହି ସମସ୍ତ ବିଧି-ବିଧାନ କର୍ମକାଣ୍ଡୋକ୍ତ ନୁହେଁ ।

ଲବଣଗୃମରୀ କର୍ମ ଏକ କର୍ମକାଣ୍ଡୋକ୍ତ ମହାଭାରତୀୟ ବିଧି । ଗୃହର ଏକ କୋଠରୀକୁ ଗୋମୟରେ ଲିପି ଶୁଦ୍ଧ କରାଯାଏ । କୋଠରୀର ମଧ୍ୟ ଭାଗରେ ଏକ ଚତୁରସ୍ର ବେଦି ସ୍ଥାପିତ ହୁଏ । ବେଦୀ ଉପରେ ଲବଣରେ ଏକ ଦୁର୍ଗା ମୂର୍ତ୍ତି ଗଠନ କରାଯାଏ । କନ୍ୟା 'ଅମ୍ବେ ଅମ୍ବିକେ' ମନ୍ତ୍ରରେ ଦେବୀଙ୍କୁ ପୂଜା କରେ ଏବଂ ପ୍ରାର୍ଥନାରେ କହେ—"ପତିଙ୍କୁ ମୋର ବଶୀଭୂତ କରାଅ । ମୋତେ ଶହେ ବର୍ଷ ପର୍ଯ୍ୟନ୍ତ ତାଙ୍କ ସହ ସଂଯୁକ୍ତ କରି ରଖ, ମୋତେ ସର୍ବଦା ଐଶ୍ୱର୍ଯ୍ୟ-ଶାଳିନୀ କର ।" ଏହା ହିଁ କର୍ମକାଣ୍ଡର ଲବଣ ଗୃମରୀ ପୂଜା । (୧୮) ବର ଯେତେବେଳେ କନିଷ୍ଠବେଦି (୧୯) ସମୀପରେ ଉପନୀତ ହୁଏ, ସେତେବେଳେ କନ୍ୟା ହସ୍ତରେ ଲବଣ ନେଇ ଯାଏ ଏବଂ ଶୁଭଭିଳାଷ ସହ ମନ୍ତ୍ରପାଠ କରି ବର ଉପରକୁ ଭ୍ରମର ପରି ବୁଲାଇ ଲବଣ ନିକ୍ଷେପ କରେ । ଏହାର ନାମ ଲବଣଗୃମରୀ କର୍ମ । (୨୦)

ରାଧାରମଣଙ୍କ ପ୍ରକାଶିତ ମହାଭାରତର ଚିତ୍ରାଙ୍ଗଦା ପରିଣୟ, ଶୋଭାବତୀ ପରିଣୟ ତଥା ସୁରେଖା ବିବାହ ଦୃଶ୍ୟରେ ଲବଣଭ୍ରମଣୀ କର୍ମର ବର୍ଣ୍ଣନା ମିଳେ । ଚିତ୍ରାଙ୍ଗଦା ପରିଣୟ ସ୍ଥଳରେ କୁହାଯାଇଅଛି ଯେ, କନ୍ୟା ଲବଣ ସହ ଗୁଡ଼ ନେଇ, ନବବସ୍ତ୍ରର ଆଡ଼ୁଆଳରେ ରହି ବର ଉପରକୁ ନିକ୍ଷେପ କଲା । (ମ ୫୬ ପୃ) ଶୋଭାବତୀ ପରିଣୟ ସ୍ଥଳରେ ଲବଣ ସହ କେଶନିର୍ମିତ ଚଉଁରୀ ପ୍ରକ୍ଷିପ୍ତ ହେବା କଥା ଉକ୍ତ । (୨୧) ସୁରେଖା ବିବାହ ବୃତ୍ତାନ୍ତରେ ଲବଣଭ୍ରମଣୀ କର୍ମର ଉଲ୍ଲେଖ ମାତ୍ର ମିଳିଛି । (ମ ୩୦୬ ପୃ) 'ପୁରାଣ ପ୍ରକାଶିକା କଂପାନୀ'ଙ୍କ ମହାଭାରତରେ କନ୍ୟା ତଣ୍ଡୁଳସହ ଲବଣ ନିକ୍ଷେପ କରିବା କଥା ରହିଅଛି । (ମ ୭୬ ପୃ) କଳସା ଚଉତିଶା (୨୨), ରାମବିଭା (ପୃ ୭୪), କଲ୍ପଲତା (ପୃ ୬୮), ଦାଣ୍ଡି ରାମାୟଣ (୨୩) ଆଦିରେ ଲବଣଭ୍ରମଣୀ କର୍ମର ଉଲ୍ଲେଖ ମିଳେ । ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀ କାବ୍ୟରେ କନ୍ୟା ବର ଉପରକୁ ଲବଣ ଓ ତଣ୍ଡୁଳ ନିକ୍ଷେପ କରିବା କଥା ଉକ୍ତ । ଭଞ୍ଜ କବିଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ଲବଣଭ୍ରମଣୀ ପୂଜାରେ ଗୌରୀ ପୂଜିତା ହୁଅନ୍ତି ଏବଂ କନ୍ୟା ପ୍ରାର୍ଥନା କରେ—"ଏହି ପୁରୁଷର ଅଙ୍ଗସଙ୍ଗ ଲାଭ ହେଉ ।" (୨୪)

କର୍ମକାଣ୍ଡୋକ୍ତ ଏକ ବିଧି ହେଉଛି—କନ୍ୟାପିତାଙ୍କ ଦ୍ୱାରା ଜାମାତାର ପଦପ୍ରକ୍ଷାଳନ । କନ୍ୟାର ଭ୍ରାତା ମଧ୍ୟ ଏହା କରି ପାରନ୍ତି । (୨୫ କ) କନ୍ୟାପିତା ବୈଶ୍ୱଦେବ ଓ ବରୁଣ ପୂଜା କଲାପରେ ପୁଣ୍ୟାହବାଚନ କରିବା ବିଧି । (ବି କ କା, ପୃ ୩୩୨) ପୁଣ୍ୟାହବାଚନ ପରେ ଜାମାତାଙ୍କର ପାଦକୁ ହରିଦ୍ରା ଜଳରେ ପ୍ରକ୍ଷାଳନ କରିବା ମହାଭାରତୀୟ ବିଧି । (ବି କ କା, ପୃ ୩୩୨) ଜାମାତା କନ୍ୟା ପିତାର ଅତିଥି-ସ୍ୱରୂପ ଏବଂ ତାହାଙ୍କ ପକ୍ଷରେ ନାରାୟଣ ସଦୃଶ । ତେଣୁ ଗୃହ୍ୟ ସୂତ୍ର କାରିକାରେ ଶ୍ୱଶୁର ବର ପାଦ ପ୍ରକ୍ଷାଳନ କରିବା ଯୁକ୍ତିଯୁକ୍ତ ବୋଲି କୁହା-ଯାଇଅଛି । (ବି କ କା, ୩୩୩ ପୃ) ପଦ ପ୍ରକ୍ଷାଳନ ପରେ କନ୍ୟାପିତା ଜାମାତାର ପ୍ରଥମ ବରଣ କର୍ମ କରିବା ବିଧି । (ବି କ କା, ପୃ ୩୩୩–୩୩୫) ରାଧାରମଣଙ୍କ ମହାଭାରତର ଚିତ୍ରାଙ୍ଗଦା-ପରିଣୟ ସ୍ଥଳରେ ଉକ୍ତ ଅଛି ଯେ, କନ୍ୟାର ଭ୍ରାତା ଚିତ୍ରଧ୍ୱଜ ଅଭୁଠରୁ ଅଣା ହୋଇଥିବା ଜଳରେ ଅର୍ଜୁନଙ୍କର ପଦ-ପ୍ରକ୍ଷାଳନ କରିଥିଲେ । (ମ ୫୬ ପୃ) ସୁରେଖା କନ୍ୟାର ବିବାହ ବେଳେ କନ୍ୟା-ଭ୍ରାତା ମାନ ଶେଖର ପ୍ରଦ୍ୟୁମ୍ନଙ୍କର ପାଦ ଧୌତ କରିଥିଲେ । (ମ ୩୦୬ ପୃ) ପୁରାଣ ପ୍ରକାଶିକା କମ୍ପାନୀଙ୍କ ବର୍ଣ୍ଣିତ ଶୋଭାବତୀ-ପରିଣୟ ଦୃଶ୍ୟରେ ଏହିପରି ଚିତ୍ର ମିଳେ । (ମ ୩୯୪ ପୃ) ଦାଣ୍ଡି ରାମାୟଣ (୨୫ ଖ) ଓ ପରିମଳା କାବ୍ୟରେ (ପୃ ୪୭) କନ୍ୟା

ପିତା ଜାମାତାଙ୍କ ପଦ-ପ୍ରକ୍ଷାଳନ କରିବା କଥା ଅଛି । ଏବେ ମଧ୍ୟ ବିବାହ କାଳରେ କନ୍ୟାପିତା ବା ଭ୍ରାତା ବରର ପଦ-ପ୍ରକ୍ଷାଳନ କରିଥାନ୍ତି ।

ବିବାହ ପରେ ବରକନ୍ୟାଙ୍କ କଉଡ଼ି ଖେଳ ଏକ ଲୋକାଚାର । ଏହା କର୍ମକାଣ୍ଡୋକ୍ତ ବିଧି ନୁହେଁ । ସୁରେଖା ବିବାହ ଦୃଶ୍ୟରେ ବରକନ୍ୟାଙ୍କର କଉଡ଼ି ଖେଳିବା କଥା ବର୍ଣ୍ଣିତ । (୨୬) ପୁରାଣ ପ୍ରକାଶିକା କଂସାମାର ଗ୍ରନ୍ଥରେ ଉଷା ବିବାହ ସ୍ଥଳରେ କଉଡ଼ି ଖେଳର ଉଲ୍ଲେଖ ମିଳେ । (ମ ୨୮୯ ପୃ) ଦାଣ୍ଡି ରାମାୟଣ (୨୭) ଓ କଳସା ଚଉତିଶାରେ (୨୮) ଏହାର ଚିହ୍ନ ପରିଦୃଷ୍ଟ ହୁଏ । ଏବେ ମଧ୍ୟ ଚଳଣିରେ ବରକନ୍ୟାଙ୍କର କଉଡ଼ିଖେଳ ରହିଅଛି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ବିବାହ ପୂର୍ବରୁ ଜାତକ ଦେଖା ହେବା ରୀତି ସେ ଯୁଗରେ ବିଶେଷ ଜନପ୍ରିୟ ହୋଇ ନ ଥିଲା । କାରଣ କବି କେବଳ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ବିବାହ ପ୍ରସଙ୍ଗରେ ଜାତକ-ଦେଖାର କଥା ଉତ୍ଥାପନ କରନ୍ତି । ଅନ୍ୟ କୌଣସି ପରିଣୟ ଦୃଶ୍ୟରେ ଏହାର ଚିହ୍ନ ଦିଅନ୍ତିନାହିଁ । ପଣ୍ଡିତ ନୀଳକଣ୍ଠ ଦାସ ତେଣୁ ଯଥାର୍ଥରେ କହିଛନ୍ତି—"ସେଦିନ ଯାଏ ପୁରୀର ଶାସନୀ ବ୍ରାହ୍ମଣେ ବିବାହ-ସମ୍ବନ୍ଧରେ ଜାତକ-ଦେଖାକୁ ଘୃଣା କରୁଥିଲେ । ସାମନ୍ତ ଭିକମିଶ୍ରଙ୍କ ଘରେ ଏବେ ବି ବିବାହରେ ଜାତକ-ଦେଖା ହୁଏ ନାହିଁ ।" (ଓ. ସା. ଇ. ପ., ୨ୟ, ପୃ ୩୦୭)

ସେ କାଳର ରାଜାମାନଙ୍କ ଘରର ବିବାହ ବେଳେ ବେଶ୍ୟାନୃତ୍ୟ ପ୍ରଚଳିତ ଥିଲା ! କବି ଦ୍ରୌପଦୀଙ୍କ ବିବାହ ବର୍ଣ୍ଣନା କ୍ରମରେ କହନ୍ତି—"ନୃତ୍ୟ ଆରମ୍ଭେ ଖଟନ୍ତି ଚଞ୍ଚଳା କାମିନୀ ।" (ଆ. ୩୧୦ପୃ) ଚନ୍ଦ୍ରାବତୀଙ୍କ ବିବାହ ଦୃଶ୍ୟରେ ଅଛି—"ମଙ୍ଗଳ ଗୀତ ଗାବନ୍ତି ସୁଲଭ କାମିନୀ ।" (ମ ୨୮୭ପୃ) ଉତ୍ତରା କନ୍ୟାର ବିବାହ ବୃତ୍ତାନ୍ତରେ ମଧ୍ୟ ନୃତ୍ୟଗୀତର ଉଲ୍ଲେଖ ମିଳେ । (ବି ୧୮୧ପୃ) ପଣ୍ଡିତ ନୀଳକଣ୍ଠ ଦାସ କହନ୍ତି—ବିବାହ ଉତ୍ସବରେ ସାମାଜିକ ଭାବରେ ମାହାରୀ ପଶି ପାରି ନାହାନ୍ତି ଏବଂ ଅନ୍ୟ ପ୍ରକାର ନୃତ୍ୟଗୀତ ସଙ୍ଗୀତ ମଧ୍ୟ ସେ ସବୁଠାରେ ଦେଖା ଦେଇନାହିଁ । ( ଓ. ସା. ଇ. ପ, ୨ୟ ପୃ୯୪) ଏହି ମତାମତ ଯଥାର୍ଥ ବୋଲି ମନେହୁଏନାହିଁ ।

ପିତାଙ୍କୁ କନ୍ୟାଦାନର ଅଧିକାରୀ ରୂପରେ ପ୍ରଦର୍ଶନ କରିବା ପାଇଁ ରାଧାରମଣଙ୍କ ଗ୍ରନ୍ଥରେ ବିମ୍ବମାଳୀ ଉପାଖ୍ୟାନ ମିଳେ । ସେଠାରେ ସଖୀ ମୁଖରେ କବି ଲେଖିଛନ୍ତି—"ପିତୃଦତ୍ତ କନ୍ୟା ରାଜଦତ୍ତ ଭୂଇଁ ।" (୨୯) ମୂଳୁ ଗାଁ ଓ

ପଞ୍ଚପଲ୍ଲୀ ପୋଥିରେ ଏହି ଉପାଖ୍ୟାନ ନ ମିଳିଲେ ହେଁ, ଅନ୍ୟ ପୋଥିରେ ମିଳୁଅଛି । ପଣ୍ଡିତ ଗୋପୀନାଥ ନନ୍ଦଙ୍କ ସଂଗୃହୀତ ପୋଥିଦ୍ୱୟରେ ଉପାଖ୍ୟାନଟି ରହିଥିବାର ଜଣାଯାଏ । (୩୦)

ସାରଳା ଦାସ ବହୁ କର୍ମକାଣ୍ଡୋକ୍ତ ବିଧିବିଧାନ ବର୍ଣ୍ଣନା କରିନାହାନ୍ତି । କବିଙ୍କ ପକ୍ଷରେ ତାହା ସ୍ୱାଭାବିକ । ବାଟବରଣ, କନ୍ୟାବେଦୀ କର୍ମ, ବରକନ୍ୟାଙ୍କ ଅଗ୍ନି ପ୍ରଦକ୍ଷିଣ ଓ ସପ୍ତପଦୀଗମନ ଭଳି ବହୁ ବିଧି ତାଙ୍କ ଲେଖାରେ ମିଳେ ନାହିଁ । ବିଧି ବିଧାନ ମାନଙ୍କର ବର୍ଣ୍ଣନା ସେ କ୍ରମାନୁସାରେ ବି କରନ୍ତି ନାହିଁ । ଅନେକ ବିଧିର ସେ ଖାଲି ସୂଚନା ମାତ୍ର ଦେଇଅଛନ୍ତି । କର୍ମକାଣ୍ଡରେ ଅଛି ଯେ ବରକନ୍ୟା ବିବାହର ତିନି ଦିନ ଯାଏଁ କ୍ଷାର ଓ ଲବଣ ବ୍ୟବହାର ନ କରି ସଂଯମରେ ରହିବେ । (୩୧) କିନ୍ତୁ ସାରଳା ଦାସ ବିବାହ ଦିବସର ରାତିରେ ହିଁ ମଧୁଶଯ୍ୟାର ଚିତ୍ର ପ୍ରଦାନ କରିଅଛନ୍ତି ।

ସାରଳା ଦାସଙ୍କ ଯୁଗରେ ନାରୀଜାତିର ସ୍ଥାନ ସମାଜରେ ଉଚ୍ଚ ଥିଲା । ନାରୀ ସେ କାଳରେ ଯୁଦ୍ଧ, ରାଜ୍ୟଶାସନ ତଥା ଶିକ୍ଷା ଆଦିରେ ଅଂଶ ଗ୍ରହଣ କରି ପାରୁଥିଲେ । ସୁଦେଷ୍ଣା ଚରିତ୍ରଟି ଏହାର ଦୃଷ୍ଟାନ୍ତ । ସେ ଯୁଗର ଓଡ଼ିଆ ନାରୀ ବୀର ଜନନୀ । କୁନ୍ତୀ ଦେବୀ ସେହି ବୀର ଜନନୀଙ୍କର ପ୍ରତୀକ । ସେ ଚାହିଁଥିଲେ କୌରବଙ୍କ ସହ ନିଜ ପୁତ୍ରମାନଙ୍କର ଯୁଦ୍ଧ । ସେ ଆପୋଷ ମିଳାମିଶାର ପକ୍ଷପାତୀ ନ ଥିଲେ । ସେ କାଳରେ ଓଡ଼ିଆ ରମଣୀ ଜ୍ୟୋତିଷ, ତନ୍ତ୍ର, ନୃତ୍ୟଗୀତ, ରାଜନୀତି ତଥା ଯୁଦ୍ଧବିଦ୍ୟା ଅବଗତ ହେଉଥିଲେ । ଭାନୁମତୀ, ସୁଦେଷ୍ଣା, ଗାନ୍ଧାରୀ, ମାୟାବତୀ, ହାରାବତୀ ଓ ଉତ୍ତରା ସେ କାଳର ବିଦୁଷୀ ନାରୀସମାଜର ପ୍ରତିନିଧି ।

ପଞ୍ଚଦଶ ଶତାବ୍ଦୀରେ କୌଣସି କୌଣସି ସମାଜରେ ବିଧବାର ପୁନର୍ବିବାହ ପ୍ରଥା ପ୍ରଚଳିତ ଥିଲା । ଗାନ୍ଧାରୀ ତାହାର ଦୃଷ୍ଟାନ୍ତ । କବି ଗାନ୍ଧାରୀଙ୍କୁ ସ୍ପଷ୍ଟତଃ ବିଧବା ବୋଲି କହିଛନ୍ତି—"ବିଧବା କନ୍ୟାକୁ ଧୃତରାଷ୍ଟ୍ରେ ଆଣିଦେଲୁ ।" (ଆ ୧୩୪ପୃ) ବାସ୍ତବ ପକ୍ଷରେ ଓଡ଼ିଶାର କୃଷକ ସମାଜରେ 'ଦୁତିଅଘର' ପ୍ରଥା ଥିବାର ଜଣାଯାଏ । (୩୧) କାମସୂତ୍ର ପ୍ରଣେତା ବାତ୍ସ୍ୟାୟନଙ୍କ ମତରେ ନାରୀର ସ୍ୱେଚ୍ଛା ବ୍ରତ ବା ଉପବାସ କରଣୀୟ ନୁହେଁ । (୩୨) କିନ୍ତୁ ସାରଳାଙ୍କ ଯୁଗର ସମାଜରେ ନାରୀ ସେହି ଅଧିକାର ପ୍ରାପ୍ତ ହୋଇଥିଲେ । ଗାନ୍ଧାରୀ ସ୍ୱେଚ୍ଛାରେ କପାଳୀ ତୀର୍ଥରେ ବ୍ରତ ପାଳନ କରିବା ତାହାର ଦୃଷ୍ଟାନ୍ତ । ସେଥିପାଇଁ ତାଙ୍କୁ ସ୍ୱାମୀ ବା ପୁତ୍ରଙ୍କର ଅନୁମତି ନେବାକୁ ପଡ଼ି ନ ଥିଲା । (ଆ ୮୦ ପୃ) ଗାନ୍ଧାରୀ ଓ କୁନ୍ତୀ

ଉଭୟେ କାହାର ଅନୁମତିକୁ ଅପେକ୍ଷା ନ ରଖି ବଟେଶ୍ୱର ଶିବଙ୍କ ପୂଜାରେ ନିଯୁକ୍ତ ହୋଇଥିଲେ । (ମ ୨୪୮ ପୃ)

ସେ କାଳରେ ବାଲ୍ୟବିବାହର ପରିମାଣ ସ୍ୱଳ୍ପ ଥିଲା । ବ୍ରାହ୍ମଣ ତଥା ନିଜକୁ ଉଚ୍ଚ କୁଳର ବୋଲି ମନେ କରୁଥିବା କ୍ଷତ୍ରିୟମାନେ ବାଲ୍ୟବିବାହର ପକ୍ଷପାତୀ ଥିଲେ । କବି ନିଜେ ବାଲ୍ୟବିବାହର ପକ୍ଷପାତୀ ଥିବାର ମନେହୁଏ । କାରଣ ସେ ଯୁବତୀ ବିବାହର ସ୍ଥଳମାନଙ୍କରେ ଯୁଦ୍ଧ-ବିଗ୍ରହ ଓ ଅଶାନ୍ତିର କଥା ବର୍ଣ୍ଣନା କରନ୍ତି । ପ୍ରତ୍ୟେକ ଯୁବତୀ-ବିବାହର ସ୍ଥଳରେ କନ୍ୟା ଦୂଷିତା ହେବା କଥା କହନ୍ତି । ଏହା ହେଲେ ମଧ୍ୟ, କବି-ଲେଖାରେ ଯୁବତୀ-ବିବାହର ଦୃଷ୍ଟାନ୍ତ ଅଧିକ । ତେଣୁ ଅବଧାରିତ ହୁଏ ଯେ, ବାଲ୍ୟବିବାହ ବିରୁଦ୍ଧରେ ସାମାଜିକ ବିପ୍ଳବ ଆରମ୍ଭ ହୋଇଥିଲା । ନବଯୁବକମାନେ ଏହାର ପକ୍ଷପାତୀ ଥିଲେ । ଅର୍ଜୁନ ତେଣୁ କହିଥିଲେ ଯେ—ଏକୋଇଶ ବର୍ଷର ପୁରୁଷ ସହ ଷୋଳ ବର୍ଷର ଯୁବତୀର ବିବାହ କରଣୀୟ ।

"ଏକୋଇଶ ବରଷର ଯେବେ ହୋଇବେ ପୁରୁଷ
ସ୍ତ୍ରୀ ହୋଇବ ତହିଁକି ଷୋଡ଼ଦଶ ବର୍ଷ ।
ଯେସନେକ ଯୋଗ ତହିଁକି ଅନୁକୂଳ ଘଟି
ସ୍ତ୍ରୀ ପୁରୁଷ ବେନି ଯେ ହୋଇବ ଭେଟାଭେଟି ।" (୩୩)

ପିତାମାତାଙ୍କ ଦ୍ୱାରା ନିର୍ବାଚିତ ପୁରୁଷକୁ ସ୍ୱାମୀ ରୂପରେ ଗ୍ରହଣ କରିବା ସେ ଯୁଗର ଆଦର୍ଶ ଥିଲା; କିନ୍ତୁ ସେ କାଳର କେତେ କେତେ କ୍ଷତ୍ରିୟା ଯୁବତୀ ଏହି ଚିରାଚରିତ ପ୍ରଥା ବିରୁଦ୍ଧରେ ଯାଇ ସ୍ୱେଚ୍ଛାରେ ପତି ନିର୍ବାଚନ କରୁଥିଲେ । ସମାଜର କେତେ କେତେ ବିଚାରବନ୍ତ ବ୍ୟକ୍ତି ଏହି ସଂସ୍କାରର ପୋଷକତା ମଧ୍ୟ କରୁଥିଲେ । ମାଳେନ୍ଦ୍ରୀ କନ୍ୟାର ବିବାହ ଏହାର ଉଦାହରଣ । ମାଳେନ୍ଦ୍ରୀ କନ୍ୟାର ବିବାହ ବେଳେ ବ୍ରହ୍ମା କହିଥିଲେ ଯେ, କନ୍ୟା ଯାହାକୁ ବରଣମାଳା ଦେବ ସେ ତାକୁ ବିବାହ କରିବ । (ମ ୨୩୬ପୃ) କବିଙ୍କ ସୁଭଦ୍ରା ସ୍ୱୀୟ ଅଭିଭାବକ ବଳରାମଙ୍କ ନିରୂପିତ ପୁରୁଷ ଦୁର୍ଯ୍ୟୋଧନଙ୍କୁ ବିବାହ ନ କରି ସ୍ୱେଚ୍ଛାରେ ଅର୍ଜୁନଙ୍କୁ ପତି ପଦରେ ବରଣ କରିଥିଲେ । (ମଧ୍ୟପର୍ବ)

ସ୍ୱାମୀର ଚିତାରେ ପ୍ରବେଶ କରିବା ସେତେବେଳେ କେବଳ ଏକ ଆଦର୍ଶର କଥା ଥିଲା । ବାସ୍ତବ ପକ୍ଷରେ ସତୀଦାହ ପ୍ରଥା ପ୍ରାୟ ନ ଥିଲା । କବି କୌଣସି ମୌଳିକ ଦୃଷ୍ଟାନ୍ତରେ ସତୀର କଥା ଉତ୍ଥାପନ କରିନାହାନ୍ତି । ମୂଳ

ମହାଭାରତରେ ଥିବା ସହମରଣର ଦୃଷ୍ଟାନ୍ତକୁ ସେ ପରିହାର କରିଅଛନ୍ତି । (୩୪) ତେଣୁ ନିର୍ବିବାଦରେ କୁହାଯାଇପାରେ ଯେ ପଞ୍ଚଦଶ ଶତାବ୍ଦୀରେ ନାରୀଜାତିର ଅଧୋଗତିର କାରଣ ଉତ୍କଳୀୟ ସମାଜରେ ବିଦ୍ୟମାନ ନ ଥିଲା ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ସାରଳା ଦାସ ରାଜ ପରିବାରରେ ବହୁ ଦାର ପରିଗ୍ରହ ପ୍ରଥା ପ୍ରଚଳିତ ଥିବାର ଦର୍ଶାଇଅଛନ୍ତି । କିନ୍ତୁ ଦୁର୍ଯ୍ୟୋଧନଙ୍କ ମୁଖରେ ଏକ ପତ୍ନୀ ଗ୍ରହଣର ପ୍ରଶଂସା ପ୍ରଦାନ କରିଅଛନ୍ତି । ଏତଦ୍‌ଭିନ୍ନ କବି ସାଧାରଣ ସମାଜର ଲୋକଙ୍କ କଥା କହିଲାବେଳେ ସର୍ବତ୍ର ଏକପତ୍ନୀର ବିଷୟ ଉଲ୍ଲେଖ କରନ୍ତି । ତେଣୁ ଅବଧାରିତ ହୁଏ ଯେ, ପଞ୍ଚଦଶ ଶତାବ୍ଦୀରେ ସାଧାରଣ ସମାଜରେ ଏକ ପତ୍ନୀ ଗ୍ରହଣ ହିଁ ଆଦର୍ଶ ରୀତି ଥିଲା । କେବଳ ରାଜପରିବାରରେ ବହୁପତ୍ନୀ ଗ୍ରହଣର ରୀତି ପ୍ରଚଳିତ ଥିଲା । ରାଜବଂଶରେ ଏହି ବହୁ ଦାର ଗ୍ରହଣ ପ୍ରଥାଟି ଗଙ୍ଗବଂଶର ରାଜାମାନଙ୍କ ଅନୁକରଣରେ ଉତ୍କଳରେ ପ୍ରବେଶ କରିଥିଲା । କିନ୍ତୁ ଏହା ଓଡ଼ିଆର ସାମାଜିକ ବିଧି ନୁହେଁ । (୩୫)

ଓଡ଼ିଆ ନାରୀର ଋତୁପାଳଣା ତାହାର ନାରୀ ଜୀବନର ଶୃଙ୍ଖଳା ଓ ସଂଯମର ପରିଚୟ ଦିଏ । ସାରଳା ଦାସ ଦ୍ରୌପଦୀଙ୍କର ଯୌବନଲାଭ ବୃତ୍ତାନ୍ତରେ ତାହା ପ୍ରଦର୍ଶନ କରିଅଛନ୍ତି । ସେ କାଳର ଋତୁଲଭା ସପ୍ତମ ଦିବସରେ ସ୍ନାନ କଲାପରେ ଶୁଦ୍ଧ ବୋଲି ବିବେଚିତ ହେଉଥିଲେ । ଋତୁପାଳଣା ଓଡ଼ିଆ ନାରୀର ବିଶିଷ୍ଟତା । କବି ଲେଖିଛନ୍ତି—

"ପ୍ରଥମ ଦିନ ଛୁଇଁଲେ ଚଣ୍ଡାଳର ସରି
× × ×
ଦ୍ୱିତୀୟ ଦିନ ଛୁଇଁଲେ ଅଶୁଦ୍ଧ ଯୁବତୀ
ସମୁଦ୍ରର ଯାଏ ପିତୃ ଜଳ ହିଁ ନ ପାନ୍ତି ।
ରଜୋବତୀକୁ ଛୁଇଁଲେ ତୃତୀୟ ଦିବସେ
ଅବଶ୍ୟ ମଜ୍ଜଇ ସେହୁ ଲିଙ୍ଗଭଗ୍ନ ଦୋଷେ ।
ଚତୁର୍ଥ ଦିବସେ ଯେହୁ ଛୁଏଁ ରଜୋବତୀ
ଅବଶ୍ୟ ତା ପିତୃ ଲୋକେ ଅନ୍ଧ ହିଁ ନ ପାନ୍ତି ।
ପଞ୍ଚମ ଦିନରେ ଯାଇ କରିବ ଯେ ସ୍ନାନ
ପାକଶାଳେ ପଶି ସେହୁ କରିବ ରନ୍ଧନ ।

ପବିତ୍ର ମୃତ୍ତିକା ବସ୍ତ୍ର ଦିବସରେ ଲେପି
ନଦୀ ଜଳେ ପଶି ସ୍ନାନ କରିବ ଯଦ୍ୟପି ।
ସପ୍ତମ ଦିବସେ ଯେ ଯିବ ସ୍ୱାମୀ ପାଶ
ଏତେ ଜ୍ଞାନ ଥିଲେ ତାର ହରେ ସର୍ବ ଦୋଷ ।” (୩୬)

ସାରଳାଙ୍କ ଯୁଗରେ ନାରୀଜାତି ସମ୍ବନ୍ଧରେ ଶ୍ରୀମତୀ ସରଳା ଦେବୀ କହନ୍ତି—“ସେ ଯୁଗର ନାରୀମାନେ ଅଳଙ୍କାର-ବସନପ୍ରିୟା, ସ୍ୱାଚ୍ଛନ୍ଦ୍ୟଆଶାୟୀ ଓ ପ୍ରେମପ୍ରବଣା ।” (୩୭) ଏହି ମତ ଯଥାର୍ଥ ନୁହେଁ ବୋଲି ମନେହୁଏ । କାରଣ ଅଳଙ୍କାର ଓ ବସ୍ତ୍ରାଦି ପ୍ରତି ନାରୀର ମମତା ସହଜାତ ଗୁଣ । କେବଳ ସେକାଳର ନାରୀଙ୍କଠାରେ ଏହା ଯେ ଦେଖାଯାଉଥିଲା ତାହା ନୁହେଁ, ଆଧୁନିକ ନାରୀଙ୍କ ପାଖରେ ମଧ୍ୟ ଦେଖାଯାଏ । ସେଥିପାଇଁ ସାରଳାଙ୍କ ନାରୀଜାତି କେବଳ ଦୋଷୀ ହୋଇ ନ ପାରନ୍ତି । ବରଂ ଦେଖାଯାଏ ଯେ, ସାରଳାଙ୍କ ବର୍ଣ୍ଣିତ ନାରୀଗଣ ଦୁଃଖକଷ୍ଟର ଅଗ୍ନିଦାହ ମଧ୍ୟରେ ସ୍ୱକର୍ତ୍ତବ୍ୟ ସର୍ବଥା ପାଳନ କରିଛନ୍ତି । କୁନ୍ତୀ ଦେବୀ ରାଜକନ୍ୟା ଓ ରାଜରାଣୀ । ତଥାପି ସେ ବିନା ଦ୍ୱିଧାରେ ସ୍ୱାମୀ ତଥା ପୁତ୍ରମାନଙ୍କ ସହ ବନପର୍ବତରେ ଭ୍ରମଣ କରିଛନ୍ତି । ବନଭୂମିରେ ସର୍ବଦା ସେ ସ୍ୱହସ୍ତରେ ପାକ ମଧ୍ୟ ସଂପାଦନ କରିଅଛନ୍ତି । ଦ୍ରୌପଦୀ ଦେବୀ ଗୃହର ଯାବତୀୟ କର୍ମ ସଂପାଦନ କରୁଥିଲେ, ସ୍ୱାମୀଙ୍କୁ ସ୍ୱହସ୍ତରେ ରନ୍ଧନକରି ଭୋଜନ କରାଉଥିଲେ, ଅଶ୍ୱ,ଗଜଙ୍କଠାରୁ ଆରମ୍ଭକରି ଦାସଦାସୀଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ଚର୍ଚ୍ଚା କରୁଥିଲେ । ତେଣୁ ସେ ଯୁଗର ନାରୀକୁ କେବଳ ସ୍ୱାଚ୍ଛନ୍ଦ୍ୟ ଆଶାୟୀ ଓ ପ୍ରେମପ୍ରବଣା ବୋଲି କହିବା ଯଥାର୍ଥ ନୁହେଁ ।

ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତି କହନ୍ତି—“ସାରଳା ମହାଭାରତରେ ନାରୀ ଘୋର କାମୋନ୍ମାଦିନୀ, ଅକୁଣ୍ଠିତା ରତିକାଂକ୍ଷିଣୀ ।” (୩୮) ଏହାର ପ୍ରମାଣ ପାଇଁ ସେ ତପସ୍ୟା-ନିରତ ବ୍ରହ୍ମାଙ୍କ ସହ ଅଣାକାରପୁରୁଷଙ୍କ ଦ୍ୱାରା ପ୍ରେରିତ ଯୁବତୀ ଚତୁଷ୍ଟୟଙ୍କ ମିଳନ କଥା ବର୍ଣ୍ଣନା କରନ୍ତି । (୩୯) ପୁରାଣରେ ଇନ୍ଦ୍ର ଅପସ୍ୱରୀ ପ୍ରେରଣ କରି ବିଶ୍ୱାମିତ୍ରଙ୍କ ତପସ୍ୟା ଭାଙ୍ଗିବା କଥା ଅଛି । (୪୦) ସାରଳା ଦାସ ତାଙ୍କ ରଚନାରେ ପୁରାଣର ପ୍ରଲେପ ଦେବାପାଇଁ ଏକ ସମାନ୍ତରାଳ ଦୃଶ୍ୟ ଏଠାରେ ପ୍ରଦର୍ଶନ କରିଛନ୍ତି । ପୁନଶ୍ଚ ଏହା ଗୋଟିଏ ଗୌଣ ଉପାଖ୍ୟାନ ମାତ୍ର । ପୁରାଣମାନଙ୍କରେ ଏପରି ବହୁ କପୋଳ କଳ୍ପିତ ଅବାନ୍ତର କଥା ଥାଏ । କୁନ୍ତୀ ଓ ମାଦ୍ରୀଙ୍କର ସଂଯମ, ଗାନ୍ଧାରୀଙ୍କ ପତିଭକ୍ତି, ସୁଦେଷ୍ଣାଙ୍କ ଚରିତ୍ର ଭଳି ଉଜ୍ଜ୍ୱଳ

ଆଲେଖ୍ୟକୁ ବଗୃରକୁ ନ ନେଇ ବ୍ରହ୍ମାଙ୍କ ସଂପର୍କୀୟ ଏହି ଗୌଣ ଶବ୍ଦର ବଳରେ ସାରଳା ଯୁଗର ନାରୀଜାତିକୁ ହୀନ ବୋଲି ପ୍ରତିପାଦନ କରିବା ଯଥାଯଥ ମନେ ହୁଏନାହିଁ ।

ପୁନଶ୍ଚ ଶ୍ରୀଯୁକ୍ତ ମହାନ୍ତି ଗୃହବଧୂମାନଙ୍କ ସଂପର୍କରେ ପଣ୍ଡୁଙ୍କୁ ବ୍ୟାସ ଦେବ କହିଥିବା ବିଷୟ ଉଲ୍ଲେଖ କରନ୍ତି । ବ୍ୟାସଦେବ ପଣ୍ଡୁଙ୍କୁ କହିଥିଲେ— "ବଧୂମାନଙ୍କ ପ୍ରତି ହିଂସାଭାବ ପୋଷଣ କରିବ ନାହିଁ । ନିଜ ଇଚ୍ଛାନୁସାରେ ସେମାନେ ସନ୍ତାନ ଜାତ କରନ୍ତୁ । ସ୍ତ୍ରୀମାନେ ବୁଦ୍ଧିମତୀ । ଉପାୟ କରି ସେମାନେ ସନ୍ତାନ ଉତ୍ପତ୍ତି କରନ୍ତୁ ।" (୪୧) ଏହି କଥାଟି ମୂଳ ମହାଭାରତର ଅନୁସରଣରେ ଲିଖିତ ହୋଇଅଛି । ମୂଳ ମହାଭାରତରେ ପଣ୍ଡୁ କୁନ୍ତୀ ଦେବୀଙ୍କୁ କହିଥିଲେ— "ପୂର୍ବେ ନାରୀମାନେ ସ୍ୱତନ୍ତ୍ରା ଥିଲେ । ସେମାନେ ପର ପୁରୁଷସହ ଇଚ୍ଛାନୁସାରେ ବିହାର କରୁଥିଲେ । ପତି ଏଥିରେ ବାଧା ଦେଉ ନଥିଲେ । ଉତ୍ତର କୁରୁରେ ଏ ଧର୍ମ ଏବେ ବି ଚଳେ ।" (୪୨) ପୁନଶ୍ଚ ମହାଭାରତ ଯୁଗରେ ନିୟୋଗ ପ୍ରଥା ଥିଲି । ସ୍ୱାମୀର ଔରସରୁ ସନ୍ତାନ ନହେଲେ ସ୍ୱାମୀଠାରୁ ଅନୁମତି ନେଇ ନାରୀ ଅନ୍ୟ ପୁରୁଷଠାରୁ ସନ୍ତାନ ଜାତ କରୁଥିଲି । (୪୩) ଏହି ଚଳଣିକୁ ସାରଳା ଦାସ ବ୍ୟାସଙ୍କ ମୁଖରେ ସୂଚିତ କରିଅଛନ୍ତି । ତେଣୁ ଏହି ଉକ୍ତିରୁ ପଞ୍ଚଦଶ ଶତାବ୍ଦୀର ନାରୀ ଜାତିର ମୂଲ୍ୟାଙ୍କନ କରିବାକୁ ଯତ୍ନବାନ ହେବା ଠିକ୍ ନୁହେଁ । ଅଧିକନ୍ତୁ ପୁରାଣରେ ବହୁ ଅବାନ୍ତର ଘଟଣା ବର୍ଣ୍ଣିତ ହୁଏ । ସାରଳାଙ୍କ ମହାଭାରତରେ ତାହା ମଧ୍ୟ ହୋଇଅଛି । ସେ ସବୁକୁ ନେଇ ନାରୀଚରିତ୍ରର ମୂଲ୍ୟାଙ୍କନ କରା-ଯାଇ ନ ପାରେ । ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଯଥାର୍ଥରେ କହନ୍ତି—"ସ୍ଥୂଳ ମନ୍ତବ୍ୟରେ ବିଶ୍ୱାସ ସ୍ଥାପନ ନ କରି ପାଠ କଲେ ଏ ଭାରତ ଗ୍ରନ୍ଥ କେତେତ ଭାରବନ୍ତ ବୋଧ ହେବ ନାହିଁ ।" (୪୪) ପୁନଶ୍ଚ ଯେଉଁ ଯୁଗରେ ସାମରିକ ଚେତନା ସମାଜରେ ବିକଶିତ ହୋଇଥିଲି, ଓଡ଼ିଆ ପୁଅ ଯୁଦ୍ଧ ପରେ ଯୁଦ୍ଧ ଜିଣୁଥିଲି, ସେତେବେଳେ ଓଡ଼ିଆ ନାରୀ ପ୍ରେମପ୍ରବଣା ଓ ରତିକାଂକ୍ଷିଣୀ ହୋଇ କାଳ ଯାପନ କରିବା ଅଚିନ୍ତନୀୟ ବ୍ୟାପାର । ବୀର ପୁତ୍ରର ଜନନୀ, ଜାୟା ଓ ଭଗିନୀ ଦୁର୍ବଳମନା ଓ ହୀନା ହୋଇ ନ ପାରନ୍ତି ।

ସାରଳା ଦାସଙ୍କ ମହାଭାରତରେ ନାରୀ ଚରିତ୍ରର ଦୋଷ ପ୍ରଦର୍ଶନ କରିବା ପାଇଁ ଅନ୍ୟ ଏକ ଉପାଦାନ ମିଳେ ।

କବି ଦ୍ରୌପଦୀଙ୍କୁ ପତିଭକ୍ତା, ସର୍ବଜ୍ଞା, ପଣ୍ଡିତା ଓ ସୁଗୃହିଣୀ ରୂପରେ ବର୍ଣ୍ଣାଇଥିଲେ ହେଁ 'ସତ୍ୟଆତ୍ମ ବିବରଣ' ବୃତ୍ତାନ୍ତରେ ତାଙ୍କର ମାନସିକ ଦୁର୍ବଳତାର ପ୍ରକାଶ କରିଛନ୍ତି । ଉକ୍ତ ଅଛି—

"ଏ ମୋର ଯଦ୍ୟପି ଛନ୍ତି ପଞ୍ଚ ପତି
ଏମାନେ ଥାଆନ୍ତେ ମୋର କର୍ଣ୍ଣଙ୍କୁ ବଳଇ ମତି ।"(୪୫)

ଦ୍ରୌପଦୀଙ୍କ ସଂପର୍କୀୟ ଏହି ଉକ୍ତିଟି ପ୍ରକ୍ଷେପ ବୋଲି ମନେ ହୁଏ । କାରଣ କବି ତାଙ୍କର ଆଦର୍ଶ ଚରିତ୍ରକୁ କ୍ଷୁଣ୍ଣ କଲି ଭଳି କୌଣସି ମୌଳିକ ବର୍ଣ୍ଣନାରେ କିଛି ଲେଖିନାହାନ୍ତି । ସାରଳାଙ୍କ ସଦୃଶ ମହାନ୍ କବି ଦ୍ରୌପଦୀଙ୍କ ଚରିତ୍ରରେ ମଳିନତା ଆରୋପ କରିଥିବା ସମ୍ଭବପର ନୁହେଁ ।

ସାରଳା ଦାସ ସୁଦେଷ୍ଣା, ଦ୍ରୌପଦୀ, କୁନ୍ତୀ ଓ ଗାନ୍ଧାରୀଙ୍କୁ ବୀର ରମଣୀ ଭାବରେ ପ୍ରତିଷ୍ଠା କରନ୍ତି । (୪୬) ବାସ୍ତବ ପକ୍ଷରେ ପ୍ରାଚୀନ ଉତ୍କଳୀୟ ନାରୀ ସମାଜରେ ବୀର ରମଣୀମାନେ ଥିଲେ । ପ୍ରାକ୍ ସାରଳା ଯୁଗ ଓ ତତ୍ପରବର୍ତ୍ତୀ କାଳର ଦୁଇଟି ଦୃଷ୍ଟାନ୍ତରୁ ଏହି ଉକ୍ତିର ସତ୍ୟତା ପ୍ରତିପାଦନ କରାଯାଇପାରେ । ଅଶୋକଙ୍କ କାଳରେ ଉତ୍କଳରେ ଜଣେ ମତ୍ସ୍ୟଜୀବୀ ଜାତିର ରାଜା ଥିଲେ ଏବଂ ତାଙ୍କର 'କାରୁବାକୀ' ନାମରେ ଗୋଟିଏ ପରମା ସୁନ୍ଦରୀ ତଥା ବୀର କନ୍ୟା ଥିଲେ । ତାଙ୍କର ବୀରତ୍ୱରେ ମୁଗ୍ଧ ହୋଇ କଳିଙ୍ଗର ଯୁବରାଜ ତାଙ୍କୁ ବିବାହ କରିଥିଲେ । କଳିଙ୍ଗ ଯୁଦ୍ଧରେ ଯୁବରାଜ ନିହତ ହେବାରୁ କାରୁବାକୀ ସୈନ୍ୟ-ଚାଳନା କରି ଯୁଦ୍ଧ ଚଳାଇଥିଲେ । (୪୭) 'କାରୁବାକୀ' ଶୀର୍ଷକ ଏକ ତେଲୁଗୁ ନାଟକରେ କଥିତ ଅଛି ଯେ, ସେ ଦ୍ୱନ୍ଦ୍ୱ ଯୁଦ୍ଧରେ କଳିଙ୍ଗର ରାଜପୁତ୍ରଙ୍କ ଦ୍ୱାରା ପରାଭୂତ ହେବାପରେ ତାଙ୍କୁ ପତି ପଦରେ ବରଣ କଲେ । ଅଶୋକ କାରୁ-ବାକୀଙ୍କୁ ଯୁଦ୍ଧକ୍ଷେତ୍ରରୁ ବଳାତ୍କାର ନେଇ ଯିବାପାଇଁ ସୈନ୍ୟ ପ୍ରେରଣ କରିଥିଲେ । କାରୁବାକୀ ଧନୁଶର ଧାରଣ କରି ସୈନ୍ୟମାନଙ୍କୁ ବିତାଡ଼ିତ କରିଦେଲେ । (୪୮) ଐତିହାସିକମାନେ କହନ୍ତି ଯେ, ମୌର୍ଯ୍ୟ ସମ୍ରାଟ ଅଶୋକ ତାଙ୍କର ବୀରତ୍ୱ, ସାହସ ତଥା ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାଙ୍କୁ ବିବାହ କରିବେ ବୋଲି ପ୍ରସ୍ତାବ ଦେଇଥିଲେ ଏବଂ ପରେ ବିବାହ ମଧ୍ୟ କରିଥିଲେ । (୪୯) ବାଙ୍କି ରାଜ୍ୟର ରାଣୀ ଶୁକଦେଈ ମଧ୍ୟ ବୀରତ୍ୱର ପରିଚୟ ଦେଇଥିଲେ । ତାଙ୍କର ସ୍ୱାମୀ ଖୋରଧା ରାଜାଙ୍କ ସହ ଯୁଦ୍ଧରେ ବ୍ୟାପୃତ ହେଲେ ଓ ରଣାଙ୍ଗନରେ ପ୍ରାଣ ଦେଲେ । ରାଣୀ

ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ଯୁଦ୍ଧ ପରିଚାଳନା କଲେ ଓ ଶେଷରେ ବିଜୟ ଲାଭ କଲେ । (୫୦)

ସାରଳା ଦାସ ନାରୀଠାରେ କ୍ଷମାଶୀଳତା, ଦୟା ଓ ସହାନୁଭୂତି ଆଦି ଗୁଣ ପ୍ରଦର୍ଶନ କରନ୍ତି । କୁନ୍ତୀ କ୍ଷମାଶୀଳା ଓ ଦୟାବତୀ ନାରୀର ପ୍ରତୀକ । ଓଡ଼ିଆ ନାରୀର ଏହା ସବୁ ସହଜାତ ଗୁଣ । ରାଣୀ ଶୁକଦେଇଙ୍କ ଚରିତ୍ରରୁ ଏହି ଉକ୍ତିର ସତ୍ୟତା ପ୍ରତିପନ୍ନ ହେବ । ସେ ଯୁଦ୍ଧରେ ଜୟଲାଭ କରି ଖୋରଧା-ରାଜାଙ୍କୁ ବନ୍ଦୀ କଲେ । ସେ ତାଙ୍କୁ ମୃତ୍ୟୁ ଦଣ୍ଡ ନ ଦେଇ ମୁକ୍ତି ପ୍ରଦାନ କଲେ ଏବଂ କ୍ଷମା ପ୍ରଦାନ କରି କହିଲେ—

"ପତି ବିନା ମୁହିଁ କି ହୋଇଛୁ ଆଜ
ଖୋରଧା ରାଣୀ ତ ଏପରି ହେବେ,
ପ୍ରତିଶୋଧ ମୋର ପୂର୍ଣ୍ଣ ହେଲାଣି
ଆହେ ରାଜା ତୁମେ ମୁକ୍ତ ଏବେ ।" (୫୧)

ପଞ୍ଚଦଶ ଶତାବ୍ଦୀରେ ଉତ୍କଳରେ ଶିକ୍ଷାର ପ୍ରସାର ହୋଇଥିଲା ବୋଲି କବିଙ୍କ ପ୍ରଦତ୍ତ ବର୍ଣ୍ଣନାରୁ ଅବଧାରିତ ହୁଏ । କ୍ଷତ୍ରିୟ ତଥା ବ୍ରାହ୍ମଣ ସଂପ୍ରଦାୟର ଲୋକେ ଅନ୍ୟମାନଙ୍କ ତୁଳନାରେ ଅଧିକ ଶିକ୍ଷିତ ଥିଲେ । ଅନ୍ୟାନ୍ୟ ଜାତିର ଲୋକେ ଶିକ୍ଷା ଦୀକ୍ଷା ଲାଭରୁ ବଞ୍ଚିତ ଥିଲେ କହିଲେ ଚଳେ । ସେ କାଳର ରାଜପୁତ୍ରମାନେ ଯୁଦ୍ଧ, ଜ୍ୟୋତିଷ, ତନ୍ତ୍ର, କାମଶାସ୍ତ୍ର, ବେଦ, ବିଭିନ୍ନ ଭାଷା, ସାହିତ୍ୟ, କାବ୍ୟ, ଗଣିତ, ବ୍ୟାକରଣ, ଭୂମିମାପ, ଚିକିତ୍ସା, ମୀମାଂସା, ନ୍ୟାୟ, ପୁରାଣ, ଧର୍ମଶାସ୍ତ୍ର, ମଲ୍ଲବିଦ୍ୟା, ରସାୟନ ବିଦ୍ୟା, ଧାତୁବିଦ୍ୟା, ଧନୁର୍ବିଦ୍ୟା ଓ ଗଦାବିଦ୍ୟା ଆଦି ବହୁ ବିଷୟ ଅଧ୍ୟୟନ କରୁଥିଲେ । କ୍ଷତ୍ରିୟମାନେ ଯୁଦ୍ଧାଦିବିଦ୍ୟା, ବ୍ରାହ୍ମଣମାନେ ବେଦବିଦ୍ୟା ଓ କର୍ମକାଣ୍ଡ, ଗଣକମାନେ ଜ୍ୟୋତିଷ ଓ ଗଣିକା ଶ୍ରେଣୀର ନାରୀ-ମାନେ ନୃତ୍ୟ-ସଙ୍ଗୀତାଦି କୌଳିକ ଶିକ୍ଷା ରୂପରେ ଗ୍ରହଣ କରିଥିଲେ । ଚଣ୍ଡାଳ ବା ନିଷାଦମାନେ (୫୨) ଯୁଦ୍ଧବିଦ୍ୟାରେ ପାରଙ୍ଗମ ଥିଲେ ବୋଲି କବି-ଲେଖନୀରୁ ଜଣାଯାଏ ।

"ଉତ୍କଳ ଦେଶରୁ ବାହାର ହୋଇଲେ ଚଣ୍ଡାଳେ
ମାରି କରୁଅଛନ୍ତି ଯେ ରଣେ ସର୍ବକାଳେ ।" (ଆ ୨୨୪ ପୃ)

ସମାଜରେ ସଂଗୀତ ବିଦ୍ୟାର ଆଦର ଥିଲା । ଶିକ୍ଷାକ୍ରମରେ ଏହା ମଧ୍ୟ ସ୍ଥାନ ପାଉଥିଲା । କବି ଦର୍ଶାଇଅଛନ୍ତି ଯେ, ପଣ୍ଡୁ ଲୋକେଶ୍ୱର ଗୁରୁଙ୍କଠାରୁ ସ୍ୱରବିଦ୍ୟା ବା ସଂଗୀତବିଦ୍ୟା ଶିକ୍ଷା ପାଇଥିଲେ ।

"ବ୍ୟାସଙ୍କ ଆଜ୍ଞାରେ ସେ ଗୁରୁ ଲୋକେଶ୍ବର
ଆଖଡ଼ା ରଚିଲେ ନେଇ ବନସ୍ତ ଭିତର
ସ୍ବରବିଦ୍ୟା ଶିଖାନ୍ତି ଲୋକେଶ୍ବର ଗୁରୁ
ଧନୁ ଢୋଣ ଖଣ୍ଡା ଫଳାମାନ ବିଦ୍ୟାଡ଼ମ୍ବରୁ ।" (୫୩)

ପଞ୍ଚଦଶ ଶତାବ୍ଦୀର ଶିକ୍ଷା ବ୍ୟବସ୍ଥାରେ ତନ୍ତ୍ରର ବିଶେଷ ଆଦର ଥିଲା । ଏପରିକି ନାରୀମାନେ ମଧ୍ୟ ତନ୍ତ୍ରବିଦ୍ୟାରେ ପାରଦର୍ଶିନୀ ହେଉଥିଲେ । ହାରାବତୀ ଓ ମାୟାବତୀ ସେମାନଙ୍କର ଦୃଷ୍ଟାନ୍ତ । ଦ୍ରୌପଦୀ ମଧ୍ୟ ତନ୍ତ୍ରବିଦ୍ୟା ଅବଗତ ଥିଲେ । କବି କହନ୍ତି ଯେ, ସେ ଉଲୁକ ବିଦ୍ୟା ବଳରେ ସମସ୍ତଙ୍କର ଅଦୃଶ୍ୟ ହୋଇ ଭୀମସେନଙ୍କ ପାଖରେ ପହଞ୍ଚି ପାରିଥିଲେ । (୫୪) ଅଥର୍ବବେଦୀ ବ୍ରାହ୍ମଣଗଣ ଏହି ବିଦ୍ୟାରେ ପାରଙ୍ଗମ ଥିଲେ । ବୈତରଣୀ ଉପତ୍ୟକାରେ ଏହି ଶ୍ରେଣୀର ବ୍ରାହ୍ମଣ ବେଶି ଥିବାର ଅନୁମିତ ହୁଏ ।

"ସୁଚବେଦୀ ନାମରେ ତହିଁ ଏକ ଦ୍ବିଜବର
ବୈତରଣୀ ନଦୀକୂଳେ ଶୁଣାନେ ତା ଘର ।
ବଡ଼ ବିବେକୀ ଧାର୍ମିକ ସେ ଅଥର୍ବବେଦୀ
ମନ୍ତ୍ର ଯନ୍ତ୍ର ତନ୍ତ୍ରରେ ସେ ଲଭିଛି ପ୍ରସିଦ୍ଧି ।" (ଆ. ୨୫୦ ପୃ)

ସେ ଯୁଗରେ ବହୁ ଭାଷାବିତ୍ ପଣ୍ଡିତ ମଧ୍ୟ ଓଡ଼ିଶାରେ ଥିଲେ । କବିଙ୍କ ଶାନ୍ତିପନ ପଣ୍ଡା ସେମାନଙ୍କର ପ୍ରତୀକ । ସେ ବଙ୍ଗଳା, ପାରସୀ, ଦରପଣୀ, ମହାରାଷ୍ଟ୍ରୀ, ଉଡ଼ଙ୍ଗ, ହିନ୍ଦୁସ୍ଥାନୀ, ଡାହାଳ, ବେତ୍ତର, ତଙ୍ଗର, ବେଳାଉଳ, କାମୋଦୀ, ଭାରଥୀ, ଓଡ଼ିଆ, ତେଲେଙ୍ଗୀ, ନାଗରୀ, ଦକ୍ଷିଣୀ, କନାଉଜ, ଦ୍ରାବିଡ଼ ଓ ସଂସ୍କୃତଭାଷା ଅବଗତ ଥିଲେ ଏବଂ ସେହି ସମସ୍ତ ଭାଷାକୁ କୃଷ୍ଣ ଓ ବଳରାମଙ୍କୁ ଶିଖାଇଥିଲେ । (୫୫) ପ୍ରାଚୀନ କାଳରେ ବହୁଭାଷାବିତ୍ ପଣ୍ଡିତ ଥିବା କଥା ବିଶ୍ବନାଥ କବିରାଜଙ୍କ 'ସାହିତ୍ୟଦର୍ପଣ' ଗ୍ରନ୍ଥରୁ ଜଣାଯାଏ । ବିଶ୍ବନାଥଙ୍କ ପିତା ଚଉଦଗୋଟି ଭାଷାରେ ପ୍ରବୀଣ ଥିଲେ ବୋଲି ସେଥିରେ ଉକ୍ତ ଅଛି । (ପୃ ୪୩) ପଣ୍ଡିତ ମୃତ୍ୟୁଞ୍ଜୟ ରଥ କହନ୍ତି ଯେ ସାରଳା ଦାସ ବଙ୍ଗଳା ଜାଣି ନ ଥିଲେ କି ବଙ୍ଗାକ୍ଷର ବା ଭାଷା ଶୁଣି ନ ଥିଲେ । (୫୬) 'ରାଧାରମଣ ପୁସ୍ତକାଳୟ' ପ୍ରକାଶିତ ମହାଭାରତରେ ବଙ୍ଗ ଭାଷାର ନାମ ନାହିଁ । (ମ. ୪୦୯ ପୃ) କିନ୍ତୁ ପୋଥିରେ ବଙ୍ଗ ଭାଷାର ନାମ ମିଳେ । (୫୭) ସୁତରାଂ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ମତାମତ

ଯଥାର୍ଥ ନୁହେଁ । କବି ଯେଉଁ ଭାଷାମାନଙ୍କର ନାମ ଦେଇଅଛନ୍ତି ତନ୍ମଧ୍ୟରୁ ଅଧିକାଂଶ ଦକ୍ଷିଣ ଭାରତର ଭାଷା । ତେଣୁ ମନେ ହୁଏ ଯେ, ସେତେବେଳେ ଓଡ଼ିଶା ସହିତ ଦାକ୍ଷିଣାତ୍ୟର ସାଂସ୍କୃତିକ ସମ୍ବନ୍ଧ ଉତ୍ତର ଭାରତ ଅପେକ୍ଷା ଅଧିକ ଥିଲା । ଗଙ୍ଗବଂଶର ରାଜତ୍ୱ ମାଧ୍ୟମରେ ଦକ୍ଷିଣର ସଂସ୍କୃତି ଉତ୍କଳରେ ପ୍ରଭାବ ପକାଇଥିଲା ବୋଲି ତଦ୍‌ବିଦମାନଙ୍କର ମତ ।

'ରାଧାରମଣ'ଙ୍କ ମହାଭାରତ ଗ୍ରନ୍ଥରେ ବାଦବିଦ୍ୟା (ତର୍କବିଦ୍ୟା) ଓ ଐଶ୍ୱର୍ଯ୍ୟବିଦ୍ୟାର ଉଲ୍ଲେଖ ମିଳେ । କୃଷ୍ଣ ଓ ବଳରାମ ଶାନ୍ତିପନିଙ୍କଠାରୁ ଅନ୍ୟାନ୍ୟ ବିଦ୍ୟା ସହିତ ଏହି ଦୁଇଟି ବିଦ୍ୟା ମଧ୍ୟ ଶିକ୍ଷା କରିଥିଲେ ବୋଲି ସେଥିରେ କୁହାଯାଇଅଛି । (ମ. ୪୦୯ ପୃ) ଧୃତରାଷ୍ଟ୍ର ଓ ପଣ୍ଡୁ ସଞ୍ଜୟଙ୍କ ଠାରୁ ବାଦବିଦ୍ୟା ଶିକ୍ଷା କରିଥିଲେ ବୋଲି ମଧ୍ୟ ଉକ୍ତ ଅଛି । (ଆ· ୩୪ ପୃ) କିନ୍ତୁ ପୋଥିଦ୍ୱୟରେ ବାଦବିଦ୍ୟା ଓ ଐଶ୍ୱର୍ଯ୍ୟବିଦ୍ୟାର ଉଲ୍ଲେଖ ମିଳେନାହିଁ ।

ରାଧାରମଣଙ୍କ ଗ୍ରନ୍ଥରୁ ଅବଧାରିତ ହୁଏ ଯେ, ସେ କାଳରେ 'ଖଡ଼ିପାଠ' ଥିଲା, ଅର୍ଥାତ୍ ଶିଶୁମାନେ ଭୂମିରେ ଖଡ଼ି ସାହାଯ୍ୟରେ ପ୍ରଥମେ ଲେଖୁଥିଲେ । (୬୮) ଖଡ଼ି ଲେଖାର ଏକ ଉପାଦାନ ଥିଲବୋଲି ଅନ୍ୟ ପ୍ରସଙ୍ଗରୁ ମଧ୍ୟ ଅବଧାରିତ ହୁଏ । ଯୁଧିଷ୍ଠିର ଖଡ଼ିରେ ପଶାପାଲି କାଟିବା କଥାରୁ ଖଡ଼ିର ବ୍ୟବହାର ପ୍ରତିପନ୍ନ ହେଉଅଛି । (୬୯) ଜଗନ୍ନାଥ ଦାସଙ୍କ ମହାଭାରତରେ ଖଡ଼ିର ଉଲ୍ଲେଖ ମିଳେ । (୭୦)

କବିଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ଭଟ୍ଟମାନେ ପୀଢ଼ା ଉପରେ ବସି ପୋଥିପାଠ କରୁଥିଲେ । କବି ଲେଖିଛନ୍ତି—ଶ୍ରୀକୃଷ୍ଣ ପୋଥି ଓ ପୀଢ଼ା ନେଇ ଶାନ୍ତିପନଙ୍କ ପାଠମନ୍ଦିରରେ ଉପସ୍ଥିତ ହେଉଥିଲେ । (୭୧) ଏହି ଉକ୍ତିରୁ ପ୍ରତିପାଦିତ ହେଉଅଛି ଯେ ସେ କାଳରେ ତାଳପତ୍ର ପୋଥି ପଢ଼ାର ପ୍ରଧାନ ଉପାଦାନ ଥିଲା । ତାଳପତ୍ର ମଧ୍ୟ ଲେଖାର ଉପାଦାନ ଥିଲା । ଛାତ୍ରମାନେ ତାଳପତ୍ରରେ ଲେଖିବା ଶିକ୍ଷା କରୁଥିଲେ । କବି ତେଣୁ କହନ୍ତି—"ଏକ ଦିବସେ ସାଧିଲେ ତାଳପତ୍ର କାଟି ।" (୭୨) କପିଳେନ୍ଦ୍ର ଦେବଙ୍କ ରାଜତ୍ୱକାଳରେ ଓଡ଼ିଆ ଭାଷାରେ ତାଳପତ୍ର ଲେଖାର ପ୍ରବଳ ସ୍ରୋତ ଛୁଟିଥିବାର ଉପଲବ୍ଧ ହୁଏ । (୭୩)

ସାରଳା ଦାସ ଭାଷା ଓ ଲିପିଶିକ୍ଷା ଉପରେ ପ୍ରାଧାନ୍ୟ ଦିଅନ୍ତି । ସେ କହନ୍ତି ଯେ, କୃଷ୍ଣ-ବଳରାମ 'ଚଉଷଠୀ ଭାଷା' ଶିକ୍ଷା କରିଥିଲେ । (୭୪) ଇତିହାସ ଏହିଭଳି ଶବ୍ଦର ସମର୍ଥନ କରେ । କପିଳେନ୍ଦ୍ର ଦେବଙ୍କ କାଳରେ

ଆରବ୍ଧ ହୋଇଥିବା ଲିପି-ସଂସ୍କାର କାର୍ଯ୍ୟ ପୁରୁଷୋତ୍ତମ ଦେବଙ୍କ କାଳରେ ସମ୍ପୂର୍ଣ୍ଣ ହୁଏ । ପୁରୁଷୋତ୍ତମଙ୍କ କାଳର ସମସ୍ତ ତାମ୍ରଫଳକ ଓ ଶିଳାଲେଖରେ ନୂତନ ଓଡ଼ିଆ ଲିପି ଦେଖାଦିଏ । (୭୫) ତେଣୁ ସେ ଯୁଗରେ ଲିପିଶିକ୍ଷା ପ୍ରତି ଆଗ୍ରହ ବୃଦ୍ଧି ପାଇଥିବା ସ୍ୱାଭାବିକ ।

ରାଧାରମଣଙ୍କ ମହାଭାରତରେ ପାଠଶାଳା ଓ ଗ୍ରନ୍ଥଶାଳୀର ଉଲ୍ଲେଖ ମିଳେ । ମୂଳଗାଁ ପୋଥିରେ କେବଳ 'ପାଠମନ୍ଦିର' ଶବ୍ଦ ଦେଖାଯାଏ । (୭୬) ସେଥିରୁ ଅବଧାରିତ ହେଉଅଛି ଯେ, ଗ୍ରାମମାନଙ୍କରେ ପ୍ରାଥମିକ ଶିକ୍ଷା ପାଇଁ ସେତେବେଳେ ବିଦ୍ୟାଳୟମାନ ଥିଲା । ଗଜପତି କପିଳେନ୍ଦ୍ର ଦେବ ନିଜ ଜନ୍ମସ୍ଥାନ ଖୋରଧାର ହଳଦିଆ ଗ୍ରାମରେ ଥିବା ଗ୍ରନ୍ଥଶାଳୀରେ ଅଧ୍ୟୟନ କରିଥିବାର ଜଣାଯାଏ । (୭୭) ପ୍ରାଚୀନ ଉତ୍କଳରେ ପାଠଶାଳାମାନ ଥିବାର ପ୍ରମାଣ ମିଳୁଅଛି । ମୟୂରଭଞ୍ଜ ରାଜ୍ୟର ମୁଘଲମାରି ନାମକ ସ୍ଥାନରେ ବିକ୍ରମଜିତ ବା ପ୍ରତାପାଦିତ୍ୟ ରାଜାଙ୍କ-କନ୍ୟା ଶଶିସେଣାଙ୍କ ପାଇଁ ଗୋଟିଏ ପାଠଶାଳା ସ୍ଥାପିତ ହୋଇଥିବାର ଜଣାଯାଏ । (୭୮)

ଗୁପ୍ତ ମହାଭାରତରେ ଶାନ୍ତନୁଙ୍କ ଗୃହକୁ ମଠ ଆଖ୍ୟା ଦିଆଯାଇଅଛି । ପୋଥିରେ ସେପରି କୁହାଯାଇ ନାହିଁ । (୭୯) ତେବେ ସେ କାଳରେ ମଠମାନ ଥିବା କଥା ଅନ୍ୟ ପ୍ରସଙ୍ଗରୁ ଅବଧାରିତ ହେଉଅଛି । 'ଧର୍ମ ଯଜ୍ଞର ଆୟୋଜନ' ପ୍ରସଙ୍ଗରେ କବି ମଠର ଉଲ୍ଲେଖ କରନ୍ତି ।

"ଋଷିମାନଙ୍କ ମଠ ଭିନ୍ନ ଭିନ୍ନ କରି
ଯେଉଁରୂପେ କହିଥିଲେ ଦେବ ନରହରି ।" (ମ· ୩୨୪ପୃ)

ଗୁରୁବାର ବ୍ୟତୀତ ପ୍ରତି ମାସର ତ୍ରୟୋଦଶୀ ଓ ଚତୁର୍ଦ୍ଦଶୀ ଅନଧ୍ୟୟନ ଦିବସ ଥିଲା ବୋଲି କବିଙ୍କ ବର୍ଣ୍ଣନାରୁ ପ୍ରତିପାଦିତ ହୋଇପାରେ । ସାରଳା ଦାସ କହନ୍ତି ଯେ, ମୀନ ଶୁକ୍ଳ ତ୍ରୟୋଦଶୀ ତିଥିରେ ଦ୍ରୋଣାଚାର୍ଯ୍ୟ ରାଜା ଦ୍ରୁପଦଙ୍କୁ ଧରି ଆଣିବା ପାଇଁ ଶିଷ୍ୟମାନଙ୍କୁ ପ୍ରେରଣ କରିଥିଲେ । (ଆ ୧୦୭ପୃ) ଦ୍ରୋଣ ଶୁକ୍ଳ ତ୍ରୟୋଦଶ ତିଥିରେ ପ୍ରୟାଗକୁ ଗମନ କରିଥିଲେ । (ଆ ୧୧୧ପୃ) ଚୈତ୍ର କୃଷ୍ଣ ଚତୁର୍ଦ୍ଦଶୀ ତିଥିରେ କୌରବ ଓ ପାଣ୍ଡବମାନେ ଅସ୍ତ୍ର କୌଶଳ ପ୍ରଦର୍ଶନ କରିଥିଲେ । (ଆ ୧୧୨ପୃ) ତ୍ରୟୋଦଶୀ ଓ ଚତୁର୍ଦ୍ଦଶୀ ଅନଧ୍ୟୟନ ଦିବସ ଥିବାରୁ ଦ୍ରୋଣ ସେହି ଦିବସମାନଙ୍କରେ ନିୟମିତ ଶିକ୍ଷାଦାନ କାର୍ଯ୍ୟ ସ୍ଥଗିତ କରାଇ ଅନ୍ୟାନ୍ୟ କାର୍ଯ୍ୟ କରିଥିଲେ ବୋଲି ମନେ ହୁଏ ।

ରାଧାରମଣଙ୍କ ମୁଦ୍ରିତ ଗ୍ରନ୍ଥରେ ଶିଷ୍ୟଗଣ ଗୁରୁ ଶାନ୍ତପନଙ୍କ ଆଦେଶକ୍ରମେ ବନଭୂମିକୁ କାଠ ଆଣିବାକୁ ଯିବାକଥା ଅଛି । (ମ· ୪୧୨ପୃ) ଏହା ସେ ଯୁଗର ଛାତ୍ରମାନଙ୍କର ଗୁରୁଭକ୍ତି ତଥା ଗୁରୁସେବାର ଏକ ଦୃଷ୍ଟାନ୍ତ; କିନ୍ତୁ ଏହି ବର୍ଣ୍ଣନାଟି ପୋଥିରେ ଦେଖାଯାଉନାହିଁ । କିନ୍ତୁ ସେ ଯୁଗର ଶିଷ୍ୟଗଣ ଯେ ନାନା ଭାବରେ ଗୁରୁଙ୍କ ସେବା କରୁଥିଲେ ତାହା ଅନ୍ୟାନ୍ୟ କେତେକ ତଥ୍ୟରୁ ପ୍ରତିପାଦିତ ହେଉଅଛି । ଶ୍ରୀକୃଷ୍ଣ ଗୁରୁ ଶାନ୍ତପନଙ୍କ ମୃତ ପୁତ୍ରମାନଙ୍କୁ ଯମାଳୟରୁ ଆନୟନ କରିବା (ମ ୪୧୪-୪୧୫ପୃ), କୌରବଗଣ ଦ୍ରୋଣଙ୍କ ଆଦେଶତରେ ଗଣ୍ଡା ଅନ୍ୱେଷଣରେ ବହିର୍ଗତ ହେବା (ଆ ୧୦୩ପୃ) ବୃତ୍ତାନ୍ତରୁ ଗୁରୁସେବା ଓ ଗୁରୁଭକ୍ତିର ଆଦର୍ଶ ସ୍ପଷ୍ଟ ।

ସାରଳାଦାସଙ୍କ ବର୍ଣ୍ଣନାରୁ ସେ କାଳର ପ୍ରସିଦ୍ଧ ଦେବୀ ଓ ଦେବୀପୀଠର କେତେକ ପରିଚୟ ମିଳେ । କବି ସାରଳା ଦେବୀଙ୍କ ସ୍ତୁତି ପ୍ରଭୃତି ଭାବରେ କରିଥିବାରୁ ପ୍ରତୀୟମାନ ହୁଏ ଯେ, ସାରଳା ଦେବୀ ସେ ଯୁଗରେ ବହୁ ପ୍ରସିଦ୍ଧି ଲାଭ କରିଥିଲେ ଏବଂ ଝଙ୍କଡ଼ର ପୀଠ ଶକ୍ତିପୂଜାର କେନ୍ଦ୍ର ଥିଲା । କବିଙ୍କ ବର୍ଣ୍ଣନାରେ ଅଛି ଯେ, ପାଣ୍ଡବମାନେ ରୁଦ୍ରାନଦୀ ପାରହୋଇ ଦେବୀଙ୍କୁ ଦର୍ଶନ କରିଥିଲେ (ସ୍ୱ ୧୬ପୃ) ରୁଦ୍ରା କାଠଯୋଡ଼ିର ପ୍ରାଚୀନ ନାମ ବୋଲି ଜଣାଯାଏ । (୭୦) ଏହି ବର୍ଣ୍ଣନାରୁ ଅବଧାରିତ ହେଉଅଛି ଯେ, କଟକର ଚଣ୍ଡୀ ଓ ଚଣ୍ଡୀପୀଠ ସେତେବେଳେ ପ୍ରସିଦ୍ଧି ପାଇଥିଲେ । ସାରଳାଦାସ ନିଜେ ତୁଳସୀପୁର ଗମନ କରି କଟକ-ଚଣ୍ଡୀଙ୍କୁ ଦର୍ଶନ କରିଥିବାର ଜଣାଯାଏ । (୭୧) ବନପର୍ବ (୭୨) ଓ ସ୍ୱର୍ଗାରୋହଣ ପର୍ବରେ (୭୩) କବି ଭୁବନେଶ୍ୱରରେ ଦେବୀଙ୍କ ଅସୁର-ଦଳନ ବୃତ୍ତାନ୍ତ ପ୍ରଦର୍ଶନ କରନ୍ତି । ସେହି ବର୍ଣ୍ଣନାରୁ ପ୍ରତିପନ୍ନ ହୁଏ ଯେ, ଭୁବନେଶ୍ୱରର ଗୌରୀ ପୀଠ ସେ ଯୁଗରେ ବିଖ୍ୟାତ ଥିଲା । କୋଣାର୍କର ରାମଚଣ୍ଡୀ ମଧ୍ୟ ସେ କାଳରେ ପ୍ରସିଦ୍ଧ ଥିଲେ । କବି କହନ୍ତି ଯେ, ସ୍ୱୟଂ ରାମଚନ୍ଦ୍ର ଏଠାରେ ଦେବୀଙ୍କୁ ପ୍ରତିଷ୍ଠା କରିଥିଲେ ଏବଂ ଯୁଧିଷ୍ଠିର ତୀର୍ଥଭ୍ରମଣ କାଳରେ ତାଙ୍କୁ ଦର୍ଶନ କରିଥିଲେ । (୭୪) ଯାଜପୁରର ବିରଜା ପୀଠର ପ୍ରସିଦ୍ଧି କବି ଦର୍ଶାଇ ଅଛନ୍ତି ।

"ମହୋଦଧିର ଉତ୍ତର ଜମ୍ବୁଦ୍ୱୀପ ମଧ୍ୟ
ଭାରତ ଖଣ୍ଡରେ ଓଡ଼ରାଷ୍ଟ୍ର ଅଛି ରହି ।
ତା ମଧ୍ୟେ ପୁରେକ ଅଛି ନାମ ଯାଜପୁର
ବିରଜା ନାମରେ ପୂଜା ପାଅ ମା ସେଠାର ।" (ଦ୍ରୋ ୬୩ପୃ)

ସମଲେଈ ଦେବୀଙ୍କ ପ୍ରସିଦ୍ଧି ସୋମବଂଶୀୟ ରାଜାମାନଙ୍କ ରାଜତ୍ୱ ସମୟରୁ ଉତ୍କଳରେ ରହିଥିବାର ଉପଲବ୍ଧ ହୁଏ । ଭୁବନ କେଶରୀ ଏହି ମନ୍ଦିର ସ୍ଥାପନ କରିଥିବାର ଜଣାଯାଏ । (୭୫) ସାରଳାଙ୍କ କାଳରେ ସମଲେଈ ଦେବୀଙ୍କ ଖ୍ୟାତି ଥିବା କଥା ନିମ୍ନୋକ୍ତିରୁ ସ୍ପଷ୍ଟ ।

"ସମ୍ବଲପୁରେ ସମଲେଈ ରୂ ବୋଲଉ
ସେଠାରେ ରହିଣ ମାତା ନାନା ପୂଜା ପାଉ ।" (ଦ୍ରୋ ୭୩ପୃ)

ସାରଳା ଦାସ ଭାନୁମତୀଙ୍କ ସ୍ୱୟମ୍ବର ସଭାରେ ବଡ଼ମ୍ବା ରାଜ୍ୟର ରାଜା ଉପସ୍ଥିତ ଥିଲେ ବୋଲି ଲେଖିଅଛନ୍ତି । (୭୬) ପଣ୍ଡିତ ବିନାୟକ ମିଶ୍ର କହନ୍ତି ଯେ ବଡ଼ମ୍ବାର ଭଟ୍ଟାରିକା ଦେବୀ ପ୍ରାଚୀନ ମୂର୍ତ୍ତି । ବଡ଼ାମ୍ବା-ରାଜା ଶାକ୍ତ ଥିବାରୁ କବିଙ୍କ ସମଧର୍ମୀ ଥିଲେ । ତେଣୁ କବି ସେହି ରାଜାଙ୍କର ଗୌରବ ପ୍ରଦର୍ଶନ କରିବା ନିମିତ୍ତ ତାଙ୍କର ଉପସ୍ଥିତି ଭାନୁମତୀଙ୍କ ସ୍ୱୟମ୍ବର ସଭାରେ ଦର୍ଶାଇ ଅଛନ୍ତି । (୭୭) ଭାନୁମତୀଙ୍କ ସ୍ୱୟମ୍ବର ସଭାରେ ବଡ଼ାମ୍ବା ରାଜାଙ୍କ ଉପସ୍ଥିତିରୁ ସୂଚିତ ହେଉଅଛି ଯେ, ସାରଳାଙ୍କ ଯୁଗରେ ଭଟ୍ଟାରିକା ଦେବୀ ସୁପ୍ରସିଦ୍ଧା ଥିଲେ । ଉଦ୍‌ଯୋଗ ପର୍ବରେ କବି ବାଣପୁର ନଗରର ରାଜା ଚଉବଂଶ ମଲ୍ଲି ଦୁର୍ଯ୍ୟୋଧନଙ୍କ ପକ୍ଷ ଗ୍ରହଣ କରିଥିଲେ ବୋଲି କହନ୍ତି । (ପୃ ୮୭) ରଣପୁର ରାଜ୍ୟର ରାଜା ବିରୂପାକ୍ଷ ପାଣ୍ଡବଙ୍କ ପକ୍ଷରେ ଯୋଗ ଦେଇଥିଲେ ବୋଲି ଏଠାରେ ଉକ୍ତ ଅଛି (ପୃ ୮୭) ଏହି ବର୍ଣ୍ଣନାରୁ ବାଣପୁରର ଭଗବତୀଙ୍କ ପୀଠ ଓ ରଣପୁରର ମୈନାକ ଦୁର୍ଗାଙ୍କ ପୀଠ ସେ କାଳରେ ପ୍ରସିଦ୍ଧି ପାଇଥିବା କଥା ସୂଚିତ ହେଉଅଛି ।

ଇତିହାସ କହେ—ମତ୍ତଭାନୁ ଦେବ ବିମଳାଙ୍କ ମନ୍ଦିର ସମ୍ମୁଖରେ କପିଳ ରାଉତଙ୍କୁ ପ୍ରଥମେ ଦେଖିଥିଲେ । (୭୮) ଏହି କପିଳ ରାଉତ ପରେ ହେଲେ ସୂର୍ଯ୍ୟବଂଶର ପ୍ରତିଷ୍ଠାତା ଗଜପତି କପିଳେନ୍ଦ୍ର ଦେବ । କେଶରୀବଂଶୀୟ ସମ୍ରାଟ ଯଯାତି କେଶରୀ ଅଠର ହାତ ଉଚ୍ଚର ବିମଳା ମନ୍ଦିର ନିର୍ମାଣ କରିଥିବା କଥା ଇତିହାସ ପୃଷ୍ଠାରୁ ଉପଲବ୍ଧ ହୁଏ । (୭୯) ସାରଳାଙ୍କ ବହୁ ପୂର୍ବରୁ ଜଗନ୍ନାଥ ଭୈରବ ଓ ବିମଳା ଭୈରବୀ ଆଖ୍ୟା ପ୍ରାପ୍ତ ହୋଇଥିଲେ । (୮୦) ସାରଳା ଦାସ ବିମଳା ଦେବୀଙ୍କ ସ୍ତୁତି କରିଥିବାରୁ ପ୍ରତିପାଦିତ ହେଉଅଛି ଯେ, ତାଙ୍କ କାଳରେ ପୁରୀର ବିମଳା ପୀଠ ଏକ ଶାକ୍ତ ପୀଠ ଥିଲା ।

"ନମସ୍ତେ ବିମଳା ମାଗୋ ନମୋ ନୀଳାଦ୍ରିସୁଣୀ
ସଂସାର ଜନେ ତୋହର ନାମକୁ ବଖାଣି ।" (ମ ୩୩୧ପୃ)

ସଭା ପର୍ବରେ ଉକ୍ତ ଅଛି ଯେ, ଅର୍ଜ୍ଜୁନ ଗଂଗାଖାରରେ ଥିବା ରଣସ୍ତମ୍ଭ ରାଜ୍ୟରେ ଉପନୀତ ହୋଇଥିଲେ ଏବଂ ସେହି ଗଡ଼ରେ ହିଙ୍ଗୁଳା ଦେବୀ ଅଧିଷ୍ଠିତା ଥିଲେ । (ପୃ ୧୭୧) ସ୍ୱର୍ଗାରୋହଣ ପର୍ବରେ ପାଣ୍ଡବମାନେ ସ୍ତମ୍ଭନ ଗଡ଼ରେ ହିଙ୍ଗୁଳାଙ୍କୁ ଦର୍ଶନ କରିବା କଥା ଉକ୍ତ ଅଛି । (ପୃ ୧୯) ଇତିହାସ-ପୃଷ୍ଠାରୁ ଉପଲବ୍ଧ ହେଉଅଛି ଯେ, ପୂର୍ବେ ଶୁଲକୀ ନାମକ ରାଜବଂଶ ତାଳଚେର, ଢେଙ୍କାନାଳ ଓ ହିନ୍ଦୋଳରେ ରାଜତ୍ୱ କରୁଥିଲେ । ସେମାନଙ୍କର ରାଜଧାନୀ ତାଳଚେର ଠାରୁ ସାତମାଇଲ ଦୂରରେ ବ୍ରାହ୍ମଣୀ ନଦୀ କୂଳରେ ଅବସ୍ଥିତ ଥିଲା । ଏହି ବଂଶରେ ରଣସ୍ତମ୍ଭ ନାମକ ରାଜା ରାଜତ୍ୱ କରୁଥିଲେ । (୮୧) ଶୁଲ୍‌କୀ ବଂଶର ଅଧିଷ୍ଠାତ୍ରୀ ଦେବୀ ଥିଲେ ସ୍ତମ୍ଭେଶ୍ୱରୀ । (୮୨) 'ମଙ୍ଗଳାସ୍ତୁତି'ରେ ଅଛି—"ତାଳଚେରରେ ରହିଲୁ ନାମ ତୋ ହିଙ୍ଗୁଳା ।" (୮୩) ଏବେ ମଧ୍ୟ ତାଳଚେରରେ ହିଙ୍ଗୁଳା ଦେବୀଙ୍କ ପୀଠ ବିଦ୍ୟମାନ । ତେଣୁ କୁହାଯାଇ ପାରେ ଯେ, କବି-ବର୍ଣ୍ଣିତ ରଣସ୍ତମ୍ଭ ରାଜ୍ୟ ହିଁ ତାଳଚେର ଏବଂ ତାଳଚେର ଗଡ ହିଁ ସ୍ତମ୍ଭନଗଡ଼ । ଏହି ସ୍ଥାନର ହିଙ୍ଗୁଳାପୀଠ ପଞ୍ଚଦଶ ଶତକରେ ପ୍ରସିଦ୍ଧି ଲାଭ କରିଥିଲା । (୮୪)

ରାଧାରମଣଙ୍କ ମୁଦ୍ରିତ ମହାଭାରତର ମଧ୍ୟପର୍ବର ଏକ ବର୍ଣ୍ଣନାରୁ ଅବଧାରିତ ହୁଏ ଯେ, ସେ କାଳରେ ସାରଳା ଝଙ୍କଡ଼ରେ, ମଙ୍ଗଳା କାକଟପୁରରେ, ରାମଚଣ୍ଡୀ କୋଣାର୍କରେ, ବିମଳା ପୁରୁଷୋତ୍ତମ ଧାମରେ, ଚର୍ଚ୍ଚିକା ବାଙ୍କିରେ, ସମଲାଈ ସମ୍ବଲପୁରରେ, ବିରଜା ଯାଜପୁରରେ, ଗଉରୀ ଭୁବନେଶ୍ୱରରେ, ଭଗବତୀ ବାଣପୁରରେ, ଚଣ୍ଡୀ ଉତ୍ତର ଦିଗରେ ଓ ହିଙ୍ଗୁଳା ପଶ୍ଚିମ ଦିଗରେ ଅଧିଷ୍ଠିତା ଥିଲେ । (ପୃ ୩) କିନ୍ତୁ ଏହି ବର୍ଣ୍ଣନାଟି ପୋଥିରେ ଉପଲବ୍ଧ ନୁହେଁ ।

ପଞ୍ଚଦଶ ଶତାବ୍ଦୀରେ ତାନ୍ତ୍ରିକ ଶାକ୍ତଧର୍ମର ପ୍ରଭାବ ପ୍ରଭୂତ ମାତ୍ରାରେ ବିଦ୍ୟମାନ ଥିଲା । କବି ତେଣୁ ଚଉଷଠୀ ଯୋଗିନୀଙ୍କ ଉଲ୍ଲେଖ ବହୁ ସ୍ଥଳରେ କରିଛନ୍ତି । (ମ ୨ପୃ) ଶଲ୍ୟ ପର୍ବରେ କାତ୍ୟାୟନୀ, ଭୈରବୀ, ରୁଦ୍ରାଣୀ, କୌମାରୀ, ବ୍ରାହ୍ମଣୀ, ଇନ୍ଦ୍ରାଣୀ, ନାରାୟଣୀ, ପିଶାଚୀ, ବାରାହୀ, ଚାମୁଣ୍ଡା, ନରସିଂହୀ, ଚଣ୍ଡୀ, କଙ୍କାଳୀ, ବେତାଳୀ, ଅନନ୍ତା, ବିଜୟା, ଜୟା, ତାରିଣୀ, ତ୍ରିପୁରା, ଯକ୍ଷିଣୀ, ଭକ୍ଷିଣୀ, ଉଗ୍ରତାରା, ଚର୍ଚ୍ଚିକା ଓ ଶଙ୍ଖିନୀଙ୍କ ନାମ ଦେଖାଯାଏ । (ପୃ ୧୮) ଏବେ ବି ଭୁବନେଶ୍ୱରର ପୂର୍ବକୁ ତିନି ମାଇଲ ଦୂରରେ ହୀରାପୁର ନାମକ ସ୍ଥାନରେ ଚଉଷଠୀ ଯୋଗିନୀଙ୍କ ମୂର୍ତ୍ତି ବିଦ୍ୟମାନ ଅଛି । ବଲାଙ୍ଗୀରର ରାଣୀପୁରଠାରେ ଚଉଷଠୀ ଯୋଗିନୀଙ୍କ ମୂର୍ତ୍ତି ମଧ୍ୟ ରହିଅଛି । (୮୫) ଏସବୁ ତାନ୍ତ୍ରିକ ଶାକ୍ତ ଧର୍ମର ପ୍ରଭାବ ପୂର୍ବେ ଥିଲା ବୋଲି ସାକ୍ଷ୍ୟ ପ୍ରଦାନ କରୁଅଛି ।

ସାଧାରମଣଙ୍କ ଗ୍ରନ୍ଥର ବନ ପର୍ବରେ ଢେଙ୍କାନାଳର କପିଳାସ ପର୍ବତ ଉପରେ ଥିବା ଶିବଙ୍କର ନାମ 'ଶଙ୍କରେଶ୍ୱର' ବୋଲି କୁହାଯାଇଅଛି । (ପୃ ୨୯) ଏହି ନାମଟି ଏ ସ୍ଥଳରେ ଭ୍ରମାତ୍ମକ । କାରଣ କପିଳାସବାସୀ ଶିବଙ୍କର ପ୍ରକୃତ ନାମ—ଶିଖରେଶ୍ୱର । (୮୬) ସ୍ୱର୍ଗ ପର୍ବରେ ଏହି ଶିଖରେଶ୍ୱର ନାମ ରହିଅଛି । (ପୃ ୧୧)

ସାରଳା ଦାସ ଜଗନ୍ନାଥଙ୍କୁ ବିଷ୍ଣୁ ଓ ବଳଭଦ୍ରଙ୍କୁ ରୁଦ୍ର ବୋଲି କହିଛନ୍ତି । (୮୭) ସେ ପୁଣି ଜଗନ୍ନାଥଙ୍କୁ କୃଷ୍ଣ ବୋଲି ଦର୍ଶାଇଅଛନ୍ତି । ସେ କହନ୍ତି—କୃଷ୍ଣଙ୍କର ଦେହାବସାନ ପରେ ତାଙ୍କର ଅର୍ଦ୍ଧ ଦଗ୍ଧ ଶରୀରକୁ ଅର୍ଜୁନ ଜଳରେ ଭସାଇ ଦେଲେ । ସେହି ପିଣ୍ଡ ଦାରୁ ରୂପରେ ରୋହିଣୀ କୁଣ୍ଡରେ ଦେଖାଦେଲା । ସେହି ଦାରୁରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି ଗଠିତ ହେଲା । (୮୮) ଏତାଦୃଶ ପରିକଳ୍ପନା କବିଙ୍କର ମୌଳିକ ସୃଷ୍ଟି । ପୁନଶ୍ଚ ସାରଳା ଜଗନ୍ନାଥଙ୍କୁ ବୁଦ୍ଧ ବୋଲି ପ୍ରତିପାଦନ କରନ୍ତି । (୮୯) କବିଙ୍କର ବହୁ ପୂର୍ବରୁ ଜଗନ୍ନାଥଙ୍କୁ ବୁଦ୍ଧ ରୂପରେ ପରିକଳ୍ପନା କରିବାର ପରମ୍ପରା ଉତ୍କଳରେ ପ୍ରତିଷ୍ଠିତ ହୋଇଥିଲା । (୯୦) କବି ସର୍ବପ୍ରଥମେ ଓଡ଼ିଆ ସାହିତ୍ୟରେ ସେହି ପାରମ୍ପରିକ କଳ୍ପନାକୁ ରୂପ ଦେଲେ । ତାଙ୍କ ପୂର୍ବରୁ କୌଣସି ଓଡ଼ିଆ ଲେଖାରେ ଜଗନ୍ନାଥ ବୁଦ୍ଧ ଆଖ୍ୟା ପାଇ ନଥିଲେ । ସାରଳା ଦାସ ଏକ ସ୍ଥଳରେ ବଳଭଦ୍ରଙ୍କୁ ଅନନ୍ତ ଦେବ ରୂପରେ ପ୍ରତିଷ୍ଠା କରନ୍ତି । ସେ କହନ୍ତି—ଦେହତ୍ୟାଗ କାଳରେ ବଳରାମ ସର୍ପ ରୂପରେ ସମୁଦ୍ର ଗର୍ଭକୁ ପ୍ରବେଶ କଲେ । ବଳରାମଙ୍କୁ ଅନନ୍ତ ରୂପେ ପରିକଳ୍ପନା କରିବା କବିଙ୍କର ମୌଳିକ କଳ୍ପନା ନୁହେଁ । କାରଣ ନାରଦ ପୁରାଣ (୯୧) ଓ ବ୍ରହ୍ମପୁରାଣରେ (୯୨) ବଳଭଦ୍ରଙ୍କୁ ଅନନ୍ତ ବୋଲି କୁହାଯାଇଅଛି । ସ୍କନ୍ଦ ପୁରାଣରେ ଅଛି—ବ୍ରହ୍ମା ତାଙ୍କୁ ଶେଷ ଦେବଙ୍କ ଅବତାର ଭାବରେ ସ୍ତୁତି କରିଥିଲେ । (୯୩) ତେଣୁ ମନେହୁଏ ଯେ ବଳଭଦ୍ରଙ୍କୁ ରୁଦ୍ର ବା ଶିବ ବୋଲି କହିବା କବିଙ୍କ ନିଜସ୍ୱ । ଉଦ୍‌ଯୋଗ ପର୍ବରେ ଅଛି—ଗୋଟିଏ ମଣ୍ଡପରେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ଦାରୁମୂର୍ତ୍ତି ବିରାଜମାନ ଥିଲା । ବିଷ୍ଣୁଙ୍କ ପ୍ରତିମା ମଧ୍ୟରୁ ବିଷ୍ଣୁ ବାହାରି ମେଳକ ଶୂଦ୍ରକୁ ବର ଦେଇଥିଲେ । ଏହି ପ୍ରତିମାଙ୍କୁ କବି ବିଷ୍ଣୁ, କୃଷ୍ଣ ଓ ଜଗନ୍ନାଥ ବୋଲି କହିଛନ୍ତି । (୯୪) ରୁଦ୍ର ଦେବତାଙ୍କ ପ୍ରତିମା ମଧ୍ୟରୁ ରୁଦ୍ର ବାହାରି ଅନନ୍ତା ଚଷାକୁ ବିକଟାଳ ରୂପ ଦେଖାଇଥିଲେ । ଏହି ପ୍ରତିମାଙ୍କୁ କବି ରୁଦ୍ର, ତ୍ରିପୁରାରି ବୋଲି କହିଛନ୍ତି । (୯୫) ଏହି ତଥ୍ୟରୁ ସ୍ପଷ୍ଟ

ଯେ, ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କର ପୂଜା ଏକଥ ସେ କାଳରେ କରାଯାଉଥିଲା । ପୁନଶ୍ଚ ଦାରୁ ବିଗ୍ରହରେ ସେମାନେ ପ୍ରକଟିତ ହୋଇଥିବା ବର୍ଣ୍ଣନାରୁ ଅନୁମିତ ହୁଏ ଯେ, ପୁରୁଷୋତ୍ତମ ଧାମର ଦାରୁ ଦେବତା ତ୍ରୟଙ୍କୁ ଲୋକେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଭାବରେ ସେତେବେଳେ ବି ଗ୍ରହଣ କରୁଥିଲେ । ସମାଜ-ପ୍ରଚଳିତ ଧର୍ମ ଧାରଣାକୁ କବି ଏଠାରେ ପ୍ରକାଶ କରିଅଛନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ତ୍ରିମୂର୍ତ୍ତିର (ବ୍ରହ୍ମା, ବିଷ୍ଣୁ, ମହେଶ୍ୱର) ଆରାଧନା ଗୁପ୍ତ ଯୁଗର ପୂର୍ବରୁ ହିନ୍ଦୁ ଧର୍ମରେ ପ୍ରଚଳିତ ହୋଇଥିଲା । (ଯୁଗେ ଯୁଗେ ଉତ୍କଳୀୟ ଧର୍ମ ଓ ସଭ୍ୟତା, (ପୃ ୨୩୭) ତାହାର ପରିଣାମ ସ୍ୱରୂପ ଓଡ଼ିଶାର ଆରାଧ୍ୟ ଦାରୁ ଦେବତା ତ୍ରୟ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଭାବରେ ପ୍ରତିଷ୍ଠା ପାଇଥିଲେ ବୋଲି ମନେହୁଏ ।

ସାରଳାଦାସ ସ୍ପଷ୍ଟତଃ ବ୍ରହ୍ମା ସୁଭଦ୍ରାରୂପ ଧାରଣ କରିଛନ୍ତି ବୋଲି ଦର୍ଶାଇଅଛନ୍ତି । ମୂଷଳୀ ପର୍ବରେ ଉକ୍ତ ଅଛି—ଜଗନ୍ନାଥ ନୀଳଗିରିକୁ ବିଜୟ ହେବା କଥା ଶୁଣି, ଈଶ୍ୱର ସେଠାକୁ ଯାଇ ବଳଭଦ୍ର ରୂପରେ ପୂଜା ପାଇବେ ବୋଲି ସ୍ଥିର କଲେ । ବ୍ରହ୍ମା ମଧ ସେଠାରେ ରହିବେ ବୋଲି ଜଗନ୍ନାଥ ଆଦେଶ ଦେଲେ । (ପୃ ୩୯) କବି ଏଠାରେ ପୁଣି କହନ୍ତି ଯେ, ବ୍ରହ୍ମା ଶାପ ହେତୁ ସୁଭଦ୍ରା ରୂପ ଧାରଣ କରିଅଛନ୍ତି । ପୁରୁଷୋତ୍ତମ କ୍ଷେତ୍ରରେ ରାମ, କୃଷ୍ଣ ଓ ସୁଭଦ୍ରା ଯଥା କ୍ରମରେ ହଳୀ, ହରି ଓ ବ୍ରହ୍ମା ରୂପରେ ପ୍ରକାଶ ହୋଇଥିଲେ । (୯୬) ବନ ପର୍ବରେ ମଧ ବ୍ରହ୍ମା ସୁଭଦ୍ରା ରୂପରେ ଜଗନ୍ନାଥଙ୍କ ପାଖରେ ଥିବା କଥା କବି ଦର୍ଶାଇଅଛନ୍ତି । (୯୭) ବ୍ରହ୍ମା ସୁଭଦ୍ରା ହେଲେ ବୋଲି କହିବା ମଧ ସାରଳାଙ୍କର ନିଜସ୍ୱ କଳ୍ପନା । କାରଣ ପୁରାଣରେ କୁତ୍ରାପି ବ୍ରହ୍ମାଙ୍କୁ ସୁଭଦ୍ରା ବୋଲି କୁହାଯାଇନାହିଁ । ବ୍ରହ୍ମପୁରାଣରେ ସୁଭଦ୍ରା ବାସୁଦେବଙ୍କ ଭଗିନୀ । (୯୮) ନାରଦ ପୁରାଣରେ ସେ ବଳରାମଙ୍କ ଭଗିନୀ । (୯୯) ଉଭୟ ପୁରାଣରେ ସେ କାତ୍ୟାୟନୀ ବା ଦେବୀ ଦୁର୍ଗା । କାତ୍ୟାୟନୀ ଦୁର୍ଗାଙ୍କର ଏକ ନାମ ମାତ୍ର । ଦୁର୍ଗା-ସପ୍ତଶତୀରେ ଅଛି—"ପଞ୍ଚମଂ ସ୍କନ୍ଦମାତେତି ଷଷ୍ଠଂ କାତ୍ୟାୟନୀତି ଚ ।" (ପୃ ୨୦) ସ୍କନ୍ଦ ପୁରାଣରେ ସେ ଜଗଦମ୍ବା, ପରମେଶ୍ୱରୀ ଓ ଶକ୍ତି । (୧୦୧) ଭାଗବତରେ ଅଛି—ଭଗବାନଙ୍କ ନିର୍ଦ୍ଦେଶରେ ଯଶୋଦାଙ୍କ ଗର୍ଭରେ ଦେବୀ ଦୁର୍ଗା ଜାତ ହୋଇଥିଲେ । (ଦଶମସ୍କନ୍ଧ) ତେଣୁ ଅବଧାରିତ ହୁଏ ଯେ, ପୁରାଣମାନଙ୍କ ଅନୁସାରେ ଦେବୀ ଦୁର୍ଗା ହିଁ ବାସୁଦେବ ଓ ବଳରାମଙ୍କ ଭଗିନୀ । ସୁତରାଂ ସୁଭଦ୍ରା

ହୋଇଛନ୍ତି—ଦୁର୍ଗା । ତାଙ୍କୁ ଅର୍ଜୁନ-ପତ୍ନୀ ସୁଭଦ୍ରା ବୋଲି ଭାବିବା ଅଯୌକ୍ତିକ ତଥା ପୁରାଣ-ସମ୍ମତ କଥା ନୁହେଁ ।

ଏଠାରେ ଉଲ୍ଲେଖ ଯୋଗ୍ୟ ଯେ, ଗୁପ୍ତଯୁଗରେ ହିନ୍ଦୁଧର୍ମର ପରିବର୍ତ୍ତନ ହେଲା । କ୍ରମେ ତ୍ରିମୂର୍ତ୍ତିଙ୍କ ମଧ୍ୟରୁ ବିଷ୍ଣୁଙ୍କୁ ନେଇ ବୈଷ୍ଣବ ସଂପ୍ରଦାୟ ଓ ଶିବ ବା ମହେଶ୍ୱରଙ୍କୁ ନେଇ ଶୈବ ସଂପ୍ରଦାୟ ଗଢ଼ିଉଠିଲା । ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ସ୍ଥାନ ତଳକୁ ଖସି ଆସିଲା । ଏହି ଯୁଗରେ ଶକ୍ତିପୂଜାର ବହୁଳ ପ୍ରସାର ହେଲା ଏବଂ ତାନ୍ତ୍ରିକ ଦେବୀମାନଙ୍କ ମଧ୍ୟରେ ଆଦ୍ୟାଶକ୍ତି ରୂପେ ଦୁର୍ଗା ସର୍ବପ୍ରଧାନ ସ୍ଥାନ ଅଧିକାର କଲେ । (ଯୁଗେ ଯୁଗେ ଉତ୍କଳୀୟ ଧର୍ମ ଓ ସଭ୍ୟତା, ପୃ ୨୩୬-୨୩୭) ପରିଣାମରେ ପୁରୁଷୋତ୍ତମର ଦାରୁଦେବତା ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କର ଧାରଣାରେ ପରିବର୍ତ୍ତନ ଆସିଲା । ବିଷ୍ଣୁ ଓ ମହେଶ୍ୱର ବା ଶିବ ଯଥାକ୍ରମେ ବୈଷ୍ଣବ ଓ ଶୈବ ସଂପ୍ରଦାୟରେ ସ୍ୱୀକୃତି ପାଇ ସାରିଥିଲେ । କିନ୍ତୁ ବ୍ରହ୍ମାଙ୍କ ପ୍ରତିଷ୍ଠା ଖର୍ବ ହେବାକୁ ଲାଗିଥିଲା । ସୁତରାଂ ବ୍ରହ୍ମାଙ୍କ ସ୍ଥାନରେ ତ୍ରିମୂର୍ତ୍ତିଙ୍କ ମଧ୍ୟରେ ଦେବୀ ଦୁର୍ଗା ସୁଭଦ୍ରା ନାମଧରି ସ୍ଥାନଲାଭ କଲେ ବୋଲି ଅନୁମିତ ହୁଏ । ସାରଳା ଦାସ ପୌରାଣିକ ଯୁଗରେ ଏହି ଯେଉଁ ପରିବର୍ତ୍ତନ ହେଲା, ତାହାଙ୍କୁ ହିଁ ବ୍ରହ୍ମା ସୁଭଦ୍ରା ରୂପରେ ପୁରୁଷୋତ୍ତମ ଧାମରେ ପୂଜା ପାଉଥିବା କଳ୍ପନାରେ ରୂପ ଦେଇଅଛନ୍ତି ବୋଲି ମନେହୁଏ । ଷ୍ଟର୍ଲିଂଙ୍କ ମତରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଯଥାକ୍ରମେ ବିଷ୍ଣୁ, ଶିବ ଓ ଦୁର୍ଗା । (୧୦୨)

କେହି କେହି ସୁଭଦ୍ରାଙ୍କୁ ଲକ୍ଷ୍ମୀ ବୋଲି କହନ୍ତି । ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଦର୍ଶାଇଅଛନ୍ତି ଯେ, ସୁଭଦ୍ରା ବିଷ୍ଣୁଙ୍କର ପ୍ରିୟତମା ଲକ୍ଷ୍ମୀ । (୧୦୩) ସ୍କନ୍ଦ ପୁରାଣରେ ତାଙ୍କୁ ଲକ୍ଷ୍ମୀ ବୋଲି କୁହାଯାଇଅଛି । (ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ, ପୃ ୫୬) ସ୍କନ୍ଦ ପୁରାଣରେ ମଧ୍ୟ ଅଛି—ବିଷ୍ଣୁ କୁଙ୍କୁମ ବର୍ଣ୍ଣରେ ରଞ୍ଜିତା ଲକ୍ଷ୍ମୀଙ୍କ ସହ ସ୍ୱପ୍ନରେ ଇନ୍ଦ୍ରଦ୍ୟୁମ୍ନଙ୍କୁ ଦେଖା ଦେଇଥିଲେ । (୧୦୪) ପରେ ସେହି କୁଙ୍କୁମ ବର୍ଣ୍ଣରେ ସୁଭଦ୍ରା ଶୋଭିତ ହେଲେ । (୧୦୫) ଏହି ବର୍ଣ୍ଣନାରୁ ପ୍ରତିପନ୍ନ ହୁଏ ଯେ, ସୁଭଦ୍ରା ଲକ୍ଷ୍ମୀରୂପରେ ମଧ୍ୟ ପରିକଳ୍ପିତା । ବ୍ରହ୍ମପୁରାଣ ଓ ନାରଦପୁରାଣ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ କିମ୍ବା ତୃତୀୟ ଶତକ ବୋଲି କାହାରି କାହାରି ମତ । (ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ, ପୃ ୯) ସ୍କନ୍ଦ ପୁରାଣର କାଳ ଖ୍ରୀଷ୍ଟ ସପ୍ତମ ଶତାବ୍ଦୀର ପୂର୍ବ ବୋଲି କେହି କେହି କହନ୍ତି । (ଏଜନ୍ ପୃ ୧୧) ତେଣୁ

ପ୍ରତିପାଦିତ ହେଉଅଛି ଯେ, ସୁଭଦ୍ରାଙ୍କୁ ଶକ୍ତିରୂପରେ ପରିକଳ୍ପନା କରିବା କଥାଟି ତାଙ୍କୁ ଲକ୍ଷ୍ମୀରୂପରେ କଳ୍ପନା କରିବାଠାରୁ ପ୍ରାଚୀନତର । ଅଧିକନ୍ତୁ ପରବର୍ତ୍ତୀ କାଳରେ ଦୁର୍ଗା ଓ ଲକ୍ଷ୍ମୀ ଏକ ଓ ଅଭିନ୍ନ ବୋଲି ଗୃହୀତ ହେଲେ । ଦୁର୍ଗାସପ୍ତ-ସତୀରେ ଦେବୀଙ୍କର ଏକଶତଆଠଗୋଟି ନାମ ମଧ୍ୟରେ 'ଲକ୍ଷ୍ମୀ' ନାମଟି ଅନ୍ୟତମ ବୋଲି ଉକ୍ତ—"ବ୍ରହ୍ମମୁଣ୍ଡା ଚୈବ ବାରାହୀ ଲକ୍ଷ୍ମୀଶ୍ଚ ପୁରୁଷାକୃତିଃ ।" (୧୦୪)

ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ଯେ ଜଗନ୍ନାଥ ଧର୍ମରେ ଶୈବ, ଶାକ୍ତ ଓ ବୈଷ୍ଣବଧର୍ମର ସମନ୍ୱୟ ହୋଇଅଛି । ସାରଳାଙ୍କ ବର୍ଣ୍ଣିତ ତ୍ରିପୁରମୋହିନୀ କନ୍ୟାର ବିବାହ-ଦୃଶ୍ୟରୁ ମଧ୍ୟ ପ୍ରତିପାଦିତ ହୁଏ ଯେ, ପଞ୍ଚଦଶ ଶତାବ୍ଦୀରେ ଶୈବଧର୍ମସହ ଜଗନ୍ନାଥ ଧର୍ମ ବା ବୈଷ୍ଣବଧର୍ମର ସମ୍ମେଳନ ହୋଇଥିଲା । ଉଭୟ ଧର୍ମମତ ମଧ୍ୟରେ ସୌହାର୍ଦ୍ଦ୍ୟ ଥିଲା । ତ୍ରିପୁରମୋହିନୀ ଉପାଖ୍ୟାନରେ ଅଛି— ଶ୍ରୀକୃଷ୍ଣ ଶିବଙ୍କ ପାଦବନ୍ଦନା କରିଥିଲେ ଏବଂ ଶିବ ତାଙ୍କୁ ସହାସ୍ୟ ବଦନରେ କଲ୍ୟାଣ କରିଥିଲେ । ଶିବ ଶେଷରେ କହିଥିଲେ—"ଏକ ଘରେ ଆମ୍ଭେ କମ୍ପା ଲଗାଇବା ହିଦ୍ଧ । (୧୦୬) ଜଗନ୍ନାଥ ଲକ୍ଷ୍ମୀଙ୍କୁ କହିଥିଲେ ଯେ ଚାଚେଶ୍ୱରୀ ତାଙ୍କ ଉପରେ ଠାକୁରାଣୀ ତାଙ୍କୁ ଦର୍ଶନ କଲେ ସେ ମୁକ୍ତି ପାଇବେ ଓ ସେ ତାଙ୍କର ନମସ୍ୟା । ଜଗନ୍ନାଥଙ୍କ ସଙ୍ଗରେ ଲକ୍ଷ୍ମୀ ମଧ୍ୟ ଚାଚେଶ୍ୱରୀଙ୍କୁ ଦର୍ଶନ କରିବାକୁ ଯାଇଥିଲେ । (୧୦୭) ଏହା ମଧ୍ୟ ଜଗନ୍ନାଥ ଧର୍ମ ଓ ଶାକ୍ତମତର ସହାବସ୍ଥାନ ସୂଚିତ କରୁଅଛି । ସାରଳା ଦାସ ବ୍ରହ୍ମାଙ୍କୁ ଦେବୀରୂପରେ ପ୍ରତିଷ୍ଠା କରି ଜଗନ୍ନାଥ ଧର୍ମ ସହ ଶାକ୍ତଧର୍ମର ମିଳନ ପ୍ରଦର୍ଶନ କରିଅଛନ୍ତି । ସୁଭଦ୍ରା ଏବଂ ଭୁବନେଶ୍ୱରର ଅନନ୍ତ ବାସୁଦେବ ମନ୍ଦିରରେ ଥିବା ଏକାନଂଶା ଦେବୀ ଏକ ଓ ଉଭୟେ ଦେବୀ ଦୁର୍ଗାଙ୍କ ରୂପ ବୋଲି ତଦ୍‌ବିଦମାନଙ୍କ ମତ । (୧୦୮) ମଧ୍ୟଯୁଗୀନ ଜଗନ୍ନାଥ-ଧର୍ମରେ ବୈଷ୍ଣବ, ଶୈବ ଓ ଶାକ୍ତ ମତ ସଂମିଶ୍ରିତ ହୋଇଯାଇଥିଲା ବୋଲି ଜଣାଯାଏ । (୧୦୯)

ଜଗନ୍ନାଥ ଧର୍ମରେ ଶବର ସଭ୍ୟତା ଓ ଆର୍ଯ୍ୟ ସଭ୍ୟତାର ସମନ୍ୱୟ ହୋଇଅଛି । ସାରଳା ଦାସ କହନ୍ତି—ଜଗନ୍ନାଥ ପ୍ରଥମେ ବସୁ ନାମକ ଶବରଦ୍ୱାରା ପୂଜିତ ହେଉଥିଲେ । ଶବର ପୂଜା ନ କଲେ ଜଗନ୍ନାଥଙ୍କର ଭୋଜନ ହେଉ ନ ଥିଲା । (୧୧୦) ଜଗନ୍ନାଥେ ପୁଣି ବିଧିପତି ନାମକ ଶବରର କନ୍ୟା ଶ୍ରୀୟାଙ୍କୁ ବିବାହକରି 'ଶବରୀ ନାରାୟଣ' ରୂପରେ ପ୍ରକଟିତ ହୋଇଥିଲେ । ଶବରୀ ତାଙ୍କୁ ନାନାବିଧ ଭୋଜନରେ ଆପ୍ୟାୟିତ କରୁଥିଲା । (୧୧୧)

ଓଡ଼ିଶାର ସମନ୍ୱୟମୂଳକ ଜଗନ୍ନାଥଧର୍ମର ମୂଳକଥା ହେଲା—ସାମ୍ୟ, ମୈତ୍ରୀ, ଉଦାରତା ଓ ଅହିଂସା । ଏଠାରେ ଲୋଭ, ମୋହ, କାମ, କ୍ରୋଧ, ଅହଙ୍କାର, ପରହିଂସା ଓ ପରନିନ୍ଦାର ସ୍ଥାନ ନାହିଁ । ଗାନ୍ଧାରୀଙ୍କ ମୁଖରେ ଏହି ଶାଶ୍ୱତ ମତର ପ୍ରତିଷ୍ଠା କବି କରିଅଛନ୍ତି । ଅସୂୟା ଜର୍ଜରିତ ଧୃତରାଷ୍ଟ୍ରଙ୍କୁ ଗାନ୍ଧାରୀ ଏତାଦୃଶ ମର୍ମରେ ଉପଦେଶ ପ୍ରଦାନ କରିଥିଲେ ।

"ସଂସାର ଯାକ ତୁ ଯେବେ କରିବୁ ଏକତ୍ର
ତତ୍‌ ଯାଇ ଭବଜନ୍ତୁ ହୋଇବୁ ମୁକତ ।"
"ପରହିଂସା ପରନିନ୍ଦା ଗୁଡ଼ ଧୃତରାଷ୍ଟ୍ର
ଅନିତ୍ୟ ସଂସାର ଏହି ଅଟେ ମାୟାଧଟ ।
ଲୋଭ ମୋହ କାମ କ୍ରୋଧ ଅହଙ୍କାର ହିଂସା
ଏହା ଦୂର କର ସ୍ୱାମୀ ନ ବଢ଼ା ମନୀଷା ।" (୧୧୨)

ଉଦାର ଜଗନ୍ନାଥ ଧର୍ମରେ ଜାତିଭେଦ ନାହିଁ । ଏହି ଧର୍ମଧାରଣାରେ ହମିଳା ବାଉରୀ ବ୍ରାହ୍ମଣ ଜାତିକୁ ଉନ୍ନୀତ ହୋଇପାରେ ଏବଂ ଶାସନ ବି ଦାନ ରୂପରେ ପାଇପାରେ । (ଆଃ୧୯୪ପୃ) ସୁଜାଣେଶ୍ୱର ଜାତିରେ ଶବର, ପୁଣି ବୃତ୍ତିରେ ମାଂସ-ବିକ୍ରେତା । ତଥାପି ସେ ବୈକୁଣ୍ଠକୁ ଗମନ କରିପାରେ । (ସ୍ୱ ୯ପୃ) ଜଗନ୍ନାଥ ଦେଶର ଅନ୍ୟ ବିଶିଷ୍ଟ ଦେବତା ହେଲେ—ଶିବ । ସେ ମଧ୍ୟ ଶବରର ପୂଜା ଗ୍ରହଣ କରନ୍ତି । ସାରଳା ଦାସ ଲେଖିଛନ୍ତି—ଢେଙ୍କାନାଳର କପିଳାସ-ନିବାସୀ ଶିବ ପ୍ରଥମେ ଜଣେ ଶବରଦ୍ୱାରା ପୂଜିତ ହେଉଥିଲେ । (ବ ୨୯ ପୃ) ସଉରାମାନଙ୍କ ମଧ୍ୟରେ ଗୋଟିଏ କିମ୍ବଦନ୍ତୀ ପ୍ରଚଳିତ ଅଛି । ସେଥିରୁ ଜଣାଯାଏ ଯେ, ଭୁବନେଶ୍ୱରର ଲିଙ୍ଗରାଜ ଜଣେ ସଉରା ବାଳକକୁ ବଂଶାନୁକ୍ରମିକ ଭାବରେ ତାଙ୍କର ସେବାପୂଜା କରିବା ପାଇଁ ବର ଦେଇଥିଲେ । (୧୧୩) ପଣ୍ଡିତ ନୀଳକଣ୍ଠ ଦାସ ଯଥାର୍ଥରେ କହନ୍ତି—"ଜଗନ୍ନାଥଙ୍କ ପାଖେ କେହି ପତିତ ନୁହେଁ । ସେ କାହାକୁ ପତିତ କରନ୍ତି ନାଇ—ମଣନ୍ତି ନାଇ ।" (୧୧୪)

ଏହି ଧର୍ମରେ ମିଥ୍ୟାଚାର ନାହିଁ, ପରସ୍ତ୍ରୀ ହରଣ ନାହିଁ, କୁଜନଙ୍କ ସଙ୍ଗ କରିବା ମଧ୍ୟ ନାହିଁ । ହତ୍ୟା, ବିବାଦ ଓ କଳହରେ ଭାଗନେବା ଏଥିରେ ନିଷିଦ୍ଧ । ସ୍ୱକୀୟା ବିବାହିତା ପତ୍ନୀ ଏଥିରେ ପ୍ରତିଷ୍ଠା ପାଏ । ଗୃହସ୍ଥ ସ୍ୱପତ୍ନୀର ହସ୍ତରୁ ଭୋଜନ ଗ୍ରହଣ କରେ । ଅନ୍ୟ ସ୍ତ୍ରୀର ହାତରୁ ଭୋଜନ ଗ୍ରହଣ କରିବା ତାର କର୍ତ୍ତବ୍ୟ ନୁହେଁ । ଦୁଃଖ ସୁଖକୁ ସମାନ ମଣି ଜୀବନ ଅତିବାହିତ କରିବା ଏହି

ଧର୍ମରେ ଗୃହସ୍ଥର କର୍ତ୍ତବ୍ୟ । ଜଗନ୍ନାଥ ଧର୍ମର ଏହି ଆଦର୍ଶ ମହିକଥାଗୁଡ଼ିକ ସାରଳା ଦାସ ଯମ ଓ ହରିସାହୁଙ୍କ ଉପାଖ୍ୟାନରେ ପ୍ରଦର୍ଶନ କରିଅଛନ୍ତି । (ସ୍ୱ ୯ ପୃ)

ଓଡ଼ିଶାରେ ପଞ୍ଚଦଶ ଶତାବ୍ଦୀରେ କୃଷ୍ଣଙ୍କ ସହ ରାଧା ପୂଜିତା ହେଉଥିଲେ କି ନାହିଁ, ତାହା ବିଚାର ସାପେକ୍ଷ । ଏପରି ବିଚାର କରିବା ପୂର୍ବରୁ ଭାରତୀୟ ସାହିତ୍ୟକୁ ରାଧାଙ୍କ ଭାବଟି କିପରି ଓ କେବେ ପ୍ରବେଶ କରିଛି, ତାହା ଜାଣିବା ଦରକାର । ପ୍ରାଚୀନ କାଳରୁ ବାସୁଦେବ ଉପାସନାର ପ୍ରାରମ୍ଭ ବେଳରୁ ଗୋପୀ-ମାନଙ୍କ ବର୍ଣ୍ଣନାରେ ଜଣେ ବିଶିଷ୍ଟ ଗୋପୀଙ୍କର ବର୍ଣ୍ଣନା ହୋଇ ଆସୁଥିଲା । ତାମିଲ ଆଲୱାରଚଳନ୍ତୀ ସନ୍ଥମାନଙ୍କ ସଂଗୀତରେ ଏହି ଗୋପୀଙ୍କ ନାମ ଥିଲା— ନାପିନ୍ନାୟ । ଉତ୍ତର ଭାରତରେ ଏହି ଗୋପୀ ରାଧା ନାମ ଧାରଣ କଲେ । 'ଗାଥା ସପ୍ତସଈ'ରେ ରାଧା-ସମ୍ବନ୍ଧୀୟ ଉଲ୍ଲେଖ ମିଳେ । ସେଥିରୁ ଜଣାଯାଏ ଯେ, ଖ୍ରୀଷ୍ଟ ସପ୍ତମ ଶତାବ୍ଦୀ ପୂର୍ବରୁ ରାଧାଭାବ ଭାରତୀୟ ସାହିତ୍ୟରେ ଦେଖା ଦେଇ-ଥିଲା । ବଙ୍ଗଳାର ପାହାଡ଼ପୁରଠାରେ ରାଧାକୃଷ୍ଣ ମୂର୍ତ୍ତି ମିଳେ । ତାହା ଷଷ୍ଠ ଶତାବ୍ଦୀର ଶିଳ୍ପବୋଲି ତତ୍‌ବିଦମାନଙ୍କ ମତ । ଅଷ୍ଟମ ଶତାବ୍ଦୀର 'ବେଣୀ-ସଂହାର' ନାଟକ, ନବମ ଶତାବ୍ଦୀର 'ଧ୍ୱନ୍ୟାଲୋକ', ଦଶମ ଶତାବ୍ଦୀର 'ନଳଚମ୍ପୂ' ଓ 'ଯଶସ୍ତିଳକ ଚମ୍ପୂ', ଏକାଦଶ ଶତାବ୍ଦୀର ବାକ୍‌ପତିରାଜଙ୍କ ଅଭିଲେଖରେ ରାଧାଙ୍କ ନାମ ମିଳେ । ଦଶମ ଶତାବ୍ଦୀର 'କବୀନ୍ଦ୍ର ବଚନ ସମୁଚ୍ଚୟ' ନାମକ କବିତା-ସଙ୍କଳନରେ ରାଧାଙ୍କ ବର୍ଣ୍ଣନା ଦେଖାଯାଏ । ଦ୍ୱାଦଶ ଶତାବ୍ଦୀଠାରୁ ପୂର୍ବାପେକ୍ଷା ଅଧିକ ମାତ୍ରାରେ ରାଧାକୃଷ୍ଣଙ୍କ କଥାର ପ୍ରୟୋଗ ସାହିତ୍ୟରେ ପରିଦୃଷ୍ଟ ହୁଏ । ହେମଚନ୍ଦ୍ରଙ୍କ 'କାବ୍ୟାନୁଶାସନ', ରାମଚନ୍ଦ୍ର ଗୁଣଚନ୍ଦ୍ରଙ୍କ 'ନାଟ୍ୟଦର୍ପଣ', ଶାରଦା ତନୟଙ୍କ 'ଭାବପ୍ରକାଶ ନାଟକ', କବି କର୍ଣ୍ଣପୁରଙ୍କ 'ଅଳଙ୍କାର କୌସ୍ତୁଭ', ସାଗର ନନ୍ଦୀଙ୍କ 'ନାଟକ-ଲକ୍ଷଣରତ୍ନକୋଷ' ତଥା ଦ୍ୱାଦଶ ଶତାବ୍ଦୀର ଅନ୍ୟତମ ଗ୍ରନ୍ଥ 'ସଦୁକ୍ତି କର୍ଣ୍ଣାମୃତ' ଗ୍ରନ୍ଥରେ ରାଧାଙ୍କ ବର୍ଣ୍ଣନା ନିହିତ । ଜୟଦେବ କବିଙ୍କ 'ଗୀତଗୋବିନ୍ଦ'ରେ ମଧ୍ୟ ରାଧାକୃଷ୍ଣ ଲୀଳାର ମନୋରମ ବର୍ଣ୍ଣନା ମିଳେ ।

ରାଧାଙ୍କୁ ଲକ୍ଷ୍ମୀଙ୍କ ଅବତାର, ବ୍ରହ୍ମାଙ୍କ ଶକ୍ତି ଓ ପ୍ରକୃତି ବୋଲି ପ୍ରତିପାଦନ କରାଯାଇଅଛି । ସାଂଖ୍ୟ ଦର୍ଶନର ପ୍ରଭାବରେ କୃଷ୍ଣଙ୍କୁ ପୁରୁଷ ଓ ରାଧାଙ୍କୁ ପ୍ରକୃତି ଆଖ୍ୟା ଦିଆଯାଇ ଅଛି । ଶକ୍ତିପୂଜାର ପ୍ରଭାବରେ ରାଧାଙ୍କୁ ଦୁର୍ଗା ବୋଲି କୁହା-ଯାଇଅଛି । 'ବ୍ରହ୍ମବୈବର୍ତ୍ତ ପୁରାଣ'ର ରାଧାଙ୍କ ଚରିତରେ ତାନ୍ତ୍ରିକ ବାମ ମାର୍ଗର

ପ୍ରଭାବ ଦେଖାଯାଏ । ରାଧାଙ୍କ ଚରିତ୍ରରେ ଯେଉଁ ପରକୀୟାବାଦ ପରିଲକ୍ଷିତ ହୁଏ, ତାହା ସହଜିଆ ବୈଷ୍ଣବମତର ପ୍ରଭାବ ଅଟେ ।

ଶ୍ରୀମଦ୍ ଭାଗବତରେ ରାଧାଙ୍କ ନାମ ନାହିଁ । ଏଥିରେ ଥିବା 'ଅନୟା ରାଧିତୋନୂନଂ ଭଗବାନ ହରିରୀଶ୍ୱର' ପଦରୁ ରାଧାଙ୍କ ସୂଚନା ମିଳେ ବୋଲି ଗୌଡ଼ୀୟ ବୈଷ୍ଣବମାନେ ମତ ଦିଅନ୍ତି । କିନ୍ତୁ ବାସ୍ତବରେ ଲୋକପ୍ରଚଳିତ କୃଷ୍ଣଲୀଳାରେ ପ୍ରାରମ୍ଭରୁ ରାଧା ସ୍ଥାନ ପାଇ ନଥିଲେ । 'ପଦ୍ମପୁରାଣ'ପରି ପରବର୍ତ୍ତୀ ରଚନାରେ ରାଧାକୃଷ୍ଣଙ୍କ ପ୍ରେମକଥା ଦେଖା ଦେଇଥିଲା । ପଦ୍ମପୁରାଣରେ ରାଧା ଆଦି ପ୍ରକୃତି, ଆଦ୍ୟାଶକ୍ତି, ମାହେଶ୍ୱରୀ, ରମା, ଇଚ୍ଛା, ଜ୍ଞାନ, କ୍ରିୟା ଓ ଶକ୍ତି । ବରାହ ଓ ନାରଦୀୟ ପୁରାଣରେ ଅତି ଅଳ୍ପ ସ୍ଥଳରେ ରାଧା-ସମ୍ବନ୍ଧୀୟ ସୂଚନା ମିଳେ । ଗୌଡ଼ୀୟ ବୈଷ୍ଣବଗଣ ରାଧାଙ୍କ ପ୍ରାଚୀନତା ଦେଖାଇବାକୁ ଯାଇ 'ଦେବୀ ଭାଗବତ', 'ମହା ଭାଗବତ', 'ବ୍ରହ୍ମ ସଂହିତା', 'ନାରଦ ପଞ୍ଚରାତ୍ର', 'ବୃହତ୍ ଗୌତମୀୟ ତନ୍ତ୍ର' ଓ 'ଗୋପାଳ ତାପିନୀ' ନାମକ ଉପନିଷଦର ଉଲ୍ଲେଖ କରନ୍ତି । କିନ୍ତୁ ପୁରାଣରେ ରାଧା ସମ୍ବନ୍ଧୀୟ ବର୍ଣ୍ଣନା ବାସ୍ତବରେ ଅର୍ବାଚୀନ । (୧୧୫)

ଏହି ମହାଭାରତୀୟ ପୃଷ୍ଠଭୂମି ଉପରେ ପଞ୍ଚଦଶ ଶତକରେ ଓଡ଼ିଶାରେ ରାଧା କିପରି ସ୍ଥାନ ପାଇଥିଲେ ତାହା ବିଚାରବାର କଥା । ଜୟଦେବଙ୍କ ଗୀତ-ଗୋବିନ୍ଦ ସାରଳାଙ୍କ ବହୁ ପୂର୍ବର ରଚନା । ତାହା ଓଡ଼ିଶାରେ ଲୋକପ୍ରିୟ ହୋଇଥିଲା । ତେଣୁ ପୁରୁଷୋତ୍ତମ ଦେବ ବଡ଼ଠାକୁରଙ୍କ ପାଖରେ ତାହା ନୃତ୍ୟ ହେବ ବୋଲି ଆଦେଶ ଦେଇଥିଲେ । (୧୧୬) ଏ ସବୁର ପ୍ରଭାବ ସେ କାଳର ଓଡ଼ିଆ ସମାଜ ଉପରେ ପଡ଼ିଥିବା ସ୍ୱାଭାବିକ । ଏହା ସତ୍ୟ ହେଲେ ହେଁ, ଉତ୍କଳୀୟ ଧର୍ମ-ଧାରଣାରେ କୃଷ୍ଣ ବା ଜଗନ୍ନାଥଙ୍କ ସହିତ ରାଧା ଆସନ ଲାଭକରି ପାରିନଥିଲେ । ସାରଳାଙ୍କ ମହାଭାରତ ତାହାର ପ୍ରମାଣ । ଆଦି ପର୍ବରେ ରାଧାଙ୍କ ସହ ଶ୍ରୀକୃଷ୍ଣଙ୍କର ପ୍ରେମଲୀଳାର ଯେଉଁ ଚିତ୍ର ମିଳେ ତାହା ରାଧାଙ୍କର କୌଣସି ମହାନ୍ ବ୍ୟକ୍ତିତ୍ୱ ବା ଦେବୀତ୍ୱର ପରିଚୟ ଦିଏ ନାହିଁ । ଏହି ଚିତ୍ରରେ ରାଧା ଆଦ୍ୟାଶକ୍ତି, ଲକ୍ଷ୍ମୀରୂପିଣୀ, ପ୍ରକୃତି ବା ଦୁର୍ଗା ନୁହନ୍ତି । ସେ ଏଠାରେ ସୁନ୍ଦରୀ ଓ କାମାତୁରା ରମଣୀ । ସାରଳା ଏହି ବର୍ଣ୍ଣନାରେ ରାଧାକୃଷ୍ଣ ଲୀଳାକୁ ବିଦ୍ରୂପ ଦୃଷ୍ଟିରେ ଦେଖିଛନ୍ତି ବୋଲି କହିଲେ ଚଳେ । 'ଗାଥା ସପ୍ତସଈ'ରେ ରାଧା ସୁନ୍ଦରୀ ଓ ପ୍ରେମପ୍ରବଣା । (୧୧୭) କବିଙ୍କ ଆଦିପର୍ବର ରାଧାଙ୍କ ଚିତ୍ର ପ୍ରାଥମିକ ଲେଖା 'ଗାଥା ସପ୍ତସଈ'ର ଚିତ୍ରଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ନୁହେଁ । ଅଧିକନ୍ତୁ ଏହି

ବର୍ଣ୍ଣନାଟି ପ୍ରକ୍ଷେପ୍ତ ବୋଲି ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତ । (୧୧୮) ଏଥିରେ ଯେଉଁ ପରକୀୟାବାଦର କଥା ରହିଛି ତାହା ସହଜିଆ ବୈଷ୍ଣବମତର ପ୍ରଭାବ ପ୍ରଦର୍ଶନ କରେ । କବି ରାଧାକୃଷ୍ଣ ଲୀଳାର ମଧ୍ୟସ୍ଥା ଦୂତୀଙ୍କ ନାମ 'ସହଜ ସୁନ୍ଦରୀ' ରଖିଥିବାରୁ ସ୍ପଷ୍ଟଭାବରେ ଜଣାଯାଏ ଯେ ବର୍ଣ୍ଣନାଟି ସହଜିଆ ଭ୍ରଷ୍ଟାଗ୍ରରର ଏକ ଦୃଷ୍ଟାନ୍ତ । ବୃଦ୍ଧା ଦୂତୀ ସହ ଶ୍ରୀକୃଷ୍ଣଙ୍କ ରତି-ବିଳାସ ଦର୍ଶାଇ ସାରଳା ଦାସ ସହଜିଆ ବୈଷ୍ଣବଙ୍କ ଭ୍ରଷ୍ଟାଗ୍ରର ପ୍ରତି ପାଠକଙ୍କ ବିତୃଷ୍ଣା ଜାଗ୍ରତ କରାଇ ଅଛନ୍ତି । (ଆ ୧୬୩ ପୃ) କାର୍ତ୍ତିକ ପର୍ବରେ ଯେଉଁ କୃଷ୍ଣାବତାରର ଚର୍ଚ୍ଚା ଅଛି, ସେଠାରେ କବି ରାଧାଙ୍କ ନାମ ଉଲ୍ଲେଖ କରିନାହାନ୍ତି । (୧୧୯) ଓଡ଼ିଶାର କୌଣସି ପ୍ରାଚୀନ ଶିଳ୍ପରେ ରାଧାକୃଷ୍ଣ ମୂର୍ତ୍ତି ଦେଖାଯାଏ ନାହିଁ । ଉତ୍କଳୀୟ ଧର୍ମ-ଧାରଣାରେ ଜଗନ୍ନାଥ ସର୍ବଦା ଲକ୍ଷ୍ମୀପତି, ରାଧାନାଥ ନୁହନ୍ତି । ସାରଳା ଦାସ ସର୍ବତ୍ର ତାଙ୍କୁ ଲକ୍ଷ୍ମୀପତି ବୋଲି ସ୍ତୁତି କରନ୍ତି । ପୁରୀ ନିକଟବର୍ତ୍ତୀ କେତେକ ବ୍ରାହ୍ମଣ ଶାସନରେ ଯେଉଁ ଗୋପୀନାଥ ମୂର୍ତ୍ତି ଦେଖାଯାନ୍ତି, ସେଠାରେ କୌଣସିଠାରେ ରାଧା ନାହାନ୍ତି । ତେଣୁ ପ୍ରତିପାଦିତ ହୁଏ ଯେ, ପଞ୍ଚଦଶ ଶତକର ଉତ୍କଳୀୟ ଧର୍ମରେ ରାଧାଙ୍କର ସ୍ଥାନ ନଥିଲା । ଶ୍ରୀ କେଦାରନାଥ ମହାପାତ୍ର କହନ୍ତି ଯେ, ସପ୍ତଦଶ ଶତାବ୍ଦୀର ଶେଷ ଭାଗରୁ ଉତ୍କଳୀୟ ସମାଜରେ ରାଧାକୃଷ୍ଣ ଉପାସନାର ଲୋକ-ପ୍ରିୟତା ଓ ପ୍ରାଧାନ୍ୟ ବୃଦ୍ଧି ଲାଭ କଲା । (୧୨୦) ଶ୍ରୀ ପ୍ରଭାତ ମୁଖର୍ଜି ଲେଖିଛନ୍ତି ଯେ, ଓଡ଼ିଶାରେ ରାଧାଭାବ ଚୈତନ୍ୟଙ୍କ ପୂର୍ବରୁ ପ୍ରବେଶ କରିପାରି ନଥିଲା । (୧୨୧) ସାକ୍ଷୀଗୋପାଳଙ୍କ ପାଖରେ ଥିବା ରାଧାରାଣୀ ମୂର୍ତ୍ତି ମାତ୍ର ୯୦।୯୫ ବର୍ଷ ତଳର କଥା ବୋଲି ଜଣାଯାଏ । (୧୨୨)

ଯୁଗେ ଯୁଗେ ଉତ୍କଳ ଏକ କୃଷିପ୍ରଧାନ ଦେଶ । ସାରଳାଙ୍କ କାଳରେ ମଧ୍ୟ ଏହା କୃଷିପ୍ରଧାନ ଭୂମି ଥିଲା । କବିଙ୍କ ବର୍ଣ୍ଣନାରୁ ଅବଧାରିତ ହୁଏ ଯେ ସେତେବେଳେ ଓଡ଼ିଶାରେ ବହୁ ଧାନ-ଚାଉଳ ଆମଦାନୀ ହେଉଥିଲା । ଇତିହାସ କହେ—ସେ କାଳରେ କଟକୀ ସେରେ ଚାଉଳର ମୂଲ୍ୟ ମାତ୍ର ଦଶକଉଡ଼ା କଉଡ଼ି ଥିଲା । (୧୨୩) କପିଳେନ୍ଦ୍ର ଦେବ ଓ ପୁରୁଷୋତ୍ତମ ଦେବଙ୍କ ଶିଳାଲେଖରେ ଧାନଚାଉଳର ପ୍ରଭୂତ ଉଲ୍ଲେଖ ମିଳେ । (୧୨୪) ନଡ଼ିଆ ଓ ତୁଳା ଓଡ଼ିଶାର ଅନ୍ୟ ଦୁଇଟି ଉତ୍ପାଦିତ ଶସ୍ୟ ଥିଲା । ଇତିହାସ-ପୃଷ୍ଠାରୁ ଉପଲବ୍ଧ ହୁଏ ଯେ, ନଡ଼ିଆ ଓ ତୁଳା ବାହାରକୁ ଓଡ଼ିଶାରୁ ରପ୍ତାନି କରା ଯାଉଥିଲା । (୧୨୫) ସେ କାଳରେ କଦଳୀ, ପାନ, ଗୁଆ ଓ ଆଖୁର ବହୁଳ ଚାଷ ବି ଥିଲା । କପିଳେନ୍ଦ୍ର ଓ ପୁରୁଷୋତ୍ତମଙ୍କ ଶିଳାଲେଖରେ ଏସବୁ ଦ୍ରବ୍ୟର ବହୁ ଉଲ୍ଲେଖ ଦେଖାଯାଏ ।

(୧୨୬) ରାଧାରମଣଙ୍କ ମୁଦ୍ରିତ ମହାଭାରତରେ ଗହମର ଉଲ୍ଲେଖ ଦେଖାଯାଏ । ପୋଥିରେ ତାହା ଉପଲବ୍ଧ ହୁଏ ନାହିଁ । (୧୨୭) ପ୍ରକୃତ ପକ୍ଷରେ ସେ ସେ କାଳରେ ଗହମ ଓଡ଼ିଶାକୁ ବାହାରୁ ଆମଦାନୀ କରାଯାଉଥିବାର ଜଣାଯାଏ । (୧୨୮) ଏହା ସତ୍ୟ ହେଲେ ମଧ୍ୟ, ଓଡ଼ିଶାରେ ପୂର୍ବେ ଗହମ ଚାଷର ଉପଯୋଗୀ ଅଳ୍ପ କେତେକ ଭୂମି ଥିବାର ପ୍ରମାଣ ମିଳେ । ଅନଙ୍ଗଭୀମ ଦେବଙ୍କ ଏକ ତାମ୍ର-ଲେଖରେ ରାଜା ଜନୈକ ବ୍ରାହ୍ମଣଙ୍କୁ ଧାନ, ଗହମ ଓ ଆଖୁଚାଷର ଉପଯୋଗୀ ଖଣ୍ଡିଏ ଜମି ଦାନ କରିବା କଥା ଅଛି । ପ୍ରଦତ୍ତ ଭୂମି ପଶ୍ଚିମ ଓଡ଼ିଶାରେ ଅବସ୍ଥିତ ଥିବାର ଉପଲବ୍ଧ ହୁଏ । (୧୨୯) ସୁତରାଂ ଅନୁମିତ ହୁଏ ଯେ, ପଶ୍ଚିମ ଓଡ଼ିଶାରେ ସେତେବେଳେ କୌଣସି କୌଣସି ଠାରେ ଗହମଚାଷ ହେଉଥିଲା । ରାଧାରମଣଙ୍କ ବର୍ଣ୍ଣନାଟିକୁ ତେଣୁ ନିଶ୍ଚିତ ଭାବରେ ପ୍ରକ୍ଷେପ ବୋଲି କୁହାଯାଇ ପାରିବ ନାହିଁ । ଓଡ଼ିଶାର ଢଗଢମାଳରେ ଗହମର କଥା ଅଛି ।

"ଗହମ ଖାଇଲା ପୋକ
କାହୁଁ ଆସିଥିଲା ମାହାନ୍ତି ରଙ୍କ
ଧରଯାକ ପାନ ପିକ ।"
"ଗହମ ଶୁଖିଗଲା ଦେଲ
ମନଦୁଃଖରେ ନ କହୁ କଥା
କେଉଁ ଦୋଷ କରିଥିଲି ।" (୧୩୦)

ରାଧାରମଣଙ୍କ ମୁଦ୍ରିତ ମହାଭାରତରୁ ଜଣାଯାଏ ଯେ, ସେ କାଳରେ ହରଡ଼ର ଚାଷ ହେଉଥିଲା । ସଭାପର୍ବରେ ଅଛି—ଭୀଷ୍ମକ ରାଜା ଭୀମଙ୍କୁ ଆପ୍ୟାୟିତ କଲାବେଳେ ତାଙ୍କର ଭୋଜନ ପାଇଁ ହରଡ଼ ଯୋଗାଇଥିଲେ । (୧୩୧) ଲୋକ-ପ୍ରଚଳିତ ଢଗଢମାଳରେ ହରଡ଼ର ଉଲ୍ଲେଖ ମିଳେ ।

"ବର ଡାଳକୁ ହେଙ୍ଗୁ ପରଜା ବୁଟ ଡାଳକୁ ଘିଅ
ହରଡ଼ ଡାଲିରେ ଗୁଡ଼ ଆମ୍ବିଲ ଜୋଇଁଙ୍କ ପତରେ ଦିଅ ।" (୧୩୨)

ରାଧାରମଣଙ୍କ ମୁଦ୍ରିତ ଗ୍ରନ୍ଥରେ ସଭାପର୍ବରେ ଉକ୍ତ ଅଛି ଯେ, ମଧୁବନ ରାଜ୍ୟରେ କୋଠିମାନ ଥିଲା ଏବଂ ତହିଁରେ ତ୍ରେତାଯୁଗରୁ ତଣ୍ଡୁଳ ସଞ୍ଚିତ ହୋଇ ରହିଥିଲା । (ପୃ ୩୦) ଏହି ବର୍ଣ୍ଣନାଟି ମୁଁ ଦେଖିଥିବା ପୋଥିରେ ଅଭାବ, ତେଣୁ ଶବ୍ଦଟିକୁ ବଳିଷ୍ଠ ପ୍ରମାଣ ନ ପାଇବା ପର୍ଯ୍ୟନ୍ତ ପ୍ରକ୍ଷେପ ଭାବରେ ଗ୍ରହଣ

କରାଯାଇପାରେ । ତଥାପି ସେ କାଳରେ ମାଟି ତିଆରି କୋଠିରେ ଲୋକେ ଧାନଗୁଡ଼ିକ ସଞ୍ଚୟ କରି ରଖୁଥିଲେ ବୋଲି ନିମ୍ନ ବର୍ଣ୍ଣନାରୁ ଅବଧାରିତ ହୁଏ ।

"ମାଟି କାମ କରିଣ ଯେ ଦଶସହସ୍ର ଘର
ତଣ୍ଡୁଳମାନ ପୂରାଇ ତହିଁ ନିରନ୍ତର ।" (୧୩୩)

ମୁଦ୍ରିତ ମହାଭାରତର କୁଳ ଶେଖର ଉପାଖ୍ୟାନରେ ଯମୁନା ନଦୀରୁ ଧାର କଟାହୋଇ ଆସିବା କଥା ଅଛି । (ମ ୩୭୭ ପୃ) ମୂଳ ଗାଁ ପୋଥିରେ କୁଳଶେଖର ରାଜାଙ୍କ ଉପାଖ୍ୟାନ ନାହିଁ । ସୁତରାଂ ଏହା ପ୍ରକ୍ଷେପ ହୋଇପାରେ । ଏହି ବର୍ଣ୍ଣନାରୁ ନଦୀରୁ ନାଳ ଖୋଳି ଜଳସେଚନ କରାଯିବା କଥା ପ୍ରମାଣିତ ହୋଇପାରୁ ନାହିଁ । କିନ୍ତୁ ଋଷ୍ୟଶୃଙ୍ଗ ନଦୀରୁ ଖଣା ଖୋଳାଇ ଆଣି ରାଜ୍ୟରେ ଜଳ ଯୋଗାଇଦେବା ବର୍ଣ୍ଣନାରୁ ପ୍ରତିପନ୍ନ ହୁଏ ଯେ ନାଳ ଖୋଳି ଜଳସେଚନ କରିବାର ବ୍ୟବସ୍ଥା ସେ କାଳରେ ଥିଲା । (ବ ୨୩୨ ପୃ) ଏତଦ୍‌ଭିନ୍ନ ଜଳସେଚନ ପାଇଁ କୂପ ଓ ପୁଷ୍କରିଣୀମାନ ସେ କାଳରେ ଢ଼େର୍ ଥିଲା । କବି-ଲେଖମାରେ ଏ ସବୁର ବହୁ ଉଲ୍ଲେଖ ନିହିତ ।

"ଶିରଚ୍ଛେଦନ କାଳେ ଯେ ପ୍ରାଣୀ ରକ୍ଷାକର
ଅପ୍ରତିଷ୍ଠ ବାପି କୂପ ତଡ଼ାଗ ପୋଖରୀ ।" (ମ ୨୨ ପୃ)
"ବାପି ହ୍ରଦ ସରୋବର ତଡ଼ାଗାଦିମାନ
ସେହିଠାରେ ରହିଅଛି ବହୁ ରମ୍ୟ ସ୍ଥାନ ।" (ବ ୨୫୦ ପୃ)

ସାରଳା ଦାସଙ୍କ ବର୍ଣ୍ଣନାରୁ ଅବଧାରିତ ହେଉଅଛି ଯେ, ପ୍ରକୃତ କୃଷୀଙ୍କ ମଧ୍ୟରୁ କେତେକ ଭୂମିହୀନ ଥିଲେ ଏବଂ ଭୂମ୍ୟାଧିକାରୀଙ୍କ ପାଖରେ ମୂଲ ଲାଗି ଜୀବିକା ନିର୍ବାହ କରୁଥିଲେ । ତପତି ନାମକ କୃଷାଣ ସୁରେଶ୍ୱର ପଣ୍ଡାଙ୍କ ଜମିରେ ମୂଲ ଲାଗି ଜୀବିକାର୍ଜନ କରୁଥିବା ଶବ୍ଦରୁ ଏହା ସ୍ପଷ୍ଟ । (ସ୍ୱ ୨ ପୃ) ଅନନ୍ତା ନାମକ କୃଷକ ମଧ୍ୟ ଗ୍ରାମବାସୀଙ୍କଠାରୁ ଜମି ନେଇ ଚାଷ କରୁଥିଲା ଓ ଦରିଦ୍ରାବସ୍ଥାରେ କାଳାତିପାତ କରୁଥିଲା । (ଉ ୭୭ ପୃ) ଶୁଦ୍ରକ ରାଉଳ ଗ୍ରାମବାସୀଙ୍କଠାରୁ ଜମି ଖଣ୍ଡିଏ ମାଗି ହଳଚାଷ ଆରମ୍ଭ କରିଥିଲା । (ଉ ୫୭ ପୃ)

କୃଷିକାର୍ଯ୍ୟରେ ନିଯୁକ୍ତ ଶ୍ରମିକ ପାରିଶ୍ରମିକ ରୂପେ ବାର୍ଷିକ ବାରଟଙ୍କା ପାଉଥିବାର ଅନୁମିତ ହୁଏ । ତପତି କୃଷାଣର "ବାରଟଙ୍କା ବରତନେ ମୁଁ ସିନା କାରେଣୀ" ଉକ୍ତିରୁ ଏହା ସ୍ପଷ୍ଟ । (ସ୍ୱ ୩ ପୃ) ଏକ ଟଙ୍କାର ମୂଲ୍ୟ ପନ୍ଦର ଅଣା ସଙ୍ଗେ ସମାନ ହେଲେ (୧୩୪) ତାହାର ବାର୍ଷିକ ଆୟୁ ପ୍ରାୟ

ଏଗାର ଟଙ୍କା ମାନ ହେଉଅଛି । ଏତଦ୍‌ଭିନ୍ନ ଭୂମିମାଲିକ ତାକୁ ଅନ୍ନବସ୍ତ୍ର ଯୋଗାଇ ଦେଉଥିଲେ ।

"ଅନ୍ନବସ୍ତ୍ର ବରତନ ବିନା ଆଉ ଯେତେ
ଭୂମିର ସେ ବସ୍ତୁ ମୁହିଁ ନେବଇଁ କେମନ୍ତେ ।"
"କୃଷାଣ ବୋଇଲା କରି ପାରିବ କି ପାର
ଅନ୍ନବସ୍ତ୍ର ବରତନେ ସିନା ଅଧିକାର ।" (ସ୍ୱ. ୩ ପୃ)

କବିଙ୍କ ବର୍ଣ୍ଣନାରୁ ବାଟିଏ ଜମିର ପରିମାଣ ସେତେବେଳେ କେତେ ଥିଲା ତାହା ଜଣାଯାଏ ନାହିଁ । ଏକ ନଳର ପରିମାଣ ମଧ୍ୟ ସଠିକ ଭାବରେ ଅବଧାରିତ ହୁଏ ନାହିଁ । କାରଣ କବି ବିଭିନ୍ନ ମାପର ନଳ କଥା ଉଲ୍ଲେଖ କରନ୍ତି । କେତେବେଳେ ତାହା ବାରଦଣ୍ଡ, ବଂଶ ହାତ ବା ପଞ୍ଚବଂଶ ହାତ । ଏହି ଶବ୍ଦରୁ ଏତିକି ମାତ୍ର ପ୍ରତିପାଦ୍ୟ ଯେ ସେକାଳରେ ବିଭିନ୍ନ ମାପର ନଳ ବ୍ୟବହୃତ ହେଉଥିଲା । ଇତିହାସ ଏହାର ସମର୍ଥନ କରେ । ଅନଙ୍ଗଭୀମଙ୍କ କାଳରେ ବାର ଦସ୍ତି, ଚଉଦ ଦସ୍ତି ଓ ଅଠର ଦସ୍ତି ପଦିକା ପ୍ରଚଳିତ ଥିବାର ଜଣାଯାଏ । (ପ୍ରା, ଉ, ପୃ. ୪୯୧, ପୃ ୪୯୯) ପୁରୀ ଓ ଖୋର୍ଦ୍ଧା ଅଞ୍ଚଳରେ ଏବେ ଚଉଦ ଦସ୍ତି ପଦିକା ପ୍ରଚଳିତ ରହିଛି । (ଓ. ସା. ସ. ପ, ୨ୟ, ପୃ. ୪୮୩) ଏକ ଦସ୍ତିର ପରିମାଣ ଛଅ ଆଙ୍ଗୁଳ ହୁଏ ।

ସେ କାଳରେ ମଝେ ମଝେ ବର୍ଷାର ଅଭାବ ହେଲେ ଅଥବା ବନ୍ୟା ହେଲେ କୃଷି ନଷ୍ଟ ହେଉଥିଲା ଏବଂ ଦୁର୍ଭିକ୍ଷ ପଡ଼ୁଥିଲା । ସାରଳା ମହାଭାରତର ବନ ପର୍ବରେ ଦୁର୍ଭିକ୍ଷର କଥା ଅଛି । (ମୂ. ପୋ, ବନ ୧ମ, ପୃ ୧୦୪କ-୧୦୫ଖ) ପଣ୍ଡିତ ନୀଳକଣ୍ଠ ଦାସ ତାଙ୍କ ବାଲ୍ୟକାଳରେ ଶୁଣିଥିବା ସାରଳା ମହାଭାରତରେ ଯୁଧିଷ୍ଠିରଙ୍କ ରାଜ୍ୟରେ ଥରେ ଦୁର୍ଭିକ୍ଷ ପଡ଼ିଥିବା କଥା ଥିଲା ବୋଲି ତାଙ୍କର 'ଓଡ଼ିଆ ସାହିତ୍ୟର କ୍ରମପରିଣାମ' ଗ୍ରନ୍ଥରେ (ପ୍ରଥମଭାଗ) ଉଲ୍ଲେଖ କରିଛନ୍ତି । (ପୃ ୨୧୫) ଗଜପତି କପିଳେନ୍ଦ୍ରଙ୍କ କାଳରେ ଦୁର୍ଭିକ୍ଷ ପଡ଼ିଥିବା କଥା ମାଦଳା ପାଞ୍ଜିରୁ ବି ଅବଧାରିତ ହୁଏ । (ମା. ପା, ପ୍ରାଚୀ, ପୃ ୪୬)

ସାରଳାଙ୍କ ମହାଭାରତରୁ ଉପଲବ୍‌ଧ ହୁଏ ଯେ ଶିଳ୍ପ, ବାଣିଜ୍ୟ ଓ ସ୍ଥାପତ୍ୟ ମଧ୍ୟ ସେତେବେଳେ କେତେକ ଲୋକଙ୍କ ବୃତ୍ତି ଥିଲା । ସ୍ୱର୍ଣ୍ଣଶିଳ୍ପ, ବସ୍ତ୍ରଶିଳ୍ପ ଓ ଲୌହଶିଳ୍ପ ସେ କାଳର ସମାଜରେ ପ୍ରମୁଖ ସ୍ଥାନ ଲାଭ କରିଥିଲା । ଉତ୍କଳୀୟ ଶିଳ୍ପିଗଣ ବହୁବିଧ କାରୁକାର୍ଯ୍ୟ ପୂର୍ଣ୍ଣ ଅଳଙ୍କାର ପ୍ରସ୍ତୁତ କରୁଥିଲେ ।

ଇଙ୍ଗିତ ଏହାର ସମର୍ଥନ କରେ । ପୁରୁଷୋତ୍ତମ ଦେବ (୧୩୫) ଓ କପିଳେନ୍ଦ୍ର ଦେବଙ୍କ ଅଭିଲେଖରେ (୧୩୬) ବହୁବିଧ ସ୍ୱର୍ଣ୍ଣାଳଙ୍କାରର ଉଲ୍ଲେଖରୁ ଏହା ସମର୍ଥିତ ହୁଏ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ସେ କାଳରେ ନାସାଳଙ୍କାରର ବହୁଳ ବ୍ୟବହାର ନ ଥିଲା । ସାରଳା ଦାସ ନାସାଳଙ୍କାରର ବିଶେଷ ବର୍ଣ୍ଣନା ଦେଇ-ନାହାନ୍ତି । ରାଧାରମଣଙ୍କ ମହାଭାରତର ଦ୍ରୌପଦୀଙ୍କ ବେଶ-ବିନ୍ୟାସ ସମୟରେ ଉକ୍ତ ଅଛି—"ନାସାରେ ଅଷ୍ଟରତ୍ନର ଫୁଲ ଯେ ବସଣି ।" (୧୩୭) ମୂକ୍ତ ଗାଁ ପୋଥିରେ କେବଳ ନାସାଳଙ୍କର ଗଜମୋତିର କଥା କୁହାଯାଇଅଛି । (୧୩୮) ରାମବିଭା କାବ୍ୟରେ (୧୩୯), ମହାଭାରତ ସାର ସଂଗ୍ରହରେ (୧୪୦), କଳସା-ଚଉତିଶାରେ (ପ୍ରା. ଗ. ପ. ଦ, ପୃ ୬୮, ପ୍ରାଚୀ), କଳ୍ପଲତା କାବ୍ୟରେ (୬୩ ପୃ) କେବଳ ନାସାଳଙ୍କାର ଗଜମୋତିର ବର୍ଣ୍ଣନା ମିଳେ । ସୁତରାଂ ରାଧାରମଣଙ୍କ ଗ୍ରନ୍ଥ-ବର୍ଣ୍ଣିତ ଅଷ୍ଟରତ୍ନର ଫୁଲ ଓ ବସଣି କଥା ପ୍ରକ୍ଷେପ ବୋଲି ମନେହୁଏ । ଗୋଟିଏମାତ୍ର ନାସାଳଙ୍କାର ସେ ଯୁଗରେ ବ୍ୟବହୃତ ହେଉଥିବାର ଅନୁମିତ ହୁଏ । କାରଣ କପିଳେନ୍ଦ୍ର ଦେବ ଜଗନ୍ନାଥଙ୍କୁ ଯେଉଁ ଅଳଙ୍କାର ଦାନ କରିଥିଲେ, ସେ ମଧ୍ୟରେ ଏକମାତ୍ର ନାସାଳଙ୍କାର 'ନୋଲ୍ଡକ'ର ନାମ ଦେଖାଯାଏ । (୧୪୧) ପରବର୍ତ୍ତୀ କାଳର ସାହିତ୍ୟରେ ଗଜମୋତି ସହ ବସଣୀ, ଗୁଣା ଓ ରତ୍ନମୋତିର ଉଲ୍ଲେଖ ମିଳେ । ଷୋଡ଼ଶ ଶତାବ୍ଦୀର ଲେଖା ଦାଣ୍ଡି ରାମାୟଣରେ ଏହା ପରି-ଲକ୍ଷିତ ହେଉଅଛି । (୧୪୨) ଧନକୃଷ୍ଣ ଦାସଙ୍କ 'ଅଳଙ୍କାର ବୋଲି'ରେ ବସୁଣୀ, ବିଜୁଳିଗୁଣା, ପଦ୍ମକେଶରୀ ଗୁଣା, ବିଲୋଚନ ଗୁଣା, ବଳାଗୁଣା, ଫୁଲଗୁଣା ଓ ନାକଚଣା ଆଦି ନାସାଳଙ୍କାରର ନାମ ମିଳେ । (୧୪୩) ଲବଣ୍ୟବତୀ (୧୪୪) ଓ କାଞ୍ଚୀ-କାବେରୀ କାବ୍ୟରେ ବିଭିନ୍ନ ପ୍ରକାର ନାସାଳଙ୍କାରର ଉଲ୍ଲେଖ ରହିଛି । (୧୪୫) ଏବେ ଜଗନ୍ନାଥ, ସୁଭଦ୍ରା ଓ ବଳରାମଙ୍କ ନାସାରେ କେବଳ ବସଣି ଥିବାର ପରିଦୃଷ୍ଟ ହୁଏ । (୧୪୬)

ତତ୍କାଳୀନ ଲୌହକାରଗଣ ବହୁବିଧ ଲୌହନିର୍ମିତ ବସ୍ତୁ ପ୍ରସ୍ତୁତ କରୁଥିଲେ । ସାରଳାଙ୍କ ଲେଖାରେ ପ୍ରଭୂତ ଲୌହଦ୍ରବ୍ୟର ଉଲ୍ଲେଖରୁ ଏହା ସ୍ପଷ୍ଟ । ପ୍ରାଚୀନ କାଳରେ ଓଡ଼ିଶାର କମାରମାନେ ବଡ଼ ବଡ଼ ଲୁହା କଡ଼ି ମଧ୍ୟ ପ୍ରସ୍ତୁତ କରୁଥିଲେ । ରାଜସୂୟ ଯଜ୍ଞ ପାଇଁ ବିଶାଳ ଗୃହ ନିର୍ମାଣ କଲାବେଳେ ଲୌହକାମ କରିବା ପାଇଁ ଶିଳ୍ପୀମାନେ ନିଯୁକ୍ତ ହୋଇଥିଲେ । ସେମାନେ ବିଶାଳ

ଗୃହ ପାଇଁ ଲୌହନିର୍ମିତ କଡ଼ିମାନ ଗଢ଼ିଥିବା କଥା ଅନୁମିତ ହୁଏ । (ସ ପୃ ୪୯) ଶିଳ୍ପ ଚନ୍ଦ୍ରିକା ଗ୍ରନ୍ଥରୁ ଜଣାଯାଏ ଯେ ପୁରୀମନ୍ଦିରର ଗଠନ ବେଳେ ଲୁହା-କଡ଼ିମାନ ଜଣେ ବନ୍ଧାଣୀ ପ୍ରସ୍ତୁତ କରିଥିଲେ ।

"ତିନଶ ପଳ ଟାଣ ଲୁହା । କଡ଼ି ହୋଇବ ଗୃହବାହା ॥
ମାହକ କେହି ନ ମିଳିଲେ । ସରବେ ଭାବନା କରିଲେ ॥
ଗ୍ରାମ ଓଖ୍ୟା ଯେ ବଡ଼ ଗାଉଁ । ଗ୍ରାମ ତା ବଡ଼ାନସୀ ପୁର ॥
ସେ ଗାଉଁ ଏଥିକୁ ଯୋଗାଣ । ପରମ ବେଉଷା ତା ପଣ ॥" (୧୪୭)

ପିତଳ ଓ ତମ୍ବା ଆଦିର ବ୍ୟବହାର ସେ କାଳରେ ଥିଲା । କବିଙ୍କର "ଲୌହ ତାମ୍ର ପିତଳାଦି ସୁବର୍ଣ୍ଣର ରେଖା" ଉକ୍ତିରୁ ଏହା ସ୍ପଷ୍ଟ । ରାଜସୂୟ ଯଜ୍ଞର ଗୃହ ନିର୍ମାଣ ପ୍ରସଂଗରେ ମଧ୍ୟ ତମ୍ବାର ଯୋଗାଡ଼ ବିଷୟ କବି ଉଲ୍ଲେଖ କରନ୍ତି । (ସ ୪୯ ପୃ) ସିଂହଭୂମି ଜିଲ୍ଲାର ବିବରଣ ଲେଖକ ଡାଲଟନ୍ ସାହେବ ଦର୍ଶାଇ ଅଛନ୍ତି ଯେ, ପୂର୍ବେ ସିଂହଭୂମି ଅଞ୍ଚଳରେ ତମ୍ବାର ଖଣିମାନ ଥିଲା ଏବଂ ତହିଁରୁ ପ୍ରଭୂତ ପରିମାଣରେ ତମ୍ବା ବାହାରୁଥିଲା । ସେହି ତାମ୍ର ସବୁ ଯେଉଁ ବନ୍ଦର ବାଟେ ଦେଇ ବିଦେଶକୁ ପ୍ରେରଣ କରାଯାଉଥିଲା ତାହାର ନାମ 'ତାମ୍ରଲିପ୍ତି' ହୋଇଥିଲା । (୧୪୮)

ପଞ୍ଚଦଶ ଶତାବ୍ଦୀରେ ସ୍ଥପତିମାନେ ଥିଲେ ଏବଂ ମନ୍ଦିର ତଥା ପାଷାଣ-ଗୃହନିର୍ମାଣ କରୁଥିଲେ । କାଶୀପତି ରାଜାଙ୍କର ଗଣେଶ ମନ୍ଦିର ପ୍ରତିଷ୍ଠା (ମ ୩୧୨ ପୃ) ଦୁର୍ଯୋଧନଙ୍କର ପାଷାଣ-ଗୃହ ଗଠନ (ଆ ୧୩୩ ପୃ) ଓ ରଣଭିଷ ଦୈତ୍ୟର ଗଡ଼ ନିର୍ମାଣ (ବ ୨୦୩ ପୃ) ବର୍ଣ୍ଣନାରୁ ଏହା ପ୍ରତିପାଦିତ ହେଉଅଛି । ଏଠାରେ ଉଲ୍ଲେଖଯୋଗ୍ୟ ଯେ ସାରଳା ଦାସଙ୍କ ଯୁଗରେ କାରୁକାର୍ଯ୍ୟପୂର୍ଣ୍ଣ ବିଶାଳ ମନ୍ଦିର ଗଠନ କରିବା ପ୍ରଚେଷ୍ଟା ହ୍ରାସ ପାଇଥିଲା । କବି କାଶୀପତିଙ୍କର ଗଣେଶ ମନ୍ଦିର ଗଠନ ବ୍ୟତୀତ ଅନ୍ୟ ମନ୍ଦିର ଗଠନ କଥା କହି ନାହାନ୍ତି । ଅବଶ୍ୟ ସେ ପୁରୀ ମନ୍ଦିରର ନିର୍ମାଣ କଥା କହନ୍ତି । କିନ୍ତୁ ତାହା ଇତିହାସ ଦୃଷ୍ଟିରୁ ଗଙ୍ଗବଂଶ ଯୁଗର କୀର୍ତ୍ତି । ଇତିହାସ-ପାଠରୁ ଉପଲବ୍ଧ ହୁଏ ଯେ, କୋଣାର୍କ ମନ୍ଦିର ଗଢ଼ା ହେବା ପରେ ଓଡ଼ିଶାରେ ଆଉ ବିଶାଳକାୟ ମନ୍ଦିର ଗଢ଼ାଯାଇନାହିଁ । ସମ୍ଭବତଃ ଯୁଦ୍ଧ-ବିଗ୍ରହ ଓ ରାଜ୍ୟ ଜୟରେ ନିଯୁକ୍ତ ରହି ସେ କାଳରେ ରାଜାମାନେ ମନ୍ଦିର ନିର୍ମାଣ ଦିଗରେ ଯଥେଷ୍ଟ ଧ୍ୟାନ ଦେଇ ପାରି ନ ଥିଲେ ।

ଉତ୍କଳର ସାଧବଗଣ ପଞ୍ଚଦଶ ଶତାବ୍ଦୀରେ ବୋଇତ ନେଇ ପୂର୍ବବତ୍ ସାମୁଦ୍ରିକ ପଥରେ ବାଣିଜ୍ୟ ବ୍ୟବସାୟ ଚଳାଉଥିଲେ । ସଭାପର୍ବ-ବର୍ଣ୍ଣିତ ମଳୟାମାନ ସାଧବର ବୃତ୍ତାନ୍ତରୁ ଏହା ସ୍ପଷ୍ଟ । (ପୃ ୨୯୩)

ନଦୀପଥରେ ମଧ୍ୟ ସେ କାଳରେ ବାଣିଜ୍ୟ ପ୍ରଚଳିତ ଥିଲା । ସାରଳାଙ୍କ ଲେଖାରେ ନୌବାଣିଜ୍ୟର ସୂଚନା ମିଳେ । (୧୪୯) ପୂର୍ବେ ଲୋକେ ନୌକାରେ ବଡ଼ ବଡ଼ ପଥର ଲଦ ନଦୀପଥରେ ନେଇ ଯାଉଥିଲେ । 'ଶିଳ୍ପଚନ୍ଦ୍ରିକା' ଗ୍ରନ୍ଥର ଏକ ବର୍ଣ୍ଣନାରୁ ଏହା ପ୍ରମାଣିତ ହୁଏ ।

"ଦୟାନଦୀରୁ ଭାର୍ଗବୀକୁ । ପଥର ଘେନି ଆଣିବାକୁ ॥
ସରବେ ଚଳ ସବାବଡ଼ି । ସେଠାରେ ବିଶ୍ୱନାଥେ ଚଢ଼ି ॥

× × ×

ପଥର ମୁକ୍ତେଶ୍ୱର ଠାବେ । ଲଗାଇ ଦେଲେ ଦୀର୍ଘଗ୍ରୀବେ ॥
ଅନଙ୍ଗ ବଜେ ହେଲେ ତହିଁ । କୁଣ୍ଡା ଆସିଲା ନଦୀ ହୋଇ ॥ (ପୃ ୮)

ସାରଳା ମହାଭାରତରେ ରବିନାରାୟଣ ବ୍ରତର ଉଲ୍ଲେଖ ଦେଖାଯାଏ । ଋଷି ଦେବଳ ପ୍ରଭୃତିଙ୍କୁ ଏହି ବ୍ରତର ମହିମା ବୁଝାଇଥିଲେ । ରବିବାରରେ ଏକାଦଶୀ ପଡ଼ିଲେ ରବିନାରାୟଣ ବ୍ରତ କରଣୀୟ ବୋଲି ସେ କହିଥିଲେ । (୧୫୦)

ରାଧାରମଣ ପୁସ୍ତକାଳୟର ମହାଭାରତରେ କାମାକ୍ଷୀ ବ୍ରତର ବର୍ଣ୍ଣନା ମିଳେ । (୧୫୧) ପୁରାଣ ପ୍ରକାଶିକା କମ୍ପାନୀର ମୁଦ୍ରିତ ମହାଭାରତରେ ଏହା ଅଛି । (୧୫୨) ପଣ୍ଡିତ ଗୋପୀନାଥ ନନ୍ଦ ଦର୍ଶାଇଛନ୍ତି ଯେ, ସେ ଦେଖିଥିବା ତାଳପତ୍ର ପୋଥିରେ କାମାକ୍ଷୀ ବ୍ରତର ଚିହ୍ନ ନାହିଁ । (୧୫୩) ଅନ୍ୟ କେତେକ ପୋଥିରେ ଏହି ବ୍ରତ ଲିପିବଦ୍ଧ ହୋଇଥିବାର ଜଣାଯାଏ । (୧୫୪) ମୋ ଦ୍ୱାରା ଗୃହୀତ ପୋଥିଦ୍ୱୟରେ ଏହି ବିଷୟକ ବର୍ଣ୍ଣନା ନ ଥିବାରୁ, ମନେ ହୁଏ ଯେ କାମାକ୍ଷୀବ୍ରତ କଥାଟି ପ୍ରକ୍ଷେପ । ପରମ୍ପରା ଓ ଓଡ଼ିଶାର ସଂସ୍କୃତି ଦିଗରୁ ବିଚାର କଲେ ଜଣାଯିବ ଯେ ଏହି ବ୍ରତଟି ଉତ୍କଳୀୟ ନୁହେଁ । ଏହି ପ୍ରସଙ୍ଗର ବର୍ଣ୍ଣନାରେ ଉକ୍ତ ଅଛି—

"ଆପଣା ବଂଶୁ ଏକ ସୁଲଭ କୁମାରୀ
ଏହାକୁ ଦାନ କରିବ ଅଙ୍ଗେ ଉତ୍ସବ ।" (୧୫୫)

ବ୍ରାହ୍ମଣଙ୍କୁ ବ୍ରତରେ କନ୍ୟାଟିଏ ନିଜ ବଂଶ ମଧ୍ୟରୁ ଦାନ କରିବା କଥା ଯାହା ଏଠାରେ ଉଲ୍ଲିଖିତ, ତାହା ଉତ୍କଳୀୟ ପରମ୍ପରାର କଥା ନୁହେଁ । ଓଡ଼ିଶାର

କୌଣସି ପ୍ରଚଳିତ ଓଷା-ବ୍ରତରେ ଏପରି ବିଧି କୁହାପି ନ ଥିଲା କି ନାହିଁ । ପଣ୍ଡିତ ନୀଳକଣ୍ଠ ଦାସ ଯଥାର୍ଥରେ ମତ ଦେଇଛନ୍ତି—"ଷୋଳବିଧିଆ ଦେବୀପୂଜା ବିଧାନ—ଯାହାସବୁ ନାରଦ ଦେବୀଙ୍କୁ ବତାଇଛନ୍ତି, ତାହା ଯଥାର୍ଥରେ କାମାଖ୍ୟା-ଙ୍କର ଏକ ବ୍ରତ । ଏହା ଓଡ଼ିଆଣୀଙ୍କ ବ୍ରତ କୁହାପି ବା କଦାପି ନୁହେଁ ।" (୧୫୬) ପୁନଶ୍ଚ ଏ ସ୍ଥଳରେ ଓଷାଟିର ଅନ୍ୟନାମ 'କୃଷ୍ଣ ଗଉରୀ ଓଷା' । (ମ ୧୯୧ ପୃ) କିନ୍ତୁ ପୂଜାବିଧିରେ କୌଣସିଠାରେ କୃଷ୍ଣଙ୍କ ପୂଜାର କଥା ଏଥିରେ ନାହିଁ, କି ଗୌରୀଙ୍କ ପୂଜା ବିଷୟ ନାହିଁ । ଅନ୍ୟତ୍ର ଏହି ବ୍ରତର ବର୍ଣ୍ଣନା ପ୍ରାପ୍ତ ମିଳେ ନାହିଁ । କେବଳ ଜଗନ୍ନାଥ ଦାସଙ୍କ ମହାଭାରତରେ ବ୍ରତର କଥାଟି ରହିଛି । (୧୫୭) ଏବେ ଚଳଣିରେ ମଧ୍ୟ ଏତାଦୃଶ ବ୍ରତ ନାହିଁ । ଏହି ସବୁ ଦୃଷ୍ଟିରୁ ବିଚାର କଲେ, ଅବଧାରିତ ହେବ ଯେ, 'ରାଧାରମଣ ପୁସ୍ତକାଳୟ' ତଥା 'ପୁରାଣ ପ୍ରକାଶିକା କମ୍ପାନୀ'ଙ୍କ ମହାଭାରତରେ ଥିବା କାମାକ୍ଷୀ ବ୍ରତ କଥାଟି ପ୍ରକ୍ଷେପ ।

ଏହି ମହାଭାରତରେ ବନଦୁର୍ଗା ଓଷାର କଥା ମିଳେ । (ମ ୧୬୫ ପୃ) ପୁରାଣ ପ୍ରକାଶିକା କମ୍ପାନୀଙ୍କ ମହାଭାରତ, ମୂଳୁଗାଁ ଓ ପଞ୍ଚପଲ୍ଲୀ ପୋଥିରେ ବନଦୁର୍ଗା ଓଷାର କଥା ନାହିଁ । ସମସାମୟିକ ବା ଷୋଡ଼ଶ ଶତାବ୍ଦୀର କାବ୍ୟ-କବିତାରେ ଏହି ଓଷାର ଉଲ୍ଲେଖ ମିଳେ ନାହିଁ । ତେଣୁ 'ବନଦୁର୍ଗା ଓଷା' କଥାଟି ପ୍ରକ୍ଷେପ ଭାବରେ ଗୃହୀତ ହୋଇପାରେ । ଅଷ୍ଟାଦଶ ଶତାବ୍ଦୀ ବେଳକୁ ଏହି ଓଷା ସମାଜରେ ପ୍ରବର୍ତ୍ତିତ ହୋଇଥିବାର ଅନୁମିତ ହୁଏ । କାରଣ ଅଷ୍ଟାଦଶ ଶତାବ୍ଦୀରେ ଲିଖିତ 'ବନଦୁର୍ଗା ପୂଜା' ନାମକ ଗ୍ରନ୍ଥ ମିଳେ । (୧୫୮)

ରାଧାରମଣଙ୍କ ପ୍ରକାଶିତ ମହାଭାରତରେ ପୁଷ୍ୟାଭିଷେକର କଥା ଅଛି । ମୂଳୁଗାଁ ପୋଥିରେ ମଧ୍ୟ ଏହା ରହିଛି । (୧୫୯) ଦାଣ୍ଡିରାମାୟଣ ଓ ଜଗନ୍ନାଥ ଦାସଙ୍କ ମହାଭାରତରେ ପୁଷ୍ୟାଭିଷେକର ବୃତ୍ତାନ୍ତ ମିଳେ । (୧୬୦) ପଣ୍ଡିତ ନୀଳକଣ୍ଠ ଦାସ କିନ୍ତୁ ଏହାକୁ ପ୍ରକ୍ଷେପ ବୋଲି ମନେ କରନ୍ତି । ସେ ଏହାକୁ ପ୍ରକ୍ଷେପ ବୋଲି ମତ ପୋଷଣ କରିବାର କୌଣସି କାରଣ ପ୍ରଦାନ କରିନାହାନ୍ତି । (୧୬୧) ଚଳଣିରେ ପୁଷ୍ୟାଭିଷେକ ବିଧି ଏବେ ବି ରହିଛି । ପୌଷ ପୂର୍ଣ୍ଣମୀରେ ଜଗନ୍ନାଥ, ଲିଙ୍ଗରାଜ, ସାରଳା ଓ ନୀଳମାଧବଙ୍କର (କେଣ୍ଟିଲୋ) ଦେବାଭିଷେକ ହୁଏ । ପୁଷ୍ୟପୂଜା ଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା ମଧ୍ୟରେ ଅନ୍ୟତମ । ଜଗନ୍ନାଥ ମନ୍ଦିରରେ ପୌଷାଭିଷେକ ପାଳିତ ହୁଏ । (୧୬୨)

କପିଳେନ୍ଦ୍ର ଦେବଙ୍କ ଶିଳାଲେଖରେ ରାଜା ନୃସିଂହ ନାଥଙ୍କ (ସିଂହାଚଳ) ପୌଷପୂର୍ଣ୍ଣିମୀ ଭୋଗ ନମିତ୍ତ ବ୍ୟବସ୍ଥା କରଥିବା ବିଷୟ ଉକ୍ତ । (୧୬୩) ତେଣୁ ପୂଷ୍ୟାଭିଷେକର ବର୍ଣ୍ଣନାକୁ ପ୍ରକ୍ଷେପ ବୋଲି କହିବା ଯଥାର୍ଥ ବୋଲି ମନେ ହୁଏ ନାହିଁ ।

ରାଧାରମଣଙ୍କ ପ୍ରକାଶିତ ମହାଭାରତରେ ମଙ୍ଗଳବାର ଓଷାର ଶବ୍ଦ ଦେଖାଯାଏ । ପୂର୍ଣ୍ଣ ପ୍ରକାଶିକା କମ୍ପାନୀଙ୍କ ଗ୍ରନ୍ଥରେ ମଧ୍ୟ ଏହା ଅଛି । ମୂଳ୍ଦୁଗାଁ ପୋଥିରେ ଚଇତ ମଙ୍ଗଳବାରରେ ଓଷା ପାଳନର କଥା ନାହିଁ । କେତେକ ତାଳପତ୍ର ପୋଥିରେ ଅଛି—ଚନ୍ଦ୍ରାବତୀ ଶାମ୍ବଙ୍କୁ ସ୍ୱର୍ଗୀୟ ପୁଷ୍ପ ଆଣିଦେଲେ, ଚୈତ୍ର ମଙ୍ଗଳବାର କରିବ ବୋଲି କହିଥିଲେ । (୧୬୪କ) ପଣ୍ଡିତ ବିନାୟକ ମିଶ୍ର ତାଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ଗ୍ରନ୍ଥରେ ଦର୍ଶାଇ ଅଛନ୍ତି ଯେ, ପ୍ରତିବର୍ଷ ଆଶ୍ୱିନ ଓ ଚୈତ୍ରମାସର ପ୍ରତି ମଙ୍ଗଳବାର ଦିନ ମଙ୍ଗଳା ପୂଜା ପୁରୀ ଜିଲ୍ଲାର କେତେକ ଗ୍ରାମରେ ଅନୁଷ୍ଠିତ ହୁଏ । (୧୬୪ଖ) ସୁତରାଂ ମୂଳଗାଁ ପୋଥିରେ ପରିଦୃଷ୍ଟ ନ ହେଉଥିଲେ ହେଁ, ମଙ୍ଗଳବାର ଓଷା କଥାଟି ପ୍ରକ୍ଷିପ୍ତ ବୋଲି ନିର୍ଣ୍ଣିତ ଭାବରେ କୁହାଯାଇ ପାରିବ ନାହିଁ ।

ସାରଳା ମହାଭାରତରୁ ଅବଧାରିତ ହୁଏ ଯେ, ଗଣେଶଙ୍କ ମୃଣ୍ମୟୀ ମୂର୍ତ୍ତିର ପୂଜା ପଞ୍ଚଦଶ ଶତାବ୍ଦୀରୁ ହିଁ ଉତ୍କଳରେ ଆରବ୍ଧ ହୁଏ । ସେ କାଳରେ ଲୋକେ ମୂର୍ତ୍ତି ଗଢ଼ି ଭାଟିରେ ପୋଡ଼ୁଥିଲେ ଓ ତାପରେ ପୂଜା କରୁଥିଲେ । ବସୁ ନାମକ କୁମ୍ଭାର ଏହି ରୀତିରେ ଗଣେଶ ମୂର୍ତ୍ତି ଗଢ଼ି ପୂଜା କରିଥିଲେ ବୋଲି କବି କହନ୍ତି । (ବ ୩୧ପୃ) କଞ୍ଚାମାଟିର ମୂର୍ତ୍ତି ପୂଜା ନ କରି, ପୋଡ଼ାମାଟିର ମୂର୍ତ୍ତି ପୂଜା କରିବା ଉତ୍କଳୀୟ ରୀତି ବୋଲି ଏହି ଶବ୍ଦରୁ ଅନୁମିତ ହେଉଅଛି ।

ସାରଳା ଦାସ ମହାଷ୍ଟମୀର କଥା କହନ୍ତି ! ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ ଏହା ଓଡ଼ିଶାର ନିଜସ୍ୱ ପର୍ବ ନୁହେଁ । (୧୬୬) କିନ୍ତୁ ଜଗନ୍ନାଥ ଦାସଙ୍କ ମହାଭାରତ (୧୬୭) ଓ ମୂଳ ଗାଁ ପୋଥିରେ (୧୬୮) ମହାଷ୍ଟମୀର ଉଲ୍ଲେଖ ମିଳେ । ତେଣୁ ବର୍ଣ୍ଣନାଟିକୁ ପ୍ରକ୍ଷେପ ବୋଲି କହି ହେବ ନାହିଁ । ଦେବୀଙ୍କର ମୃଣ୍ମୟୀ ମୂର୍ତ୍ତି ପୂଜା କରିବା ଓଡ଼ିଶାର କଥା ନୁହେଁ ବୋଲି ପଣ୍ଡିତ ନୀଳକଣ୍ଠ ଯେଉଁ ମତ ଦେଇଛନ୍ତି (୧୬୯) ତାହା ଯଥାର୍ଥ । କାରଣ ସାରଳା ଦାସ ଦେବୀଙ୍କ ମୃଣ୍ମୟୀ ମୂର୍ତ୍ତିର କଥା କୁତ୍ରାପି କହନ୍ତି ନାହିଁ । ଆଧୁନିକ କାଳରେ ପୁରପଲ୍ଲୀର କେବଳ ମନ୍ଦିରରେ ଦୁର୍ଗାପୂଜା ହୁଏ । କେହି ମାଟିର ମୂର୍ତ୍ତି ପ୍ରତିଷ୍ଠା କରି ଗାଁ ଗହଳରେ ପୂଜା କରନ୍ତି ନାହିଁ ।

ମାଳାଦ୍ର ମହୋଦଧି (ପୃ୨୪୭), ସ୍କନ୍ଦପୁରାଣ (୧୭୦), ବିଶ୍ୱନାଥ କବି-ରାଜଙ୍କ ଶିକସାର୍ଣ୍ଣବ ଗ୍ରନ୍ଥ (୧୭୧), ପଣ୍ଡିତ ସର୍ବସ୍ୱ (ପୃ୮୨) ଓ ଦୋଧର ପଦ୍ଧତିରେ (ପୃ ୧୪୫) ଦୋଳୋତ୍ସବର ବର୍ଣ୍ଣନା ମିଳେ । ପଞ୍ଚଦଶ ଶତାବ୍ଦୀରେ ଦୋଳଯାତ୍ରା ପ୍ରଚଳିତ ଥିବା କଥା ସାରଳାଙ୍କ ବର୍ଣ୍ଣନାରୁ ପ୍ରତିପାଦିତ ହୁଏ ।

"ଗୋପୀ ସ୍ତ୍ରୀମାନଙ୍କୁ ଘେନି ଦେବ ବଂଶୀଧାରୀ
କୃଷ୍ଣ ଶୁକ୍ଳ ଦଶମୀରେ ଫଗୁ ଯାତ୍ରା କରି ।"
"ଦୋଳାଖେଳା କ୍ରୀଡ଼ା କରି ପ୍ରଭୁ ଦେବହରି
ସର୍ବ କୁଶଳ ବାରତା ପୁଚ୍ଛିଲେ ଆମ୍ଭରି ।" (ବି ୩୧୦ପୃ)

ପଣ୍ଡିତସର୍ବସ୍ୱ କହେ; ରବି ସଂକ୍ରମରେ ପୁଣ୍ୟକାଳରେ ମନୁଷ୍ୟ ଯେବେ ସ୍ନାନ ନ କରେ ତେବେ ସାତଜନ୍ମ ପର୍ଯ୍ୟନ୍ତ ରୋଗୀ ଓ ନିର୍ଦ୍ଧନ ହୁଏ । (ପୃ୯୬) ସାରଳାଙ୍କ ଯୁଗରେ ମକର ସଂକ୍ରାନ୍ତି ପାଳିତ ହେଉଥିବାର ଜଣାଯାଏ । ସେଦିନରେ ଲୋକେ ସମୁଦ୍ରରେ ସ୍ନାନ କରିବାକୁ ପୁଣ୍ୟମୟ ମନେ କରୁଥିଲେ । କବିଙ୍କ ବର୍ଣ୍ଣନାରେ ଅଛି ଯେ, କୁଶଦ୍ୱୀପର ରାଜା ଅନଙ୍ଗସେନଙ୍କ ପତ୍ନୀ ରତ୍ନାବତୀ ମକର ସଂକ୍ରାନ୍ତି ଦିନ ସମୁଦ୍ରରେ ସ୍ନାନ କରିବାକୁ ଯାଇଥିଲେ । (ଆ ୫୧ପୃ) ଏବେ ଜଗନ୍ନାଥଙ୍କ ଯାନଯାତ୍ରା ମଧ୍ୟରେ ମକର ସଂକ୍ରାନ୍ତି ଅନ୍ୟତମ ପର୍ବ । (ଜ. ମ. ଜ. ଡ, ପୃ ୧୪୪)

ପରିବାରର ବେଷ୍ଟନୀ ମଧ୍ୟରେ ବନ୍ଧୁବାନ୍ଧବଗଣଙ୍କ ସହ ପାଳିତ ଉତ୍ସବ ମାନଙ୍କ ମଧ୍ୟରେ ସେ କାଳରେ ବିବାହୋତ୍ସବ ପ୍ରଧାନ ଥିଲା । କବିଙ୍କ ଲେଖାରେ ପ୍ରଭୂତ ବିବାହ-ଦୃଶ୍ୟର ପୁଙ୍ଖାନୁପୁଙ୍ଖ ଚିତ୍ର ଅଙ୍କିତ । ଏତଦ୍‌ଭିନ୍ନ ଜନ୍ମୋତ୍ସବ, ପୁଷ୍ପବତୀ ଉତ୍ସବ ଓ ବ୍ରତୋପନୟନକାଳୀନ ଉତ୍ସବ ମଧ୍ୟ ପ୍ରଚଳିତ ଥିଲା । ପୁତ୍ରଜନ୍ମ କାଳରେ ଗଣକମାନେ ବସି ଶୁଭାଶୁଭ ବିଚାର କରୁଥିଲେ; ମଂଗଳା ଓ ଷଷ୍ଠୀ ଦେବୀଙ୍କ ପୂଜା ହେଉଥିଲା ଏବଂ ନାନା ଉତ୍ସବ କରାଯାଉଥିଲା । ଯୁଧିଷ୍ଠିରଙ୍କ ଜନ୍ମୋତ୍ସବ ଦୃଶ୍ୟରୁ ଏହା ସ୍ପଷ୍ଟ । (୧୭୨) ନାରୀର ଯୌବନ-ପ୍ରାପ୍ତି କାଳରେ ମଧ୍ୟ କେତେକ ବିଧି-ବିଧାନ ତଥା ଉତ୍ସବ ଅନୁଷ୍ଠିତ ହେଉଥିଲା । ସେତେବେଳେ ବି ଗଣକମାନେ ଆସି ଶୁଭାଶୁଭ ନିର୍ଣ୍ଣୟ କରୁଥିଲେ, ବନ୍ଧୁ-ବାନ୍ଧବଗଣ ମିଶି ପିଠିକା ମଉମରି ହେଉଥିଲେ, ପରସ୍ପର ମଧ୍ୟରେ ହାସ-ପରିହାସ ଚାଲୁଥିଲା ଏବଂ ସପ୍ତମ ଦିବସରେ ବନ୍ଦାପନା କରାଯାଉଥିଲା । ଦ୍ରୌପଦୀଙ୍କ ଯୌବନପ୍ରାପ୍ତି

କାଳର ଚିତ୍ରରୁ ଏହା ଜଣାଯାଏ । (୧୭୩) ଏହି କାଳରେ ମଂଗଳାଂକ ପୂଜା ତଥା ଅନ୍ୟ ଦେବଦେବୀଙ୍କ ପୂଜା ମଧ୍ୟ ହେଉଥିଲା । ଉତ୍ତରା କନ୍ୟାର ଯୌବନ-ଲାଭ ପ୍ରସଙ୍ଗରୁ ଏହା ପ୍ରତିପନ୍ନ ହୁଏ । (୧୭୪)

ପଞ୍ଚଦଶ ଶତାବ୍ଦୀର ଉତ୍କଳୀୟ ନରନାରୀଙ୍କ ଜୀବନ କେବଳ କର୍ମ ଓ କର୍ତ୍ତବ୍ୟ ପାଳନରେ ସୀମାବଦ୍ଧ ନ ଥିଲା । ଦୈନନ୍ଦିନ କର୍ମ ସହିତ କ୍ରୀଡ଼ାବିନୋଦ ଓ ହାସ୍ୟକୌତୁକ ସଂମିଶ୍ରିତ ହୋଇ ଜୀବନର ସରସତା ତଥା ପ୍ରାଣ-ପ୍ରାଚୁର୍ଯ୍ୟ ସମ୍ପାଦନ କରୁଥିଲା । ଉତ୍କଳୀୟମାନେ ସେତେବେଳେ ପଶାଖେଳ, ଝିମାଣିଖେଳ, ଶିକାର ଆଦି ବ୍ୟସନ ସହ ପରିଚିତ ଥିଲେ । ନୌକାବିହାର, ବନବିହାର ଓ ଜଳକ୍ରୀଡ଼ା ଆଦି ସେମାନଙ୍କ ବିଳାସ ଥିଲା । (୧୭୫)

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ସେ କାଳର ରାଜାମାନେ ପ୍ରଜାମାନଙ୍କର ଚିତ୍ତ-ବିନୋଦନ ଦିଗରେ ଯତ୍ନବାନ ଥିଲେ । ପ୍ରଜାଗଣଙ୍କ ବିନୋଦ ପାଇଁ ଭୀଷ୍ମଙ୍କ ପରାମର୍ଶରେ ଧୃତରାଷ୍ଟ୍ର ରଙ୍ଗସଭାର ଆୟୋଜନ କରାଇଥିଲେ ଏବଂ ସଭାରେ କୌରବ ଓ ପାଣ୍ଡବମାନେ ଅସ୍ତ୍ରକୌଶଳ ପ୍ରଦର୍ଶନ କରିଥିଲେ । (ଆ. ୧୧୨ ପୃ) ବିରାଟରାଜା ଭୀମଙ୍କସହ ବ୍ୟାଘ୍ର ତଥା ହସ୍ତୀର ଲଢ଼େଇ ପ୍ରଦର୍ଶନ କରାଇଥିଲେ ଏବଂ ଚନ୍ଦନଯାତ୍ରା ଉତ୍ସବ ଆରମ୍ଭ କରିଥିଲେ । (୧୭୬) ଶ୍ରୀକୃଷ୍ଣ ବସନ୍ତୋତ୍ସବ କରାଇ ସମସ୍ତଙ୍କୁ ଆନନ୍ଦଦାନ କରିପାରିଥିଲେ । (ମ. ୮୬ ପୃ) ଯୁଧିଷ୍ଠିର ରାଜସୂୟଯଜ୍ଞ ଓ ଧର୍ମଯଜ୍ଞ କରିବା ଛଳରେ ବହୁଲୋକଙ୍କୁ ଭୋଜନରେ ଆପ୍ୟାୟିତ କରିଥିଲେ । (୧୭୭) ପ୍ରାଚୀନକାଳରେ ଏତାଦୃଶ ଚିତ୍ତ-ବିନୋଦନର ବ୍ୟବସ୍ଥା କରିବାର ପରମ୍ପରା ପ୍ରତିଷ୍ଠିତ ଥିଲା । ସଂସ୍କୃତ ମହାଭାରତରେ ବର୍ଣ୍ଣିତ ଭୀମ ଓ ଜୀମୂତମଲ୍ଲଙ୍କ ଲଢ଼ାଇ ଏହାର ଏକ ଦୃଷ୍ଟାନ୍ତ । (୧୭୮) ସାଧାରଣଙ୍କ ଆନନ୍ଦ ସମ୍ପାଦନ ପାଇଁ ପ୍ରାଚୀନ ରାଜାମାନେ ଦୁଇପ୍ରକାରର 'ସମାଜ' ଅନୁଷ୍ଠାନ କରୁଥିଲେ । କେତେ-ବେଳେ ରାଜା ପ୍ରଜାବର୍ଗଙ୍କୁ ଭୂରିଭୋଜନରେ ଆପ୍ୟାୟିତ କରୁଥିଲେ, ପୁଣି ବା କେତେବେଳେ ନୃତ୍ୟ-ସଙ୍ଗୀତ ଓ ମୁଷ୍ଟିଯୁଦ୍ଧର ଆୟୋଜନ କରି ସେମାନଙ୍କର ଚିତ୍ତବିନୋଦନ କରାଉଥିଲେ । ଅଶୋକ ତାଙ୍କ କାଳରେ ଏହିପରି ସମାଜ ଅନୁଷ୍ଠାନ କରାଉଥିବାର ଜଣାଯାଏ । ହାତୀଗୁମ୍ଫା ଅନୁଶାସନରୁ ଉପଲବ୍ଧ ହୁଏ ଯେ, ଖାରବେଳ ନିଜ ରାଜଧାନୀରେ ଉତ୍ସବାଦି ଅନୁଷ୍ଠାନ କରୁଥିଲେ । (୧୭୯) ଗଜପତି କପିଳେନ୍ଦ୍ରଦେବ ଲୋକମାନଙ୍କ ଚିତ୍ତବିନୋଦନ ଦିଗରେ ଯତ୍ନବାନ ଥିଲେ । ତାଙ୍କ କାଳରେ ତାଙ୍କଦ୍ୱାରା ରଚିତ 'ପର୍ଶୁରାମ ବିଜୟ' ନାଟକ ଜଗନ୍ନାଥ ମନ୍ଦିରରେ ଅଭିନୀତ ହୋଇଥିଲା । (୧୮୦) ।

ଦେଶର ବିଜ୍ଞ ତଥା ମୁଖ୍ୟ ବ୍ୟକ୍ତିମାନେ ଶାସନପ୍ରତି ସର୍ବଦା ସତର୍କଦୃଷ୍ଟି ରଖିଥିଲେ । ମୁନିଗଣ ରାଜା ଧ୍ରୁବପ୍ରଦଙ୍କୁ (ଆ. ୨୦୭ ପୃ), ବ୍ୟାସଦେବ ଗାନ୍ଧାରରାଜାଙ୍କୁ (ଆ. ୩୭ ପୃ) ଓ ଶିବ ନାରଦଙ୍କୁ (ମ. ୨୨୧ ପୃ) ସାକ୍ଷାତ ହେବାମାତ୍ରେ ରାଜ୍ୟର ଶୁଭାଶୁଭ କଥା ଜିଜ୍ଞାସା କରିବା ଚିତ୍ରରୁ ଏହା ଅବଧାରିତ ହୁଏ । ଦାଣ୍ଡି ରାମାୟଣରେ ଅଛି ଯେ, ବିଶ୍ୱାମିତ୍ର ଦଶରଥଙ୍କୁ ସାକ୍ଷାତମାତ୍ରେ ତାଙ୍କଠାରୁ ରାଜ୍ୟର କୁଶଳ ସମାଚାର ଜିଜ୍ଞାସା କରିଥିଲେ । (୧୮୧)

ସେ କାଳର ରାଜାମାନେ ପ୍ରଜାମାନଙ୍କର ହାରଗୁହାରି ବୁଝି ନ୍ୟାୟସଙ୍ଗତ ବିଚାର କରୁଥିଲେ । ତପନ୍ତି କୃଷାଣ ଓ ସୁରେଶ୍ୱର ଉପାଖ୍ୟାନ ଏହାର ଦୃଷ୍ଟାନ୍ତ । ସୁରେଶ୍ୱର ଓ ତପନ୍ତି କୃଷାଣଙ୍କ ମଧ୍ୟରେ ସୁନାଚୂଡ଼ିର ଅଧିକାରିତ୍ୱ ବିଷୟରେ ମତଦ୍ୱୈଧ ଜାତ ହେଲା । ଉଭୟେ ରାଜଦ୍ୱାରକୁ ବିଚାର ପାଇଁ ଗଲେ । ଯୁଧିଷ୍ଠିର ନ୍ୟାୟୋଚିତ ବିଚାର କରି ଉଭୟଙ୍କୁ ଅଧେ ଅଧେ ବାଣ୍ଟି ନେବାକୁ ନିର୍ଦ୍ଦେଶ ଦେଲେ । (୧୮୨) ବାସ୍ତବ ପକ୍ଷରେ ସାରଳାଙ୍କ ଯୁଗର ରାଜାମାନେ ପ୍ରଜାଙ୍କ ଆପତ୍ତି ଅଭିଯୋଗ ଶୁଣି ସୁବିଚାର କରୁଥିଲେ । ଗଜପତି ପୁରୁଷୋତ୍ତମଦେବ କିପରି ପ୍ରଜାଙ୍କ ଆପତ୍ତି ଶ୍ରବଣ କରି ସୁବିଚାର କରୁଥିଲେ, ତାହାର ଏକ ଦୃଷ୍ଟାନ୍ତ ଏଠାରେ ଦିଆଯାଇପାରେ । ବଣି ବେହେରା ନାମକ ଜନୈକ ବ୍ୟକ୍ତି ପ୍ରତି କେହି ଜଣେ ଚନ୍ଦ୍ରବାଣ ପ୍ରୟୋଗ କରିବାରୁ ସେ ଗଜପତି ପୁରୁଷୋତ୍ତମ ଦେବଙ୍କ ସମୀପରେ ଅଭିଯୋଗ କଲେ । ରାଜା ଆଦେଶ ଦେଲେ— "ଯେଉଁ ବ୍ୟକ୍ତି ଚନ୍ଦ୍ରବାଣ ପ୍ରୟୋଗ କରିବ, ସେ ଆମ୍ଭଦ୍ରୋହୀ ହେବ ଏବଂ ଭୁବନେଶ୍ୱର ମହାପ୍ରଭୁଙ୍କର ଦ୍ରୋହାଚରଣ କରିବ ।" (୧୮୩) 'ଚଇନଙ୍କ ଚକଡ଼ାରୁ' ଜଣାଯାଏ ଯେ, ରାଜା ଆନନ୍ଦ ମିଶ୍ର ନାମକ ଜନୈକ ବ୍ରାହ୍ମଣଙ୍କୁ ବାଳକମାନଙ୍କ ବ୍ୟଙ୍ଗବିଦ୍ରୂପରୁ ରକ୍ଷା କରିବା ପାଇଁ ଗ୍ରାମର ଦାଣ୍ଡକୁ ପଥରରେ ନିର୍ମାଣ କରାଇଥିଲେ । (୧୮୪)

ସାରଳାଙ୍କ ମହାଭାରତରୁ ଜଣାଯାଏ ଯେ, ସେକାଳରେ ଲୋକେ ଯୋଗ୍ୟ ବ୍ୟକ୍ତିଙ୍କୁ ରାଜା ରୂପରେ ନିର୍ବାଚନ କରିପାରୁଥିଲେ । ବେଦଶ୍ରବା ଉପାଖ୍ୟାନରୁ ଏହା ପ୍ରତିପାଦିତ ହୁଏ । ବେଦଶ୍ରବା ସାଧାରଣ ଦରିଦ୍ର ଥିଲା । ତାହାଘରେ ବକାସୁର ପାଳି ପଡ଼ିଲା । ସେତେବେଳେ ପଞ୍ଚପାଣ୍ଡବ କୁନ୍ତୀଙ୍କ ସହ ବେଦଶ୍ରବାଙ୍କ ଗୃହରେ ଆଶ୍ରୟ ନେଇଥିଲେ । ବେଦଶ୍ରବା ପାଳି ଦିନ ଭାତ ଓ ପିଠାସହ ଭୀମଙ୍କୁ ନରବଳି ରୂପରେ ପ୍ରେରଣ କରିଥିଲେ । ଭୀମସେନ ଅସୁରକୁ

ହତ୍ୟା କଲେ । ବେଦଶ୍ରବା ଯୋଗୁଁ ଅସୁର ନିଧନ ହେବାରୁ ପୁରବାସୀମାନେ ତାହାଙ୍କୁ ରାଜା ରୂପରେ ବାଛି ଥିଲେ । ଫଳରେ ଦରିଦ୍ର ବ୍ରାହ୍ମଣ ଏକଚକ୍ରା ନଗରୀର ରାଜା ହୋଇ ଯାଇଥିଲେ । (୧୮୫) ଅସୁର-ନିଧନ କରି ବୀରତ୍ୱର ପରିଚୟ ଦେବାରୁ ଶିବପୁରର ଲୋକେ ଭୀମସେନଙ୍କୁ ରାଜା ରୂପରେ ନିର୍ବାଚନ କରିଥିଲେ । (୧୮୬) ଇତିହାସ-ପୃଷ୍ଠାରୁ ଜଣାଯାଏ ଯେ, କଳିଙ୍ଗରେ ଭୌମ-ବଂଶକାଳରୁ ଉତ୍ତରାଧିକାରୀ 'ମହାସାମନ୍ତ ଚକ୍ର' ସ୍ଥିର କରୁଥିଲା । 'ମହା ସାମନ୍ତ ଚକ୍ର' ତ୍ରିଭୁବନ ଦେବୀଙ୍କୁ ଶୁଭକର କେଶରୀଙ୍କ ପରେ ଉତ୍ତରାଧିକାରିଣୀ ଭାବରେ ନିର୍ଣ୍ଣୟ କରିଥିଲା । (୧୮୭) ଖାରବେଳ ଓ କପିଳେନ୍ଦ୍ରଦେବ ଏହିପରି ରୀତିରେ ଉତ୍ତରାଧିକାରୀ ରୂପରେ ନିର୍ଣ୍ଣିତ ହୋଇଥିଲେ । (୧୮୮)

ସେ କାଳରେ ବ୍ରାହ୍ମଣମାନେ ମଧ୍ୟ ଆବଶ୍ୟକ ହେଲେ ରାଜଗାଦି ପାଇ ପାରୁଥିଲେ । ବେଦଶ୍ରବା ଏକଚକ୍ରା ନଗରରେ ଏବଂ ବିଷ୍ଣୁକର ଶିବପୁରରେ ରାଜା ହେବା କଥାରୁ ଏହା ସ୍ପଷ୍ଟ । ଉଭୟେ ବ୍ରାହ୍ମଣ କୁଳୋଦ୍ଭବ ଥିଲେ । (୧୮୯) ଇତିହାସ ଏହି ରୀତିରେ ସମର୍ଥନ କରେ । ଐତିହାସିକ ଶ୍ରୀ ସତ୍ୟ-ନାରାୟଣ ରାଜଗୁରୁ ଦର୍ଶାଇ ଅଛନ୍ତି ଯେ; ପୂର୍ବେ ନିଆଳୀର ଉତ୍ତରରେ ଥିବା କାକୋଦରପୁର ନାମକ ଗ୍ରାମରେ ବ୍ରାହ୍ମଣ ରାଜାମାନେ ରାଜତ୍ୱ କରୁଥିଲେ । (୧୯୦)

ଉତ୍କଳର ରାଜାମାନେ ସେ କାଳରେ ଗୁଣୀ ଓ କବିମାନଙ୍କର ଆଦର କରୁଥିଲେ । ଭୀଷ୍ମ ଯୁଧିଷ୍ଠିରଙ୍କୁ ଉପଦେଶ ଦେବା ଛଳରେ କହିଥିଲେ—

"ଗୁଣୀ ଗୁଣ ଜାଣିକରି କରୁଥିବୁ ପୂଜା
କବିମାନଙ୍କୁ କୃପଣ ନ ହୋଇବୁ ରାଜା ।" (୧୯୧)

ବାସ୍ତବପକ୍ଷରେ ଗଜପତି କପିଳେନ୍ଦ୍ରଦେବ ଗୁଣୀ ଓ କବିଙ୍କର ଆଦର କରୁଥିବାର ଜଣାଯାଏ । କିମ୍ବଦନ୍ତୀରୁ ପ୍ରକାଶପାଏ ଯେ, କପିଳେନ୍ଦ୍ରଦେବ ସାରଳା ଦାସଙ୍କର ପୃଷ୍ଠପୋଷକତା କରିଥିଲେ । ସାରଳା ଦାସଙ୍କ ପ୍ରତି ପୃଷ୍ଠ-ପୋଷକତାର ନିଦର୍ଶନ ସ୍ୱରୂପ ସେ ତାହାଙ୍କୁ କେତେକ ପ୍ରଗନା ଦାନକରି ଥିଲେ । (୧୯୨)

ଉତ୍କଳୀୟ ନରପତିଗଣ ଦେବତା ଓ ବ୍ରାହ୍ମଣଙ୍କ ପ୍ରତି ଭକ୍ତିଭାବ ପୋଷଣ କରୁଥିଲେ । ଭୀଷ୍ମ ତେଣୁ ଯୁଧିଷ୍ଠିରଙ୍କୁ ଉପଦେଶ ଦେଇଥିଲେ—"ଦେବତା

ବ୍ରାହ୍ମଣ ନତେ୍ୟ କରୁଥିବୁ ପୂଜା ।" ( ସା· ୨ ପୃ ) ରାଜାମାନେ ଦେବତା ଓ ବ୍ରାହ୍ମଣଙ୍କୁ କର ଛାଡ଼ ଦେଇଥିଲେ । ( ଆ: ୨୦୧ ପୃ) ବାସ୍ତବ ପକ୍ଷରେ ସାରଳାଙ୍କ ସମସାମୟିକ ଗଜପତି କପିଳେନ୍ଦ୍ର ଓ ପୁରୁଷୋତ୍ତମ ଦେବ ନାନା ଭାବରେ ଦେବତା ଓ ବ୍ରାହ୍ମଣଙ୍କର ପୃଷ୍ଠପୋଷକତା କରୁଥିଲେ । କପିଳେନ୍ଦ୍ର ଦେବ ଜଗନ୍ନାଥଙ୍କୁ ବହୁ ରତ୍ନାଳଙ୍କାର ପ୍ରଦାନ କରିବା (୧୯୩) ଓ ବ୍ରାହ୍ମଣମାନଙ୍କୁ ଶାସନ ଦାନ ଦେବା (୧୯୪) କଥାରୁ ଏହା ପ୍ରତିପନ୍ନ ହୁଏ । ପୁରୁଷୋତ୍ତମ ଦେବ ମଧ୍ୟ ଜଗନ୍ନାଥଙ୍କ ପାଇଁ ରତ୍ନାଳଙ୍କାର ସହ ବହୁଦ୍ରବ୍ୟ ପ୍ରଦାନ କରିଥିଲେ । (୧୯୫) ସେ ଜଗନ୍ନାଥଙ୍କ ଭୋଗମଣ୍ଡପ ନିର୍ମାଣ କରାଇଥିଲେ । (୧୯୬) ତାଙ୍କ କାଳରେ ବ୍ରାହ୍ମଣମାନଙ୍କୁ ଚୌକିଦାରି ଟିକସ ଛାଡ଼ କରା-ଯାଇଥିଲା ଏବଂ ଗ୍ରାମମାନ ଦାନ କରାଯାଇଥିଲା । (୧୯୭)

ସେତେବେଳେ ଉତ୍କଳ ଶାସନର ସୁବିଧା ପାଇଁ କେତେକ ମଣ୍ଡଳ ବା ବିଭାଗରେ ବିଭକ୍ତ ଥିଲା । କବିଙ୍କର "ଏ ବିଧି ଭିଆଣ କଲେ ଛତିଶ ମଣ୍ଡଳେ" ଉକ୍ତିରୁ ଏହା ଉପଲବ୍ଧ ହୁଏ । ( ଆ: ୨୦୧ ପୃ) ଇତିହାସରୁ ଜଣାଯାଏ ଯେ ଓଡ଼ିଶା ଗଙ୍ଗବଂଶର ରାଜତ୍ୱକାଳରେ କେତେକ ମହାମଣ୍ଡଳରେ ବିଭକ୍ତ ଥିଲା । (୧୯୮) ଗଜପତିଙ୍କ ନିଜ ରାଜ୍ୟ ଏକତିରିଶ ଗୋଟି ବିଭାଗରେ ବିଭକ୍ତ ହୋଇଥିଲା । (୧୯୯)

ଶ୍ରୀ ପ୍ରଭାତ ମୁଖାର୍ଜି କହନ୍ତି ଯେ କପିଳେନ୍ଦ୍ର ଦେବ ଓଡ଼ିଶାକୁ ନଅଗୋଟି ଦଣ୍ଡପାଟରେ ବିଭକ୍ତ କରିଥିଲେ । (୨୦୦) ଶ୍ରୀ ସୁରେନ୍ଦ୍ର ମହାନ୍ତି ମତ ଦେଇଛନ୍ତି ଯେ ଦଣ୍ଡପାଟ ଗୁଡ଼ିକର ଅନ୍ୟନାମ ପାରିଦଣ୍ଡ ଅଟେ । (୨୦୧) ଏହି ବିଭାଗର ସୂଚନା ସାରଳା ଦାସ ଯଯାତିଙ୍କ ପ୍ରସଙ୍ଗରେ ପ୍ରଦାନ କରିଅଛନ୍ତି ।

"ଏକା ଖଣ୍ଡିକ ସେ ଯହୁଁ କଲା ନବଖଣ୍ଡ
ମଣ୍ଡଳ ଭିଆଇ ଭିଆଇଲା ପାରିଦଣ୍ଡ ।" (୨୦୨)

ପଞ୍ଚଦଶ ଶତାବ୍ଦୀର ଉତ୍କଳରେ କେତେକ ମୁଖ୍ୟ ନଗର ଥିଲା ଏବଂ ସେଗୁଡ଼ିକୁ 'କଟକ' ଆଖ୍ୟା ଦିଆଯାଉଥିଲା । ସାରଳା ଦାସଙ୍କ "ପଞ୍ଚ କଟକେ ଭ୍ରମଇ ଯେନ ଭାନୁମତି" ଉକ୍ତିରୁ ଏହା ଅବଧାରିତ ହୁଏ । (ଆ. ୨୦୧ ପୃ) ଐତିହାସିକ ଡକ୍ଟର ହରେକୃଷ୍ଣ ମହତାବ ଦର୍ଶାଇ ଅଛନ୍ତି ଯେ, ଗଙ୍ଗବଂଶର ରାଜତ୍ୱକାଳରେ ଓଡ଼ିଶାର ତୀର୍ଥସ୍ଥାନମାନ କଟକ ନାମ ଧାରଣ କରିଥିଲା । ଅଭିଲେଖରେ ପୁରୁଷୋତ୍ତମ (ପୁରୀ), କୃତ୍ତିବାସ (ଭୁବନେଶ୍ୱର), ବାରାଣସୀ

(ବାରାନସୀ), ରେମୁଣା, ନାରାୟଣପୁର ଓ ଦେବକୂଟ ନାମକ କଟକମାନଙ୍କର ନାମ ମିଳେ । ମାଦଳା ପାଞ୍ଜିରେ ଆସିକା, ଖୋର୍ଦ୍ଧା, ଚୌଦ୍ୱାର ଓ କଟକର ନାମ ରହିଅଛି । ପ୍ରତି କଟକରେ ଗଜପତିଙ୍କ ରାଜପ୍ରାସାଦ ବିଦ୍ୟମାନ ଥିଲା । (୨୦୩) କପିଳେନ୍ଦ୍ର ଦେବଙ୍କ ଶିଳାଲେଖରେ କୃତ୍ତିବାସ, ପୁରୁଷୋତ୍ତମ ଓ ବାରଣସୀ କଟକର ନାମ ଦେଖାଯାଏ । (୨୦୪)

ସେ କାଳରେ ସୈନ୍ୟବିଭାଗ କିପରି ସୁନିୟନ୍ତ୍ରିତ ଥିଲା ତାହା କବି-ପ୍ରଦତ୍ତ କେତେକ ଉକ୍ତିରୁ ଅବଧାରିତ ହୁଏ । ଭୀଷ୍ମ ଯୁଧିଷ୍ଠିରଙ୍କୁ ଉପଦେଶ ଦେଇ କହିଥିଲେ—“ମନ୍ତ୍ରୀ ଗୋଚରରେ ସମର୍ପି ଥିବୁ ସେନାପତି ।” (୨୦୫) ଏଥିରୁ ସ୍ପଷ୍ଟ ଯେ, ରାଜା ସ୍ୱେଚ୍ଛାରେ ଏକଛତ୍ର ଶାସକ ଭଳି ସେନାପତି ନିଯୁକ୍ତ ନ କରି, ମନ୍ତ୍ରୀଙ୍କ ପରାମର୍ଶ ଗ୍ରହଣ କରୁଥିଲେ । ଭୀଷ୍ମ ଯୁଧିଷ୍ଠିରଙ୍କୁ ପୁନଶ୍ଚ ଉପଦେଶ ଦେଇଥିଲେ—“ସେନାପତି ବଚନେ ଚଳିବେ ରାଜୁତ ମାହନ୍ତ ରଥୀ ।” (୨୦୬) ଏହି ଉକ୍ତିରୁ ଉପଲବ୍‌ଧ ହେଉଅଛି ଯେ, ସେକାଳରେ ସେନାପତିଙ୍କ ନିର୍ଦ୍ଦେଶରେ ସେନାବାହିନୀ କାର୍ଯ୍ୟାନୁଷ୍ଠାନ କରୁଥିଲେ । ଆଧୁନିକ ଗଣତନ୍ତ୍ର ଭାରତରେ ସେନାଧ୍ୟକ୍ଷ ନିଯୁକ୍ତ ତଥା ସେନାବାହିନୀର କାର୍ଯ୍ୟାନୁଷ୍ଠାନ ଏହିପରି ରୀତିରେ ହେଉଅଛି ।

ପଞ୍ଚଦଶ ଶତାବ୍ଦୀରେ ଗୁପ୍ତଚରମାନେ ଛଦ୍ମବେଶ ଧାରଣ କରି ଗୁପ୍ତ-ତଥ୍ୟର ଅନୁସନ୍ଧାନ କରୁଥିଲେ ଓ ରାଜାଙ୍କୁ ଜଣାଉଥିଲେ । ଦୁର୍ଯ୍ୟୋଧନ ପାଣ୍ଡବଙ୍କ ଅନ୍ୱେଷଣ ପାଇଁ ବିଭିନ୍ନ ଦିଗକୁ ଯେଉଁ ଦୂତ ପ୍ରେରଣ କରିଥିଲେ ସେମାନେ କେତେବେଳେ ନାରୀ ରୂପ, ପୁଣି ବା କେତେବେଳେ ବାଳକରୂପ ଧାରଣ କରି ପାଣ୍ଡବଙ୍କର ସ୍ଥିତି ଅନ୍ୱେଷଣ କରିଥିଲେ ବୋଲି କହନ୍ତି ।

“ସ୍ତ୍ରୀରୂପ ବାଳୁତରୂପ ସ୍ଥାନେ ସ୍ଥାନେ ହେଲୁ
ପାଣ୍ଡବଙ୍କ ଚିହ୍ନବର୍ତ୍ତି କାହିଁ ନ ପାଇଲୁ ।” (ବି: ୮୮ ପୃ)

ସାରଳା ଦାସଙ୍କ ବିଭିନ୍ନ ବର୍ଣ୍ଣନାରୁ ଅବଧାରିତ ହୁଏ ଯେ, ପଞ୍ଚଦଶ ଶତକରେ ଉତ୍କଳର ଶାସନ ବ୍ୟବସ୍ଥା ସୁଦୃଢ଼ ନୀତି ଉପରେ ପ୍ରତିଷ୍ଠିତ ଥିଲା । କପିଳେନ୍ଦ୍ର ଦେବ ଓ ପୁରୁଷୋତ୍ତମଦେବ ସୁଶାସନ ପ୍ରତିଷ୍ଠା କରିଥିଲେ ବୋଲି ଇତିହାସ ସାକ୍ଷ୍ୟ ପ୍ରଦାନ କରେ । (୨୦୭) କବି ଭୀଷ୍ମ, ଧୃତରାଷ୍ଟ୍ର ଓ ଯୁଧିଷ୍ଠିରଙ୍କ ମୁଖରେ ରାଜ୍ୟ ଶାସନର ଯେଉଁ ନୀତିମାନ ପ୍ରଦାନ କରିଅଛନ୍ତି, ତାହା ବାସ୍ତବ ପକ୍ଷରେ ଉତ୍କଳର ପ୍ରଜାବତ୍ସଳ ଗଜପତିମାନଙ୍କ ଅନୁସୃତ ନୀତି-ନିୟମ ଅଟେ ।

ଇତିହାସ କହେ ଯେ, ସାରଳା ଦାସଙ୍କ ସମସାମୟିକ ଗଜପତି କପିଳେନ୍ଦ୍ର-ଦେବ ଅସାଧାରଣ ଭାବରେ ସୁଦକ୍ଷ ନରପତି ଥିଲେ । ଐତିହାସିକ ଆର୍‌. ଡ଼. ବାନାର୍ଜି କହନ୍ତି—କପିଳେନ୍ଦ୍ର ବା କପିଳେଶ୍ୱର ଜଣେ ଅସାଧାରଣ ପୁରୁଷ ଥିଲେ । (୨୦୮) ଗଙ୍ଗବଂଶକାଳରେ ଯେଉଁ ଶାସନ-ବ୍ୟବସ୍ଥା ଥିଲା ତାକୁ କପିଳେନ୍ଦ୍ରଦେବ ପରିବର୍ତ୍ତନ କରି ନ ଥିଲେ (୨୦୯) ସାରଳାଙ୍କ ମହାଭାରତରେ ଗଙ୍ଗବଂଶ ଯୁଗଠାରୁ ଆରମ୍ଭ କରି ସୂର୍ଯ୍ୟବଂଶ ପର୍ଯ୍ୟନ୍ତ ପ୍ରଚଳିତ ଶାସନ-ବ୍ୟବସ୍ଥାର ଚିତ୍ରହିଁ ପ୍ରକଟିତ ହୋଇଅଛି ।

ପଞ୍ଚଦଶ ଶତାବ୍ଦୀରେ ଉତ୍କଳୀୟ ସମାଜ ଏକ ବିକଶିତ ସମାଜ-ସଂସ୍ଥା ରୂପରେ ଦେଖା ଦେଇଥିଲା । ସାରଳା ଦାସଙ୍କ ଅମର ଲେଖନୀରେ ତାହାର ଏକ ପୁଷ୍କଳ ଓ କାବ୍ୟିକ ପ୍ରକାଶ ନିହିତ । ଏହି ମହାଭାରତ କେବଳ ଏକ ପୁରାଣ ଅଥବା ଏକ ମହାକାବ୍ୟ ନୁହେଁ, ଅଧିକନ୍ତୁ ଉତ୍କଳୀୟ ସମାଜର ଏକ ସରସ ସୁନ୍ଦର ଇତିହାସ । ସଂସ୍କୃତ ମହାଭାରତ ସମ୍ପର୍କରେ କୁହାଯାଏ—ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ । ସଂସ୍କୃତ ମହାଭାରତରେ ସମାଜ ଓ ସଂସ୍କୃତିର ଯେଉଁ ବିଭବ ନାହିଁ, ତାହା ଭାରତଭୂମିରେ ସେ କାଳରେ ନ ଥିଲା । ସେହିପରି କୁହାଯାଇପାରେ ଯେ, ଉତ୍କଳର ବ୍ୟାସଦେବ ସାରଳା-ଦାସଙ୍କ ମହାଭାରତରେ ଉତ୍କଳୀୟ ସମାଜର ଯେଉଁ ଆଲେଖ୍ୟ ରୂପ ଲାଭକରି ନାହିଁ, ତାହା ପଞ୍ଚଦଶ ଶତାବ୍ଦୀର ସମାଜରେ ବିଦ୍ୟମାନ ନ ଥିଲା ।

———

# ପାଦଟୀକା

(୧) "ତେର ବରଷ କନ୍ୟାକୁ ସମ୍ପୂର୍ଣ୍ଣ ହୋଇଲା ।" ମୂ. ପୋ—ମଧ୍ୟ ୨ୟ—ପୃ ୯୮୫ କ (୨) ଯୁବାକାଳେ ମୁହିଁ ହେଲି ପଢ ବରଷତ । ସା.ମ—ଆଦ୍ୟ—ପୃ ୧୨୮ । (୩) ସା.ମ—ବନ—ପୃ ୨୭୫ । (୪) ଏହି ପ୍ରବନ୍ଧର ବିବାହ ଶୀର୍ଷକ ଅଧ୍ୟାୟ ଦ୍ରଷ୍ଟବ୍ୟ । (୫) Alberuni's India—Vol. I—Ch X–P. 108 (୬) Marriage and Family in India—P. 55 (୭) ବି. କ. କା—ପୃ ୩୬୯ । (୮) ଏଜନ୍—ପୃ ୩୨୪ ଓ ପୃ ୩୮୨ । (୯) ସା.ମ—ଆଦ୍ୟ—ପୃ ୩୧୨ । (୧୦) ମୂ. ପୋ—ମଧ୍ୟ ୧ମ—ପୃ ୨୩୧ କ ଓ ଖ । (୧୧) ବି. କ. କା—ପୃ ୩୩୦-୩୩୧ । (୧୨) ସା.ମ—ଶ୍ରୀ. ର. ପୁ—ମଧ୍ୟ—ପୃ ୩୮୫ । (୧୩) ସା. ମ—ଶ୍ରୀ. ଚ. ପୁ—ମଧ୍ୟ—ପୃ ୩୦୬ । (୧୪) ଶ୍ରୀ. ଭ. ଗୀ—ନୀଳକଣ୍ଠ—ଗୀତା ପ୍ରବେଶ—ପୃ ୨୬୧-୨୬୨ । (୧୫) ସା. ମ—ଶ୍ରୀ. ର. ପୁ—ମଧ୍ୟ—ପୃ ୫୫ । (୧୬) ପ୍ରା. ଗ. ପ. ଦ—ପ୍ରାଚୀ—ପୃ ୬୮ (୧୭) ଦ. ଶ୍ରୀ ଆଦ୍ୟ—ପୃ ୧୯୦-୧୯୧ । (୧୮) ବି. କ. କା—ପୃ ୩୪୭ । (୧୯) ଏଜନ୍—ପୃ ୩୪୭-୩୪୮ । ମୁଖ୍ୟ ବେଦିର ପାର୍ଶ୍ୱରେ ଏକ କ୍ଷୁଦ୍ରାକାର ବେଦି ରହେ । ବେଦିରେ ଏକ ଶିଳ ଉପରେ ଜାମାତା ବସନ୍ତି । କନ୍ୟାର ମାତା ସଧବା ନାରୀମାନଙ୍କ ସହ ଜାମାତାଙ୍କୁ ଏଠାରେ ବନ୍ଦାପନା କରନ୍ତି । ଓଡ଼ିଶାରେ ଏବେ ଏହାର ନାମ ଲୋକମୁଖରେ 'କୁକୁର ବେଦୀ' । (୨୦) ଏଜନ୍—ପୃ ୩୪୭ । (୨୧) ମୂଳ ଗୀ ପୋଥିରେ ଶୋଭାବତୀ ପରିଣୟ ନାହିଁ । ସା. ମ—ଶ୍ରୀ. ର. ପୁ—ମଧ୍ୟ—ପୃ ୩୫୪ । (୨୨) ପ୍ରା. ଗ. ପ. ଦ—ପ୍ରାଚୀ—ପୃ ୬୮ । (୨୩) ଦା. ଶ୍ରୀ—ଆଦି—ପୃ ୧୯୭ । (୨୪) ଲ. ବ—ଉପେନ୍ଦ୍ର ଭଞ୍ଜ—ପୃ ୨୬୦-୨୬୨ । (୨୫କ) ବି. କ. କା—ପୃ ୩୩୨ (୨୫) (ଖ) ଦା. ଶ୍ରୀ—ଆଦି—ପୃ ୧୯୭ । (୨୬) ସା. ମ—ମଧ୍ୟ—ଶ୍ରୀ. ର. ପ—ପୃ ୩୦୭ । ସା. ମ—ମଧ୍ୟ—ସ୍ୱ. ପ୍ର. ଙ୍କ—ପୃ ୪୮୧ । (୨୭) ଦା. ଶ୍ରୀ—ଆଦି—ପୃ ୧୯୯-୨୦୦ । (୨୮) ପ୍ରା. ଗ. ପ. ଦ—ପ୍ରାଚୀ—ପୃ ୬୮ । "ସକ୍ରୋଧେଣ ନାରୀ ମିଳି ଜୁଆ ଖେଳାଇଲେ ।" (୨୯) ସା. ମ—ଶ୍ରୀ. ର. ପୁ—ମଧ୍ୟ—ପୃ ୪୯ । ସା. ମ—ପୁ. ପ୍ର. ଙ୍କ—ପୃ ୬୫ (୩୦) ଶ୍ରୀ. ଭା. ଦ—ଗୋପୀନାଥ ନନ୍ଦ—ପୃ ୪୩ । (୩୧) ଓ. ଭା. ସା—ନୀଳକଣ୍ଠ—ପୃ ୧୨୬ । (୩୨) କାମସୂତ୍ରମ୍—୪, ୧, ୧୫-୧୬ । (୩୩) ମୂ. ପୋ—ମଧ୍ୟ ୧ମ—ପୃ ୧୧୬ଖ ଓ ପୃ ୧୧୭ଖ । (୩୪) ଦ୍ୱିତୀୟ ଅଧ୍ୟାୟର 'ସତୀଦାହ' ବିଷୟ ଦ୍ରଷ୍ଟବ୍ୟ (୩୫) ଓ. ସା. ଇ. ପ—୨ୟ ଭାଗ, ପୃ ୧୮୦ । (୩୬) ସା. ମ.—ମଧ୍ୟ, ପୃ ୫ । ମୂ. ପୋ—ମଧ୍ୟ ୧ମ, ପୃ ୨ କ । (୩୭) ସା. ମ. ନା. ଚ.—ପୃ. ୧୯୧ (୩୮) ଓ. ସା. ଆ. ପ—ପୃ ୫ । (୩୯) ଏଜନ, ପୃ ୬ । (୪୦) ମହାଭାରତ—କୃଷ୍ଣ ସିଂହ, ଆଦି ୧୩୪-୧୩୫ । ସଂ. ମ.—ଆଦି, ୭୨ ଅଧ୍ୟାୟ ।

(୪୧) ଓ. ସା. ଆ. ପ—ପୃ ୮ । (୪୨) ମହାଭାରତ—କୃଷ୍ଣ ସିଂହ, ଆଦି, ପୃ ୨୧୩ । (୪୩) ଏକନ । (୪୪) ଶା· ଚ.—ପୃ ୮୪ । (୪୫) ମୃ. ପୋ—ବନ ୧ମ, ପୃ ୧୬ କ । (୪୬) ଦ୍ୱିତୀୟ ଅଧ୍ୟାୟର 'ସାରଳ୍ୱ' ଶୀର୍ଷକ ଦ୍ରଷ୍ଟବ୍ୟ । (୪୭) ଓ. ଇ—୧ମ ଭାଗ, ପୃ ୨୩ । (୪୮) କାରୁବାକ୍ୟ—ଜଗନ୍ନାଥ ରାଓ, ୧ମ ଅଙ୍କ, ୧ମ ଦୃଶ୍ୟ । (୪୯) 'ନବ ଜୀବନ'ର ୧୬ଶ ବର୍ଷ ୩ୟ ସଂଖ୍ୟାରେ ଶ୍ରୀ ଚକ୍ରଧର ମହାପାତ୍ରଙ୍କ ପ୍ରବନ୍ଧ ଦ୍ରଷ୍ଟବ୍ୟ । (୫୦) ଉତ୍କଳିକା, ରାଧାମୋହନ ଗଡ଼ନାଏକ, ପୃ ୩୫-୪୪ । (୫୧) ଏକନ—ପୃ ୪୪ । (୫୨) ଚଣ୍ଡାଳ ଦେହର ଅର୍ଥ ଜଣାନାହିଁ । ଶ୍ରୀ ଗୋପୀନାଥ ନନ୍ଦଙ୍କ ଦେବତତ୍ତ୍ୱ ଅଭିଧାନ—୧ମ ଖଣ୍ଡ ପୃ ଦ୍ରଷ୍ଟବ୍ୟ । (୫୩) ମୃ. ପୋ—ଆଦ୍ୟ ୧ମ, ପୃ ୪୮ କ ଖ । (୫୪) ସା. ମ—ସ୍ୱର୍ଗ, ପୃ ୬୮-୭୪ । (୫୫) ମୃ ପୋ—ମଧ୍ୟ ୨ୟ, ପୃ ୨୭୨ ଖ-୨୭୩-ଖ । (୫୬) ଶା. ଚ—ପୃ ୮ । (୫୭) "ବଙ୍ଗଭାଷା ପାରସି ହିନ୍ଦୁସ୍ଥାନୀ ଭାଷା ।" ମୃ. ପୋ—ମଧ୍ୟ ୨ୟ, ପୃ ୨୭୨ ଖ । (୫୮) ସା· ମ—ମଧ୍ୟ, ପୃ ୪୦୯ । ପୋଥିରେ 'ଖଡ଼ିପାଠ'ର ଉଲ୍ଲେଖ ନାହିଁ । (୫୯) ସା· ମ—ସଭା, ପୃ ୬୧୧ । ମୃ. ପୋ—ସଭା ୨ୟ, ପୃ ୮୦ କ । (୬୦) ମ. ଭ—ଜଗନ୍ନାଥ, ପଣା ପର୍ବ, ପୃ ୬୪ । (୬୧) ମୃ. ପୋ—ମଧ୍ୟ ୨ୟ, ପୃ ୨୬୫ କ । (୬୨) ଏକନ—ପୃ ୨୭୨ ଖ । (୬୩) ଓ· ଭ. ଜ. ପ—୨ୟ ଭାଗ, ପୃ ୨୬୪ । (୬୪) ମୃ. ପୋ—ମଧ୍ୟ ୨ୟ, ପୃ ୨୭୨ ଖ-୨୭୩ ଖ । (୬୫) History of Orissa, Vol, I, R. D. Banerjee—P. 220. (୬୬) ମୃ. ପୋ—ମଧ୍ୟ ୨ୟ, ପୃ ୨୭୨ କ । (୬୭) ଝଙ୍କାର—୧୦ମ ବର୍ଷ, ୩ୟ ସଂଖ୍ୟା । (୬୮) ଗୁ. ଇ—କେଦାରନାଥ ମହାପାତ୍ରଙ୍କ ସମ୍ପାଦିତ ଗ୍ରନ୍ଥ—ଭୂମିକା, ପୃ ୧୬ । (୬୯) ସା· ମ—ମଧ୍ୟ, ପୃ ୪୦୮ । (୭୦) ଶା. ଚ—ମୁଖବନ୍ଧ, ପୃ ୧୮ । (୭୧) ଏକନ—ପୃ ୩୬ । (୭୨) ସା. ମ—ବନ, ପୃ ୨୦୦-୨୦୩ । (୭୩) ସା. ମ—ସ୍ୱର୍ଗ, ପୃ ୧୨-୧୪ । (୭୪) ସା. ମ—ବନ, ପୃ ୨୦୮ । ମୃ. ପୋ—ବନ, ୨ୟ, ପୃ ୭୫ କ । (୭୫) (୭୬) ସା. ମ—ଆଦ୍ୟ, ପୃ ୧୧୬ । (୭୭) ଓଡ଼ିଆ ସାହିତ୍ୟ ଇତିହାସ—ବିନାୟକ ମିଶ୍ର, ପୃ ୪୮ । (୭୮) ଝଙ୍କାର—୧୦ମ ବର୍ଷ, ୩ୟ ସଂଖ୍ୟା । (୭୯) ମା. ପା—ପ୍ରାଚୀ, ପୃ ୪ । (୮୦) ସା· ସ—ପୃ ୫୬ । (୮୧) ଓ. ଇ—୧ମ ଭାଗ, ପୃ ୯୪-୯୫ । (୮୨) ଏକନ—ପୃ ୯୬ । (୮୩) ସର୍ବମଙ୍ଗଳା ସ୍ତୁତି—ପୃ ୧୦ । (୮୪) ତାଳଚେରର ଅଧିଷ୍ଠାତ୍ରୀ ଦେବ ହିଙ୍ଗୁଳା ବୋଲି ଶ୍ରୀ ଘନଶ୍ୟାମ ଦାସ 'ଓଡ଼ିଶା ବେଦବ୍ୟାସ ଓ ଚନ୍ଦ୍ରଭାଗାଙ୍କର ଜନ୍ମସ୍ଥଳୀ କି' ପ୍ରବନ୍ଧରେ ଦର୍ଶାଇଅଛନ୍ତି । ଝଙ୍କାର ୮ମ ବର୍ଷ ୭ମ ସଂଖ୍ୟା, ପୃ ୬୬୦ ଦ୍ରଷ୍ଟବ୍ୟ । (୮୫) O. H. R. J., Vol. X, No. 4, 1962. (୮୬) ଓ. ସା. ଇ, ୧ମ ଭାଗ—ସୂର୍ଯ୍ୟନାରାୟଣ, ପୃ ୧୨୦ । (୮୭) "ବସୁରଇ ବୁଦ୍ଧ ବସ୍ତୁ ଅଟନ୍ତି ଏ ବେଳ ।" ସା.ମ—ମଧ୍ୟ, ପୃ ୪୧୦ । "ଜୟ ବୁଦ୍ଧ ଅବତାରେ ଜୟଦେବ ହେଲି ।" ସା· ମ—ମୂଷଳୀ, ପୃ ୯ । (୮୮) ସା. ମ—ମୂଷଳୀ, ପୃ ୩୭-୪୧ । (୮୯) କଳି ଯୁଗେ ଚାରିଲକ୍ଷ ବତିଶ ସହସ୍ର ବରଷ ପର୍ଯ୍ୟନ୍ତେ । ବୌଦ୍ଧରୂପେ ପୂଜା ପାଇବେ ନୀଳସୁନ୍ଦର ପର୍ବତେ ।" ମୃ. ପୋ—ବନ ୨ୟ, ପୃ ୭୭ ଖ । (୯୦) ଓ. ସା. ଇ, ୧ମ ଭାଗ, ପୃ ୩୩୯ ।

(୯୧) ସଂ. ନା. ବ୍ର. ପ—ପୃ୫୬୨ । (୯୨) ସଂ. ମା. ବ୍ର. ପୁ—ପୃ୩୫୯ । (୯୩) ସଂ. ସ୍କ. ପୁ—ପୃ୨୮୩ । (୯୪) ସା. ମ. ଉଦ୍—ପୃ୭୬ । (୯୫) ଏକନ୍—ପୃ୭୭ । (୯୬) ସା. ମ, ମୂଷଳୀ—ପୃ୪୦-୪୧ (୯୭) "ବ୍ରହ୍ମା ବସିବେ ସଙ୍ଗେ ସୁଭଦ୍ରା ରୂପ ଧରି ।" ମୃ. ପୋ, ବନ ୨ୟ—ପୃ୭୭ଖ । (୯୮) ସଂ. ମା. ବ୍ର. ପୁ—ପୃ୩୫୯ । (୯୯) ସଂ.ନା. ବ. ପ୍ର, ପୃ୫୬୨ । (୧୦୦) ସଂ. ନା. ବ. ପୁ—ପୃ୫୬୭ । ସଂ.ମା. ବ୍ର. ପୁ—ପୃ୩୬୮ । (୧୦୧) ସଂ. ସ୍କ. ପୁ—ପୃ୨୮୩ । (୧୦୨) O. H. R. J—1963—No4—P. 280 । (୧୦୩) ଶ୍ରୀ. ଜ. ଜ. ଭ, ମୁଖବନ୍ଧ—ପୃ 'କ୍ଷ' ଓ 'ଙ୍କ' । (୧୦୪) ସଂ. ସ୍କ. ପୁ—ପୃ ୨୭୬ (୧୦୫) ଏକନ୍—ପୃ୨୮୭ । (୧୦୬) ସା: ମ, ବନ—ପୃ୨୯୭ । (୧୦୭) ଏକନ୍—ମଧ୍ୟ—ପୃ୧୧୩-୧୧୪ । (୧୦୮) O. H. R. J—Vol XI—1963—No 4—P. 277. (୧୦୯) A, R. B—K. C. Panigrahi—P. 256 । (୧୧୦) ସା. ମ—ମୂଷଳୀ—ପୃ ୧୭-୧୮ । (୧୧୧) ଏକନ—ପୃ୨୮ । (୧୧୨) ସା. ମ—ଆଦ୍ୟ—ପୃ । ମୃ. ପୋ—ଆଦ୍ୟ ୧ମ—ପୃ୭୧ଖ । (୧୧୩) The Religion of an Indian Tribe, V. Elwin—P. 30. (୧୧୪) ସଂସ୍କୃତ ଓ ସଂସ୍କୃତି—ନୀଳକଣ୍ଠ—ପୃ୧୩୩ (୧୧୫) ହ.ସା. କୋ—୧ମ ଭାଗ—ପୃ୪୬୨-୪୬୪ । (୧୧୬) E. O. L. S—P. 301. (୧୧୭) ହ. ସା. କୋ—୧ମ. ଭାଗ—ପୃ୪୬୩ । (୧୧୮) ଓ. ସା. ଋ. ପ—୨ୟ ଭାଗ—ପୃ୩୭୫ (୧୧୯) ସା. ମ. କା—ପୃ୩, ପୃ୩୩ । (୧୨୦) କଳ୍ପଲତା, ଓଡ଼ିଶା ରାଜ୍ୟ ସଂଗ୍ରହାଳୟ—ଭୂମିକା—ପୃ ୧୫ । (୧୨୧) Vaishnavism in Orissa—Pravat Mukherjee—P. 43 (୧୨୨) ସାକ୍ଷିଗୋପାଳ ମାହାତ୍ମ୍ୟ—ପୃ୨୪ । (୧୨୩) ଉ. ଇ—କୃପାସିନ୍ଧୁ—ପୃ ୧୭୫ । (୧୨୪) E. O. L. S.—P. 255-256, 281-283. (୧୨୫) ଉ. ଇ—କୃପାସିନ୍ଧୁ—ପୃ ୧୭୫ । (୧୨୬) E. O. L. S.—P. 255-256, 266-267, 281-283. । (୧୨୭) "ଗୃଞ୍ଜଳ ଗହମ ମୃଗ ପରବାଦ ମାନ" ସା. ମ., ସଭା—ପୃ ୩୭ । "ଧାନ ଗୃଞ୍ଜଳ ବର ମୃଗ ପରବା ସକର ମାନ ।" ମୃ. ପୋ—ସଭା ୧ମ—ପୃ ୫୪ ଖ । (୧୨୮) ଉ. ଇ—କୃପାସିନ୍ଧୁ—ପୃ ୧୭୫ । (୧୨୯) ଓ. ଇ.—୧ମ ଭାଗ—ପୃ ୧୭୮ । (୧୩୦) ଛ. ଛ. ବ. ଗୋପାଳଚନ୍ଦ୍ର—ପୃ ୬୫ । (୧୩୧) 'ସୁବାସ ତଣ୍ଡୁଳ ଘୃତ ପରବା ହରଡ଼ ।' ସା.ମ—ସଭା—ପୃ ୫୮ । (୧୩୨) ଓ. ସଂ. ସଂ—ଦଣ୍ଡକୃଷ୍ଣ—ପୃ ୧୭୪ । (୧୩୩) ସା. ମ—ସଭା—ପୃ ୪୯ । ମୃ. ପୋ—ସଭା ୧ମ—ପୃ ୭୪ କ । (୧୩୪) ପଣ୍ଡିତ କୃପାସିନ୍ଧୁ ମିଶ୍ର ଙ୍କୀୟ 'ଉତ୍କଳ ଇତିହାସ'ର ୧୦୯ ପୃଷ୍ଠାରେ ମାଢ଼କ ଟ ୯ । ସଙ୍ଗେ ସମାନ ବୋଲି ଲେଖିଛନ୍ତି । ମାଢ଼କ ୧୦ ତନା । ତେଣୁ ତନାକ ପ୍ରାୟ ପନ୍ଦର ଅଣା ହେବ । (୧୩୫) E. O. L. S. —P. 280-281. (୧୩୬) Ibid., P. 274-277. (୧୩୭) ସା. ମ—ରା. ର. ମୃ.ସ୍ତ. —ଆଦ୍ୟ, ପୃ ୨୫୧ । ସ୍ତ. ପ୍ର. କଂ—ଆଦ୍ୟ—ପୃ ୨୮୦ । (୧୩୮) ମୃ. ପୋ—ମଧ୍ୟ,

ପୃ ୧୫୫ ଖ । (୧୩୯) ଗ୍ର. ଚ—ପୃ ୭୨ । (୧୪୦) ମ. ସା. ସଂ—ମଧ୍ୟ, ପୃ ୧-୨ । (୧୪୧) E. O. L. S.—P. 274-277. (୧୪୨) ଦା. ଗ୍ର.—ଆଦ୍ୟ, ପୃ୩୨, ୧୧୬, ୧୪୪, ୧୮୪, ୧୯୩ । (୧୪୩) ଅ. ବୋ—ଘାନକୃଷ୍ଣ, ପୃ ୭-୯ । (୧୪୪) ଲ୍ର. ବ—ଉପେନ୍ଦ୍ର, ପୃ ୪୨-୪୮ । (୧୪୫) କା. କା—ପୁରୁଷୋତ୍ତମ, ପୃ ୨୨-୨୪ । (୧୪୬) ଜ. ମ. ଜ. ଉ—ସୂର୍ଯ୍ୟନାରାୟଣ, ପୃ ୬୫ । (୧୪୭) ଶି. ଚ—ଯୋଗୀ ମହାପାତ୍ର, ପୃ୨୧-୨୨ । (୧୪୮) ଓ. ସା. ଇ. ପ—ପୃ ୧୮ । (୧୪୯) ଏହି ପ୍ରବନ୍ଧର ୩୦୩ ପୃଷ୍ଠା ଦ୍ରଷ୍ଟବ୍ୟ । (୧୫୦) ମୂ. ପୋ—ମଧ୍ୟ ୨ୟ. ପୃ. ୧୬୦ ଖ । (୧୫୧) ସା. ମ—ମଧ୍ୟ, ପୃ. ୧୯୧ । (୧୫୨) ସା. ମ.—ମଧ୍ୟ—ପୃ୨୩୦-୨୪୦ । (୧୫୩) ଶ୍ରୀ. ଭ. ଦ—ଗୋପୀନାଥ—ପୃ୫୪ । (୧୫୪) ଝଙ୍କାର—୧୦ମ ବର୍ଷ– ୧ମ ସଂଖ୍ୟାରେ ଶ୍ରୀ ବଂଶୀଧର ମହାନ୍ତିଙ୍କ ପ୍ରବନ୍ଧ ଦ୍ରଷ୍ଟବ୍ୟ । (୧୫୫) ସା. ମ—ମଧ୍ୟ—ପୃ୧୯୧ । (୧୫୬) ଓ. ସା. ଇ. ପ—୨ୟ ଭାଗ—ପୃ୩୫୨ । (୧୫୭) ମ. ଭ—ଜଗନ୍ନାଥ—ମଧ୍ୟ—ପୃ୧୩୬-୧୩୬ (୧୫୮) O. H. R. J —Vol XI—No. 1, 1964—P. 56. (୧୫୯) ସା. ମ—ଗ୍ର. ର. ପୃ—ମଧ୍ୟ—ପୃ୯୦ । ମୂ. ପୋ—ମଧ୍ୟ ୨ୟ—ପୃ୧୫୯ କ । (୧୬୦) ଦା. ଗ୍ର—ଲଙ୍କା—ପୃ୨ । ମ. ଭ—ଜଗନ୍ନାଥ—ମଧ୍ୟ—ପୃ୧୩୫-୧୩୬ । (୧୬୧) ଓ. ସା. ଇ. ପ—୨ୟ ଭାଗ—ପୃ୩୫୨ । (୧୬୨) ପ୍ରାଚୀନ ଉତ୍କଳ—ଜଗବନ୍ଧୁ—ପୃ୫୨୪ । ଜ. ମ. ଜ. ଉ—ସୂର୍ଯ୍ୟନାରାୟଣ—ପୃ୧୫୨ । (୧୬୩) E. O. L. S—Dr. K. B. Tripathy P. 256. (୧୬୪କ) ଶ୍ରୀ. ଭ. ଦ—ଗୋପୀନାଥ ନନ୍ଦ -ପୃ୫୮ । (୧୬୪ଖ) ଓଡ଼ିଆ ସାହିତ୍ୟର ଇତିହାସ—ବିନାୟକ ମିଶ୍ର—ପୃ୨୫ । (୧୬୫) ସା. ମ—ସଭା—ପୃ୨୨-୨୩ । (୧୬୬) ଓ. ସା. ଇ. ପ—୨ୟ ଭାଗ—ପୃ୪୭୦-୪୭୧ । (୧୬୭) ମ. ଭ—ଜଗନ୍ନାଥ—ସଭା—ପୃ୮ (୧୬୮) ମୂ. ପୋ.—ସଭା ୧ମ—ପୃ୩୩ଖ । (୧୬୯) ଓ. ସା. ଇ. ପ—୨ୟ ଭାଗ—ପୃ୪୬୮ । ୧ମ ଭାଗ—ପୃ୧୧୩ । (୧୭୦) ସଂ. ଷ୍କ. ପୁ—ପୃ୨୯୭ । (୧୭୧) ପଦ୍ମମଳା—ସମ୍ପାଦନା—ଶ୍ରୀ କେଦାରନାଥ ମହାପାତ୍ର—ଭୂମିକା—ପୃ୫ । (୧୭୨) ସା. ମ—ଆଦ୍ୟ—ପୃ୫୮-୫୯ । (୧୭୩) ସା. ମ—ମଧ୍ୟ—ପୃ୪-୬ । (୧୭୪) ସା. ମ—ଉତ୍—ପୃ୧୨-୧୩ । (୧୭୫) ଏହି ପ୍ରବନ୍ଧର ପୃ୩୩୪-୩୪୯ ଦ୍ରଷ୍ଟବ୍ୟ । (୧୭୬) ସା. ମ—ବିରାଟ—ପୃ୫୪-୫୮ । (୧୭୭) ସା. ମ—ସଭା—ପୃ୨୩୩-୨୬୬ । (୧୭୮) ସଂ. ମ—ବିରାଟ—୧୩ଶ ଅଧ୍ୟାୟ ଦ୍ରଷ୍ଟବ୍ୟ । (୧୭୯) Asoka, D. R. Bhandarkar—P. 18-19. (୧୮୦) O. H. R. J—Vol. II—Jan. 1958—P. 306. (୧୮୧) ଦା. ଗ୍ର—ଆଦ୍ୟ—ପୃ୬୦ (୧୮୨) ସା. ମ—ସ୍ୱର୍ଗ—ପୃ୨-୩ (୧୮୩) E. O. L. S., P. 294. (୧୮୪) ଓ. ସା. ଇ—୧ମ ଭାଗ—ସୂର୍ଯ୍ୟନାରାୟଣ—ପୃ୨୮୩ । (୧୮୫) ସା. ମ.—ଆଦ୍ୟ—ପୃ୨୩୮ । (୧୮୬) ଏଜନ୍—ପୃ୨୨୫ । (୧୮୭) ଓ. ସା. ଇ. ପ—୨ୟ ଭାଗ—ପୃ୬୧-୬୨ । (୧୮୮) ଏଜନ୍—ପୃ୭୪ । (୧୮୯) ସା. ମ.—ଆଦ୍ୟ—ପୃ୨୩୮ ଓ ପୃ୨୨୮ । (୧୯୦) Inscriptions

of Orissa—Vol. III—Part-II—P. 339-348. (୧୯୧) ସା. ମ—ଶାନ୍ତ—ପୃ୨ । ମୃ. ପୋ—ଶାନ୍ତ—ପୃ୧୮୫୪ । (୧୯୨) ଓ. ସା, ଅ. ପ—ସୁରେନ୍ଦ୍ର—ପୃ୨୩୧ । (୧୯୩) E. O. L. S—P. 276-277 (୧୯୪) Ibid—P. 263-264 । ଏଠାରେ ରାଜା କପିଳେନ୍ଦ୍ର ଦେବ ଜାଗେଶ୍ୱର ପୁର—ବେଲମାପୁର ଓ ପ୍ରତାପ କପିଳେଶ୍ୱର ପୁର ଗ୍ରାମମାନ ଦାନ କରିବା କଥା ଉକ୍ତ । (୧୯୫) Ibid—P. 278-279, 279,281. (୧୯୬) History of Orissa—R. D. Banerjee—Vol. I—P. 319 । (୧୯୭) E. O. L. S—P. 288-289—284-285 । (୧୯୮) ଓ. ଇ—୧ମ—ପୃ୨୦୫ । (୧୯୯) ଜ୍. ଇ—ପୃ୧୬୫-୧୬୭ । (୨୦୦) ଓ. ସା. ଆପ—ସୁରେନ୍ଦ୍ର—ପୃ୨୩୨-୨୩୩ । (୨୦୧) ଏକନ୍ (୨୦୨) ସା. ମ—ଆଦ୍ୟ—ପୃ୫ । (୨୦୩) ଓ. ଇ—୧ମ—ହରେକୃଷ୍ଣ—ପୃ. ୨୦୯ । (୨୦୪) E. O. L. S—P. 251-253—255-293, 294. (୨୦୫) ମୃ. ପୋ—ଶାନ୍ତ—ପୃ୧୮୫୪ । (୨୦୬) ଏକନ୍ (୨୦୭) ପୃଷ୍ଠଭୂମି ଦ୍ରଷ୍ଟବ୍ୟ । (୨୦୮) ଓ. ଇ—୧ମ—ହରେକୃଷ୍ଣ—ପୃ୨୫୫ ।



# ବ୍ୟବହୃତ ଗ୍ରନ୍ଥାବଳୀ

## କ—ଓଡ଼ିଆ

| ଗ୍ରନ୍ଥର ନାମ | ଲେଖକ ଓ ପ୍ରକାଶକ | ସାଙ୍କେତିକ ଚିହ୍ନ |
|---|---|---|
| ୧। ଅଳଙ୍କାରବୋଧ | ସ୍ୱର୍ଗତ ଧାନକୃଷ୍ଣ ଦାସ | ଅ. ବୋ |
| ୨। ଅଭିମନ୍ୟୁ ସାମନ୍ତ ସିଂହାର ୧ମ ଭାଗ | ଶ୍ରୀ ଗୌରକୁମାର ବ୍ରହ୍ମା | ଅ. ସା. ସିଂ |
| ୩। ଆଲେଖିକା | ସ୍ୱର୍ଗତ ଗୋଦାବରୀଶ ମିଶ୍ର | |
| ୪। ଉତ୍କଳ-ଗୌରବ ମଧୁସୂଦନ | ଶ୍ରୀ ନବକିଶୋର ଦାସ | ଉ.ଗୌ.ମ |
| ୫। ଉତ୍କଳିକା | ରାଧାମୋହନ ଗଡ଼ନାୟକ | |
| ୬। ଉତ୍କଳ-ଇତିହାସ | ସ୍ୱର୍ଗତ କୃପାସିନ୍ଧୁ ମିଶ୍ର | ଉ.ଇ |
| ୭। ଉତ୍କଳର ଚିତ୍ରକଳା | ଶ୍ରୀ ଗୋପାଳ କାନୁନ୍‌ଗୋ | ଉ.ଚି |
| ୮। ଉଷାଭିଳାଷ | ସ୍ୱର୍ଗତ ଶିଶୁଶଙ୍କର ଦାସ | ଉ.ଭି |
| ୯। ଓଡ଼ିଆ ପ୍ରହେଳିକା ସଂଗ୍ରହ | ଶ୍ରୀ ବଟକୃଷ୍ଣ ପ୍ରହରାଜ | ଉ.ପ୍ର.ସଂ |
| ୧୦। ଓଡ଼ିଶା ଇତିହାସ (୧ମ ଭାଗ) | ଡକ୍ଟର ହରେକୃଷ୍ଣ ମହତାବ | ଓ.ଇ |
| ୧୧। ଓଡ଼ିଆ ସାହିତ୍ୟର ଇତିହାସ (୧ମ ଭାଗ) | ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ | ଓ.ସା.ଇ. |
| ୧୨। ଓଡ଼ିଶା ଓ ଜୈନଧର୍ମ | ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ | |
| ୧୩। ଓଡ଼ିଆ ସାହିତ୍ୟ ଇତିହାସ | ସ୍ୱର୍ଗତ ବିନାୟକ ମିଶ୍ର | |
| ୧୪। ଓଡ଼ିଶାରେ ବୌଦ୍ଧଧର୍ମ | ଡକ୍ଟର ବଂଶୀଧର ମହାନ୍ତି | |
| ୧୫। ଓଡ଼ିଶା ସାହିତ୍ୟର କ୍ରମପରିଣାମ (୧ମଭାଗ) | ସ୍ୱର୍ଗତ ନୀଳକଣ୍ଠ ଦାସ | ଓ.ସା.କ୍ର.ପ. |
| ୧୬। ଓଡ଼ିଆ ସାହିତ୍ୟର କ୍ରମପରିଣାମ (୨ୟଭାଗ) | ଏଜନ୍ | ଓ.ସା.କ୍ର.ପ |
| ୧୭। ଓଡ଼ିଆ ଭାଷା ଓ ସାହିତ୍ୟ | ଏଜନ୍ | ଓ.ଭା.ସା |

| | ଗ୍ରନ୍ଥର ନାମ | ଲେଖକ ଓ ପ୍ରକାଶକ | ସାଙ୍କେତିକ ଚିହ୍ନ |
|---|---|---|---|
| ୧୮ । | ଓଡ଼ିଆ ନାଥ ସଂପ୍ରଦାୟ ଓ ନାଥ ସାହିତ୍ୟ | ଡ଼: ବଂଶୀଧର ମହାନ୍ତି | ଓ.ନା.ସଂ.ନା.ସା |
| ୧୯ । | ଓଡ଼ିଆ ସାହିତ୍ୟର ଆଦିପର୍ବ | ଶ୍ରୀ ସୁରେନ୍ଦ୍ର ମହାନ୍ତି | ଓ.ସା.ଆ.ପ. |
| ୨୦ । | କେଶବ ରାମାୟଣ | ସ୍ୱର୍ଗତ କେଶବ ପଟ୍ଟନାୟକ<br>ସଂପାଦକ ସ୍ୱର୍ଗତ ନୀଳକଣ୍ଠ ରଥ | |
| ୨୧ । | କଳ୍ପଲତା | ସ୍ୱର୍ଗତ ଅର୍ଜ୍ଜୁନ ଦାସ | |
| ୨୨ । | କାଞ୍ଚି-କାବେରୀ | ,, ପୁରୁଷୋତ୍ତମ ଦାସ | କା.କା |
| ୨୩ । | କୋଣାର୍କ | ,, କୃପାସିନ୍ଧୁ ମିଶ୍ର | |
| ୨୪ । | ଗୁପ୍ତ ଇଚ୍ଛାବତୀ | ,, ବନମାଳି ଦାସ | ଗୁ.ଇ |
| ୨୫ । | ଚର୍ଯ୍ୟାଗୀତିକା | ଖଗେଶ୍ୱର ମହାପାତ୍ର | |
| ୨୬ । | ଚଣ୍ଡୀପୁରାଣ | ସ୍ୱର୍ଗତ ସାରଳା ଦାସ | ଚ.ପୁ. |
| ୨୭ । | ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ | ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ | ଜ.ମ.ଜ.ତ |
| ୨୮ । | ଝଗଡମାଳି ବଚନ | ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ | ଝ.ଝ.ବ |
| ୨୯ । | ଭୁଲାଭଣା | ସ୍ୱର୍ଗତ ଜଗନ୍ନାଥ ଦାସ | ,, |
| ୩୦ । | ଦାଣ୍ଡି ରାମାୟଣ | ସ୍ୱର୍ଗତ ବଳରାମ ଦାସ | ଦା.ରା. |
| ୩୧ । | ନାମରତ୍ନ ଗୀତା | ସ୍ୱର୍ଗତ ଧନକୃଷ୍ଣ ଦାସ | ନା.ର.ଗୀ |
| ୩୨ । | ନୀଳକଣ୍ଠ ଗ୍ରନ୍ଥାବଳୀ ୧ମ ଭାଗ | | ନୀ.ଗ୍ର. |
| ୩୩ । | ପାଇକ ଖେଦା | କହ୍ନାଇ ଚଂଦରିରାୟ | ପା.ଖେ. |
| ୩୪ । | ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ | ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତି | ପ୍ରା.ଗ.ପ.ଦ |
| ୩୫ । | ପଦ୍ମକଳା | ସ୍ୱର୍ଗତ ନରସିଂହ ସେଣ | |
| ୩୬ । | ପ୍ରାଚୀନ ଉତ୍କଳ | ସ୍ୱର୍ଗତ ଜଗବନ୍ଧୁ ସିଂହ | |
| ୩୭ । | ପ୍ରାଚୀନ ଉତ୍କଳରେ ଜଳଯାତ୍ରା | ଶ୍ରୀ ବିରୂପାକ୍ଷ କର | ପ୍ରା.ଉ.ଜ |
| ୩୮ । | ବିଚିତ୍ର ରାମାୟଣ | ସ୍ୱର୍ଗତ ବିଶ୍ୱନାଥ ଖୁଣ୍ଟିଆ | ବି.ରା |
| ୩୯ । | 'ବ୍ରହ୍ମ ନିରୂପଣ ଗୀତା | ସ୍ୱର୍ଗତ ଭୀମ ଭୋଇ | ବ୍ର.ନି.ଗୀ |
| ୪୦ । | ବାରବାଟୀ ଦୁର୍ଗ | ସ୍ୱର୍ଗତ କୃପାସିନ୍ଧୁ ମିଶ୍ର | |

| ଗ୍ରନ୍ଥର ନାମ | ଲେଖକ ଓ ପ୍ରକାଶକ | ସାଙ୍କେତିକ ଚିହ୍ନ |
|---|---|---|
| ୪୧ । ବୈଦିକ ପ୍ରାର୍ଥନା ଓ ଶାନ୍ତି ସ୍ୱସ୍ତି ବଚନ | ଅଧ୍ୟାପିକା କେତକୀ ନାୟକ | |
| ୪୨ । ମାଦଳା ପାଞ୍ଜି | ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତି | ମା.ପା |
| ୪୩ । ମଙ୍ଗଳା ପୂଜା | ପ୍ରକାଶକ-ଶ୍ରୀ କୃପାସିନ୍ଧୁ ନାୟକ | |
| ୪୪ । ମାଟିର ମହାକବି ସାରଳା ଦାସ | ଡକ୍ଟର ମାୟାଧର ମାନସିଂହ | |
| ୪୫ । ମହାଭାରତ | ସ୍ୱର୍ଗତ ଜଗନ୍ନାଥ ଦାସ | ମ.ଭା (ଜ.ମ.ଭା) |
| ୪୬ । ମହାଭାରତ | କୃଷ୍ଣ ସିଂହ | |
| ୪୭ । ରୁଦ୍ରସୁଧାନିଧି | ନାରାୟଣ ନନ୍ଦ ଅବଧୂତ ସ୍ୱାମୀ ସଂପାଦନା-ଡକ୍ଟର କରୁଣାକର କର | ରୁ.ସୁ.ନି |
| ୪୮ । ରୁକ୍ମଣୀ ବିଭା | କାର୍ତ୍ତିକ ଦାସ | ରୁ.ବି |
| ୪୯ । ରାମ ବିଭା | ଅର୍ଜ୍ଜୁନ ଦାସ | ରା.ବି |
| ୫୦ । ସାରଳା ମହାଭାରତ | ସାରଳା ଦାସ | ଶା.ମ (ସା.ମ) |
| ୫୧ । ସାରଳା ମହାଭାରତ | ସାରଳା ଦାସ | ସା.ମ |
| ୫୨ । ଶ୍ରୀମଦ୍ ଭାଗବତ | ଜଗନ୍ନାଥ ଦାସ | ଭାଗବତ (ଶ୍ରୀ.ଭା) |
| ୫୩ । ଶଶିସେଣା | ପ୍ରତାପ ରାୟ | |
| ୫୪ । ସାରଳା ଚରିତ | ମୃତ୍ୟୁଞ୍ଜୟ ରଥ | ସା.ଚ |
| ୫୫ । ଶ୍ରୀ ଭାରତ ଦର୍ପଣ | ଗୋପୀନାଥ ନନ୍ଦ | (ଭା.ଦ) ଶ୍ରୀ.ଭା.ଦ |
| ୫୬ । ଶବ୍ଦତତ୍ତ୍ୱବୋଧ ଅଭିଧାନ | ଗୋପୀନାଥ ନନ୍ଦ | ଶ.ତ.ବୋ.ଅ |
| ୫୭ । ଶ୍ରୀମଦ୍ ଭଗବତ ଗୀତା | ନୀଳକଣ୍ଠ ଦାସ | ଶ୍ରୀ.ଭ.ଗୀ |
| ୫୮ । ଶ୍ରୀ ଶ୍ରୀ ଜଗନ୍ନାଥଙ୍କ ଜଣାଣ ଓ ଭଜନ | ବଛନ୍ଦ ପଟ୍ଟନାୟକ | ଶ୍ରୀ.ଜ.ଜ.ଭ |
| ୫୯ । ଶିଳ୍ପ ଚନ୍ଦ୍ରିକା | ଯୋଗୀ ମହାପାତ୍ର, ସଂପାଦକ, ଶ୍ରୀ ସଦାଶିବ ରଥ ଶର୍ମା | ଶି.ଚ |
| ୬୦ । ସାରଳା ସ୍ମରଣିକା | ପ୍ରଜାତନ୍ତ୍ର ପ୍ରଚାର ସମିତି | ସା.ସ୍ମ |
| ୬୧ । ସାରଳା ମହାଭାରତୀୟ ନାରୀଚରିତ୍ର | ସରଳା ଦେବୀ | ସା.ମ.ନା.ଚ |

| ଗ୍ରନ୍ଥର ନାମ | ଲେଖକ ଓ ପ୍ରକାଶକ | ସାଙ୍କେତିକ ଚିହ୍ନ |
|---|---|---|
| ୬୨ । ସଂସ୍କୃତ ଓ ସଂସ୍କୃତି | ନୀଳକଂଠ ଦାସ | |
| ୬୩ । ହରିବଂଶ | ଅଚ୍ୟୁତାନନ୍ଦ ଦାସ | ହ.ବଂ |
| ୬୪ । ଲାବଣ୍ୟବତୀ | ଉପେନ୍ଦ୍ର ଭଞ୍ଜ | ଲା.ବ |
| ୬୫ । ଲୀଳାବତୀ ସୂତ୍ର | ଶ୍ରୀ ଗୋପୀନାଥ ପଟ୍ଟନାୟକ | |
| ୬୬ । ଲକ୍ଷ୍ମୀ ପୁରାଣ | ବଳରାମ ଦାସ | |
| ୬୭ । ଦାରୁ ଦେବତା | ଡକ୍ଟର ବେଣୀମାଧବ ପାଢ଼ୀ | ଦା.ଦେ |
| ୬୮ । ସାକ୍ଷୀଗୋପାଳ ମାହାତ୍ମ୍ୟ | | |
| ୬୯ । ଗଙ୍ଗାଧର ଗ୍ରନ୍ଥାବଳୀ | | |
| ୭୦ । ଶ୍ରୀମଦ୍ ଭଗବଦ୍ ଗୀତା | ନୀଳକଣ୍ଠ ଦାସ | ଶ୍ରୀ.ଭ.ଗୀ |
| ୭୧ । ଯୁଗେ ଯୁଗେ ଉତ୍କଳୀୟ ଧର୍ମ ଓ ସଭ୍ୟତା, ୧ମ ଭାଗ | ଡକ୍ଟର ମନ୍ମଥ ଦାସ | |

## ଖ—ପାଣ୍ଡୁଲିପି (ପୋଥି)

| | | |
|---|---|---|
| ୧ । ଏକାମ୍ର ଚନ୍ଦ୍ରିକା | | |
| ୨ । ଏକାମ୍ର ପୁରାଣ | | |
| ୩ । ବିଚିତ୍ର ଭାରତ | ବିଶ୍ୱମ୍ଭର ପଟ୍ଟନାୟକ | ବି.ଭା |
| ୪ । ମହାଭାରତ ସାର ସଂଗ୍ରହ | ଗୋପୀନାଥ ଦାସ | ମ.ସା.ସଂ |
| ୫ । ସାରଳା ମହାଭାରତ | ମୂଳଗାଁ, କଟକରୁ ପ୍ରାପ୍ତ ପୋଥି | ମୂ.ପୋଥି,ମୂ.ପୋ,(ମୂଳ ପୋଥି) |
| ୬ । ସାରଳା ମହାଭାରତ | ପଞ୍ଚପଲ୍ଲୀ ଗ୍ରାମ, କଟକରୁ ପ୍ରାପ୍ତ ପୋଥି | ପ.ପ.ପୋ |

## ଗ—ସଂସ୍କୃତ ଓ ହିନ୍ଦୀ

| | | |
|---|---|---|
| ୧ । ଅଷ୍ଟାଦଶ ପୁରାଣ ଦର୍ପଣ | ଜ୍ୱାଳାପ୍ରସାଦ ମିଶ୍ର | ଅ.ପୁ.ଦ |
| ୨ । ଅଭିନବ ଚନ୍ଦ୍ରିକା | ମହେଶ୍ୱର ମହାପାତ୍ର | ଅ.ଚ. |
| ୩ । ଈଶାଦି ନୌ ଉପନିଷଦ | ଗୀତା ପ୍ରେସ, ଗୋରଖପୁର | ଈ.ନୌ.ଉ |
| ୪ । ଉପନିଷଦ ଅଙ୍କ | କଲ୍ୟାଣ ବିଶେଷାଙ୍କ, ୨୩ଶ ବର୍ଷ ୧ମ ସଂଖ୍ୟା, ଗୀତାପ୍ରେସ, ଗୋରଖପୁର | ଉ.ଅ |

| ଗ୍ରନ୍ଥର ନାମ | ଲେଖକ ଓ ପ୍ରକାଶକ | ସାଙ୍କେତିକ ଚିହ୍ନ |
|---|---|---|
| ୫ । ଋକବେଦ ସଂହିତା | ନର୍ଣ୍ଣୟ ସାଗର ପ୍ରେସ, ୧୮୭୮ | ଋ.ସଂ |
| ୬ । କାଳିଦାସ ଗ୍ରନ୍ଥାବଳୀ | ସୀତାରାମ ଚତୁର୍ବେଦୀ | କା.ଗ୍ର |
| ୭ । କୌଟିଲ୍ୟ ଅର୍ଥଶାସ୍ତ୍ରମ୍ | ଓଡ଼ିଶା ସାହିତ୍ୟ ଏକାଡେମୀ | |
| ୮ । କାମସୂତ୍ରମ୍ (୨ୟଭାଗ) | ବାତ୍ସ୍ୟାୟନ, ବମ୍ବେ, ସଂବତ୍ ୧୯୯୧ | କା.ସୂ |
| ୯ । ଗୀତଗୋବିନ୍ଦ | ଜୟଦେବ | ଗୀ.ଗୋ |
| ୧୦ । ଗଦାଧର ପଦ୍ଧତି | ଏଜନ୍ | ଗ.ପ |
| ୧୧ । ଚନ୍ଦ୍ରକଳା ନାଟିକା | ବିଶ୍ୱନାଥ କବିରାଜ<br>ସଂପାଦନା—ସତ୍ୟନାରାୟଣ ରାଜଗୁରୁ | ଚ.ନା |
| ୧୨ । ଦୀର୍ଘନିକାୟ | ଅନୁବାଦ : ରାହୁଲ ସଂକୃତାୟନ | ଦୀ.ନି |
| ୧୩ । ଦେବୀ ଭାଗବତ | କଲ୍ୟାଣ, ୩୪ବର୍ଷ, ୧ମ ସଂଖ୍ୟା | ଦେ.ଭା |
| ୧୪ । ଦୁର୍ଗା ସପ୍ତଶତ୍ୟାମ୍ | ଗୀତାପ୍ରେସ, ଗୋରଖପୁର | ଦୁ.ସ.ଶ |
| ୧୫ । ନାଟ୍ୟ ମନୋରମା | ରଘୁନାଥ ରଥ, ଓଡ଼ିଶା ସାହିତ୍ୟ<br>ଏକାଡେମୀ | ନା.ମ |
| ୧୬ । ମୀନାକ୍ଷ୍ମୀ ମହୋଦୟ | ପ୍ରକାଶକ : ବିଶ୍ୱନାଥ କର,<br>ଉତ୍କଳ ସାହିତ୍ୟ ପ୍ରେସ, କଟକ | ମୀ.ମ |
| ୧୭ । ପୁରୁଷୋତ୍ତମ କ୍ଷେତ୍ରତତ୍ତ୍ୱମ୍ | ଶ୍ରୀ ସଦାଶିବ ମିଶ୍ର, ମହାମହୋପାଧ୍ୟାୟ,<br>ପୁରୀ | ପୁ.କ୍ଷେ.ତ |
| ୧୮ । ପଣ୍ଡିତ ସର୍ବସ୍ୱ | ପ୍ରକାଶକ : ମହାରାଜା ମହେନ୍ଦ୍ରଦେବ | ପ.ସ |
| ୧୯ । ପାତଞ୍ଜଳ ଯୋଗ ଦର୍ଶନ | ଗୀତାପ୍ରେସ, ଗୋରଖପୁର | ପା.ଯୋ.ଦ |
| ୨୦ । ବିହାରୀ କର୍ମକାଣ୍ଡ | ବିହାରୀଲାଲ ପଣ୍ଡିତ | ବି.କ.କା |
| ୨୧ । ବୃହତ୍ ଶ୍ରୀନିବାସଦୀପିକା<br>(୨ୟଭାଗ) | ଶ୍ରୀନିବାସାଚାର୍ଯ୍ୟ, ଅରୁଣୋଦୟ<br>ପ୍ରେସ | ବୃ.ଶ୍ରୀ.ଦୀ |
| ୨୨ । ବେଦ, ଭୂମିକାଖଣ୍ଡ | ଦୁର୍ଗାଦାସ ଲାହିଡ଼ୀ | |
| ୨୩ । ବିଷ୍ଣୁ ପୁରାଣ | ଗୀତାପ୍ରେସ, ଗୋରଖପୁର | ବି.ପୁ |
| ୨୪ । ଭାରତବର୍ଷକା ଆର୍ଥିକ<br>ଇତିହାସ | ଶ୍ରୀ କୃଷ୍ଣଦତ୍ତ ଭଟ୍ଟ | ଭା.ଆ.ଇ |
| ୨୫ । ଭାରତୀୟ ସଂସ୍କୃତି ଔର<br>ଉସକା ଇତିହାସ | ଶ୍ରୀ ସତ୍ୟକେତୁ ବିଦ୍ୟାଳଙ୍କାର,<br>ସରସ୍ୱତୀ ସଦନ, ମଶୋରୀ | ଭା.ସଂ.ଔ.ଉ.ଇ |

| ଗ୍ରନ୍ଥର ନାମ | ଲେଖକ ଓ ପ୍ରକାଶକ | ସାଙ୍କେତିକ ଚିହ୍ନ |
|---|---|---|
| ୨୬ । (ସଂସ୍କୃତ) ମହାଭାରତ | ଗୀତାପ୍ରେସ, ଗୋରଖପୁର ସଂବତ୍ ୨୦୨୦ | ମ.ଭା |
| ୨୭ । ମନୁସ୍ମୃତି | ନନ୍ଦ ଗ୍ରନ୍ଥମାଳା, ନଂ୪ | ମ.ସ୍ମୃ |
| ୨୮ । ମଣିରତ୍ନମାଳା | ଶଙ୍କରାଚାର୍ଯ୍ୟ | ମ.ର.ମା |
| ୨୯ । ଯଜୁର୍ବେଦ ସଂହିତା (ସମଷ୍ଟି ସଂଖ୍ୟା-୮) | ସଂପାଦକ : ଦୁର୍ଗାଦାସ ଲାହିଡ଼ୀ ୧୩୨୬, ମିଆଲଦା | ଯ.ସଂ |
| ୩୦ । ଶ୍ରୀମଦ୍ ଭାଗସୁଧାସାର | ଗୀତାପ୍ରେସ, ଗୋରଖପୁର | ଶ୍ରୀ.ଭା.ସୁ.ସା |
| ୩୧ । ଶ୍ରୀମଦ୍ ଭାଗବତ | ସଂପାଦକ : ଶ୍ରୀ ଚନ୍ଦ୍ରାମଣି ଆଚାର୍ଯ୍ୟ | ଶ୍ରୀ.ଭା.ସଂ |
| ୩୨ । ଶୂନ୍ୟମାତମ୍ | ମଚ୍ଛୁକାଚାର୍ଯ୍ୟ, ଭେଙ୍କଟେଶ୍ୱରମ୍ ଷ୍ଟିମ୍ ପ୍ରେସ, ବମ୍ବେ | ଶୂ.ମା |
| ୩୩ । ଶ୍ରୀମଦ୍ ବାଲ୍ମିକୀ ରାମାୟଣ | ମହାଭାରତ ବିଶେଷାଙ୍କ, କଲ୍ୟାଣ, ଗୀତା ପ୍ରେସ, ଗୋରଖପୁର | ସଂ.ରା |
| ୩୪ । ସଂକ୍ଷିପ୍ତ ମାର୍କଣ୍ଡେୟ ବ୍ରହ୍ମ ପୁରାଣାଙ୍କ | କଲ୍ୟାଣ, ଗୀତା ପ୍ରେସ, ଗୋରଖପୁର | ସଂ.ମା ବ୍ର.ପ |
| ୩୫ । ସଂକ୍ଷିପ୍ତ ସ୍କନ୍ଦପୁରାଣାଙ୍କ | ଏଜନ୍ | ସଂ.ସ୍କ.ପୁ |
| ୩୬ । ସଂକ୍ଷିପ୍ତ ପଦ୍ମପୁରାଣାଙ୍କ | ଏଜନ୍ | ସଂ.ପ.ପୁ |
| ୩୭ । ସଂକ୍ଷିପ୍ତ ନାରଦ ବିଷ୍ଣୁ ପୁରାଣାଙ୍କ | ଏଜନ୍ | ସଂ.ନା.ବି.ପୁ |
| ୩୮ । ସଂକ୍ଷିପ୍ତ ବ୍ରହ୍ମବୈବର୍ତ୍ତ ପୁରାଣାଙ୍କ | ଏଜନ୍ | ସଂ.ବ୍ର.ବୈ. ପ |
| ୩୯ । ସିଦ୍ଧ ସାହିତ୍ୟ | ଧର୍ମବୀର ଭାରତୀ | |
| ୪୦ । ସାମବେଦ ସଂହିତା (ସମଷ୍ଟି ସଂଖ୍ୟା-୧୧) | ସଂପାଦକ : ଦୁର୍ଗାଦାସ ଲାହିଡ଼ୀ ୧୩୨୬, ମିଆଲଦା | ସା.ସଂ |
| ୪୧ । ସ୍ମୃତିଚନ୍ଦ୍ରିକା (ସଂସ୍କାର କାଣ୍ଡ) | ଦେବଭଟ୍ଟ, ମହୀଶୂର, ୧୯୧୪ | ସ୍ମୃ.ଚ |
| ୪୨ । ହିନ୍ଦୁ ସଂସ୍କାର | ରାଜବଳୀ ପାଣ୍ଡେ | ହି.ସଂ |
| ୪୩ । ହିନ୍ଦୀ ସାହିତ୍ୟ କୋଷ | ଧୀରେନ୍ଦ୍ର ବର୍ମା | ହି.ସା.କୋ |

| ଗ୍ରନ୍ଥର ନାମ | ଲେଖକ ଓ ପ୍ରକାଶକ | ସାଙ୍କେତିକ ଚିହ୍ନ |
|---|---|---|
| ୪୪ । ହିନ୍ଦୀ ଋଗବେଦ | ରାମଗୋବିନ୍ଦ ତ୍ରିପାଠୀ | ହି.ଋ |
| ୪୫ । ହିନ୍ଦୀ ସାହିତ୍ୟ କା ଇତିହାସ | ରାମଚନ୍ଦ୍ର ଶୁକ୍ଳ | ହି.ସା.ଇ |
| ୪୬ । ପାରସ୍କର ଗୃହ୍ୟ ସୂତ୍ରମ୍ | ଅରୁଣୋଦୟ ପ୍ରେସ, କଟକ | ପା.ଗୃ.ସୂ |
| ୪୭ । ପାଣିନୀ କାଳୀନ ଭାରତବର୍ଷ | ବାସୁଦେବ ଶରଣ ଅଗ୍ରବାଲ, ବନାରସ | ପା.କା.ଭା |
| ୪୮ । ପରାଶର ସ୍ମୃତି | ହିନ୍ଦୀ ଟୀକା ସାହିତ୍ୟ, ଶ୍ରୀ ଗୁରୁପ୍ରସାଦ | ପ.ସ୍ମୃ |
| ୪୯ । କାଳିଦାସ କାବ୍ୟ ସଞ୍ଚୟନ | ଶ୍ରୀ ଅଭୟଚରଣ ମହାନ୍ତି | କା.କା.ସଂ |
| ୫୦ । ସାହିତ୍ୟ ଦର୍ପଣ | ବିଶ୍ୱନାଥ କବିରାଜ | ସା.ଦ |
| ୫୧ । ଅଭିନବ ଚିନ୍ତାମଣି (୧ମଭାଗ) | ରଘୁନାଥ ଶାସ୍ତ୍ରୀ | |

## ଘ–ଅନ୍ୟାନ୍ୟ

| | | |
|---|---|---|
| ୧ । ନାଥଧର୍ମ ଓ ସାହିତ୍ୟ (ବଙ୍ଗଳା) | ପ୍ରଫୁଲ୍ଲଚନ୍ଦ୍ର ଚକ୍ରବର୍ତ୍ତୀ | |
| ୨ । ନାଥ ସଂପ୍ରଦାୟେର ଇତିହାସ୍ ଦର୍ଶନ ଓ ସାଧନ ପ୍ରଣାଳୀ (ବଙ୍ଗଳା | କଲ୍ୟାଣୀ ମଲ୍ଲୀକ | ନା.ସଂ.ଇ.ଦ.ସା.ପ୍ର |
| ୩ । ବାଂଲର ବ୍ରତ (ବଙ୍ଗଳା) | ଅବନୀନ୍ଦ୍ରନାଥ ଠାକୁର | |
| ୪ । ମହାଭାରତେର ସମାଜ (ବଙ୍ଗଳା) | ଶ୍ରୀ ସୁଖମୟ ଭଟ୍ଟାଚାର୍ଯ୍ୟ | |
| ୫ । ଶ୍ରୀକ୍ଷେତ୍ର (ବଙ୍ଗଳା) | | |
| ୬ । ବ୍ରହ୍ମାଣ୍ଡପୁରାଣ (ବଙ୍ଗଳା) | ନନ୍ଦକୁମାର ଭଟ୍ଟାଚାର୍ଯ୍ୟ | ବ୍ର.ପୁ |
| ୭ । କାରବାକା (ତେଲୁଗୁ) | ଶ୍ରୀ ଜୟନ୍ତୀ ଭେଙ୍କଟ ଜଗନ୍ନାଥ ରାଓ | |

## ଙ–ଓଡ଼ିଆ ପତ୍ରପତ୍ରିକା

୧ । ସତ୍ୟବାଦୀ, ୨ୟ ଖଣ୍ଡ, ୧୩୨୩-୨୪ ସାଲ, ୩-୪ ସଂଖ୍ୟା, ୫-୬ ସଂଖ୍ୟା

୨ । ଝଙ୍କାର, ୮ମ ବର୍ଷ, ୨ୟ ସଂଖ୍ୟା, ୧୯୫୬ ।

୩ । ,, ,, ୪ର୍ଥ ସଂଖ୍ୟା ,,

୪ । ,, ,, ୭ମ ସଂଖ୍ୟା ,,

୫ । ,, ,, ୮ମ ସଂଖ୍ୟା ,,

## ଓଡ଼ିଆ ପତ୍ରପତ୍ରିକା

୬ । ଝଙ୍କାର ୯ମ ବର୍ଷ, ୧ମ ସଂଖ୍ୟା ।
୭ । ,, ୧୦ମ ବର୍ଷ, ୧ମ ସଂଖ୍ୟା ।
୮ । ,, ୧୦ମ ବର୍ଷ, ୩ୟ ସଂଖ୍ୟା ।
୯ । ,, ୧୦ମ ବର୍ଷ, ୧୦ମ ସଂଖ୍ୟା ।
୧୦ । ,, ୨୩ଶ ବର୍ଷ, ୧ମ ସଂଖ୍ୟା ।
୧୧ । ପ୍ରଜାତନ୍ତ୍ର, ୧୨ ତାରିଖ ଫେବ୍ରୁଆରୀ, ୧୯୭୦ ।
୧୨ । ନବଜୀବନ, ୩ୟ ବର୍ଷ, ୧୦ମ ସଂଖ୍ୟା ।
୧୩ ,, ୧୬ଶ ବର୍ଷ, ୩ୟ ସଂଖ୍ୟା ।

## ଗ-ଇଂରାଜୀ ଗ୍ରନ୍ଥ

| | Name of the book | Author | Abbreviations |
|---|---|---|---|
| 1. | A History of Orissa | Dr. N. K. Sahoo | |
| 2. | A short history of the world. | H. G. Wells | |
| 3. | An Introductory sociology | Kimball Young | |
| 4. | A modern philosophy of Education. | G. H. Thomson | |
| 5. | About Education | C. E. M. Joad | |
| 6. | A History of south India | K. A. Nilakantha Shastri | |
| 7. | Archeological Remains at Bhubaneswar | Dr.K.C. Panigrahi | A.R.A.B. ARB |
| 8. | Alberuni's India | Dr. Edward C. Sackaw | |
| 9. | A Catholic philosophy of Education. | Redden and Ryan | |
| 10. | A-in-Akabari | Abul-Fazl-Allani Translated by H. Blochman | |

| | Name of the book | Author | Abbreviations |
|---|---|---|---|
| 11. | Budhist India | T.W. Rhys Dairs | |
| 12. | Chamber's Encyclopaedia | George Newmans Ltd. (vol. XII) | |
| 13. | Contemporary Religious Thoughts | Thomas S. Kepler | |
| 14. | Chimese Accounts of India. | Sushila Gupta Private Ltd. | |
| 15. | Cambridge Essays on Education. | A. C. Benson | |
| 16. | Encyclopaedia of Religion and Ethics (vol. III, IV, VIII) | Edited by James Hastings | E. R. E. |
| 17. | Everyday life in Ancient India | Padmini Sengupta. | |
| 18. | Encyclopaedia of Social Sciences | Edited by Edward R. A. Seligman | |
| 19. | Economic life of Northern India in the Gupta Period. | S. K. Maity | E. L. N. I |
| 20. | Education in India | A. L. Mudalier | |
| 21. | Education and learning under Great Mughals | B. K. Sahay | E.L.U.G.M |
| 22. | Education and Social Order. | Bertrand Russell. | |
| 23. | Education—Its Data and First Principles | Percy Nunn | |
| 24. | Further Excavations at Mahen-jo-daro (vol. I | E. J. H. Mackay | |
| 25. | Ground work of Educational Theory. | J. S. Ross | |
| 26. | History of India | A. L. Srivastava | |
| 27. | Historical Essays | K. R. Kanungo | |
| 28. | Hindu Civilisation | R. K. Mukherjee | |
| 29. | History of Education in India and Pakistan | G. S. Counts | |

| | Name of the book | Author | Abbreviations |
|---|---|---|---|
| 30. | Immortal India | J. H. Dave | |
| 31. | India at the time of Patanjali | B. N. Puri | I. A. T. P. |
| 32. | Immortal India | J. H. Dave | |
| 33. | Inscriptions of Orissa (vol. III, Part II) | S. N. Rajaguru | |
| 34. | Indian System of writing | Publication Division, Government of India. | |
| 35. | Kautilya's Arthasastra | R. Shamsastri. | |
| 36. | Medieval Indian culture | Yusuf Hussain | |
| 37. | Marriage and Family in India | K. M. Kapadia | |
| 38. | Marriage and Family | Edger Schmiedeler | |
| 39. | Out lines of Social Philosophy | J. S. Mackenjie | |
| 40. | Obscure Religious Thoughts | S. B. Dasgupta | |
| 41. | Our Oriental Heritage | W. Durant | O. O. H |
| 42. | Races and cultures of India | D. N. Majumdar | |
| 43 | Religion and society | S. Radhakrishnan | |
| 44. | Russean on Education | R. L. Archer | |
| 45. | Studies in Indian History | K. M. Panikar | |
| 46. | Society and Government in Medieval India | A. B. Pandey | S.G.M.I. |
| 47. | Social control | J. S. Roucek | |
| 48. | Socio-Economi History of northern India. | B. P. Majumdar | S.E.H.N.I |
| 49. | Sociology | E. S. Bogardus | |
| 50. | Society | R. M. Maciver | |
| 51. | Social Organisation | R. H. Lowie | |

